# ଉତ୍କଳ ଗୌରବ
# ମଧୁସୂଦନ

ଲେଖକ—
ଶ୍ରୀ ନବକିଶୋର ଦାସ ବି.ଏଲ୍.

ମୁଖବନ୍ଧ ଲେଖକ—
ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ଚିନ୍ତାମଣି ଆଚାର୍ଯ୍ୟ ଏମ୍.ଏ, ଏଲ୍ ଏଲ୍, ବି.
କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ ।




ପ୍ରକାଶକ
ଉତ୍କଳ ବିଶ୍ୱବିଦ୍ୟାଳୟ

ଉତ୍କଳଗୌରବ ମଧୁସୂଦନଙ୍କ ଝିଅରୀ

ଲୋକସେବାପରାୟଣା

ଶ୍ରୀମତୀ ରମା ଦେବୀ

ସମୀପେଷୁ ।

ନିଜ ବଂଶ ଲାଗି ଜନ୍ମ ନୁହେଁ ଜନ
ଜନ୍ମିଥିଲ ସତେ ହୁଇ ଜୀବନ !
ଜନ-ସେବା-ବ୍ରତେ ବତୀ ବର୍ତ୍ତମାନେ,
ବଡ଼ ବାପ ତବ ମଧୁସୂଦନ ।
ଘେନ ଏ ଜୀବନୀ ଗଢ଼େନା ଲେଖନୀ,
ପୋଛୁଥିଲେ ଯେହ୍ନୁ ଜନନୀ ଲୁହ,
ଯାହା ଲାଗି ଜାତି ବଞ୍ଚିଲା ବରଷ,
ଦେଶବାସୀ ପୁଚ୍ଛେ ତା କଥା କୁହ ?
ଜାଗ୍ରତ ଲଗନେ ଦେଶ ଜାତି ପ୍ରାଣେ
ଢାଳିଲ ମୁଁ ଜାତି ଜୀବନ-ସୁଧା,
ବୀର ମରେ ନାହିଁ, ମରଣେ ଜାତିର
ଜଗେଁ ଉଠେ ପୁଣି ବଞ୍ଚିବା କ୍ଷୁଧା !

ନବକିଶୋର



ଶ୍ରୀମତୀ ରମା ଦେବୀ

# ମୂଳକଥା

ମଧୁବାବୁଙ୍କ ମୃତ୍ୟୁଶେଯରେ ସେବା କରିବା ସୁଯୋଗ ଲେଖକଙ୍କୁ ମିଳିଥିଲା । ସେତେବେଳେ ତାଙ୍କ ବିସ୍ତୃତ ଜୀବନୀ ଲେଖିବା ଚିନ୍ତା ଲେଖକଙ୍କ ମନରେ ଜାଗରିତ ହୋଇଥିଲା । ଏହା ପୂର୍ବରୁ ତାଙ୍କ ସଙ୍ଗରେ ଲେଖକର ଯେବେ ଦେଖାହୁଏ, ସେ ତାଙ୍କୁ ତାଙ୍କ ଜୀବନୀ ଲେଖିବାକୁ ଅନୁରୋଧ କରିଥିଲେ । ତହିଁର ଉତ୍ତରରେ ସେ କହିଥିଲେ, "ଏ ଦେଶରେ ମୋ ଜୀବନୀ କିଏ ପଢ଼ିବ ?" ସେ ତାଙ୍କ ଆତ୍ମଜୀବନୀ କେତେ ପୃଷ୍ଠା ମାତ୍ର ଲେଖି ଅସମାପ୍ତ ଭାବରେ ଛାଡ଼ିଗଲେ । ସେ ଯେଉଁ ବିସ୍ତୃତ ପରିକଳ୍ପନା ନେଇ ଜାତୀୟ ଜୀବନକ୍ଷେତ୍ରରେ ପ୍ରବେଶ କରିଥିଲେ, ତାହା କାର୍ଯ୍ୟରେ ପୂର୍ଣ୍ଣ ପରିଣତ ନ କରି ପାରି ଥିବାରୁ, ସେ ହୁଏ ତ ତାଙ୍କ ଜୀବନୀ ଲେଖିଲେ ନାହିଁ !

କିନ୍ତୁ ମଧୁବାବୁଙ୍କ ମୃତ୍ୟୁ ପରେ ତାଙ୍କ ସଂକ୍ଷିପ୍ତ ଜୀବନୀ, (ଯାହା ଉତ୍କଳ ସାହିତ୍ୟ ସମାଜରୁ ପୁରସ୍କାର ପାଇଥିଲା)—"ଆମ ମଧୁବାବୁ," "ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ" "ମହାଯାତ୍ରୀ ମଧୁସୂଦନ" ବହିମାନ ପ୍ରକାଶ ପାଇଥିଲା । ଏହି ସମସ୍ତ ବହିର ପ୍ରଥମ ସଂସ୍କରଣ ଶେଷ ହୋଇଅଛି । ତେଣୁ ମଧୁସୂଦନଙ୍କ ଜୀବନୀ ବା ଲେଖାବଳୀ ପଢ଼ିବାକୁ ଯେ ଏ ଦେଶରେ ଆଗ୍ରହ ଓ ଶ୍ରଦ୍ଧା ଅଛି, ତାହା ଏହି ପୁସ୍ତକମାନଙ୍କ ବିକ୍ରୀରୁ ସ୍ପଷ୍ଟ ଜଣା ପଡ଼େ ।

"ଉତ୍କଳ ଗୌରବ ମଧୁସୂଦନ" ଲେଖିବାରେ ଏହି ଲେଖକର ଜୀବନର ଦୀର୍ଘ ଦୁଇବର୍ଷ ଅତୀତ ହୋଇଅଛି । ମଧୁସୂଦନଙ୍କ ଜୀବନୀ ବିଷୟରେ ଯାହା ଏହି ବହିରେ ଲେଖାଯାଇଅଛି, ତାହା ସମସ୍ତ ପ୍ରାୟ ଲିଖିତ କାଗଜ ପତ୍ରରୁ ସଂଗୃହୀତ । ଶୁଣା କଥା ଅତି ସାମାନ୍ୟ ।

ଏ ବହିର ଉପାଦାନ ସଂଗ୍ରହ କାର୍ଯ୍ୟରେ ସ୍ୱର୍ଗୀୟା ସୁଧାଂଶୁବାଳା ହାଜରା ଥିଲେ ପ୍ରଥମ ଓ ପ୍ରଧାନ ସାହାଯ୍ୟଦାତ୍ରୀ । ତାଙ୍କ ସାହାଯ୍ୟ ବିନା ଏହି ବହି ଲେଖିବା ଅସମ୍ଭବ ହୋଇଥାନ୍ତା । ସେ ମହୋଦୟା ମଧୁସୂଦନଙ୍କର ସମସ୍ତ କାଗଜ ପତ୍ର, ଡାଏରୀ, ଲାଇବ୍ରେରୀ ଲେଖକଙ୍କୁ ଉନ୍ମୁକ୍ତ କରି ଦେଇଥିଲେ । ଶ୍ରୀମତୀ ଶୈଳବାଳା ଦାସ, ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ, ଗୋପାଳଚନ୍ଦ୍ର ପ୍ରହରାଜ ପ୍ରଭୃତି ଲେଖକଙ୍କୁ ବିଶେଷ ସାହାଯ୍ୟ ଦେଇଥିଲେ । ଶ୍ରୀ ଭୁବନାନନ୍ଦ ଦାସ (ଏମ. ପି.) ମଧୁସୂଦନଙ୍କ ହାଇକୋର୍ଟ ବ୍ୟବସ୍ଥାପକ ଜୀବନୀ ସଂପର୍କୀୟ ବହୁ ବିବରଣୀ ଯୋଗାଇ

ଦେଇଥିଲେ । ଓଡ଼ିଶା କମିଶନରଙ୍କ ଲାଇବ୍ରେରୀ, ଉତ୍କଳ ସାହିତ୍ୟ ସମାଜ ଲାଇବ୍ରେରୀ, କଲିକତାର ତତ୍କାଳୀନ ଇମ୍ପିରିୟାଲ ଲାଇବ୍ରେରୀରୁ ଲେଖକ ବହୁ ସାହାଯ୍ୟ ପାଇଥିଲା । ଉତ୍କଳ ସମ୍ମିଳନୀ ବିବରଣୀ ଓ "ଓଡ଼ିଆ ଅନ୍ଦୋଳନ" (The Oriya movement) ବହିରୁ ମଧ୍ୟ ଲେଖକ ଯଥେଷ୍ଟ ବିଷୟବସ୍ତୁ ସଂଗ୍ରହ କରିଅଛି ।

ଏହି ବହିର ତଥ୍ୟ ସଂଗ୍ରହ ଓ ଲେଖିଲାବେଳେ ଗୋଟିଏ ମୁଖ୍ୟ ଚିନ୍ତା ଲେଖକଙ୍କୁ ପ୍ରେରଣା ଦେଇଥିଲା । ସେ ମନେ ମନେ ଭାବିଥିଲା ଯେ ମଧୁସୂଦନ ଗୋଟିଏ ଯୁଗରେ ଓଡ଼ିଆ ଜାତିକୁ ବଞ୍ଚାଇବାକୁ ଚେଷ୍ଟା କରିଥିଲେ । ଲେଖକ ଅନ୍ତତଃ ତାଙ୍କର ଜୀବନୀ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପନ କରି ତାଙ୍କର ମହତ୍ତ୍ୱ ପ୍ରକାଶ କରାଇବାରେ ନିମିତ୍ତ ମାତ୍ର ହେଉ ।

ସତ୍ୟର ସେବା ଓ ଅନୁସନ୍ଧାନ ଆନନ୍ଦଦାୟକ । ତାହାରି ଫଳରେ ଏହି ଜୀବନୀର ଜନ୍ମ । ଏହି ପୁସ୍ତକର ନାମ ପ୍ରଥମେ "ମନସ୍ୱୀ ମଧୁସୂଦନ" ରଖା ଯାଇଥିଲା; ମାତ୍ର ପରେ "ଉତ୍କଳ ଗୌରବ ମଧୁସୂଦନ" ଉପଯୁକ୍ତ ନାମ ଭାବି ଏହା ଗ୍ରହଣ କରିଗଲା । କାରଣ "ଉତ୍କଳ ଗୌରବ" ପଦବୀ ଦେଶବାସୀଏ ତାହାଙ୍କ ଜାତୀୟବୀରଙ୍କୁ ଦେଇଅଛନ୍ତି ।

ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜ ତାହାଙ୍କ ଓକିଲାତି ଜୀବନ ସମ୍ପର୍କରେ ବହୁ ତତ୍ତ୍ୱ ଯୋଗାଇଥିଲେ ଏବଂ ସେହି ଅଧ୍ୟାୟପାଏ ପାଣ୍ଡୁଲିପିରେ କିଛି କିଛି ଅଦଳ ବଦଳ କରି ଯାଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଏକ କମିଟି କୁଳପତି ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ, ଅଧ୍ୟାପକ ରାୟ ବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଓ ଲେଖକଙ୍କୁ ନେଇ ଗଢ଼ା ଯାଇଥିଲା । ସେମାନେ ପାଣ୍ଡୁଲିପିଟିକୁ ସମ୍ୟକ୍ ଭାବରେ ପଢ଼ିଛନ୍ତି ଓ ଆବଶ୍ୟକ ସ୍ଥଳେ ଅଦଳ ବଦଳ କରି ଅଛନ୍ତି । କୁଳପତି ମହୋଦୟ ମଧ୍ୟ କେତେକ ଘଟଣା ମଧୁବାବୁଙ୍କ ଜୀବନୀ ସମ୍ପର୍କରେ ଯୋଗ କରି ଅଛନ୍ତି ।

ବହିଟି ଉତ୍ସର୍ଗ କରାଯାଇଅଛି· ଭାରତୀୟ ସ୍ୱାଧୀନତା ସଂଗ୍ରାମର ଜଣେ ନାମ୍ନୀ ନେତ୍ରୀ ଶ୍ରୀମତୀ ରମା ଦେବୀଙ୍କ ନାମରେ । "ଛମା ଭୁଇଁ" ପ୍ରଭୃତି ପୁସ୍ତକ ଲେଖକ ମଧୁସୂଦନଙ୍କ ସାନ ଭାଇ ଗୋପାଳବଲ୍ଲଭଙ୍କ କନ୍ୟା ଶ୍ରୀମତୀ ରମା ଦେବୀ । ମଧୁସୂଦନଙ୍କ ବଂଶର ଏହି ହେଉଛନ୍ତି ଜୀବିତ ବଂଶଧରମାନଙ୍କ ମଧ୍ୟରେ ଜଣେ ଅସାଧାରଣ ସେବାପରାୟଣା ନାରୀ । ସୁତରାଂ ତାଙ୍କ ନାମରେ ଏ ପୁସ୍ତକ ଉତ୍ସର୍ଗ କରିବାହିଁ ସମୀଚୀନ ।

ଏହି ବହିରେ ପ୍ରଦତ୍ତ ଚିତ୍ରଗୁଡ଼ିକରୁ କେତେକର ଫଟୋ ମୋର ସହାଧ୍ୟାୟୀ ସ୍ୱର୍ଗୀୟ ସତ୍ୟଗୋପାଳ ନାୟକ ଏବଂ କେତେକ ଶ୍ରୀ ଗତିକୃଷ୍ଣ ମିଶ୍ର, ଏମ୍. ଏ, ବି.ଏଲ୍. (ମୁନ୍‌ସିଫ)ଙ୍କ ଠାରୁ ପାଇଥିବାରୁ ଲେଖକ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । କେତୋଟି ବ୍ଲକ ଶ୍ରୀମତୀ ଶୈଳବାଳା ଦାସ ମଧ୍ୟ ଯୋଗାଇ ଧନ୍ୟବାଦର ପାତ୍ରୀ ହୋଇ ଅଛନ୍ତି ।

ପରିଶେଷରେ ଲେଖକ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀଯୁକ୍ତ ଚିନ୍ତାମଣି ଅଚାର୍ଯ୍ୟଙ୍କୁ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତି ତାହାର ଆନ୍ତରିକ କୃତଜ୍ଞତା ଜଣାଉଛି । ଚିନ୍ତାମଣି ବାବୁ ମଧୁସୂଦନଙ୍କର ଜଣେ ପଟ୍ଟଶିଷ୍ୟ । ସେ ଏହି ପୁସ୍ତକର ମୁଖବନ୍ଧ ଲେଖିବାକୁ ରାଜି ହୋଇ, ଲେଖକକୁ ଉତ୍ସାହ ଦେଇଅଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଏହି ଜୀବନୀ ଛାପିବାକୁ ଇଚ୍ଛୁକ ହୋଇ ନ ଥିଲେ, ହୁଏ ତ ଏହାର ମୁଦ୍ରଣ ଆହୁରି କେତେକାଳ ବିଳମ୍ବ ହୋଇଥାନ୍ତା । ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କଠାରୁ ଲେଖକ ଯେପରି ଅକୃତ୍ରିମ ସାହାଯ୍ୟ ଓ ସହାନୁଭୂତି ପାଇଅଛି, ସେଥିପାଇଁ ସେ ଋଣୀ ।

ଏତଦ୍‌ବ୍ୟତୀତ ଯେଉଁମାନେ ଏହି ପୁସ୍ତକର ଉପାଦାନ ସଂଗ୍ରହରେ ବା ଅନ୍ୟାନ୍ୟ ଭାବରେ ସାହାଯ୍ୟ କରିଅଛନ୍ତି ଓ ସହାନୁଭୂତି ଦେଖାଇ ଅଛନ୍ତି ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଅଛି । ଏହି ପୁସ୍ତକରେ ଯାହା କିଛି ତ୍ରୁଟି ଥିବ ସେଥିପାଇଁ ଲେଖକ ଦାୟୀ; ତଦ୍ଦ୍ୱାରା ମଧୁସୂଦନଙ୍କ ମହୀୟସୀ ପ୍ରତିଭା ବା ଗୁଣାବଳୀ ଯେପରି ଊଣା ନ ହେଉ ।

୪-୨-୧୯୬୦ ନବକିଶୋର ଦାସ

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି
ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଚିନ୍ତାମଣି ଆଚାର୍ଯ୍ୟ
ଏମ୍.ଏ., ଏଲ୍.ଏଲ୍., ବି. ଙ୍କ ଲିଖିତ

# ମୁଖବନ୍ଧ

ମଧୁବାବୁଙ୍କ ଜୀବନଚରିତ ଓଡ଼ିଆ ଜାତିର ଓ ଓଡ଼ିଶାର ପ୍ରାୟ ପଚାଶ ବର୍ଷର ଇତିହାସ । ମଧୁବାବୁ ଇହଧାମ ତ୍ୟାଗ କରିବାର ପ୍ରାୟ ପନ୍ଦର ବର୍ଷ ପରେ ଓଡ଼ିଆ ଭାଷାରେ ତାଙ୍କର ଜୀବନଚରିତ ଖଣ୍ଡିଏ ପ୍ରକାଶିତ ହେଲା । ଏହା ଅବଶ୍ୟ ଆମ୍ଭମାନଙ୍କ ପକ୍ଷରେ ଅତ୍ୟନ୍ତ ଗୌରବର କଥା ; କିନ୍ତୁ ଏହା ବହୁ ପୂର୍ବରୁ ପ୍ରକାଶିତ ହେବା ଉଚିତ ଥିଲା । ଶ୍ରଦ୍ଧେୟ ଲେଖକ ଶ୍ରୀମାନ୍ ନବକିଶୋର ଦାସଙ୍କର ବିଶେଷ ଅନୁରୋଧ ଯେ ମୁଁ ଏ 'ଉତ୍କଳ ଗୌରବ ମଧୁସୂଦନ' ପୁସ୍ତକର ଗୋଟିଏ ମୁଖବନ୍ଧ ଲେଖିଦିଏଁ । ମଧୁସୂଦନଙ୍କ ଜୀବନଚରିତର ମୁଖବନ୍ଧ ଲେଖିବା ମୋ ପକ୍ଷରେ ସୌଭାଗ୍ୟ । ଆଜି ମଧୁସୂଦନଙ୍କ ଜୀବନୀ ଉତ୍କଳ ବିଶ୍ୱବିଦ୍ୟାଳୟର ଉଦ୍ୟମରେ ଯେ ପ୍ରକାଶିତ ହୋଇ ପାରୁଛି, ସେଥିରେ ଗୁଣ୍ଡିଚି ମୂଷା ସେତୁବନ୍ଧ ନିର୍ମାଣରେ ବାଲି ଝାଡ଼ିଲା ପରି ମୁଁ ମୋର ଗୁରୁଦେବ ମଧୁସୂଦନଙ୍କ ପ୍ରତି ମୋର କର୍ତ୍ତବ୍ୟ କିଞ୍ଚିତ୍ ପରିମାଣରେ ସଂପାଦନ କରି ପାରିଥିବାରୁ ଆଜି ହୃଦୟରେ ଅସୀମ ଆନନ୍ଦ ଅନୁଭବ କରୁଅଛି ।

ମଧୁବାବୁଙ୍କ ସମ୍ବନ୍ଧେ ଓଡ଼ିଶାର ବହୁ ଲୋକେ ବହୁ ସ୍ମୃତି ପୋଷଣ କରି ଅଛନ୍ତି । ଏହି ପୁସ୍ତକ ପ୍ରଣୀତ ହୋଇ ମୁଦ୍ରଣ ସକାଶ ପଠାଯିବା ପୂର୍ବରୁ ମୁଁ ବ୍ୟକ୍ତିଗତ ଭାବରେ ଓ ସଂବାଦପତ୍ରରେ ଅନୁରୋଧ କରିଥିଲି, ଯେଉଁମାନେ ମଧୁସୂଦନଙ୍କ ସମ୍ବନ୍ଧେ ନିଜ ନିଜର ବ୍ୟକ୍ତିଗତ ସ୍ମୃତି ବା ଅନୁଭୂତି ବିଷୟ ଲେଖି ପଠାଇବେ, ତାହା ପ୍ରକାଶ କରାଯିବ, ମାତ୍ର କୌଣସିଠାରୁ କିଛି ଉତ୍ତର ପାଇଲି ନାହିଁ—ଏହା ବଡ଼ ଦୁଃଖର କଥା । ଏ ଜୀବନଚରିତ ପୁସ୍ତକର ମୁଖବନ୍ଧ ଲେଖିବାକୁ ଲେଖକ ମୋତେ ଅନୁରୋଧ କରି ମଧୁବାବୁଙ୍କ ସମ୍ବନ୍ଧେ ମୋର ସ୍ମୃତି

ଜାଗରଣ କରିବାର ସୁଯୋଗ ଦେଇଛନ୍ତି ମାତ୍ର, ଏଥିଲାଗି ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଉଅଛି ।

ପ୍ରଥମେ ମଧୁବାବୁଙ୍କୁ ମୁଁ ଦର୍ଶନ କଲି, ଯେଉଁଦିନ ସେ ୧୯୧୩ ମସିହାରେ କଲେଜର ଛାତ୍ରମାନଙ୍କୁ ତାଙ୍କ ଘରେ ଭୋଜି ଖାଇବାକୁ ଡାକିଥିଲେ; ଏ ପୁସ୍ତକର ଗୋଟିଏ ଅଧ୍ୟାୟରେ ଏ ପ୍ରସଙ୍ଗ ଉଲ୍ଲେଖ କରାଯାଇଅଛି । ତହିଁ ଉତ୍ତାରୁ ଦ୍ୱିତୀୟ ଥର ସାକ୍ଷାତ ଭାବରେ ପରିଚୟ ହେଲା ୧୯୧୫ ମସିହାରେ ଉତ୍କଳ ସମ୍ମିଳନୀ ମଣ୍ଡପରେ । ସେଥର ଉତ୍କଳ ସମ୍ମିଳନୀର ବିଭିନ୍ନ ବକ୍ତାଙ୍କର ବକ୍ତୃତା କିଏ ଠିକ ଭାବରେ ଭଲ ହସ୍ତାକ୍ଷରରେ ଓ ଚଞ୍ଚଳ ଚଞ୍ଚଳ ଲେଖି ପାରିବ, ସେଥିପାଇଁ ମଧୁବାବୁ ଜଣେ ଦୁଇ ଜଣ ଲୋକ ଖୋଜୁଥିଲେ । ମୁଁ ଲେଖିବାକୁ ରାଜି ହେଲି । ଦୁଇ ଦିନ ପରେ ଲେଖାଗୁଡ଼ିକ ନକଲ କରି ମଧୁବାବୁଙ୍କୁ ଦେଇ ଆସିଲି, କିନ୍ତୁ ଦୁଇ ଦିନ ସଭାରେ ଯୋଗ ଦେଇ, ବକ୍ତୃତାଗୁଡ଼ିକ ଲେଖି ମୋର ଧାରଣା ଜନ୍ମିଥିଲା—'ମଧୁବାବୁଙ୍କ ଅନ୍ତେ ଉତ୍କଳ ସମ୍ମିଳନୀ ବୋଧ ହୁଏ ଭାଙ୍ଗି ପଡ଼ିବ, କାରଣ ମଧୁବାବୁ ସିନା ଜାତିଟାକୁ ଗଢ଼ିବାକୁ, ଓଡ଼ିଆ ଜାତିକୁ ତାର ଜାତୀୟ କର୍ତ୍ତବ୍ୟ ଶିକ୍ଷା ଦେବାକୁ ପ୍ରାଣପଣେ ଚେଷ୍ଟା କରୁଅଛନ୍ତି, କିନ୍ତୁ ସମ୍ମିଳନୀଟା ଯେପରି ଗୋଟିଏ ବ୍ୟକ୍ତିର ଗୋଟିଏ ବ୍ୟକ୍ତିଗତ ଅନୁଷ୍ଠାନ ପରି ହୋଇ ଯାଉଅଛି । ମୁଁ ସେତେବେଳେ କଲିକତାରେ ପ୍ରେସିଡେନ୍ସି କଲେଜରେ ଓ ଅଇନ କଲେଜରେ ପଢୁଥାଏ । ଯୁବଜନସୁଲଭ ସମାଲୋଚନା କରିବାର ଦମ୍ଭ ଓ ସାହସ ହେତୁରୁ 'ଉତ୍କଳ ସାହିତ୍ୟ'ରେ 'ଉତ୍କଳ ସମ୍ମିଳନୀ' ନାମରେ ଗୋଟିଏ ପ୍ରବନ୍ଧରେ ପ୍ରକାରାନ୍ତରେ ମଧୁବାବୁଙ୍କୁ ଟିକିଏ ତିକ୍ତ ଭାବରେ ସମାଲୋଚନା କରି ଲେଖିଥିଲି । ମଧୁବାବୁ ସେ ଲେଖାଟି ପଢ଼ି ମୋତେ ଗୋଟିଏ ଚିଠିରେ ଜଣାଇଥିଲେ, ମୋ ନାମରେ ମାନହାନି ସକାଶ ମୋକଦ୍ଦମା କରିବେ । ଚିଠିଟି ପାଇ ମୁଁ ଟିକିଏ ବିବ୍ରତ ହୋଇ ପଡ଼ିଥିଲି, ଭାବିଲି, 'ଅଚ୍ଛା କଥା ହେଲା; ଅଳୁ ଖୋଳୁଖୋଳୁ ତ ମହାଦେବ ବାହାରିଲେ ! ଅଇନ୍ କଲେଜରେ ମାନହାନି ମୋକଦ୍ଦମା ବିଷୟରେ ଯେଉଁ ଅଧ୍ୟାପକ ପଢ଼ାଉଥିଲେ, ତାଙ୍କ ନାମ ଥିଲା ଡକ୍ଟର ପି. କେ. ସେନ୍ ବାରିଷ୍ଟର । ସେ ପରେ

ପାଟନା ହାଇକୋର୍ଟରେ ଜଜ୍ ହୋଇଥିଲେ, କେତେକାଳ ମୟୂରଭଞ୍ଜର ଦେବାନ ହୋଇଥିଲେ । ମୁଁ ତାଙ୍କୁ ଯାଇଁ ପଚାରିଲି, ତାଙ୍କଠାରୁ ଜାଣିଲି ଏପରି ସମାଲୋଚନା ଲାଗି ମାନହାନି ମୋକଦ୍ଦମା ହୋଇ ନ ପାରେ । ମୁଁ କଲିକତାରେ ଆଇନ୍ କଲେଜରେ ପଢ଼ିଲାବେଳେ ସମୟ ସମୟରେ ସାର୍ ଆଶୁତୋଷ ମୁଖୋପାଧ୍ୟାୟଙ୍କ ଘରକୁ ଯାଉଥିଲି । ଏତେ ଆଇନ୍ କଲେଜର ଛାତ୍ରମାନଙ୍କ ପାଇଁ ସାର୍ ଆଶୁତୋଷଙ୍କ ଦ୍ୱାର ଉନ୍ମୁକ୍ତ ଥିଲା, ପୁଣି ସେ ଯଦି ଜାଣୁଥିଲେ କୌଣସି ଛାତ୍ର ଓଡ଼ିଶାରୁ ମଧୁବାବୁଙ୍କ ପ୍ରଦେଶରୁ ଆସି ଆଇନ କଲେଜରେ ପଢୁଛନ୍ତି, ତାଙ୍କ ବିଷୟରେ ନାନା କୌତୂହଳମୟ ପ୍ରଶ୍ନ କରୁଥିଲେ । ସାର୍ ଆଶୁତୋଷ ଦିନେ ମୋତେ ପଚାରିଲେ, "ତୁମେ କେଉଁଠାରେ ଓକିଲାତି କରିବ ?" ଯେତେବେଳେ ସେ ଶୁଣିଲେ, ମୁଁ କଟକରେ ଓକିଲାତି କରିବି, ମୋତେ ଉପଦେଶ ଛଳରେ କହିଲେ "ତାହାହେଲେ ମୋର ଗୁରୁ ମଧୁସୂଦନ ଦାସଙ୍କ ପାଖରେ ସହକାରୀ ହୋଇ କାମ ଶିଖିବ ।" ସାର୍ ଆଶୁତୋଷଙ୍କ କଥାରେ 'ହଁ' ମାରିଲି, କିନ୍ତୁ ମନରେ ଆଶଙ୍କା ଥାଏ, ଏହି ଉତ୍କଳ ସମ୍ମିଳନୀ ବିଷୟକ ଘଟଣା ପରେ ମଧୁବାବୁ ମୋତେ କଣ ତାଙ୍କ ପାଖରେ କାମ ଶିଖିବାକୁ ଅନୁମତି ଦେବେ ? ଓକିଲାତି ପାସ କଲି, କଟକ ଆସିଲି, ଓକିଲାତି କରିବାର ମାସେ ଖଣ୍ଡେ ପରେ ଦିନେ ମଧୁବାବୁଙ୍କୁ ଖଣ୍ଡିଏ ଚିଠି ଲେଖିଲି, "ମୁଁ ଆପଣଙ୍କ ପାଖରେ କାମ ଶିଖିବାକୁ ଚାହେଁ ।" ଉତ୍ତରରେ ମୋତେ ଡାକରା ଆସିଲା, ଗଲି, ଦେଖା କଲି, ଘୁଞ୍ଚେଇ ଘୁଞ୍ଚେଇ ଅନେକ କଥା ପଚାରିଲେ, ମାତ୍ର ଉତ୍କଳ ସମ୍ମିଳନୀ ପ୍ରସଙ୍ଗ ଉଠାଇଲେ ନାହିଁ । ଶେଷରେ ଅନୁମତି ମିଳିଲା । ତହିଁ ଆର ଦିନଠାରୁ ଗଲି, ସନ୍ଧ୍ୟା ଆଠଟାବେଳ ଯାଏଁ, ଦିନେ ଦିନେ ରାତି ବାରଟା, ଏପରି କି ଦୁଇଟା ବେଳେ, ଖରା, ବର୍ଷା, ଶୀତରେ ଫେରେଁ । ଏପରି ଚାରିବର୍ଷ ବିତିଗଲା ; କିନ୍ତୁ ଦିନେ ହେଲେ ମୋତେ ଗୋଟିଏ କଥା ପଚାରି ନ ଥିଲେ । ବୋଧହୁଏ ପ୍ରାଚୀନ-କାଳରେ ଋଷି ଆଶ୍ରମରେ ବା ଗୁରୁଗୃହରେ ଛାତ୍ର ରହି ଶିକ୍ଷା କଲାପରି ମଧୁବାବୁ ମୋର ନିଷ୍ଠା ପରୀକ୍ଷା କରୁଥିଲେ !

ଇତିମଧ୍ୟରେ ପୁରୀର ବର୍ତ୍ତମାନ ରାଜା ରାମଚନ୍ଦ୍ର ଦେବଙ୍କ ପୋଷ୍ୟ-ପୁତ୍ର ମୋକଦ୍ଦମା ପାଇଁ କାଗଜପତ୍ର, ଆଇନ ଦେଖା ଯାଇ ପରାମର୍ଶ

ହେଉଥାଏ; ଗୋଟିଏ ଆଇନର ପ୍ରଶ୍ନ ଉଠିଲା—ବାମଣ୍ଡା ରାଜାଙ୍କ ସ୍ତ୍ରୀ ଅର୍ଥାତ୍ ବର୍ତ୍ତମାନ ପୁଣ୍ଡି ରାଜାଙ୍କର ଜନ୍ମକଲା ମାଙ୍କର ତାଙ୍କୁ ତାଙ୍କ ପିତାଙ୍କ ବିନା ଅନୁମତିରେ ପୋଷ୍ୟପୁତ୍ର ଦେଇ ପାରିବାର ଅଧିକାର ଥିଲା କି ନାହିଁ ? ମୁଁ ହଠାତ୍ କହି ପକାଇଲି, "ଏ ବିଷୟରେ ଆଇନର ବିଧାନ ପରିଷ୍କାର ; ମା ପୋଷ୍ୟ ପୁତ୍ର ଗ୍ରହଣ କରି ପାରେ ନା, କିନ୍ତୁ ପୋଷ୍ୟପୁତ୍ର କରି ଦେଇ ପାରେ ।" ମଧୁବାବୁ ଟିକିଏ ବିରକ୍ତ ହୋଇ କହିଲେ, "ତୁମେ କଣ ଏ ମୋକଦ୍ଦମାରେ ଅଛ ? ତୁମେ ଯେଉଁ ଆଇନ କଥା କହିଲ, ତାହା କେଉଁଠାରେ ଅଛି ? ମୁଁ ଗୋଲାପ ସରକାର ଶାସ୍ତ୍ରୀଙ୍କ ପ୍ରଣୀତ ପୋଷ୍ୟପୁତ୍ର ବିଷୟକ ଆଇନ ବହି ଦେଖାଇ ଦେଲା ପରେ ଆଉ କିଛି କହିଲେ ନାହିଁ । ସମସ୍ତ ଓକିଲମାନେ ଚାଲି ଗଲା ପରେ ମୋତେ କହିଲେ, "ଜଣେ ସାନ ଓକିଲ ଅନ୍ୟ ବଡ଼ ବଡ଼ ଓକିଲ ଥାଉ ଥାଉଁ ଏପରି କହିବା ଧୃଷ୍ଟତା ! ଯେହେତୁ, ସେହିଦିନ ମୋ ଉପରେ କୃପାଦୃଷ୍ଟି ପଡ଼ିଲା ; ସେହିଦିନୁ ମୁଁ ତାଙ୍କ ଦ୍ୱାରା ବହୁ ପ୍ରକାରେ ଉପକୃତ ହୋଇଥିଲି ।

ମଧୁବାବୁଙ୍କ ପାଖରେ ଯେଉଁମାନେ କାମ ଶିଖୁଥିଲେ, ତାଙ୍କୁ ଲୁହାର ବଡ଼ଚଣା ଚୋବାଇବାକୁ ପଡୁଥିଲା କହିଲେ ଚଳେ । ସାମାନ୍ୟ କୌଣସି ବିଷୟରେ କୋଣସି ଗୋଟିଏ ଭୁଲ ଭ୍ରାନ୍ତି ଘଟି ଗଲେ ଆଉ ରକ୍ଷା ନାହିଁ ; ଅଜସ୍ର ଭର୍ତ୍ସନା ସହିବାକୁ ପଡେ ; ସେତେ-ବେଳେ ମନେ ହୁଏ, କାଲିଠାରୁ ଆଉ ଆସିବି ନାହିଁ । କିନ୍ତୁ ତହିଁ ଆରଦିନ ରାତି ନ ପାହୁଣୁ ମଧୁବାବୁ ଆସି ଘରେ ହାଜର ! ହଠାତ୍ ଦେଖିଲା କ୍ଷଣି କହନ୍ତି "କାଲି ତୋତେ ଗୁଡ଼ାଏ ଗାଳି ଦେଲି ; ତୋର ମନରେ ଭାରି କଷ୍ଟ ହୋଇଥିବ, ମୁଁ ଯାହାଙ୍କୁ ବେଶି ସ୍ନେହ କରେ, ତାଙ୍କର ସାମାନ୍ୟ ଦୋଷ ସହି ପାରେ ନାହିଁ ।" ଏତିକି କଥା ଏପରି ସ୍ନେହପୂର୍ଣ୍ଣ ଭାଷାରେ କହନ୍ତି ଯେ ସବୁ ଦୁଃଖ, ସବୁ ଅଭିମାନ, ସବୁ ରାଗ ଉଭେଇ ଯାଏ ।

ପ୍ରତ୍ୟେକ ବଡ଼ ମଣିଷର ଗୋଟିଏ ଗୋଟିଏ ବିଶେଷତ୍ୱ ବା ଖିଆଲ ଥାଏ ; ମଧୁବାବୁଙ୍କର ମଧ୍ୟ ଏହିପରି ଅନେକ ଖିଆଲ ଥିଲା । ତାଙ୍କ କଥାରେ କେହି ପ୍ରତିବାଦ କରିବ, ଏହା ସେ ସହ୍ୟ କରି ପାରୁ ନ

ଥିଲେ ; ସେ ଯଦି ଦିନ ଦଶଟାକୁ ସାତ ଦଶଟା ବୋଲି ବୁଝିଥିବେ, ସେ ମୁହୂର୍ତ୍ତକ ପାଇଁ ତୁମେ ବୈଜ୍ଞାନିକ ପ୍ରମାଣ ଦର୍ଶାଇ ଦିନ ଦଶଟା ବୋଲି ପ୍ରମାଣ କଲେ ମଧ୍ୟ ସେ ବୁଝୁ ନ ଥିଲେ ; କିନ୍ତୁ କିଛି କ୍ଷଣ ପରେ କଥାଟା ବୁଝାଇ ଦେଲେ ନିଜର ଭୁଲ ସ୍ୱୀକାର କରୁଥିଲେ ଓ ଯେ ମଧ୍ୟ ଭୁଲଟା ବୁଝାଇ ଦେଉଥିଲା ତାକୁ ଧନ୍ୟ ଧନ୍ୟ କହୁଥିଲେ ।

ଗୋଟିଏ କଥା ଭଲ କରି ନ ବୁଝିଲେ ଉପରେ ଉପରେ ଭାସିଯିବା ତାଙ୍କର ସ୍ୱଭାବ ନ ଥିଲା ; ଏପରି କି ତାଙ୍କ ନିଜ ଦେହ ବେମାର ହେଲେ ସୁଦ୍ଧା ଭଲ କରି ଡାକ୍ତରଙ୍କ ବିଦ୍ୟାବୁଦ୍ଧି ପରୀକ୍ଷା ନ କରି ତାଙ୍କ ପରାମର୍ଶରେ ଚିକିତ୍ସା କରାଉ ନ ଥିଲେ । ସେ ଚିରରୁଗ୍‌ଣ ଥିଲେ । ଅଧିକାଂଶ ସମୟରେ ବାର୍ଲି ସାଗୁ, ଦୁଧ ଟିକିଏ, ବିସ୍‌କୁଟ ଖଣ୍ଡେ ଦୁଇଖଣ୍ଡ, ମଦାରଙ୍ଗା ଶାଗ ସିଝା କିମ୍ବା ହିଡ଼ିମିଚ୍ଚ ଶାଗ ସିଝା ଖାଇ ଦିନ କଟାଉଥିଲେ । ସେ କହୁଥିଲେ, "ଖାଇ ଖାଇଲେ ଯମର ଭେଟ ହୁଏ ବୋଲି ଓଡ଼ିଆରେ କଥା ଅଛି; ଲୋକେ ଅଧିକ ଖାଇଲେ ମରନ୍ତି, ନ ଖାଇଲେ ମରନ୍ତି ନାହିଁ ।" ଥରେ ତାଙ୍କର ପେଟ ଭିତରେ ଏକ ପ୍ରକାର ଘା ହେଲା; ଏଣେ ପେଟକୁ ମାରୁଥାଏ; ବାୟୁ ବେଗ ହୋଇ ଥାଏ; କଲିକତାର ଜଣେ ପ୍ରସିଦ୍ଧ ଡାକ୍ତରଙ୍କୁ ଡକା ହେଲା; ସେ ଯିବା ଆସିବା ପାଇଁ ପ୍ରଥମ ଶ୍ରେଣୀର ଗସ୍ତ ଖରଚ୍ଚ ନେବେ ଏବଂ ଦିନକୁ ହଜାରେ ଟଙ୍କା ନେବେ । ଡାକ୍ତର ଆସି ପହଞ୍ଚିବାର ଦୁଇ ତିନିଦିନ ଆଗରୁ କଲିକତାର ଥ୍ୟାକର ସ୍ପିଙ୍କ୍ କମ୍ପାନୀ ବହିଦୋକାନୀଙ୍କ ଠାରୁ ସେହି ରୋଗ ସମ୍ବନ୍ଧେ ଯେତେ ବହି ମିଳିପାରେ ସମସ୍ତ ଆସିଲା; ସେ ଗୁଡ଼ିକ ପଢ଼ାଗଲା; ଡାକ୍ତର ଆସିଲା ବେଳକୁ ତାଙ୍କ ପାଇଁ ନାନା ପ୍ରକାର ପ୍ରଶ୍ନ ତିଆରି ହୋଇ ରହିଛି । ତାଙ୍କୁ ଜେରା ହେଲା; ଡାକ୍ତର ଯେତେ ଭୁଲ କହିଲେ ସେ ସବୁ ତାଙ୍କୁ ବହି ଦେଖାଇ ବୁଝାଇ ଦିଆଗଲା; ଡାକ୍ତର ହଜାରେ ଟଙ୍କା ଓ ବାଟଖରଚ ନେଇ ଫେରିଗଲେ; ଅନ୍ୟ ଡାକ୍ତର ଆସିଲେ, ଚିକିତ୍ସା କଲେ, ରୋଗ ଭଲ ହେଲା ।

ମଧୁବାବୁଙ୍କ ବ୍ୟକ୍ତିଗତ ଜୀବନ ସମ୍ବନ୍ଧେ ଏହିପରି ଅନେକ ଘଟଣା ଅଛି; ଲେଖି ବସିଲେ ପୋଥି ସରିବ ନାହିଁ । ମୋର ଶ୍ରଦ୍ଧେୟ

ଲେଖକ ନବକିଶୋର ମଧୁବାବୁଙ୍କ ଜୀବିତାବସ୍ଥାରେ ସୁଦ୍ଧା ତାଙ୍କ ପାଖକୁ ଯାଇ ଅନେକ କଥା ଶୁଣୁଥିଲେ; ସେ ମଧୁସୂଦନଙ୍କର ଜଣେ ଯଥାର୍ଥ ଗୁଣଗ୍ରାହୀ; ତେଣୁ ମଧୁବାବୁ ବଞ୍ଚିଥିବା ବେଳୁ ତାଙ୍କର ଜୀବନଚରିତ ଲେଖିବେ ବୋଲି ଉପାଦାନ ସଂଗ୍ରହ କରୁଥିଲେ। ଜୀବନଚରିତ ଲେଖକ, ଇତିହାସ ଲେଖକ ଯଥାର୍ଥ ଭାବରେ ଉପାଦାନ ଗୁଡ଼ିକୁ ସନ୍ନିବେଶିତ କରି ଗ୍ରନ୍ଥ ଲେଖିବା ଉଚିତ। ଶ୍ରୀମାନ୍ ନବକିଶୋର ଏ ଉଦ୍ୟମରେ ବହୁ ପରିମାଣରେ କୃତିତ୍ୱ ଦେଖାଇ ଅଛନ୍ତି ବୋଲି ମୁଁ ବିଶ୍ୱାସ କରେ। ମଧୁବାବୁ କଲିକତାକୁ ଯାଇ ପଢ଼ିବା ଆଗରୁ ତାଙ୍କ ନାମ ଥିଲା ଗୋବିନ୍ଦବଲ୍ଲଭ, ଏ କଥାଟି ଲେଖକ ଉଲ୍ଲେଖ କରିବାକୁ ବୋଧହୁଏ ସାହସ କରି ନାହାନ୍ତି; ବୋଧହୁଏ ସେ କୁଣ୍ଠାବୋଧ କରିଅଛନ୍ତି ଯେ ଏଇଟା ମଧୁବାବୁଙ୍କ ଚରିତ୍ରରେ ଗୋଟାଏ ଦୂଷଣ। କିନ୍ତୁ ମୁଁ ଭଲ କରି ଜାଣେ, ମଧୁବାବୁଙ୍କର ପିଲାଦିନର ନାମ ଥିଲା ଗୋବିନ୍ଦବଲ୍ଲଭ। ମଧୁବାବୁଙ୍କ ପୁରୋହିତ ଥିଲେ ସତ୍ୟଭାମାପୁର ଗ୍ରାମର ହରେକୃଷ୍ଣ ଶତପଥୀ, ଡାକନାମ ଭୁଷ୍‌ପଣ୍ଡିତ। ଭୁଷ୍ ପଣ୍ଡିତଙ୍କ ପୁଅ ବ୍ରଜମୋହନ ଶତପଥୀ; ତାଙ୍କ ପୁଅ ହେମଚନ୍ଦ୍ର ଶତପଥୀଙ୍କୁ ମୋର ଭଉଣୀ ବିବାହ କରିଥିଲା। ହେମଚନ୍ଦ୍ର ୧୯୧୭ ମସିହାରେ ବିଲାତରୁ ବାରିଷ୍ଟର ପାସ କରି ଫେରିଲାବେଳେ ମାଲୋଜା ନାମକ ଜାହାଜଡ଼ୁବିରେ ଜର୍ମାନ ଯୁଦ୍ଧବେଳେ ଇଙ୍ଗ୍‌ଲଣ୍ଡ ଚେନେଲରେ ପ୍ରାଣ ହରାଇଥିଲେ। ମୁଁ ନିଜେ ବ୍ରଜମୋହନ ଶତପଥୀଙ୍କ ଠାରୁ ମଧୁବାବୁଙ୍କ ବାଲ୍ୟଜୀବନର କଥା ଶୁଣିଛି। ଯେଉଁ କାରଣରୁ ମଧୁବାବୁ ନାମ ବଦଳ କରନ୍ତୁ ପଛକେ, ତାହା ଉଲ୍ଲେଖ କରିବାରେ ଶଙ୍କାର ଲେଶମାତ୍ର ନାହିଁ। ଦସ୍ୟୁ ରତ୍ନାକର ଦିନେ ବ୍ରହ୍ମର୍ଷି ବାଲ୍ମୀକୀ ହୋଇ ଆଜି ଜଗତରେ ପୂଜିତ; ଅଳ୍ପ ରୁଷନେତା ଷ୍ଟାଲିନ—ଜଣେ ସାଧାରଣ ଦରିଦ୍ର ମୋଚିର ପୁଅ, ଜୀବନରେ କେତେଥର ସେ ନାମ ବଦଳାଇ ଛଦ୍ମବେଶ ଧାରଣ କରିଥିଲେ! ମନୀଷିମାନଙ୍କ ଜୀବନର କୃତିତ୍ୱ ଅନୁସାରେ ତାଙ୍କର ଜୀବନ ଆଦର୍ଶ ହୁଏ, ବାଲ୍ୟକାଳରେ କି ଘଟଣା ଘଟିଥିଲା, ତାହା ଉପରେ ବିଗ୍ଭର କରାଯାଏ ନାହିଁ।

ମାଗୁଣି ନାୟକ ମଧୁବାବୁଙ୍କ ଗାଁ ଚଟଶାଳୀର ଶିକ୍ଷକ ଥିଲେ। ସେହି ଗାଁ ଚଟଶାଳୀ କଥା, ପୂର୍ବକାଳଆ ଚଟଶାଳୀରେ ଶିକ୍ଷାପ୍ରଣାଳୀ

କଥା ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖା ଅଛି । ସେହି ମାଗୁଣି ନାୟକ ଅତି ବୁଢ଼ା ହୋଇ ପ୍ରାୟ ମରିବାର ଅଳ୍ପଦିନ ପୂର୍ବଯାଏ କଟକ ଆସୁଥିଲେ । ମଧୁବାବୁ ତାଙ୍କୁ ଦେଖିଲାମାତ୍ରେ ଆସନରୁ ଉଠିଯାଇ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କ ଗୋଡ଼ତଳେ ପଡ଼ୁଥିଲେ । ପ୍ରତିଥର ମାଗୁଣି ନାୟକ ଆସିଲେ ପାଞ୍ଚ ଦଶ ଟଙ୍କା, ଲୁଗା, ଏ ସବୁ ପାଉଥିଲେ । ଏତେ ବଡ଼ ହୋଇ ସୁଦ୍ଧା ମଧୁବାବୁ ତାଙ୍କର ବାଲ୍ୟଗୁରୁଙ୍କ ପ୍ରତି ଯେପରି ଶ୍ରଦ୍ଧା ଓ ଭକ୍ତି ଦେଖାଉଥିଲେ, ତାହା ଆଧୁନିକ ଛାତ୍ର ସମାଜର ଏକ ମହତ୍ ଆଦର୍ଶ । ମଧୁବାବୁଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ ତାଙ୍କ ଜୀବନର ଗୋଟିଏ ପ୍ରଧାନ ଘଟଣା । ସେ ଅବସ୍ଥାଚକ୍ରରେ ପଡ଼ି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ମଧ୍ୟ ତାଙ୍କର ଲେଖାମାନ, କବିତାମାନ ପାଠ କଲେ ନିଶ୍ଚୟ ବୁଝାଯିବ ସେ ଜନ୍ମଗତ ସଂସ୍କାର ଅନୁସାରେ ହିନ୍ଦୁଧର୍ମରେ ପୂର୍ଣ୍ଣ ବିଶ୍ୱାସ କରୁଥିଲେ । ମନୁଷ୍ୟ ଉଦାର-ହୃଦୟ ହେଲେ, ଉଚ୍ଚ ସ୍ତରକୁ ଗଲେ ଜାତିଗତ ବା ଧର୍ମଗତ ସଂକୀର୍ଣ୍ଣ-ତାର ଗଣ୍ଡି ମଧ୍ୟରେ ରହି ପାରେ ନାହିଁ । ପୁରୀ ଜଗନ୍ନାଥ ଦେଉଳ ଖ୍ରୀଷ୍ଟଧର୍ମାବଲମ୍ବୀ ସରକାରଙ୍କ ହାତକୁ ନ ଯାଉ, ଓଡ଼ିଆ ଜାତିର ହିନ୍ଦୁ ସମାଜରେ ଠିକ ରହୁ ଏହା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେ କହୁଥିଲେ, "ପୃଥିବୀରେ କେବଳ ଓଡ଼ିଆ ଜାତିର ମଉଡ଼ମଣି ସ୍ୱରୂପ ଗୋଟିଏ ରାଜା ଅଛି, ଯାହାର ଜନ୍ମ ମୃତ୍ୟୁ ଅନୁସାରେ ଅଙ୍କ (ବର୍ଷ) ଗଣନା ହୁଏ; ଯାହାର ଅଙ୍କକୁ ଓଡ଼ିଆ ଜାତି ନିଜର ଜାତକରେ ବ୍ୟବହାର କରେ । ଏପରି ଅନ୍ୟତ୍ର ପୃଥିବୀରେ କେଉଁଠି ଅଛି ? ଏପରି ଗୋଟିଏ ଜାତିର ଶ୍ରେଷ୍ଠ ବ୍ୟକ୍ତିକୁ ବିଦେଶୀୟ ସରକାର ନଷ୍ଟ କରିବେ ଏହା ମଧୁବାବୁ ଦେହରେ ପ୍ରାଣ ଥିବା ଯାଏ ଦେଖି ନ ପାରେ ।" ଏହିପରି ଆଉ ଗୋଟିଏ ଘଟଣା କଟକରେ ଘଟିଥିଲା । କଟକ ବକ୍ସିବଜାର ନିକଟରେ ଗୋଟିଏ 'ଗୋ ଖାନା' ବା ଗୋରୁ ହାଣିବାର ସ୍ଥାନ ଜଣେ ସାହେବ କଲେକ୍ଟର ବସାଇବେ ବୋଲି ଠିକ କରିଥିଲେ । ଏ ଦେଇ ଅନେକ ପ୍ରତିବାଦସଭା ହୋଇଥିଲା । ଗୋଟିଏ ସଭାରେ ମଧୁବାବୁ ସଭାପତି ହୋଇଥିଲେ । ସେ କହିଲେ, "ଏ ସ୍ଥାନରେ ଗୋରୁ ହାଣି ଗୋରକ୍ତ ପକାଇବା ପୂର୍ବରୁ ଆଗେ ମଧୁସୂଦନ ଦାସକୁ ହାଣି ତା ରକ୍ତ ପକାଇବାକୁ ହେବ ।

ଯଦି ସାହେବ ଏଠାରେ 'ଗୋ ଖାନା' ବସାନ୍ତି, ଏହାହିଁ ତାର ପରିଣାମ ହେବ । ମଧୁସୂଦନ ଦାସ ପଛକୁ ଅନ୍ୟ କିଏ ରକ୍ତ ଦାନ କରିବାକୁ ଚାହାନ୍ତି, ସେମାନେ ଏଠାରେ ହେଉ ବା ମୋ ଘରଠାରେ ହେଉ ଆସି ନାମ ଲେଖାନ୍ତୁ ।" ଏହି ସଭା ଓ ବକ୍ତୃତା ପରେ ଗୋଖାନା ବସିବା ପ୍ରସ୍ତାବ ବନ୍ଦ ହେଲା ।

ମଧୁବାବୁ ସବୁବେଳେ ଓଡ଼ିଶା ବାହାରେ ଓଡ଼ିଆ ଜାତିର ଗୌରବ ରଖିବାକୁ ଚେଷ୍ଟା କରୁଥିଲେ । ବିଲାତରେ ସେ ଗୋଟିଏ ହୋଟେଲରେ ଥିଲେ, ସେ ହୋଟେଲର ମାଲିକ ଦିନେ ନିଜର ହୋଟେଲ ସମ୍ବନ୍ଧେ ବାହାଦୁରି କରି ଅନେକ କଥା ହୋଟେଲରେ ଥିବା ବ୍ୟକ୍ତିମାନଙ୍କୁ ଶୁଣାଇଲେ । ସେ କହିଲେ, "ଆମର ହୋଟେଲକୁ ଆମେ ଏପରି ଭାବରେ ଚଳାଇ ଆସିଅଛୁଁ ଯେ ହୋଟେଲ ବସାଇଲାଦିନୁ କ୍ରମେ କ୍ରମେ ଏହାର ଉନ୍ନତି ହୋଇ ଶହେ ଜଣରୁ ଆଜି ପାଞ୍ଚ ହଜାର ଲୋକ ଏହି ହୋଟେଲରେ ଏକସଙ୍ଗରେ ଖାଇବାର ବ୍ୟବସ୍ଥା କରିପାରି ଅଛୁଁ ।" ମଧୁବାବୁ ଉତ୍ତରରେ କହିଲେ—"ମୁଁ ଯେଉଁ ଦେଶରୁ ଆସିଅଛି, ସେ ଦେଶରେ ଗୋଟିଏ ଜାତୀୟ ହୋଟେଲ (National Hotel) ଅଛି, ଯେଉଁଠାରେ ଏକା ବେଳକେ ଲକ୍ଷେ ଲୋକ ଖାଇବାର ବ୍ୟବସ୍ଥା ସେ ହୋଟେଲ ବସିବା ଦିନୁ ରହିଅଛି, ଆଜିପର୍ଯ୍ୟନ୍ତ ବି ଚାଲିଛି ।" ଏ କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ, ସେମାନଙ୍କର କୌତୂହଳ ବଢ଼ିଲା, ବହୁ ପ୍ରଶ୍ନ କଲେ । ମଧୁବାବୁ ଓଡ଼ିଶାର କଥା, ଜଗନ୍ନାଥ ଦେଉଳର କଥା ଓ ଜଗନ୍ନାଥ ଦେଉଳରେ କିପରି ଲକ୍ଷ ଲକ୍ଷ ଲୋକେ ଏକାବେଳକେ ମହାପ୍ରସାଦ ପାଆନ୍ତି ଏ ସବୁ ଶ୍ରୋତାମାନଙ୍କୁ ବିଶଦ ଭାବରେ ଶୁଣାଇଥିଲେ ।

ମଧୁବାବୁ ଖ୍ରୀଷ୍ଟାନଧର୍ମ ଗ୍ରହଣ କରିଥିଲେ ମଧ୍ୟ ପୂର୍ବଜନ୍ମ, ପରଜନ୍ମ ଓ ଜୀବନର କ୍ରମବିକାଶ ଉପରେ କିପରି ବିଶ୍ୱାସ କରୁଥିଲେ, ତାହା ତାଙ୍କର ବିଲାତରେ ଦେଇଥିବା ଗୋଟିଏ ବକ୍ତୃତାରୁ ଜଣାଯାଏ । ସେହି ବକ୍ତୃତାରେ ସେ ଭାରତର ଜାତିଭେଦ ପ୍ରଥାକୁ ସମର୍ଥନ କରିଥିଲେ । ସେ କହିଲେ "ଭାରତରେ ଯେଉଁ ଜାତିଭେଦ ସହସ୍ର ସହସ୍ର ବର୍ଷ ଧରି ଚାଲି ଆସୁଅଛି, ତାହା ପୂର୍ବଜନ୍ମ ସଂସ୍କାରବାଦ ଉପରେ

ପ୍ରତିଷ୍ଠିତ । ଗୋଟିଏ ତନ୍ତୀର ପୁଅ ତନ୍ତରେ ଲୁଗା ବୁଣେ; ଗୋଟିଏ ବଢ଼େଇର ପୁଅ ବାପ ପରି କାଠକାମ କରେ; ଗୋଟିଏ କମାରପୁଅ ତାର ବାପର କାରିଗରି ଧରେ; ଗୋଟିଏ ମୋଚିର ପୁଅ ତାର ବାପ ପରି ଜୋତା ସିଲାଇ କରେ; ତାକୁ କେଉଁ ଟେକ୍‌ନିକାଲ ସ୍କୁଲ ଏ ଶିକ୍ଷା ଦିଏ ? ତାର ଆଖି, ତାର ହାତ ବଂଶପରମ୍ପରାରେ ଏପରି ଗଢ଼ି ହୋଇ ଯାଇଥାଏ ଯେ ବାପର କାମ ପୁଅ ବିନା ଶିକ୍ଷାରେ କରେ । ଏହିଠାରେ ସେ ମହାଭାରତର ଅଭିମନ୍ୟୁ କଥା ଓ କୋଣାର୍କ ଦେଉଳ ତିଆରି ପ୍ରସଙ୍ଗ ଉଲ୍ଲେଖ କରିଥିଲେ । ସେ ପୁଣି କହିଲେ—"ଖଣ୍ଡେ ସୁନା ତାରରେ ଖାଣ୍ଟି ସୁନା କେତେ ବା ଭେଲ କେତେ, ଏ କଥା ପରୀକ୍ଷା କରିବା ପାଇଁ ପାଶ୍ଚାତ୍ୟ ବିଜ୍ଞାନ କେତେ ପ୍ରକାର ଏସିଡ୍ ଇତ୍ୟାଦି ଉଦ୍ଭାବନ କରୁଛି । କିନ୍ତୁ ଗୋଟିଏ ବଣିଆର ପୁଅ ସେହି ତାରଟାକୁ ଥରେ ଜିଭରେ ଲଗାଇ ଦେଇ ଯାହା କହି ଦେଉଛି, ସେ ପ୍ରାୟ ବୈଜ୍ଞାନିକ ପରୀକ୍ଷାର ଫଳ ସଙ୍ଗେ ସମାନ । ବର୍ତ୍ତମାନ ବ୍ରିଟିଶ ସରକାର ଭାରତରେ ଯାଇ ଏହି ବିଭିନ୍ନ ଜାତିର ଲୋକଙ୍କ ଜାତୀୟ ବ୍ୟବସାୟର ଉନ୍ନତି ପାଇଁ ତ କିଛି କରି ନାହାନ୍ତି, କରିଛନ୍ତି ଏତିକି ଯେ—ବିଲାତରୁ ଜିନିଷ ନେଇ ଭାରତରେ ବିକି ଭାରତୀୟ ବିଭିନ୍ନ ଜାତିର ବ୍ୟବସାୟୀଙ୍କ ଦାନାପାଣି ମାରୁଛନ୍ତି ।"

ଏହାପରେ ନାନା ସ୍ଥାନରେ, ନାନା ଘଟଣାରେ ତାଙ୍କର ଜାତୀୟ ପ୍ରେମବହ୍ନି ଜଳି ଉଠୁଥିଲା । ସେ ଯେ ଓଡ଼ିଆ ଜାତିର 'ମୁକୁଟବିହୀନ ସମ୍ରାଟ୍' ହୋଇଥିଲେ, ଦିନେ ତାହା ପ୍ରମାଣିତ ହୋଇଥିଲା । ୧୯୨୦ ମସିହାରେ ଯେତେବେଳେ ସେ ସମଗ୍ର ଓଡ଼ିଶାର ମିଉନିସିପାଲିଟି ପକ୍ଷରୁ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାକୁ ସଭ୍ୟରୂପେ ପ୍ରାର୍ଥୀ ହୋଇଥିଲେ, ସେ ସମୟରେ ଗୋଟିଏ ଦିନରେ ସକାଳ ଛଅଟାଠାରୁ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ ଭୋଟ ନିଆଯାଉଥିଲା । କଟକରେ ମୁଁ ତାଙ୍କର ପୋଲିଂ ଏଜେଣ୍ଟ ହୋଇଥିଲି; ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଅର୍ଥାତ୍ ପୁରୀ, ବାଲେଶ୍ୱର, ସମ୍ବଲପୁର, କେନ୍ଦ୍ରାପଡ଼ା ପ୍ରଭୃତି ଯେଉଁଠାରେ ମିଉନିସିପାଲିଟି ଥିଲା, ସେଠାରୁ ମଝେ ମଝେ ଟେଲିଗ୍ରାଫ ଆସୁଥାଏ, ବହୁତ ଭୋଟ ହେଉଛି; କଟକରେ ଦୁଇଟି ବାକ୍ସ ପୂର୍ଣ୍ଣ ହୋଇ ଭୋଟ ଶେଷ ବେଳକୁ ତୃତୀୟ ବାକ୍ସ ମଧ୍ୟ ଆବଶ୍ୟକ ପଡ଼ିଥିଲା । ତାଙ୍କୁ

ଅନ୍ୟାନ୍ୟ ପ୍ରତିଦ୍ୱନ୍ଦ୍ୱୀ ମଧ୍ୟରେ ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ ବିଶ୍ୱନାଥ ମିଶ୍ର ବାରିଷ୍ଟର । ସେ ଶତକଡ଼ା ଦୁଇ ଭୋଟ ପାଇଥିଲେ, ଶତକଡ଼ା ଅଠାନବେ ପାଇଥିଲେ ମଧୁବାବୁ; ଅନ୍ୟମାନଙ୍କ ବାକସ ଖାଲି । ଭୋଟ ଗଣତି ହେବାର ପ୍ରାୟ ପନ୍ଦରଦିନ ପରେ ମଧୁବାବୁ କଟକରେ ପୁରୀ ରାଜାଙ୍କ ପୋଷ୍ୟପୁତ୍ର ମୋକଦ୍ଦମା ସବଜଜ୍ ଅଦାଲତରେ ଚଳାଉଥିବା ବେଳେ ପାଟନାରୁ ଟେଲିଗ୍ରାଫ ଆସି ପହଞ୍ଚିଲା, "ମଧୁସୂଦନ ଦାସ ମନ୍ତ୍ରୀ ପଦରେ ନିଯୁକ୍ତ ହୋଇ ଅଛନ୍ତି ।" ଏ ଟେଲିଗ୍ରାଫ ମୋତେ ସଙ୍ଗେ ସଙ୍ଗେ ଦେଖାଇଲେ । ମୁଁ ସଙ୍ଗେ ସଙ୍ଗେ ଠିଆହୋଇ ହାକିମଙ୍କୁ ଏ ସୁସମ୍ବାଦ ଜଣାଇଲି ଓ ସେ ନିଜେ କହିଲେ "ମନ୍ତ୍ରୀପଦରେ ନିଯୁକ୍ତ ହେଲା ପରେ ମୋ ପକ୍ଷରେ କଚେରିରେ ଆଉ ମୋକଦ୍ଦମା ଚଳାଇବା ଉଚିତ ହେବ ନାହିଁ ।" ତତ୍‌କ୍ଷଣାତ୍ ମକଦ୍ଦମା ବନ୍ଦ ହେଲା, କଚେରି ତମାମ କାହିଁକି, କଟକ ସହର ତମାମ ବିଜୁଳିପରି କଥାଟା ବ୍ୟାପିଗଲା । ଆଉଦିନେ ତାଙ୍କର "ମୁକୁଟବିହୀନ ସମ୍ରାଟତ୍ୱ" ପ୍ରମାଣିତ ହୋଇଥିଲା, ଯେଉଁଦିନ ମହାଯାତ୍ରୀ ମଧୁସୂଦନଙ୍କ ଶବକୁ ଓଡ଼ିଶାବାସୀ ତାଙ୍କ କୋଠିରୁ ନେଇ ଗୋରା କବରକୁ ଯାଇଥିଲେ । କେତେ ଓଡ଼ିଆ, କେତେ ବଙ୍ଗାଳୀ, କେତେ ତେଲେଙ୍ଗା; କେତେ ହିନ୍ଦୁ, କେତେ ମୁସଲମାନ୍, କେତେ ଖ୍ରୀଷ୍ଟାନ ତାଙ୍କ ଶବକୁ ଥରେ ଦର୍ଶନ କରି, ସେଥିରେ ଫୁଲଟିଏ ଦେବେ, ଥରେ ତାଙ୍କ କୋକେଇରେ କାନ୍ଧ ଲଗେଇ ଦେବେ ବୋଲି ବ୍ୟାକୁଳ ହୋଇ ଜାତି ଧର୍ମ ନିର୍ବିଶେଷରେ ଦଉଡ଼ୁଥିଲେ; କେତେ ନାରୀ ନିଜ ନିଜର କୋଠା ଉପରୁ ସିନ୍ଦୁର, ଚନ୍ଦନ, କର୍ପୂର, ଫୁଲ ପକାଇ ନମସ୍କାର କରୁଥିଲେ । ସେ ଶୋଭାଯାତ୍ରା ଯେ କଟକ ସହରରେ ନ ଦେଖିଛି ସେ ଅନୁମାନ କରି ପାରିବ ନାହିଁ । ଏ ପ୍ରସଙ୍ଗରେ ଗୋଟିଏ କଥା ମୋର ମନେ ପଡ଼େ; ମଧୁବାବୁ ମୋର ସ୍ତ୍ରୀକୁ ଝିଅପରି ସ୍ନେହ କରୁଥିଲେ ଏବଂ ଝିଅ ବୋଲି ଡାକୁଥିଲେ । ମୋ ଦେହ ଅସୁସ୍ଥ ଥାଏ ବୋଲି ଦିନାକେତେ ପ୍ରତିଦିନ ମୋ ଖାଇଲାବେଳେ ଆସନ୍ତି । ମୁଁ କିପରି ଖାଉଛି, କଣ ଖାଉଛି, ଏ ସବୁ ଦେଖନ୍ତି, ଘଣ୍ଟାଏ ଲେଖାଏଁ ବସନ୍ତି । ଦିନେ ମୋର ସ୍ତ୍ରୀ ତାଙ୍କୁ ଅତି ସରଳ ଭାବରେ କହିଲେ "ଆପଣ ଗୋଟିଏ ପୋଷ୍ୟ ପୁତ୍ର କଲେ ନାହିଁ ? ଆପଣଙ୍କର କ୍ରିୟା କଳାପ କିପରି ହେବ ?" ସେ ଉତ୍ତର ଦେଲେ "ସମଗ୍ର ଓଡ଼ିଶାର ଲୋକେ ତ

ମୋର ପୁଅ ଝିଅ; ମୁଁ ଗୋଟିଏ କଣ, କୋଟିଏ ପୁଅ ଝିଅ କରିଛୁ । ସେମାନେ ଥାଉଁ ଥାଉଁ, ଯେବେ ମୋର ଶବକୁ କୁଆ ଶାଗୁଣା, ବିଲୁଆ ଖାଇବେ, ତାହେଲେ ଭଲ ।" ଏଇକଥା ସେ ଶୋଭାଯାତ୍ରା ବେଳେ ମୋର ବାରମ୍ବାର ମନେ ପଡୁଥାଏ । ଯେ ଦେଶସେବାରେ, ନିଜର ଜାତିର ସେବାରେ ନିଜକୁ ଦୀକ୍ଷିତ କରିପାରେ, ସେହି ଏକା ସମଗ୍ର ଜଗତର ଲୋକମାନଙ୍କୁ ନିଜର କୁଟୁମ୍ବ ବୋଲି ଭାବିପାରେ ।

ଶ୍ରଦ୍ଧେୟ ଲେଖକ ମଧୁସୂଦନଙ୍କର ବହୁତୋମୁଖୀ ପ୍ରତିଭାର ଚିତ୍ର ବିଭିନ୍ନ ଭାବରେ ଦେଖାଇ ଅଛନ୍ତି, ଯଥା— ଛାତ୍ର ମଧୁସୂଦନ, କଲିକତାରେ ଯୁବକ ମଧୁସୂଦନ, ଶିକ୍ଷକ ଓ ଅଧ୍ୟାପକ ମଧୁସୂଦନ, ଓକିଲ ମଧୁସୂଦନ, ଶରଣରକ୍ଷଣ ମଧୁସୂଦନ, ଶିଳ୍ପୀ ମଧୁସୂଦନ, ଦେଶପ୍ରେମୀ ମଧୁସୂଦନ, ମନ୍ତ୍ରୀ ମଧୁସୂଦନ, ବକ୍ତା ମଧୁସୂଦନ ଇତ୍ୟାଦି । ଏଥି ମଧ୍ୟରୁ କେତେକ ପ୍ରସଙ୍ଗରେ ତାଙ୍କ ଜୀବନର ଆହୁରି କେତୋଟି ଘଟଣା ଉଲ୍ଲେଖ କରାଯାଇଅଛି ।

ଓକିଲ ମଧୁସୂଦନଙ୍କ ପ୍ରତ୍ୟୁତ୍ପନ୍ନମତି କଥା ଲେଖକ ଉଲ୍ଲେଖ କରିଅଛନ୍ତି ନିମ୍ନ ପାହାଚର ହାକିମମାନଙ୍କ ଉପରେ ହାଇକୋର୍ଟରୁ ବେଳେବେଳେ ଭାରି ଚାପ ପଡ଼େ, ତୁମେ ଏ ମାସରେ କେତୋଟି ସାକ୍ଷୀ ଜବାନବନ୍ଦୀ କଲ, କେତୋଟି ମୋକଦ୍ଦମା ଫଇସଲ୍ କଲ; ତେଣୁ ସେମାନେ ବାଧ୍ୟ ହୋଇ ଅନେକ ସମୟରେ ବିଚାରପ୍ରତି ଲକ୍ଷ୍ୟ ନ ରଖି ପରିମାଣ ପ୍ରତି ଲକ୍ଷ୍ୟ ରଖି ମୋକଦ୍ଦମା ଫଇସଲ୍ କରନ୍ତି । କଟକରେ ସବ୍‌ଜଜ୍ ଅଦାଲତରେ ଗୋଟିଏ ବଡ଼ ମକଦ୍ଦମା ପଡ଼ିଲା । ହାକିମ ମନେ କରିଥିଲେ, ମକଦ୍ଦମାଟା ସାତ ଆଠ ଦିନରେ ସରିଯିବ, ମାତ୍ର ଲାଗିଗଲା ପ୍ରାୟ ତିନି ସପ୍ତାହ; ସେଥିରେ ମଧୁବାବୁ ଏକ ପକ୍ଷରେ ଓ ଜାନକୀ ବାବୁ ଅନ୍ୟ ପକ୍ଷରେ ଥାନ୍ତି । ହାକିମ ଟିକିଏ ବିରକ୍ତ ହୋଇଥାନ୍ତି । ସେ ମୋକଦ୍ଦମାଟି ଯେଉଁ ଦିନ ଶେଷ ହେଲା, ତହିଁ ପରଦିନ ପଟିଆ କିଲ୍ଲାର କିଏ ରାଜା ହେବ ଏ ଉପଲକ୍ଷେ ଆଉ ଗୋଟିଏ ମକଦ୍ଦମା ଆରମ୍ଭ ହେଲା; ଏକ ପକ୍ଷରେ ଥାନ୍ତି ମଧୁବାବୁ, ଅପର ପକ୍ଷରେ ଥାନ୍ତି କଟକର ଅନ୍ୟତମ ପ୍ରସିଦ୍ଧ ଓକିଲ ସ୍ୱର୍ଗୀୟ ବୈକୁଣ୍ଠନାଥ ଦତ୍ତ । ଉଭୟ ପକ୍ଷର ଓକିଲଙ୍କୁ ଦେଖିଲା ମାତ୍ରେ

ହାକିମ କହିଲେ "ମକଦ୍ଦମା ଆରମ୍ଭ କରାଯାଉ; ଏ ମୋକଦ୍ଦମାରେ ମୁଁ ପଞ୍ଜାବ ମେଲ୍ ଟ୍ରେନ ପରି କାମ କରିବି, ଆପଣ ଏହି କଥା ମନେ ରଖି ଚଳନ୍ତୁ ।" ( I shall proceed like the Punjab mail train in this case ) । ସଙ୍ଗେ ସଙ୍ଗେ ମଧୁବାବୁ କହିଲେ, "କିନ୍ତୁ ହଜୁର, ପଞ୍ଜାବ ମେଲଗାଡ଼ି ବଡ଼ ବଡ଼ ଷ୍ଟେସନ ଛାଡ଼ି ଯାଏ, ଅନେକ ସମୟରେ ବିପଦ ବି ଘଟେ ।" ( Your Honour, the Punjab mail leaves many important Stations unnoticed and very often meets with accidents ) । ତେବେ ପାଟନା ହାଇକୋର୍ଟର ଜଣେ ବଡ଼ଜଜ୍, ଯେ ତେବେ ପ୍ରଧାନ ବିଗ୍ଚାରପତି ହୋଇଥିଲେ ତାଙ୍କୁ ବାକ୍ୟବାଣରେ ସେହିପରି ଲଜ୍ଜା ଦେଇଥିଲେ । ମଧୁବାବୁ ହାଇକୋର୍ଟରେ ଗୋଟିଏ ଦ୍ୱିତୀୟ ଅପିଲ ଜବାବ ସୁଆଲ କରୁଥାନ୍ତି; ସେ ମୋକଦ୍ଦମାରେ ସେ କଲେକ୍ଟରଙ୍କ ପାଖରୁ ଆରମ୍ଭ କରି ଜଜ୍ ସାହେବ ପର୍ଯ୍ୟନ୍ତ ସବୁ ଅଦାଲତରେ ଜିତି ଥାନ୍ତି; ଦ୍ୱିତୀୟ ଅପିଲରେ ଅପିଲ କରିଥିବା ବ୍ୟକ୍ତି ତରଫରୁ ଜବାବ ସୁଆଲ ହୋଇଗଲା, ପରେ ମଧୁବାବୁ ରେସପେନ୍‌ଡେଣ୍ଟ ପକ୍ଷରୁ ଜବାବ ସୁଆଲ କଲା ବେଳେ ଜଜ୍ ହଠାତ୍ କହିଲେ "ମିଷ୍ଟର ଦାସ; ତୁମର ମକ୍କେଲ ଗୋଟିଏ ବୋକା, ତାର ଏ ମୋକଦ୍ଦମା କରିବା ଉଚିତ ହୋଇ ନାହିଁ ।" (Well Mr. Das, your client is a fool, he has been ill advised to fight this litigation) । ସଙ୍ଗେ ସଙ୍ଗେ ମଧୁବାବୁ ଉତ୍ତର ଦେଲେ "ହଜୁର ଏକା ମୋ ମକ୍କେଲ ବୋକା ନୁହେଁ, ଡେପୋଟି ବୋକା, କଲେକ୍ଟର ବୋକା, କମିଶନର ବୋକା, ସବ-ଜଜ ବୋକା, ଜଜ ବୋକା, ଓଡ଼ିଶା ରାଜ୍ୟଟା ବୋକାଙ୍କ ପାଇଁ ଗୋଟାଏ ସ୍ୱର୍ଗ; ଏଠାକୁ ଯେ ଆସନ୍ତି ସେ ବୋକା ହୋଇଯାଆନ୍ତି।" (My Lord, not only my client, the Dy. Collector was a fool the Collector was a fool, the Commissioner was a fool, the Sub-Judge was a fool, the District Judge was a fool, in fact Orissa is a paradise for fools; whoever comes to Orissa becomes a fool" ଏହି ଶେଷ କେତୋଟି କଥାରେ ହାଇକୋର୍ଟର ବିଚାରପତିଙ୍କୁ କିପରି ମଧୁର ସମ୍ଭାଷଣ କରାଗଲା ତାହା ପାଠକମାନେ ବୁଝି ପାରୁଥିବେ ।

ମଧୁବାବୁ ଓକିଲ ହିସାବରେ ସାକ୍ଷୀମାନଙ୍କୁ ଜେରା କରି ସତ୍ୟ ବାହାର କରିବାରେ କିପରି ଧୂରନ୍ଧର ଥିଲେ, ଲେଖକ ତାହାଁର ଗୋଟିଏ ଉଦାହରଣ ନରହତ୍ୟା ମୋକଦ୍ଦମାରେ ଡାକ୍ତର ସାହେବଙ୍କ ଜବାନ-ବନ୍ଦୀ ଓ ଜେରା ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି । ସେହିପରି ଆହୁରି କେତେ ଘଟଣାରେ ସେ ନିଜର ପ୍ରତ୍ୟୁତ୍ପନ୍ନମତି, ଅଦ୍ଭୁତ ମନୋ-ବିଜ୍ଞାନତତ୍ତ୍ୱର ପରିଚୟ ଦେଇଥିବେ ! ସାକ୍ଷୀ ଜେରା କରିବା ଗୋଟିଏ କୌଶଳ (Art), ସାକ୍ଷୀ ଯେତେ ଦମ୍ଭ କରି ମିଛ କହିବାକୁ ଆସିଥିବ, ଟାଣୁଆ ବୁଦ୍ଧିଆ ଓକିଲଙ୍କ ପାଖରେ ସେ ପରାସ୍ତ ହୋଇ, ଲୋକରେ ହାସ୍ୟାସ୍ପଦ ହୋଇ ନ ଗଲେ, ଓକିଲଙ୍କର ବାହାଦୁରୀ କେଉଁଠି ? ମଧୁସୂଦନ ଥରେ ଗୋଟିଏ ଦୋହରି ମୋକଦ୍ଦମାରେ ଜଜଙ୍କ ଅଦାଲତରେ ଜେରା କରୁଥାନ୍ତି, ମୋକଦ୍ଦମାଟିର ଘଟଣା ଥିଲା—ହିନ୍ଦୁ ଦଳେ ଓ ମୁସଲମାନ ଦଳେ ପିଟା ପିଟି ହୋଇ ମୁସଲମାନ ଜଣେ ମରି ଯାଇଥାଏ । ମଧୁବାବୁ ପ୍ରମାଣ କରିବାକୁ ଚେଷ୍ଟା କରୁଥାନ୍ତି ଯେ ମୁସଲମାନମାନେ ଆଗେ ହିନ୍ଦୁପକ୍ଷର ଲୋକଙ୍କୁ ମାରିବାରୁ ଆତ୍ମରକ୍ଷା ଉଦ୍ଦେଶ୍ୟରେ ହିନ୍ଦୁ ପକ୍ଷ ମାରିଛନ୍ତି । ଜଣେ ମୁସଲମାନ ସାକ୍ଷୀ ଆସିଲେ; ଜବାନବନ୍ଦୀ ଦେଲେ, ଜେରା ବେଳେ ମଧୁବାବୁ ତାଙ୍କୁ ନବାବ ଜାତି, ଅମିର ଜାତି, ବାଦସାହଙ୍କ ବଂଶଧର ଇତ୍ୟାଦି ନାନା ପ୍ରକାର କଥା କହି ପ୍ରଥମ କେତେକ ମିନିଟରେ ଏପରି ଠେକି ଦେଲେ, ସେତେବେଳକୁ ସେ ମୋକଦ୍ଦମା କଥା ଭୁଲି ଯାଇ ବୋଧହୁଏ ନିଜକୁ ସ୍ୱୟଂ ନବାବ ବା ବାଦ୍‌ସାହ ବୋଲି ଭାବୁଥିଲେ, ସେତିକି ବେଳେ ମଧୁବାବୁ କହିଲେ "ଏ କାଫେର ହିନ୍ଦୁ ଆପଣଙ୍କୁ ସାଲା ବୋଲି ଗାଳିଦେଲା ଆପଣ ବରଦାସ୍ତ କଲେ କିପରି ?" ସାକ୍ଷୀ ସଙ୍ଗେ ସଙ୍ଗେ କହିଲା "ବରଦାସ୍ତ କରନ୍ତି ଖାହିଁକି, ମୁଁ ସଙ୍ଗେ ସଙ୍ଗେ ତାକୁ ଲାଠିରେ ମାଡ଼ ଲଗାଇଲି ।" ମଧୁବାବୁ ଯେଉଁ ଉତ୍ତର ପାଇବାକୁ ଚାହୁଁଥିଲେ; କୌଶଳରେ ସେତିକି ସାକ୍ଷୀ ମୁହଁରୁ ପାଇଗଲେ ।

ଆଉଥରେ ଗୋଟିଏ ବୁଢ଼ିଆ ସାକ୍ଷ୍ୟ ଦେବାକୁ ଆସିଥାଏ, ସେ ଜଣେ ପୁରୁଣା ମଫସଲ ମାମଲତକାର । ଅନେକ ମୋକଦ୍ଦମାରେ ମିଛ ସାକ୍ଷୀ ଦେଇ ତାର ମନରେ ଭାରି ଗର୍ବ ଯେ ଯେତେ ବଡ଼ ଓକିଲ ଜେରା କଲେ ମଧ୍ୟ ସେ ଠକିବ ନାହିଁ । ପ୍ରଥମେ ପ୍ରଥମେ

ଗରଖାତର ଭାବରେ ଭାର ମୁଖର ହୋଇ ଫୋପାଡ଼ିଲା ପରି କଥା କହୁଥାଏ; ମଧୁବାବୁ ତାକୁ ଟିକିଏ କଅଁଳେଇ ସଅଁଳେଇ କହିଲେ "ଆରେ ଭାଇ, ତୁମେ ଜାତରେ ଗୁଡ଼ିଆ; ମିଠାଇ, ରସଗୋଲା, ସନ୍ଦେଶ କରି ଲୋକଙ୍କୁ ଖୁଆଇ ତାଙ୍କ ପାଟି ମିଠା କରୁଛ, ସେମାନେ ତୁମ୍ଭଠାରୁ ମିଠା ଖାଇ ତାଙ୍କ ବଚନ ମଧୁର ହେଉଛି; ତୁମେ କାହିଁକି ଏପରି କଡ଼ା କଥା କହୁଛ ?" ଏତକି କଥାରେ ସେ ଏପରି ମନ୍ତ୍ରମୁଗ୍ଧ ହୋଇଗଲା ଯେ ଆଉ ପଦେ ହେଲେ କଡ଼ା କଥା କହିଲା ନାହିଁ । ଓକିଲଙ୍କର ଯାହା ସବୁ ଜାଣିବାର ଥିଲା ସବୁ ତା'ଠାରୁ ପାଇଗଲେ ।

ତାଙ୍କର ଜେରା କରିବାର ପ୍ରଣାଳୀ ବିଷୟରେ ପୁରୁଣା ନଥିମାନଙ୍କରୁ ସାକ୍ଷୀ ଜେରାଗୁଡ଼ିକ ସଂଗ୍ରହ କରି ପ୍ରକାଶ କଲେ ଯେ କୌଣସି ଆର୍ଟ ଅଫ୍ କ୍ରସ ଏକ୍‌ଜାମିନେସନ (Art of Cross Examination) ପୁସ୍ତକରେ ସେଗୁଡ଼ିକ ଉତ୍କୃଷ୍ଟ ଜେରାର ପ୍ରତୀକରୂପେ ବ୍ୟବହୃତ ହୋଇ ପାରନ୍ତା ।

ମୋକଦ୍ଦମା ଜବାବ ସୁଆଲ କରିବାରେ ଅନ୍ୟ ଓକିଲଙ୍କଠାରୁ ତାଙ୍କର ପ୍ରଣାଳୀ ସମ୍ପୂର୍ଣ୍ଣ ପୃଥକ ଥିଲା । ତାଙ୍କର ସହକାରୀମାନେ ଯେତେ ନୋଟ୍ ଲେଖିଦଅନ୍ତୁ, ଯେତେ ଆଇନ ନଜିର ସଂଗ୍ରହ କରିଥାନ୍ତୁ, ଯେତେ ନଥି ଦେଖି ତାଙ୍କୁ ଜଣାନ୍ତୁ, ସେ ନିଜେ ତନ୍ନ ତନ୍ନ କରି ସବୁ ନ ଦେଖିଲେ କେବେହେଁ ଜବାବ ସୁଆଲ କରି ନ ଥିଲେ । ଆଜିକାଲିକାର ଓକିଲଙ୍କ ଧରଣ ହେଉଛି ସେମାନେ ଡାଇଜେଷ୍ଟ (Digest) ରୁ ନଜିର ସଂଗ୍ରହ କରି ଦର୍ଶାଇ ଦେଉଛନ୍ତି, କିନ୍ତୁ ମଧୁବାବୁ ମୋକଦ୍ଦମାରେ ପ୍ରଯୁଜ୍ୟ ଆଇନର ଦଫା ବା ମୂଳ ସଂସ୍କୃତ ଶ୍ଳୋକ ଆଦି ପଢ଼ି ନିଜର ଅଭିମତ ପ୍ରକାଶ କରୁଥିଲେ । ସେ କହୁଥିଲେ "ମୁଁ ଯେଉଁ ମତ ପୋଷଣ କରୁଛି, ତାହା ଯଦି ଠିକ ହୁଏ, ତେବେ ଏହି ମତର ପୋଷକତାରେ ଉଚ୍ଚ ଅଦାଲତମାନଙ୍କର ନଜିର ନିଶ୍ଚୟ ଥିବ, ଖୋଜିଲେ ପାଇବ, ଯଦି ନ ଥାଏ, ଏହି ମୋକଦ୍ଦମାରେ ନଜିର ତିଆରି ହେବ ।" ସେ ଜଣେ ମୌଳିକ ଚିନ୍ତାଶୀଳ ଓକିଲ ଥିଲେ ।

ଉକିଲମାନେ ନିଜ ନିଜର ବ୍ୟବସାୟରେ କିପରି ସାଧୁତା ଅବଲମ୍ବନ କରିବା ଉଚିତ, କିପରି ନିର୍ମମଭାବରେ ନିଜ ନିଜର କର୍ତ୍ତବ୍ୟ ପାଳନ କରିବା ଉଚିତ, ଏ ସମ୍ବନ୍ଧେ ମଧୁସୂଦନ ଅନେକ ସମୟରେ ଅନେକ କଥା କହୁଥିଲେ; କେବଳ ଯେ ବାକ୍ୟରେ କହୁଥିଲେ, ତାହା ନୁହେଁ, ସେହି କଥା ଜୀବନରେ ପାଳନ କରୁଥିଲେ । ହାକିମମାନେ ନ୍ୟାୟବିଚାର ବେଳେ ତଳେ ହେଲେ ନିଜର ଆଦର୍ଶରୁ ଖସି ନ ପଡ଼ନ୍ତୁ, ଏହା ତାଙ୍କର ହାକିମମାନଙ୍କ ପ୍ରତି ଉପଦେଶ ଥିଲା । କଟକରେ ଜଣେ ସବ୍‌ଜଜ୍ ଥିଲେ ତାଙ୍କ ନାମ ଥିଲା ବଳରାମ ମଲ୍ଲିକ । ସେ ଜଣେ ଉଚ୍ଚ ଧରଣର ନ୍ୟାୟପତି ଥିଲେ । ସେ ଗୋଟିଏ ମୋକଦ୍ଦମାର ରାୟରେ କୌଣସି ସାକ୍ଷିଙ୍କ ନାମ ଲେଖନ୍ତି ନାହିଁ । କେବଳ ପ୍ରଥମ ପକ୍ଷର ବା ବାଦୀ ପକ୍ଷର ବା ଦ୍ୱିତୀୟ ପକ୍ଷର ବା ପ୍ରତିବାଦୀ ପକ୍ଷର ସାକ୍ଷୀଙ୍କର ନମ୍ବର ଉଲ୍ଲେଖ କରନ୍ତି । ଦିନେ ଗୋଟିଏ ମକଦ୍ଦମାରେ ଜଣେ ସାକ୍ଷୀ ଜବାନବନ୍ଦୀ ଦେଇଥିଲେ; ସେ ଓଡ଼ିଶାର ଜଣେ ବିଶିଷ୍ଟ ଧନୀ, ମାନ୍ୟ ଗଣ୍ୟ ବ୍ୟକ୍ତି ଓ ସେ ସମୟରେ ବଙ୍ଗ ଦେଶର ଲାଟସଭାରେ ମଧ୍ୟ ସ୍ଥାନ ପାଇଥିଲେ ଏବଂ ସରକାରରୁ ଉଚ୍ଚ ଉପାଧି ଲାଭ କରିଥିଲେ, ସେହି ସବ୍‌ଜଜ ସେହି ଭଦ୍ରବ୍ୟକ୍ତିଙ୍କ ସାକ୍ଷକୁ ଅବିଶ୍ୱାସ କରି ରାୟ ଲେଖିଥିଲେ । କାଠଯୋଡ଼ି ନଦୀ କୂଳରେ ଦିନେ ସନ୍ଧ୍ୟାବେଳେ ବୁଲୁ ବୁଲୁ ମଧୁବାବୁଙ୍କ ସହିତ ତାଙ୍କର ଭେଟ ହେଲା । ମଧୁବାବୁ କହିଲେ "ଆପଣ ଏତେ ବଡ଼ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ଅବିଶ୍ୱାସ କଲେ ?" ସବ୍‌ଜଜ କହିଲେ "ଆପଣ ରାୟ ପଢ଼ିଛନ୍ତି; ସେଥିରେ ତାଙ୍କ ନାମ ଲେଖା ଅଛି ନା ଅମୁକ ପକ୍ଷର ଏତେ ନମ୍ବର ସାକ୍ଷୀ ବୋଲି ଲେଖା ଅଛି ? ଆପଣ ରାମଲୀଳା ନାଟ ଦେଖିଥିବେ । ସେଥିରେ କେହି ସୀତା ହୋଇ ଆସେ, କେହି ରାମ ବେଶରେ ଆସେ ଇତ୍ୟାଦି । ଦର୍ଶକମାନେ କଣ ଅସଲ ଲୋକଟାକୁ ଜାଣନ୍ତି ? ଦର୍ଶକମାନେ କହନ୍ତି "ରାମ ତାର ଅଭିନୟ ଭଲ କଲା, ସୀତା ଭଲ ଅଭିନୟ କଲା ନାହିଁ । ସେହିପରି କଚେରିରେ ସାକ୍ଷୀ ଅଦାଲତ ଗୋଟିଏ ରଙ୍ଗମଞ୍ଚ । ସେଠିକି ଭିନ୍ନ ଭିନ୍ନ ଲୋକେ କିଏ ଏକ ନମ୍ବର, କିଏ ଦୁଇ ନମ୍ବର ସାକ୍ଷୀ ହୋଇ ଆସନ୍ତି । ମୁଁ ଏହି ଭାବରେ ସେମାନଙ୍କୁ ଦେଖେ ଓ ତାଙ୍କ ସାକ୍ଷର ବିଚାର କରେ ।"

ମଧୁବାବୁ ସେ ସବ୍‌ଜଜଙ୍କ ଆଦର୍ଶକୁ ଖୁବ୍ ପ୍ରଶଂସା କରୁଥିଲେ। ଅନେକ ସମୟରେ ତାଙ୍କ କଥା ଉଲ୍ଲେଖ କରୁଥିଲେ।

ମଧୁବାବୁଙ୍କ ମୁହଁରୁ ହାକିମମାନଙ୍କ ଆଦର୍ଶ ସମ୍ବନ୍ଧେ ଆଉ ଗୋଟିଏ ଗଳ୍ପ ଶୁଣାଯାଉଥିଲା। ଜଣେ ଜଜ ଥିଲେ, ତାଙ୍କର ନ୍ୟାୟ ବିଚାର ସମ୍ବନ୍ଧେ କାହାର କିଛି ସନ୍ଦେହ ନ ଥିଲା। ତାଙ୍କ ପୁଅ ଗୋଟିଏ ନରହତ୍ୟା ଅପରାଧରେ ଆସାମୀ ହୋଇ ଆସିଲା। ମକଦ୍ଦମାର ବିଚାର ପାଇଁ ତାଙ୍କ ପାଖକୁ ନଥି ଆସିଲା; ସେ ରଜାଙ୍କୁ ଲେଖିଲେ "ମୋର ପୁଅ ଆସାମୀ, ମୁଁ ମକଦ୍ଦମା ବିଚାର କରିବା ଉଚିତ ହେବ ନାହିଁ।" ରଜା ଲେଖିଲେ "ତୁମର ନିରପେକ୍ଷ ନ୍ୟାୟ ବିଚାରରେ ମୋର ଓ ମୋର ରାଜ୍ୟର ଲୋକଙ୍କର ଏତେ ବିଶ୍ୱାସ ଯେ ତୁମେ ଏ ମୋକଦ୍ଦମା ବିଚାରକଲେ କେହି ଅନ୍ୟଥା ଭାବିବେ ନାହିଁ।" ଜଜ୍ ମୋକଦ୍ଦମା ବିଚାର କଲାବେଳେ ତାଙ୍କର ବିଚାର ଗୃହର ଗୋଟିଏ ଝରକା ବାଟେ ପୁଅ ମୁହଁରେ ଖରା ପଡ଼ିଲା; ଏହାପରେ ଅନ୍ୟ ଆସାମୀଙ୍କ ମୁହଁରେ ମଧ୍ୟ ପଡ଼େ। ପୁଅ ମୁହଁରେ ଖରା ପଡ଼ିବାରୁ ସେ ଟିକିଏ ପ୍ରକୃତିଗତ ସ୍ନେହ ହେତୁ ତାଙ୍କୁ ଅଖି ଠାରି ଇଙ୍ଗିତରେ ଘୁଞ୍ଚି ଠିଆ ହେବାକୁ ଜଣାଇ ଦେଲେ। କିନ୍ତୁ ଅନ୍ୟ ଲୋକଙ୍କ ବେଳେ ଏପରି କରନ୍ତି ନାହିଁ। ମୋକଦ୍ଦମା ବିଚାରରେ ପୁଅ ଦୋଷୀ ବୋଲି ସାବ୍ୟସ୍ତ ହେଲା। ଫାଶିଦଣ୍ଡ ହେଲା। କିନ୍ତୁ ଏହି ବିଚାରପତିଙ୍କ ଅଖିରେ ପରେ ସାପ କାମୁଡ଼ିଲା; ସେ ମଲେ। ଏତିକରେ ତାଙ୍କର ବିଚାରର ତ୍ରୁଟିପାଇଁ ସେ ଭଗବାନଙ୍କ ଦ୍ୱାରରେ ଦଣ୍ଡିତ ହେଲେ।

ଏହି ଗଳ୍ପଟି ବିଚାରପତିଙ୍କ ଆଦର୍ଶ ବୋଲି ମଧୁବାବୁ ବରାବର କହୁଥିଲେ। ପାଟନା ହାଇକୋର୍ଟର ଜଣେ ପ୍ରଧାନ ବିଚାରପତି କଟକରେ ସରକାରି କୋଠକୁ ଆସିଥାନ୍ତି। ସେଠାର ବଡ଼ଦିନ ଛୁଟିରେ ସେ କଟକରେ ରହିଲେ। ଓଡ଼ିଶାର "ରାଜା" ଉପାଧିଧାରୀ ଜଣେ ଜମିଦାର ତାଙ୍କୁ ତାଙ୍କ ଜମିଦାରୀକୁ ବଡ଼ଦିନରେ ନିମନ୍ତ୍ରଣ କଲେ; ସେ ଗଲେ; ରାଜାଙ୍କ ଘରେ ପାଞ୍ଚ ଛ ଦିନ ରହିଲେ କୁମ୍ଭୀର ଶୀକାର କଲେ; ଜାନୁୟାରୀ ୩୧ ତାରିଖରେ କଟକକୁ ଫେରି ଆସିଲେ। ଜାନୁୟାରୀ ପହିଲା ଦିନ ମଧୁବାବୁ କଟକରେ ସରକାରୀ

କୋଠିରେ ହାଜର; କହିଲେ "ମୁଁ ଆପଣଙ୍କୁ ଆଜି ନବ ବର୍ଷର ଅଭିନନ୍ଦନ ଜଣାଇବାକୁ ଆସିଛି; କିନ୍ତୁ ସେ ଅଭିନନ୍ଦନଟା ଟିକିଏ ତିକ୍ତ ହୋଇ ପାରେ; ସେଥିପାଇଁ ଆପଣ କ୍ଷମା କରିବେ । ପାଟନା ହାଇକୋର୍ଟର ପ୍ରଧାନ ବିଚାରପତି ଅମୁକ ରାଜାଙ୍କର ମୋକଦ୍ଦମା ବିଚାର କରିବାକୁ ନିଜକୁ ନିଜେ ଅଯୋଗ୍ୟ କରି ପକାଇ ଅଛନ୍ତି । ସେ ରାଜାଙ୍କର ମୁଁ ବନ୍ଧା ଓକିଲ । ତାଙ୍କଠାରୁ ବର୍ଷରେ ହଜାର ହଜାର ଟଙ୍କା ପାଏ; କିନ୍ତୁ ମୁଁ ନିର୍ମଳ ଅନ୍ତଃକରଣରେ ତାଙ୍କ ମୋକଦ୍ଦମା ଆପଣଙ୍କ ପାଖରେ ପଡ଼ିଲେ ଜବାବ ସୁଆଲ କରି ପାରିବି ନାହିଁ । କାହିଁକି ଆପଣ ଜଣେ ମକଦ୍ଦମା କରୁଥିବା ବଡ଼ ଲୋକର ଆତିଥ୍ୟ ଗ୍ରହଣ କଲେ ?" ବିଚାରପତି ମହୋଦୟ ଚିତ୍ରାର୍ପିତ ପରି ବସି ସବୁ ଶୁଣିଲେ, କିଛି ଉତ୍ତର ଦେଇ ପାରିଲେ ନାହିଁ, ଯାଚି ଖଣି ବାଜିଗଲା ।*

ପୁଣି ଏହି ସମ୍ପର୍କରେ ତାଙ୍କର ଜଣେ ପୂର୍ବବର୍ତ୍ତୀ ପ୍ରଧାନ ବିଚାରପତି ସାର୍ ଉସନ୍ ମିଲରଙ୍କ ଆଦର୍ଶ ତାଙ୍କୁ ସୂଚାଇ ଦେଇ କହିଲେ "ଆପଣ ଜାଣନ୍ତି, ଆପଣଙ୍କ ପୂର୍ବେ ଉସନ୍ ମିଲର ଯେ ବିଚାରପତି ଥିଲେ, ସେ ଲାଟ ସାହେବଙ୍କ ନିମନ୍ତ୍ରଣରେ ସୁଦ୍ଧା ଯାଉ ନ ଥିଲେ ଓ ଅନ୍ୟ ସଙ୍ଗୀ ଜଜ୍‌ମାନେ ଯିବେ ନାହିଁ ବୋଲି ସେମାନଙ୍କୁ ମନା କରୁଥିଲେ; ସେହିପରି ନୀତି କଲିକତା ହାଇକୋର୍ଟରେ ମଧ୍ୟ ବରାବର ପ୍ରଚଳିତ ଥିଲା । ସେହି ବିଚାରପତିମାନେ କହୁଥିଲେ, "ଲାଟ ସାହେବ ହେଲେ ସରକାରଙ୍କର ଏକ୍‌ଜିକ୍ୟୁଟିଭ ବିଭାଗର ମୁଖ୍ୟ ବ୍ୟକ୍ତି; ଏକ୍‌ଜିକ୍ୟୁଟିଭ୍ ଓ

---

*"I have come to give you my greetings in the New-year's day, though it may not be very pleasant; I hope to be excused for that. The Chief Justice of the Patna High Court has made himself incompetent to try cases in which—(so and so) is a party. How could you accept hospitality of such a person knowing ~~full well~~ that he has number of appeals pending in your Court ? I am his retained lawyer and get several thousands for my fees, but I can not argue his cases before you with clear conscience,"

ଜୁଡ଼ିସିଆରି (ଶାସନ ବିଭାଗ ଓ ବିଚାର ବିଭାଗ) ସମ୍ପୂର୍ଣ୍ଣ ପୃଥକ୍ ରହିବା ପାଇଁ ଲୋକଙ୍କର ଦାବୀ ଏହା ମୂଳରେ ଅଛି । ବିଚାର ବିଭାଗର କର୍ତ୍ତାମାନେ ଯେପରି ଶାସନବିଭାଗଦ୍ୱାରା କୌଣସି ପ୍ରକାରେ ପ୍ରଭାବିତ ନ ହୁଅନ୍ତି । ଲାଟ ସାହେବଙ୍କ କୋଠିକି ଯେଉଁମାନେ ନିମନ୍ତ୍ରିତ ହୋଇ ଆସୁଥିବେ, ସେମାନଙ୍କ ମଧ୍ୟରୁ ଅନେକ ବଡ଼ ଲୋକଙ୍କର ମକଦ୍ଦମା ହାଇକୋର୍ଟରେ ଥିବ; ସେମାନଙ୍କ ସହିତ ଜଣା ଶୁଣା, ଆଲାପ ପରିଚୟ କଲେ ବିଚାର ବେଳେ କାଳେ ମନରେ କୌଣସି ଭାବ ଆସି ପାରେ, ତେଣୁ ଦୂରରେ ରହିବା ଭଲ ।" ମଧୁବାବୁ ସେହି ପ୍ରଧାନ ବିଚାରପତିଙ୍କୁ କହିଲେ "ଆପଣ ଏତେ ବଡ଼ ଆଦର୍ଶକୁ ନେଇ ସମୁଦ୍ର ନିକଟବର୍ତ୍ତୀ ନଈ ମୁହାଣରେ ବୁଡ଼ାଇ ଦେଇ ତା ବଦଳରେ କେତେଟା କୁମ୍ଭୀର ଚମଡ଼ାରେ ସନ୍ତୁଷ୍ଟ ହେଲେ ?"

ଏହି ଉପଦେଶ ଗୁଡ଼ିକ ଆଧୁନିକ ପ୍ରଗତିଶୀଳ ଯୁଗର ଜଜମାନଙ୍କର ସ୍ମରଣ ରଖିବା ଉଚିତ । ଜଜମାନେ ଆଜିକାଲି ଲାଟ ସାହେବ କୋଠିଠାରୁ ଆରମ୍ଭ କରି, ମନ୍ତ୍ରୀମାନଙ୍କ ପାଖକୁ, ଏପରିକି ମୁଖିଆ ମୁଖିଆ ଏସେମ୍ବଲି ମେମ୍ବରମାନଙ୍କ ଘରକୁ ସୁଦ୍ଧା ଧାଉଡ଼ି ଦଅନ୍ତି, ନାନା ପ୍ରକାର କମିଟିରେ ମେମ୍ବର ହୁଅନ୍ତି, ଦେଶସେବାର ଦୋହାଇ ଦେଇ ନାନା ଭାବରେ ଲୋକଙ୍କ ସମ୍ପର୍କରେ ଆସନ୍ତି, ତାଙ୍କ କାନରେ ନାନା କଥା ପଡ଼େ; ବିଚାର ଆସନରେ ବସିଲା ବେଳେ ସେହି ସବୁ କଥା ମଧ୍ୟ ତାଙ୍କ ମନକୁ ଆନ୍ଦୋଳିତ କରେ, ବେଳେ ବେଳେ ସେଗୁଡ଼ିକ ଫୁଟି ପଦାରେ ପଡ଼ିଯାଏ । ଯଥାର୍ଥରେ ବିଚାର ବିଭାଗର ମହାନ୍ ଆଦର୍ଶରୁ ସେମାନେ ଦୂରକୁ ଦୂରକୁ ଚାଲିଯାଉଥିବାରୁ ଲୋକେ ତାଙ୍କର ବିଚାରର ବିଶୁଦ୍ଧତାରେ ଆସ୍ଥାବାନ୍ ହୋଇ ପାରୁ ନାହାନ୍ତି । ବିଚାରର ଆଦର୍ଶ ସମ୍ବନ୍ଧେ ଜଣେ ଜଜ ଯଥାର୍ଥରେ କହିଥିଲେ "କେବଳ ଯେ ନ୍ୟାୟ ବିଚାର କରିବାକୁ ହେବ ତାହା ନୁହେଁ, ନ୍ୟାୟ ବିଚାର କରାଯାଉଛି ବୋଲି ଲୋକଙ୍କ ମନରେ ଯେପରି ଧାରଣା ଜନ୍ମେ, ସେଥି ପାଇଁ ମଧ୍ୟ ବିଚାରପତିଙ୍କୁ ଜାଗ୍ରତ ରହିବାକୁ ହେବ ।"*

*Not only justice shall be done, but there must be also a show that justice is being done, to inspire confidence in the mind of the litigant."

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ କିପରି ଶାସନ ପରିଚାଳିତ ହେବ, ସେଥି ପାଇଁ ଯେଉଁ କମିଟି ୧୯୩୩ ମସିହାରେ (Orissa Administrative Committee) ଗଠିତ ହୋଇଥିଲା, ସେ ତହିଁର ଜଣେ ସଭ୍ୟ ଥିଲେ । ଓଡ଼ିଶାପାଇଁ ଗୋଟିଏ ସ୍ୱତନ୍ତ୍ର ହାଇକୋର୍ଟ ଗଠିତ ହେଉ ଏହା ମଧୁସୂଦନଙ୍କର ମତ ଥିଲା । ବଙ୍ଗ ପ୍ରଦେଶରୁ ଓଡ଼ିଶା ସ୍ୱତନ୍ତ୍ର ହୋଇ ବିହାର ସଙ୍ଗେ ୧୯୧୧ ମସିହାରେ ମିଶିଲା । ପରେ ଭାରତ ସମ୍ରାଟଙ୍କ ଆଦେଶ (Royal Charter) ଅନୁସାରେ ଓଡ଼ିଶାକୁ ପାଟଣା ହାଇକୋର୍ଟର ବିଚାରପତିମାନେ ବର୍ଷରେ କେତେକ ଦିନ ଆସିବେ ଓ ମୋକଦ୍ଦମାମାନ ଫଇସଲ କରିବେ ଓ ଓଡ଼ିଶାର କେତେକ ମକଦ୍ଦମା ପାଟଣାକୁ ଯାଇ ସେଠାରେ ଶୁଣାଣି ହେବ, ଏହି ବ୍ୟବସ୍ଥା ହୋଇଥିଲା; ଏହି ବିଧାନରେ ବିଚାରକାର୍ଯ୍ୟ ଚାଲିଲା ୧୯୧୬ରୁ ୧୯୪୮ ମସିହା ଜୁଲାଇ ମାସ ଯାଏ । ତହିଁ ଉତ୍ତାରୁ ଓଡ଼ିଶାରେ ସ୍ୱତନ୍ତ୍ର ହାଇକୋର୍ଟ ବସିଲା । ଓଡ଼ିଶା ଏଡ଼ମିନିଷ୍ଟ୍ରେଟିଭ କମିଟିରେ ନିଉସାମ ନାମରେ ଜଣେ ସାହେବ ଥିଲେ; ସେ ମାନ୍ଦ୍ରାଜରୁ ଆସିଥିଲେ; ସେ ଏକ ଅଦ୍ଭୁତ ଯୋଜନା କରିଥିଲେ; ତାଙ୍କ ଯୋଜନାକୁ ଲୋକେ କହୁଥିଲେ "ନିଉସାମ୍ ସ୍କିମ୍;" କେହି କେହି ପରିହାସ ଛଳରେ କହୁଥିଲେ "ନୁଇସାନ୍ସ ସ୍କିମ (Nuisance Scheme) । ଏହି ଯୋଜନା ଅନୁସାରେ ତିନୋଟି ଜିଲାର ଜଜଙ୍କୁ ନେଇ ଗୋଟିଏ ବିଚାରବିଭାଗ ଗଠିତ ହୋଇଥାନ୍ତା; ସେହିମାନେ ହୁଅନ୍ତେ ହାଇକୋର୍ଟ; ଯେତେବେଳେ 'ଗ' ଜଜଙ୍କ ସ୍ୱୟଂ ବିଚାର ହୁଅନ୍ତା, ସେତେବେଳେ 'କ' ଓ 'ଖ' ଜଜ ବସି ତାହାର ବିଚାର କରନ୍ତେ, ଯେତେବେଳେ 'କ' ଜଜଙ୍କ ସ୍ୱୟଂ ବିରୁଦ୍ଧରେ ଅପିଲ ଶୁଣା ହୁଅନ୍ତା, ସେତେବେଳେ ବସନ୍ତେ 'ଖ' ଓ 'ଗ', ଯେତେବେଳେ 'ଖ' ଙ୍କ ସ୍ୱୟଂ ବିରୁଦ୍ଧେ ଅପିଲ ଶୁଣା ହୁଅନ୍ତା, ସେତେବେଳେ ବସନ୍ତେ, 'କ' ଓ 'ଗ' । ପରସ୍ପର ପରସ୍ପରଙ୍କୁ ଠେକା ଠେକି କରନ୍ତେ । ଏଥିରେ ନ୍ୟାୟ ବିଚାର ଲୋକେ ପାଇନ୍ତେ ନାହିଁ; ଏ ବିଷୟରେ ମଧୁବାବୁ ଅଗ୍ରଣୀ ହୋଇ ପ୍ରତିବାଦ କରୁଥାନ୍ତି । କଟକରେ ସାରକିଟ୍ କୋର୍ଟରେ ସେତେବେଳେ କଟକର ଜିଲା ଜଜ ରେଜିଷ୍ଟ୍ରାର ସ୍ୱରୂପ ମଧ୍ୟ କାମ କରୁଥାନ୍ତି । ତାଙ୍କ ନିଜ ସ୍ୱୟଂ ବିରୁଦ୍ଧରେ ମଧ୍ୟ ତାଙ୍କୁ ଅପିଲ ଗ୍ରହଣ (admit) କରିବାକୁ ପଡୁଥିଲା । ଏଥିରେ

ସୁଦ୍ଧା ବିଚାରରେ ବ୍ୟାଘାତ ଘଟୁଥିଲା । ସେତେବେଳେ ମେଡେନ୍ (Mr. F. F. Madan) ନାମରେ ଜଣେ ଜଜ ଥିଲେ, ସେହି ଥିଲେ ରେଜିଷ୍ଟ୍ରାର; ସେ ଆସିଲେ କମିଟି ଆଗରେ ସାକ୍ଷ୍ୟ ଦେଇ ନିଜର ଅଭିମତ ଜଣାଇବାକୁ; ମଧୁବାବୁ ଜେରା କରି ତାଙ୍କୁ ପଚାରିଲେ "ଯେତେବେଳେ ରେଜିଷ୍ଟ୍ରାର ଭାବରେ ଆପଣ ନିଜର ରାୟ ବିରୁଦ୍ଧରେ ଅପିଲ୍ ଗ୍ରହଣ କରନ୍ତି, ସେତେବେଳେ ଆପଣଙ୍କ ମନଟା କେମିତି ଫୁଲି ଉଠେ ? ଆପଣଙ୍କ ମନରେ ବିଚାରର-ଦୁର୍ବଳତା ଆସେ ନାହିଁ ?"† ଏହି ଜୁଡ଼ିସିଆଲ୍ 'ନରଭସ୍‌ନେସ୍' କଥାଟି ଆଜି କାଲି ସୁଦ୍ଧା କଟକର ଓକିଲ ମହଲରେ ପ୍ରବଚନ ରୂପେ କୁହାଯାଇଥାଏ । ଏହି କଥାଟି ସହିତ ମଧୁସୂଦନଙ୍କ ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ବାକ୍ୟବାଣର ସ୍ମୃତି ଜଡ଼ିତ । ଦିନେ ଏଥିପୂର୍ବେ ଥରେ ସେହି ଜଜଙ୍କ ରାୟ ବିରୁଦ୍ଧରେ ତାଙ୍କର ପାଖରେ ରେଜିଷ୍ଟ୍ରାର ଭାବରେ ମଧୁବାବୁ ଦ୍ୱିତୀୟ ଅପିଲ ଜବାବ ସୁଆଲ କରୁଥିଲେ ଅପିଲ ଗ୍ରହଣ ହେବା ଲାଗି; ଜଜ ତାହା ଗ୍ରହଣ କଲେ ନାହିଁ । ମାତ୍ର ମଧୁବାବୁ ମନ୍ତବ୍ୟ ପ୍ରକାଶ କରି ମିସଲରୁ ଚାଲିଗଲେ "Your Honour is suffering from judicial nervousness"

ସହକାରୀ ଓକିଲଙ୍କୁ ପଛକୁ ପକାଇ ଦେଇ, ସେ ଟଙ୍କା ପାଇଲା କି ନାହିଁ ଏକଥା ନ ବୁଝି ଅନେକ ବଡ଼ ବଡ଼ ଓକିଲ ନିଜର ପ୍ରାପ୍ୟଟା ପାଇ ଗଲେ ଖୁସି ହୁଅନ୍ତି । ମଧୁବାବୁଙ୍କ ନୀତି ଥିଲା ଠିକ ବିପରୀତ । ସେ ଜାଣୁଥିଲେ ମହକିଲ ତାଙ୍କୁ ନିଶ୍ଚୟ ଟଙ୍କା ଦେବ, କିନ୍ତୁ ସହକାରୀଙ୍କୁ ଠକି ଦେବ । ମିସଲକୁ ଯିବା ଆଗରୁ ପଚାରନ୍ତି "ଟଙ୍କା ପାଇଛ ?" ଯଦି ନାହିଁ ବୋଲି ଶୁଣନ୍ତି ତେବେ ମହକିଲକୁ ବାଧ୍ୟ କରି ଟଙ୍କା ଦିଆଇ ଦିଅନ୍ତି, ନଚେତ୍ ନିଜ ପକେଟରୁ ଟଙ୍କା ମହକିଲ ଆଗରେ ଦେଇ କହନ୍ତି, "ସନ୍ଧ୍ୟାବେଳକୁ ମୋ ଟଙ୍କା ଯାହା ତୁମ୍ଭପାଇଁ ଧାରସ୍ୱରୂପ ଦେଲି ଦେଇ ଆସିବ ।" ଓକିଲମାନଙ୍କ ବିରୁଦ୍ଧରେ ଗୋଟିଏ

---

† As Registrar don't you feel stultified when appeals against your own judgments are placed before you for admission ? Don't you suffer from judicial nervousness at the time ?

ସାଧାରଣ ଅଭିଯୋଗ ଅଛି—ସେମାନେ ମିଛ ମୋକଦ୍ଦମା କରିବାକୁ ପ୍ରଶ୍ରୟ ଦିଅନ୍ତି । ଏଥିର ଉତ୍ତରରେ କୁହାଯାଇ ପାରେ ହିତୋପଦେଶରେ ଥିବା ଗଳ୍ପ—ଜାତି ମାନଙ୍କେ କୌଣସି ବିଷୟରେ ଦୋଷୀ ହୋଇ ନ ପାରେ, ବ୍ୟବହାର ଦ୍ୱାରା ବ୍ୟକ୍ତିବିଶେଷ ଭଲ କି ମନ୍ଦ ଏହା ଜଣାପଡ଼େ । ଏପରି ଓକିଲ ଅଛନ୍ତି ଯେଉଁମାନେ ନ୍ୟାୟ ବାଟରେ ରହି, ସତ୍ ଉପଦେଶ ଦେଇ ମକଦ୍ଦମା ଲଢ଼ନ୍ତି । ମୋକଦ୍ଦମା ମିଛ, ଜାଲ ଇତ୍ୟାଦି ହୋଇଥିବାର ଜାଣି ପାରିଲେ ମହକିଲ ସହିତ ସମ୍ପର୍କ ତୁଟାଇ ଦିଅନ୍ତି । ମଧୁବାବୁଙ୍କ ଓକିଲାତି ଏହିପରି ଉଚ୍ଚ ଧରଣର ଥିଲା । ତାଙ୍କ ଘରେ ସାକ୍ଷୀ ତାଲିମ ହେଉ ନ ଥିଲେ କିମ୍ବା ସାକ୍ଷୀକୁ ମିଛ ଶିଖାଇବାକୁ ବା ଜାଲ କରିବାକୁ ସେ କାହାରିକୁ କହୁ ନ ଥିଲେ ।

ମଧୁସୂଦନ ଆଜକୁ ତିରିଶ ବର୍ଷ ତଳେ ବ୍ରିଟିଶ ସରକାର ଅମଳରେ ମନ୍ତ୍ରୀରୂପେ ଯେଉଁ ସ୍ୱାଧୀନଚେତାର ପରିଚୟ ଦେଇଥିଲେ, ତାହାର ନମୁନା ଆଜି ସ୍ୱାଧୀନ ଭାରତରେ ସୁଦ୍ଧା ବିରଳ । ଶୁଣାଅଛି ମହାତ୍ମା ଗାନ୍ଧୀ ଅସହଯୋଗ ଆନ୍ଦୋଳନ ହେତୁରୁ କେହି ମନ୍ତ୍ରିତ୍ୱ ଗ୍ରହଣ ନ କରନ୍ତୁ ବୋଲି ପ୍ରଚାରୁଥିଲେ । ମଧୁସୂଦନ ଓ ସି. ୱାଇ. ଚିନ୍ତାମଣି—ଏହି ଦୁଇଜଣ ମନ୍ତ୍ରୀଙ୍କର ବ୍ୟକ୍ତିତ୍ୱ ଓ ସ୍ୱାଧୀନ ମତଗତିର ବୃତ୍ତାନ୍ତ ଶୁଣି ମହାତ୍ମାଜୀ କହିଥିଲେ—"ଭାରତର ବିଭିନ୍ନ ପ୍ରଦେଶର ମନ୍ତ୍ରୀମାନେ ଯେବେ ମଧୁସୂଦନ ଦାସ ବା ସି. ୱାଇ. ଚିନ୍ତାମଣିଙ୍କ ପରି ସ୍ୱାଧୀନଚେତା ହୋଇ ନିଜ ନିଜର କାମ କରନ୍ତି, ତେବେ ଭାରତୀୟ ଲୋକେ ମନ୍ତ୍ରିତ୍ୱ ଗ୍ରହଣ କରିବାରେ ମୋର କୌଣସି ଆପତ୍ତି ନାହିଁ । "ଓଡ଼ିଶାର ତତ୍‌କାଳୀନ ଲାଟ୍ ସଭାର ସଭ୍ୟ ଦେବାନ୍ ବାହାଦୁର ଲକ୍ଷ୍ମୀଧର ମହାନ୍ତି, ଶ୍ରୀ ରେବତୀକାନ୍ତ ଘୋଷ, ସ୍ୱର୍ଗୀୟ ବିଶ୍ୱନାଥ କର ପ୍ରଭୃତିଙ୍କ ଠାରୁ ଶୁଣିଛୁଁ ମଧୁସୂଦନ ମନ୍ତ୍ରୀ ଥିଲେ ମଧ୍ୟ ସରକାରୀ କୂଟନୀତି, ପ୍ରତାରଣା ଓ କୌଶଳଗୁଡ଼ିକ ପଦାରେ ପକାଇ ଦେଉଥିଲେ ; ଏପରି କି ବେଳେ ବେଳେ ସରକାରୀ ମନ୍ତ୍ରୀ ବା ସେକ୍ରେଟେରୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆସନରେ ନ ବସି ଓଡ଼ିଶାର ବେସରକାରୀ ସଭ୍ୟମାନଙ୍କ ନିକଟରେ ବସି ସରକାରଙ୍କର ନାନା ପ୍ରସ୍ତାବ ବିଷୟରେ ସମାଲୋଚନା କରିବାକୁ

ସେମାନଙ୍କୁ ମାଲ ମସଲା ଯୋଗାଇ ଦେଉଥିଲେ । ସରକାରଙ୍କ ନୀତିବଳୁଦ୍ଧରେ ତାଙ୍କର ମତ ଥିଲା "ବଗୁଡ଼ି ଆଖି ବୁଜି ଦୁଧ ପିଇଲା ପରି ପିଅ ନାହିଁ । ଯଦି ଏ ଦେଶର ଲୋକଙ୍କ ହାତରେ ଶାସନ କ୍ଷମତା ଦେବାକୁ ଚାହଁ, ତେବେ ଯଥାର୍ଥରେ ଦିଅ, ତାଙ୍କୁ ଚିତୁଲା କରି ନଚାଅ ନାହିଁ ।" ଏହି ନୀତିଦୃଷ୍ଟିରୁ ମନ୍ତ୍ରୀମାନେ ଦରମା ନେଲେ କାଳେ ସରକାରଙ୍କ ଚାକରିଆ ହୋଇ ନିଜର ସ୍ୱାଧୀନ ମତ ହରାଇବେ, ତେଣୁ ସେ ପ୍ରସ୍ତାବ କରିଥିଲେ "ମନ୍ତ୍ରୀପଦ ଅବୈତନିକ ହେବା ଉଚିତ ।"

ମଧୁସୂଦନ ମନ୍ତ୍ରୀ ଥିଲା ବେଳେ ସାହେବ ସେକ୍ରେଟେରି ମାନେ ସୁଦ୍ଧା ତାଙ୍କ ପ୍ରତିଭା ନିକଟରେ ନତମସ୍ତକ ହେଉଥିଲେ । ଜଣେ ସାହେବ ସେକ୍ରେଟେରୀ ତାଙ୍କର ନିମ୍ନସ୍ତରର କର୍ମଚାରୀମାନଙ୍କ ପ୍ରତି ଦୁର୍ବ୍ୟବହାର କରୁଥିଲେ, ସେମାନଙ୍କୁ ଅନେକ ବେଳଯାଏ ଠିଆ କରି ରଖୁଥିଲେ ; ନାନାପ୍ରକାର ଅଶ୍ଳୀଳ ଭାବରେ ଗାଳି ଦେଉଥିଲେ, ସେହି କର୍ମଚାରୀମାନେ ଘରୋଇ ଭାବରେ ଏ ସବୁ ଦୁଃଖ ମଧୁବାବୁଙ୍କୁ ଜଣାଇ ଥିଲେ । ମଧୁବାବୁ ଦେଖେଇ ଦେଖେଇ ଅନେକ ଥର ସେହି ସାହେବଙ୍କୁ ନିମ୍ନକର୍ମଚାରୀମାନଙ୍କ ସହିତ ଭଲ ବ୍ୟବହାର କରିବାକୁ କହିଥିଲେ, ତଥାପି ତାଙ୍କର ମତିଗତି ବଦଳିଲା ନାହିଁ । ଦିନେ ସକାଳ ବେଳା ସେହି ସାହେବ ଆସିଥିଲେ ମନ୍ତ୍ରୀ ମଧୁସୂଦନଙ୍କ ଘରକୁ କେତେକ କାଗଜପତ୍ର ଦେଖାଇବାକୁ ; କାର୍ଡ଼ ପଠାଇ ଦେଲେ; ମଧୁବାବୁ ସଙ୍ଗେ ସଙ୍ଗେ ସେ ବୈଠକଖାନା ଘରୁ ସମସ୍ତ ଚୌକି ଉଠାଇ ନେବାକୁ ଚାକରକୁ କହିଲେ । ସାହେବ ଆସିଲେ । ଠିଆ ହୋଇ ସମସ୍ତ କାଗଜ ପତ୍ର ଦେଖାଇଲେ, ମଧୁସୂଦନ ତାଙ୍କୁ ବସିବାକୁ କହିଲେ ନାହିଁ । ପ୍ରାୟ ଘଣ୍ଟାଏ ଦେଢ଼ଘଣ୍ଟା ସେହିପରି ଠିଆ ହୋଇ କାଗଜ ପତ୍ର ଦେଖାଇଲେ । ମଧୁବାବୁ ଅଲବର୍ଟ ହୁକାରେ ଗୁଡ଼ାଖୁ ଖାଇ ତାଙ୍କ ମୁହଁକୁ ଧୂଆଁ ଛାଡୁଥାନ୍ତି । ସାହେବ ବଡ଼ କ୍ଷୁଣ୍ଣମନରେ ଫେରି କ୍ଳବରେ ସେ ଦିନ ସନ୍ଧ୍ୟାରେ କହିଲେ, "ମୋର ବାପ ମା ଯଦି ଜାଣିଥାନ୍ତେ, ଭାରତରେ ଗୋଟାଏ ନେଟିଭ ଇଣ୍ଡିଆନ ଅଧୀନରେ ମୋତେ ଚାକିରି କରିବାକୁ ପଡ଼ିବ, ତେବେ ସେମାନେ କେବେହେଁ ମୋତେ ଭାରତବର୍ଷକୁ ପଠାଇ ନ ଥାନ୍ତେ ।"

ସରକାରୀ ଗୋପନୀୟ ପତ୍ରଲେଖିବା ନୀତିବଳରେ ଜଣେ ଜଣକ ଉପରେ ଶତ୍ରୁତା ସାଧି ପାରେ, ମଧୁସୂଦନ ଏ ନୀତିଟାକୁ ସବୁବେଳେ ଅପସନ୍ଦ କରୁଥିଲେ । ସେ ମନ୍ତ୍ରୀ ଥିଲାବେଳେ ବହାରର ଗୋଟିଏ ଜିଲାର ଜଣେ ସିଭିଲ୍ ସର୍ଜନଙ୍କ ସଙ୍ଗେ ଜଣେ ଜିଲା ମାଜିଷ୍ଟ୍ରେଟଙ୍କର ପଡୁ ନ ଥିଲା । ଉଭୟ ଥିଲେ ସାହେବ । ଜିଲା ମାଜିଷ୍ଟ୍ରେଟ ଗୋଟିଏ ଗୋପନୀୟ ପତ୍ରରେ ସିଭିଲ୍ ସର୍ଜନଙ୍କ ବିରୁଦ୍ଧରେ ଅନେକ ଅଭିଯୋଗ କରି ମି. ମଧୁସୂଦନ ଦାସ ସି. ଆଇ. ଇ, ମନ୍ତ୍ରୀଙ୍କ ନାମରେ ପଠାଇ-ଥିଲେ ; ସେଥିରେ ଶେଷକୁ ଅନୁରୋଧ କରିଥିଲେ, ଏପରି ଜଣେ ଲୋକକୁ ସେ ସ୍ଥାନରେ ସିଭିଲ୍ ସର୍ଜନ ନ ରଖି ଅନ୍ୟଠାକୁ ବଦଳି କରି ଦେବା ଆବଶ୍ୟକ । ମଧୁସୂଦନ ଚିଠି ଉପରେ ଯେଉଁଠାରେ ଗୋପନୀୟ ବା Confidential ବୋଲି ଲେଖା ହୋଇଥିଲା, ସେତିକ ନାଲି କାଳିରେ କାଟି ଦେଇ, ଜିଲା ମାଜିଷ୍ଟ୍ରେଟଙ୍କୁ ଲେଖିଲେ, ଯଦି ଆପଣଙ୍କ ଅଭିଯୋଗ-ଗୁଡ଼ିକ ସତ୍ୟ ହୁଏ, ତେବେ ଏପରି ଲୋକଙ୍କୁ ବଦଳି କରାଯିବ କଣ, ଚାକିରିରୁ ବାହାର କରି ଦେବା ଉଚିତ ବୋଲି ମୁଁ ମନେ କରେଁ । ମୁଁ ଆପଣଙ୍କ ଏ ଚିଠିର ନକଲ ଓ ମୋର ଏହି ଚିଠିର ନକଲ ସିଭିଲ୍ ସର୍ଜନଙ୍କ ନିକଟ ପଠାଇଲି; ଆପଣ ଯେଉଁଠାରେ Confidential ବୋଲି ଲେଖିଥିଲେ, ତାକୁ ମୁଁ କାଟି ଦେଇ ସାଧାରଣ କାଗଜ ପତ୍ର ସଙ୍ଗେ ଆପଣଙ୍କ ଚିଠି ରଖିବାକୁ ଆଦେଶ ଦେଲି, ଆପଣ ଗୋଟିଏ ନିର୍ଦ୍ଦିଷ୍ଟ ଦିବସରେ ଆପଣଙ୍କ ଅଭିଯୋଗଗୁଡ଼ିକ ସିଭିଲ୍ ସର୍ଜନଙ୍କ ଉପସ୍ଥିତିରେ ମୋ ଆଗରେ ପ୍ରମାଣ କରନ୍ତୁ । ଏଚିଠି ଖଣ୍ଡି ପାଇ ଜିଲ୍ଲା ମାଜିଷ୍ଟ୍ରେଟ ବଡ଼ ବିବ୍ରତ ହୋଇ ପଡ଼ିଲେ: ସେ ଦୀର୍ଘକାଳ ଛୁଟି ନେଇ ଚାଲିଗଲେ ।

ଯେତେବେଳେ ସେ ମନ୍ତ୍ରୀପଦ ଛାଡ଼ିଲେ ତହିଁର କିଛି ଦିନ ଆଗରୁ ବ୍ୟବସ୍ଥାପକ ସଭାରେ ସରକାରୀ ନୀତିକୁ ସମାଲୋଚନା କରି ଅନେକ କଥା ବକ୍ତୃତାରେ କହିଥିଲେ; ଜଣେ ସେକ୍ରେଟେରୀ ତାଙ୍କ ପଛଆଡ଼େ ବସି ତାଙ୍କ କୁର୍ତ୍ତାକୁ ଟାଣି ତାଙ୍କୁ କ୍ଷାନ୍ତ ହେବାକୁ ଇଙ୍ଗିତ କରିଥିଲେ; ସେତିକି ବେଳେ ମଧୁସୂଦନ ପାଟିକରି କହି ଉଠିଲେ "ଏଇ ଦେଖନ୍ତୁ ଆମର ସ୍ୱାଧୀନତା, ଜଣେ ମନ୍ତ୍ରୀ ବକ୍ତୃତା କରୁଛି,

ଅଥଚ ଜଣେ ସେକ୍ରେଟେରୀ ତାର କୁଚୁଳତାକୁ ପଛଆଡ଼୍କୁ ଟାଣି ତାକୁ ବନ୍ଦ କରୁଛି !"

ଲୋକସେବକ, ଜନନେତାଙ୍କ ଆଦର୍ଶ ମଧୁବାବୁଙ୍କ ଚକ୍ଷୁରେ ଯାହା ଥିଲା, ତହିଁର ବହୁ ତଳକୁ ଆମ୍ଭେମାନେ କ୍ରମେ କ୍ରମେ ଖସି ପଡ଼ୁଅଛୁଁ । ଯେ ଜନନେତା ହେବେ, ସେ କ୍ଷମତାର ମୋହରେ ମୋହାନ୍ଧ ହେଲେ ଚଳିବ ନାହିଁ । ସ୍ୱାୟତ୍ତଶାସନ (Self Government ) ଶବ୍ଦର ବ୍ୟାଖ୍ୟା କରି ମଧୁସୂଦନ ଅନେକ ସମୟରେ କହୁଥିଲେ, "ଯେଉଁମାନେ ସ୍ୱାୟତ୍ତଶାସନ ପାଇବାକୁ ଓ ନିଜର ଦେଶର ଶାସନଭାର ଗ୍ରହଣ କରି ଶାସନ ଚଳାଇବାକୁ ଉଦ୍‌ବଗ୍ନ, ସେମାନେ ଆଜି ବୁଝନ୍ତୁ Self Government ବା ସ୍ୱାୟତ୍ତ-ଶାସନର ଅର୍ଥ ହେଉଛି ନିଜର ମନୋବୃତ୍ତିକୁ ଶାସନ କରିବାକୁ ଶିଖିବା; ଏହା ଯେ ନ କରି ପାରିଥିବ, ତାହା ନିକଟରେ ସ୍ୱାଧୀନତା, ସ୍ୱାୟତ୍ତଶାସନ ବା ସ୍ୱରାଜ୍ୟ—ଏ ସବୁର କୌଣସି ଅର୍ଥ ନାହିଁ । ସେ କେବଳ କ୍ଷମତା ପାଇ ଅନ୍ୟ ମାନଙ୍କ ଉପରେ କ୍ଷମତା ବିସ୍ତାର କରିବାକୁ ଲାଳାୟିତ । ଦିନେ ଜଣେ ସରକାରୀ ଉଚ୍ଚ କର୍ମଚାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ମଧୁବାବୁଙ୍କ ପାଖରେ ପହଞ୍ଚି କହିଲେ "ଆଜ୍ଞା, ଆଜି ଚାକିରିରୁ ଅବସର ନେଲି, ପେନସନ୍ ନେଲି; ଏଣିକି ଆପଣଙ୍କ ପାଖକୁ ଆସିଲି । ମୁଁ 'ପବ୍‌ଲିକ ମ୍ୟାନ୍ ( Public man ) ଭାବରେ ଦେଶର ସେବା କରିବାକୁ ଚାହେଁ; କି କାମରେ ମତେ ଲଗାଇବେ ଆପଣ ଲଗାନ୍ତୁ ।" ମଧୁବାବୁ ସଙ୍ଗେ ସଙ୍ଗେ କହିଲେ, "ଦେଖ, ଗୋଟିଏ ଗୃହିଣୀ ସ୍ତ୍ରୀ ଇଚ୍ଛାକଲେ ନିଜର ସତୀତ୍ୱ ହରାଇ ପବ୍‌ଲିକ ଓମାନ ( Public woman ) ( ବେଶ୍ୟା ) ହୋଇ ପାରେ; ସେଥିପାଇଁ ତାକୁ ପାଞ୍ଚ ମିନିଟ୍ ସମୟ ଲାଗେ ନାହିଁ; କିନ୍ତୁ ପବ୍‌ଲିକମାନ ହେବା ପାଇଁ ଜୀବନବ୍ୟାପୀ ଦେଶସେବା, ନିଷ୍ଠା, କର୍ମ, ସାଧନା ଆବଶ୍ୟକ ।" ମଧୁବାବୁ ନିଜର ଜୀବନକୁ ଏହି ନୀତିରେ ଯଥାର୍ଥରେ ଗଢ଼ିଥିଲେ ।

ଯୁବାବସ୍ଥାରୁ ମୃତ୍ୟୁପର୍ଯ୍ୟନ୍ତ ମଧୁସୂଦନ ଭାରି ଏକଜିଦିଆ ଥିଲେ ଓ ତାଙ୍କ ସ୍ୱାଧୀନ ମତ ଉପରେ କେହି ହସ୍ତକ୍ଷେପ କଲେ, ସେ ନିଆଁବାଣ

ହୋଇ ଯାଉଥିଲେ । ଏପରି ସ୍ୱାଧୀନଚେତା ବ୍ୟକ୍ତି ଖୁବ୍ ବିରଳ । ମଧୁସୂଦନଙ୍କ ଦୁର୍ଭାଗ୍ୟ ଯେ ତାଙ୍କପରି ବହୁମୁଖୀ ପ୍ରତିଭାଶାଳୀ ବ୍ୟକ୍ତି ଭାରତର ଏକ କୋଣରେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ, ଅନ୍ୟ ଯେ କୌଣସି ଦେଶରେ ତାଙ୍କର ପ୍ରତିଭାପୂଜା ପାଇଁ ନିଷ୍ଟୟ ଭିନ୍ନ ପ୍ରକାର ଆୟୋଜନ ହୋଇଥାନ୍ତା । ଏ ପ୍ରଦେଶର ଲୋକେ ଯଥାର୍ଥରେ ପ୍ରତିଭା ପୂଜା କରିବାକୁ ଶିଖି ନାହାନ୍ତି । ଯେଉଁ ଜାତି ଯେଉଁ ପରିମାଣରେ ଉନ୍ନତ, ସେହି ଜାତି ସେହି ପରିମାଣରେ ନିଜର ଜାତୀୟ ବୀରଙ୍କ ପ୍ରତିଭାପୂଜା କରିଥାଏ ।

ଯେଉଁମାନେ ବକ୍ତୃତାମଞ୍ଚରୁ ମଧୁସୂଦନଙ୍କର ଓଜସ୍ୱିନୀ ବକ୍ତୃତା ଶୁଣିଥିବେ, ସେହିମାନେ କେବଳ କହି ପାରିବେ, ସେ କିପରି ବାଗ୍ମୀ ଥିଲେ । ତାଙ୍କ ମତରେ ବକ୍ତୃତା ଶୁଣିଲାବେଳେ ଲୋକେ ଭାଷାରେ କେତୋଟି ବ୍ୟାକରଣ ଭୁଲ ରହିଲା, କେତୋଟି ଚଳନ୍ତି ଶବ୍ଦ ପ୍ରୟୋଗ (Idiom) ଭୁଲ ହେଲା, ଏ କଥା ସୁମାରି କରନ୍ତି ନାହିଁ, ଯଦି ତୁମ୍ଭର ବକ୍ତୃତା ଭାବଗର୍ଭିକ ହୁଏ, ତାହା ଉଚ୍ଚଭାବ ପ୍ରକାଶ କରୁଥାଏ, ଲୋକେ ସେହି ଭାବସ୍ରୋତରେ ଭାସିଯାନ୍ତି । ସୁତରାଂ ବକ୍ତାମାନେ ଭାଷାର ବିଶୁଦ୍ଧତା ପାଇଁ ବ୍ୟସ୍ତ ନ ହୋଇ ଉଚ୍ଚ ଭାବ ଓ ବିଷୟ ପ୍ରକାଶ କରି ପାରିଲେ ହେଲା ।

ମଧୁବାବୁଙ୍କର ଶେଷ ଜୀବନରେ ଅର୍ଥାଭାବ ଘଟିବା, ଅଦାଲତ ବିଚାରରେ ଦେଉଳିଆ ହେବା ଇତ୍ୟାଦି ପ୍ରସଙ୍ଗ ଲେଖକ ଉଲ୍ଲେଖ କରି ଅଛନ୍ତି; ସେ ବାରମ୍ବାର ଉଲ୍ଲେଖ କରିଅଛନ୍ତି, ଦେଶର ଜାତୀୟ ଜୀବନର ଉନ୍ନତି ପାଇଁ, ଶିଳ୍ପ ପ୍ରସାର ପାଇଁ, ବିଶେଷତଃ ଉତ୍କଳ ଟାନେରି ପାଇଁ ଟଙ୍କା ଖରଚ କରି ସେ ଦେଉଳିଆ ହେଲେ; ଏ କଥା ଅବଶ୍ୟ ଠିକ୍, କିନ୍ତୁ ଟଙ୍କା ପଇସା ବିଷୟରେ ସେ ସବୁ ଦିନେ ଉଦାର ଓ ଉଦାସୀନ ଥିଲେ; ଉତ୍କଳ ସମ୍ମିଳନୀ ପାଇଁ ଟଙ୍କା ଖରଚ ହେଉଥିଲା; ସେଥିପାଇଁ ଦିନେ କାହାରିକୁ ସେ ପଇସାଟିଏ ପାଇଁ ହାତ ପାତି ନ ଥିଲେ । ପ୍ରଜାପ୍ରତିନିଧି ସଭାର ଖର୍ଚ୍ଚ, ବନ୍ୟାପ୍ରପୀଡ଼ିତ ଅଞ୍ଚଳକୁ ସାହାଯ୍ୟ, 'ଦି ଓଡ଼ିଆ' ନାମକ ଇଂରାଜି ସମ୍ବାଦପତ୍ର ଇତ୍ୟାଦି ଅନୁଷ୍ଠାନ ବା ଲୋକହିତକର କାର୍ଯ୍ୟ ପାଇଁ ଟଙ୍କା ଆବଶ୍ୟକ ହେଉଥିଲା, ସେଥିଲାଗି ସେ ଦିନେ କାହାରି ଦ୍ୱାରସ୍ଥ ହୋଇ ନ ଥିଲେ । ସେ ଯେଉଁମାନଙ୍କୁ ଖୁବ୍ ବିଶ୍ୱାସ

କରୁଥିଲେ, ସେମାନେ ସୁଦ୍ଧା ନିଜର ମନ ମୁତାବକ ଟଙ୍କା ଆତ୍ମସାତ୍ କରୁଥିଲେ । ସେ ସମୟରେ ଆଜି କାଲି ପରି ଏତେ ନୋଟର ପ୍ରଚଳନ ନ ଥିଲା, ଲୋକେ ସୁନ୍ଦୁକ ବା ଛଣପଟରେ ଟଙ୍କା ବଡ଼ ବଡ଼ ତୋଡ଼ାରେ ଟଙ୍କା ପୂରାଇ ରଖୁଥିଲେ । ଗୋଟାଏ ଲୁହା ସିନ୍ଦୁକରେ ତାଙ୍କର ଏ ତୋଡ଼ାମାନ ରହୁଥିଲା; ମାତ୍ର ଅନେକ ସମୟରେ ମେଜ ଉପରେ ରଖି ଛାଡ଼ିଦେଇ ହୁଏତ କଚେରୀକି କିମ୍ବା ବୁଲିବାକୁ ଚାଲିଯାଉ ଥିଲେ । ଏଥିରୁ ସହଜରେ ଅନୁମାନ କରାଯାଇ ପାରେ ଟଙ୍କା କଉଡ଼ି କିପରି ହରଣଚାଲ ହେଉଥିଲା । ସେ ପୁଣି ଏପରି ଉଦାର ଥିଲେ ଯେ, ଗୋଟିଏ ଶହେଟଙ୍କିଆ ନୋଟ ଭଙ୍ଗାଇବାକୁ ଦେଲେ, ସେଥିରୁ ଚାକର କୋଡ଼ିଏ ଟଙ୍କା ଖରଚ କରି ଅଶିଟଙ୍କା ଫେରାଇ ଦେଲାବେଳକୁ ବିରକ୍ତ ହୋଇ କହୁଥିଲେ "ତୋତେ କଣ ମୁଁ ବାକୀ ଟଙ୍କା ମାଗିଲି ? ତୋ ପାଖରେ ବାକୀ ଟଙ୍କାତକ ଥିଲେ କଣ ହେବ ନାହିଁ ?" କିନ୍ତୁ ସେ ଟଙ୍କା ଆଉ କେବେ ମାଗନ୍ତି ନାହିଁ । ସେ ଟଙ୍କା ଚାକର ପାଖରେ ସେହିପରି ରହିଲା, ଆଉ ସେ କଥା ମନେ ନାହିଁ । ଏପରି ଭାବରେ ମଧ୍ୟ କେତେ ଟଙ୍କା ଉଡ଼ିଯାଏ । ସେ ଦେଉଳିଆ ହେଲାପରେ କହୁଥିଲେ, "ମୁଁ ଜଣେ ଦରିଦ୍ରର ସନ୍ତାନ ଥିଲି; ମୁଁ ପୃଥିବୀରେ ଜନ୍ମ ହେଲା ବେଳେ ସଙ୍ଗରେ ଟଙ୍କା ପଇସା ନେଇ ଆସି ନ ଥିଲି; ମୁଁ ଫେରିଗଲା ବେଳକୁ ମୋର କେହି ନାହିଁ, ଯାହାପାଇଁ ଟଙ୍କା କଉଡ଼ି ରଖିଯିବି । ଖାଲି ହାତରେ ଚାଲିଯିବି । ସେଥିପାଇଁ ଚିନ୍ତା କଣ ?" ତାଙ୍କର ମୃତ୍ୟୁ ପୂର୍ବଦିନ ସୁଦ୍ଧା ଭୁଲ ବଶତଃ ଗୋଟାଏ ବ୍ୟାଙ୍କରେ ସାମାନ୍ୟ ଏକଚାଳିଶ ଟଙ୍କା ରହି ଯାଇଥିଲା । ଏ କଥା ତାଙ୍କର ମନେ ନ ଥିଲା; କିନ୍ତୁ ଯେଉଁମାନେ ତାହା ଜାଣିଥିଲେ, ସେ ଟଙ୍କା ପାଇବାର ପ୍ରତିନିଧି ନିଯୁକ୍ତିପତ୍ର ମୃତ୍ୟୁର କେତେକ ଘଣ୍ଟା ପୂର୍ବରୁ ସ୍ୱାକ୍ଷର କରାଇ ନେଲେ; ସେ ଦୀର୍ଘ ନିଶ୍ୱାସଟିଏ ପକାଇଥିଲେ ମାତ୍ର । ଏହି ଘଟଣାର କେତେକ ଘଣ୍ଟା ପରେ ସମ୍ପୂର୍ଣ୍ଣ ଭାବରେ କପର୍ଦ୍ଦକଶୂନ୍ୟ ହେଲା ଉତ୍ତାରୁ ତାଙ୍କର ପ୍ରାଣବାୟୁ ବାହାରି ଚାଲିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ଆଇନ କଲେଜ •ନିଜ ହାତକୁ ୧୯୪୯ ମସିହା ଜୁଲାଇ ମାସରେ ନେଲା ପରେ ସେହି କଲେଜ ସହିତ ମଧୁସୂଦନ-

ଙ୍କର ପବିତ୍ର ସ୍ମୃତି ଜଡ଼ିତ କରି ତାହାର ନାମ ରଖିଛନ୍ତି 'ମଧୁସୂଦନ ଆଇନ କଲେଜ' । ଉତ୍କଳ ସମ୍ମିଳନୀର ସଭାପତି ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କ ନାମରେ ନାମିତ ଶ୍ରୀରାମଚନ୍ଦ୍ର ଭବନକୁ ଲାଗି ମଧୁସୂଦନଙ୍କ ସ୍ମୃତିରକ୍ଷାର୍ଥ ମଧୁସୂଦନ ପାଠାଗାର ନିର୍ମିତ ହେଉଅଛି ! ଏହି ପାଠାଗାରଦ୍ୱାରା କଟକର ତଥା ଓଡ଼ିଶାର ଗୋଟିଏ ବିଶେଷ ଅଭାବ ଦୂରୀଭୂତ ହେବ !

ମୋର ଷୋଳ ବର୍ଷର ବ୍ୟକ୍ତିଗତ ସ୍ମୃତି ବା ଅନୁଭୂତି ଲେଖି ବସିଲେ ଷୋଳ ଖଣ୍ଡ ପୋଥି ହେବ । ମୋର ଶ୍ରଦ୍ଧେୟ ଲେଖକ ମଧୁବାବୁଙ୍କ ପ୍ରତିଭାର ଜଣେ ପରମ ଭକ୍ତ । ତାଙ୍କ ମୃତ୍ୟୁ ପରେ ସେ କେତେ ଖଣ୍ଡ କ୍ଷୁଦ୍ର ପୁସ୍ତକ ମଧୁବାବୁଙ୍କ ବିଷୟରେ ପ୍ରକାଶ କରିଥିଲେ; ଆଜି ଯେ ସେ ଦେଶବାସୀଙ୍କ ସମକ୍ଷରେ ଓଡ଼ିଆ ଜାତିର ଶ୍ରେଷ୍ଠ ଜନନାୟକ ଓ ଜାତୀୟଭାବର ଜନ୍ମଦାତା ମଧୁସୂଦନଙ୍କର ପ୍ରତିଭାର ଚିତ୍ର ସ୍ଥାପନ କରିପାରି ଅଛନ୍ତି, ସେଥିପାଇଁ ମୁଁ ବୟୋଜ୍ୟେଷ୍ଠ ଦାବୀରେ ତାଙ୍କ ଉପରେ ମୋର ଅନ୍ତରର ଆଶୀର୍ବାଦ ଅର୍ପଣ କରୁଅଛି । ଉତ୍କଳ ବିଶ୍ୱବିଦ୍ୟାଳୟର ମୁଦ୍ରାଯନ୍ତ୍ର କଟକ ସହରରେ ସ୍ଥାପିତ ହେବା ପରେ ସର୍ବ ପ୍ରଥମେ ଯେ ମଧୁସୂଦନଙ୍କ ଜୀବନଚରିତ ଏହି ମୁଦ୍ରାଯନ୍ତ୍ରରୁ ପ୍ରକାଶିତ ହୋଇ ପାରିଅଛି, ଏହା ଉତ୍କଳ ବିଶ୍ୱବିଦ୍ୟାଳୟର ଗୌରବ । ମୋର ବନ୍ଧୁ ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ. ଓ ମୁଁ ଏ ଜୀବନ-ଚରିତରେ ଲିପିବଦ୍ଧ ବୃତ୍ତାନ୍ତ ଓ ଏହାର ଭାଷାକୁ ଯଥାସାଧ୍ୟ ସଂମାର୍ଜିତ କରିବାକୁ ଯତ୍ନ କରିଅଛୁଁ; ଏଥିରେ ଯଦି କୌଣସି ଭ୍ରମ ପ୍ରମାଦ ଥାଏ, ତହିଁର ଦାୟିତ୍ୱ ଆମ୍ଭମାନଙ୍କର; ତାହା ଯେପରି ମଧୁସୂଦନଙ୍କ ଶୁଭ୍ର ସ୍ୱଚ୍ଛ ଚରିତକୁ ଦୋଷଯୁକ୍ତ ନ କରୁ !

ଆଜି ମଧୁସୂଦନଙ୍କ ସପ୍ତଦଶ ଶ୍ରାଦ୍ଧ ଦିବସରେ 'ଗଙ୍ଗାଜଳରେ ଗଙ୍ଗା ପୂଜା କରିବା' ନ୍ୟାୟରେ ମଧୁସୂଦନଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଓଡ଼ିଆ ଜାତିର ଅର୍ଘ୍ୟାଞ୍ଜଳି ସ୍ୱରୂପ ଏ ପୁସ୍ତକ ଅର୍ପଣ କଲୁଁ ।

ଫେବୃୟାରୀ ୪ ତାରିଖ, ୧୯୫୧ ମସିହା } ତାଙ୍କର ଗୁଣମୁଗ୍ଧ
ଚିନ୍ତାମଣି

# ସୂଚିପତ୍ର

# ପରିଶିଷ୍ଟ

## ( କ )

### ମଧୁବାବୁଙ୍କ ଓଡ଼ିଆ ଓ ଇଂରାଜୀ ହସ୍ତାକ୍ଷରର ନମୁନା



## ( ଖ )

### ଅନ୍ୟାନ୍ୟ କେତେକ ପତ୍ର



## ( ଗ )

# ଚିତ୍ର ସୂଚୀ



ଜୀବନର ମଧ୍ୟାହ୍ନରେ ମଧୁସୂଦନ

# ଉତ୍କଳ ଗୌରବ
# ମଧୁସୂଦନ

## ପ୍ରଥମ ଅଧ୍ୟାୟ

### ପୂର୍ବାଭାଷ

"ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ
ଉତ୍କଳ-ମାତାର ଯୋଗ୍ୟ ନନ୍ଦନ
ଦେଲ ଉତ୍କଳକୁ ନବ ଜୀବନ;
ଶିଖାଇଲ ଲୋକେ ଜାତି ବନ୍ଧନ ।"

(ଫକୀର ମୋହନ)

ଜାତି ଓ ଜାତୀୟ ଜୀବନର ଉତ୍ଥାନ ଏବଂ ପତନ ଅଛି । ଯୁଗେ ଯୁଗେ ଜାତିର ଏହି ଅବସ୍ଥା ସଂଘଟିତ ହୁଏ ଗୋଟିଏ କାରଣରୁ । ଜାତୀୟ ବୀରଙ୍କ ଚେଷ୍ଟା ଓ ସାଧନା ଦ୍ୱାରା ଜାତି ସଭ୍ୟତା-ସୋପାନର ଉଚ୍ଚ ସ୍ତରକୁ ଉଠେ । ଜାତୀୟ ବୀରଙ୍କ ବିନା ଜାତି ପତନାଭିମୁଖୀ ହୁଏ । ତେଣୁ ଜାତି ଓ ଜାତୀୟ ଜୀବନର ଇତିହାସ ଆଲୋଚନା କଲାବେଳେ ଜାତୀୟ ବୀରମାନଙ୍କ ଜୀବନୀ ପର୍ଯ୍ୟାଲୋଚନା କରିବା ଜାତୀୟ ଜୀବନର ଗୋଟିଏ ବିଶିଷ୍ଟ ଅଙ୍ଗ । ଜାତୀୟ ବୀରହିଁ ଜାତିର ଜୀବନ ଗଢ଼ିବାପାଇଁ କାର୍ଯ୍ୟ କରନ୍ତି । ସେ ସମୟକୁ ଅପେକ୍ଷା କରି ରହନ୍ତି ନାହିଁ । ତେଣୁ ଯେଉଁ ଜାତୀୟ ବୀରଙ୍କ ଜୀବନୀ ଲିପିବଦ୍ଧ ହେବାକୁ ଯାଉଅଛି, ତାହାଙ୍କ ଜୀବନରେ ଏହି ନୀତିଟି ପ୍ରମାଣିତ ହୋଇ ଅଛି । ଜାତୀୟ ବୀରମାନଙ୍କ ଜୀବନ ମଧ୍ୟ ବେଳେ ବେଳେ ଆପାତତଃ ବିଫଳ ହେଲା ଭଳି ଜଣାପଡ଼େ । ସେମାନଙ୍କର ଉଦ୍ୟମ, ପ୍ରଚେଷ୍ଟା ଓ ପ୍ରଗାଢ଼ ଅଧ୍ୟବସାୟ ପଣ୍ଡ ହେଲା ବୋଲି ଅନେକେ ସ୍ଥିର କରନ୍ତି; ତେଣୁ ମଧୁସୂଦନଙ୍କ ଜୀବନ

ବିଷୟରେ ମଧ୍ୟ ସେହିପରି ମତ ବ୍ୟକ୍ତ ହେବା ଶୁଣାଯାଏ । କିନ୍ତୁ ଦୂର ଦୃଷ୍ଟି ସହିତ ଭାବିଲେ ଦେଖାଯିବ ଯେ ସଭ୍ୟତା ଓ ସଂସ୍କୃତି ପଥରେ ଜାତୀୟ ବୀର ମାନଙ୍କର ପ୍ରକୃତ ସତ୍ ସାଧନା କେବେ ହେଲେ ନିଷ୍ଫଳ ହୁଏ ନାହିଁ ।

ମଧୁସୂଦନ ନିଜେ ନିଜର ସ୍ରଷ୍ଟା ଓ ନବ ଉତ୍କଳର ସ୍ରଷ୍ଟା; ତେଣୁ ତାହାଙ୍କୁ **"ନବ ଉତ୍କଳର ଜନକ"** ବୋଲି କୁହାଯାଏ । ଜାତିପ୍ରତି ଜୀବନବ୍ୟାପୀ ସାଧନା ଓ ଅକ୍ଳାନ୍ତ ସଂଗ୍ରାମ କରି ମଧୁସୂଦନ କିପରି ରାଜାଭଳି ରୋଜଗାର କରି ଥିଲେ ଓ ଫକୀର ହୋଇ ଦେହତ୍ୟାଗ କଲେ, ତାହା ଗଭୀର ଭାବରେ ଅନୁଧ୍ୟାନ କରିବା କଥା । ମଧୁସୂଦନ ନିଜେ ନିଜର ଜୀବନ ଗଢ଼ି ଓ ନିଜର ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ନିଜର ସ୍ୱପ୍ନ ଓ ପରିକଳ୍ପନାରେ ଜାତିକୁ କିପରି ଗଢ଼ିବାକୁ ଚେଷ୍ଟା କରି ଅଛନ୍ତି, ତାହା ଲକ୍ଷ୍ୟ କରିବା କଥା ।

ମଧୁସୂଦନଙ୍କ ଜୀବନରେ ତ୍ରୁଟି ଥାଇପାରେ—ପ୍ରତ୍ୟେକ ମନୁଷ୍ୟର ତ୍ରୁଟି ଥିବା ସ୍ୱାଭାବିକ; ତଥାପି ସେ ନବ ଉତ୍କଳର ଜାତୀୟ ଜୀବନକୁ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରି ଯାଇଅଛନ୍ତି; ତେଣୁ ତାହାଙ୍କ ଜୀବନୀ ପ୍ରତ୍ୟେକ ଓଡ଼ିଆ ପକ୍ଷରେ ଆଦରଣୀୟ ଓ ଶିକ୍ଷଣୀୟ ।

ମଧୁସୂଦନ ଇଂରେଜ ରାଜତ୍ୱ ସମୟରେ ଓଡ଼ିଆ ଜାତିର ଶ୍ରେଷ୍ଠ ବୀର । ତାଙ୍କ ଜୀବନର ପରିଲକ୍ଷିତ ଭ୍ରମ, ଦୋଷ ଓ ଲକ୍ଷ୍ୟ ଲାଭ ପାଇଁ ନିଷ୍ଠା ଓ ଦୃଢ଼ତାରୁ ଆମ୍ଭେମାନେ ବହୁତ ଶିକ୍ଷା ପାଇ ପାରିବା ଏବଂ ଏହା ଭବିଷ୍ୟତ୍ ଜାତୀୟ ଜୀବନ ଗଠନରେ ବହୁ ଉପକାର ସାଧନ କରିବ । ଯେଉଁ ମନୁଷ୍ୟ ନିଜର ଆଦର୍ଶରେ ବେଷ୍ଟନୀ ବା ଜାତିକୁ ଗଢ଼େ, ସେହି ମନୁଷ୍ୟହିଁ ଅସାଧାରଣ ମନୁଷ୍ୟ, ସେ ନେତା । ଏହି ମୌଳିକ ବ୍ୟକ୍ତିତ୍ୱର ନୀତି ଏବଂ କାର୍ଯ୍ୟମାନ ଆଲୋଚନା କରିବା ମଧୁସୂଦନଙ୍କ ଜୀବନୀ ଆଲୋଚନାର ଅନ୍ୟ ଏକ ଲକ୍ଷ୍ୟ ।

ଯେତେବେଳେ ଉତ୍କଳର ଜାତୀୟ ଜୀବନ ଘୋର ଅନ୍ଧକାରାଚ୍ଛନ୍ନ, ଯେତେବେଳେ ଦେଶ ଇଂରାଜୀ ଶିକ୍ଷାର ନୂଆ ଆଲୋକ ପାଇବାକୁ କେତେ ଆଶା ଓ ଆଶଙ୍କା ସହକାରେ ଚାହିଁ ରହିଥିଲା, ସେତିକିବେଳେ ନବ ଉତ୍କଳର ସ୍ରଷ୍ଟା, ମନସ୍ୱୀ, ଜନନେତା ମଧୁସୂଦନ ଦେଶ ସମ୍ମୁଖରେ ନବ ଆଦର୍ଶର ଦୀପ୍ତିକୁ ଢାଳି ଉତ୍କଳରେ ଜାତୀୟ ଜୀବନର ମୂଳ ପତ୍ତନ ପକାଇ ଶୁଭ ଦେଲେ । ଉତ୍କଳର ଗତ ଶତବର୍ଷବ୍ୟାପୀ ଜାତୀୟ ଜୀବନ ମଧୁସୂଦନଙ୍କ ବ୍ୟକ୍ତିତ୍ୱ, ପ୍ରତିଭା ଓ ନେତୃତ୍ୱର ବିକାଶ ମାତ୍ର ।

ମଧୁସୂଦନ ଉତ୍କଳ ତଥା ଭାରତରେ ଜଣେ ଅସାଧାରଣ ପୁରୁଷ ଥିଲେ । ଆଜି ତାଙ୍କର ମାଟିର ଦେହ ମାଟିରେ ମିଶି ଯାଇଥିଲେ ମଧ୍ୟ ତାଙ୍କର ମନୋବୃତ୍ତି

ଆଦର୍ଶ, ବିଚକ୍ଷଣ ପ୍ରତିଭା ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇଅଛି । ତାହାଙ୍କ ଚିନ୍ତାଧାରାର ମୌଳିକତା ଯୁଗେ ଯୁଗେ ଦେଶର ନାନା ଶ୍ରେଣୀର ଭାବୁକ, ଅର୍ଥନୀତିଜ୍ଞ ଓ ରାଷ୍ଟ୍ରନୀତିଜ୍ଞମାନଙ୍କ ଦୃଷ୍ଟି ଆକର୍ଷଣ କରିବ । ପୃଥିବୀର ରାଷ୍ଟ୍ରନୀତି ଓ ଅର୍ଥନୀତିର ଗତି ସହିତ ଉତ୍କଳ ତଥା ଭାରତର ରାଷ୍ଟ୍ରନୀତି ଓ ଅର୍ଥନୀତିର ବ୍ୟବସ୍ଥା ଆମୂଳଚୂଳ ପରିବର୍ତ୍ତିତ ହୋଇ ଯାଇ ପାରେ, କିନ୍ତୁ ମନୁଷ୍ୟ ଅତୀତକୁ ଅବମାନନା କରି ପାରିବ ନାହିଁ । ଯେଉଁ ଦିନ ମନୁଷ୍ୟ ଏହା କରିବ, ସେହିଦିନ ତାହାର ମୃତ୍ୟୁ । ସେହି ଭାବରେ ମଧୁସୂଦନ ଏକ ଅସାଧାରଣ ଐତିହାସିକ ଜାତୀୟ ବୀରଭାବରେ ଉତ୍କଳ ଇତିହାସରେ ଚିରଦିନ ବିରାଜୁ ଥିବେ । ତେଣୁ ଇତିହାସ ଦିଗରୁ ମଧୁସୂଦନଙ୍କ ଜୀବନୀର ଆଲୋଚନା ମଧ୍ୟ ଆବଶ୍ୟକ ।

ମଧୁସୂଦନଙ୍କର ମୌଳିକ ବ୍ୟକ୍ତିତ୍ୱର ଆଉ ଗୋଟିଏ ବୈଶିଷ୍ଟ୍ୟ ଥିଲା । ଏଥି ପୂର୍ବରୁ ଉତ୍କଳ ଇତିହାସର ଜାତୀୟ ବୀର ଥିଲେ ରାଜା, ମହାରାଜାମାନେ; କିନ୍ତୁ ମଧୁସୂଦନ ସାଧାରଣ ସମ୍ଭ୍ରାନ୍ତ ପରିବାରରେ ଜନ୍ମି ସୁଦ୍ଧା ଓଡ଼ିଆ ଜାତିର ନାୟକ ହେଲେ; ତେଣୁ ସାଧାରଣ ଲୋକ ପକ୍ଷରେ ତାଙ୍କର ଜୀବନ ଏକ ଗୌରବମଣ୍ଡିତ ଆଦର୍ଶ ।

ମଧୁସୂଦନ କେବଳ ଓଡ଼ିଶା ଉପକୂଳ ଅଞ୍ଚଳ ପାଇଁ ଭାବୁ ନ ଥିଲେ । ଉତ୍କଳ ସମ୍ମିଳନୀରେ ଜାତିଗଠନ କାର୍ଯ୍ୟରେ ଓଡ଼ିଶା ଉପକୂଳ ଅଞ୍ଚଳ ସହିତ ପାର୍ବତ୍ୟ ଅଞ୍ଚଳର ଯୋଗ ଥିଲା । ତାଙ୍କର ସେହି ଜାତୀୟ ଆଦର୍ଶ ଆଜି ବହୁ ପରିମାଣରେ କାର୍ଯ୍ୟରେ ପରିଣତ ହୋଇଅଛି । ନେତୃହୀନ ଜାତି ସେନାପତିହୀନ ସୈନ୍ୟବାହିନୀ ଭଳି; ତେଣୁ ଜାତୀୟ ନେତାଙ୍କ ଜୀବନଚରିତ ଆଲୋଚନା କରିବା ଜାତିର ପ୍ରତ୍ୟେକ ବ୍ୟକ୍ତିଙ୍କ ପକ୍ଷରେ ପ୍ରୟୋଜନୀୟ । ଏହି ଦୃଷ୍ଟିରେ ମଧ୍ୟ ମଧୁସୂଦନଙ୍କ ଜୀବନୀ ଆମ୍ଭମାନଙ୍କର ଆଲୋଚ୍ୟ । ସେଥିପାଇଁ ପଲ୍ଲୀକବି ନନ୍ଦକିଶୋର ଗାଇଥିଲେ—

"ଯେତେକାଳ ଥିବ ଓଡ଼ିଆ ଜାତି ଇତିହାସରେ
ଥିବ ତୁମ୍ଭ ନାମ ଅଙ୍କିତ ହେମମୟ ଅକ୍ଷରେ
ଭୁଲିଯିବେ ସର୍ବେ ରହିବେ ନାହିଁ କେହି ମହୀରେ
ଯଶୋଦେହେ ବଞ୍ଚି ରହିବେ ମାତ୍ର ନିଃସ୍ୱାର୍ଥ ବୀରେ ।"

# ଦ୍ୱିତୀୟ ଅଧ୍ୟାୟ

## ବଂଶଲତା ଓ ଜନ୍ମ

ସତ୍ୟଭାମାପୁର କଟକ ଜିଲ୍ଲାର ଗୋଟିଏ କ୍ଷୁଦ୍ର ଗ୍ରାମ । ଗ୍ରାମଟି କଟକ ନଗରଠାରୁ ଉତ୍ତର ପୂର୍ବ କୋଣରେ ପ୍ରାୟ ବାର ମାଇଲ ଦୂରରେ ଅବସ୍ଥିତ । ଏହି ଗ୍ରାମଟି ଦୂରରୁ ଦେଖିବାକୁ ସୁନ୍ଦର । ତହିଁରେ ଥିବା ତାଳ, ନାରିକେଳ ବୃକ୍ଷମାନଙ୍କର ଶ୍ୟାମଶୋଭା ଦୂରରୁ ଦର୍ଶକର ଦୃଷ୍ଟି ଆକର୍ଷଣ କରେ । ଗ୍ରାମ ପାଖରେ ଗୋଟିଏ ଛୋଟ କେନାଲ ଅଛି । ଜଗତ୍‌ପୁରରୁ ଯେଉଁ ବଡ଼ ସଡ଼କ କେନ୍ଦ୍ରାପଡ଼ାକୁ ଯାଇଅଛି, ସେହି ସଡ଼କରୁ ବହୁକୁଦ ଗ୍ରାମ ପୂର୍ବରୁ ସତ୍ୟଭାମାପୁର ଗ୍ରାମ ଭିତରକୁ ଯିବାପାଇଁ ଉତ୍ତର ଦିଗକୁ ବାଟ ଭାଙ୍ଗି ଯିବାକୁ ହୁଏ । ଏହି ବାଟ ପାଖେ ପାଖେ ଛୋଟ କେନାଲଟିଏ ଯାଇଅଛି ।

ସତ୍ୟଭାମାପୁରରେ ମଧୁସୂଦନଙ୍କ ଘର ବାଡ଼ି ଗୋଟିଏ ବଡ଼ ଚକ । ତହିଁରେ ବଗିଚା, କୂଅ, ପୋଖରୀ ସବୁ ରହିଅଛି । ବର୍ତ୍ତମାନ ଯେଉଁଠାରେ ଗୋରୁ ଗୁହାଳ, ସେହିଠାରେ ପୂର୍ବେ ଗୋଟିଏ ସୁନ୍ଦର ଖଞ୍ଜା ଘର ଥିଲା । ସେହିଠାରେ ମଧୁସୂଦନ ଜନ୍ମ ହୋଇଥିଲେ । ବର୍ତ୍ତମାନ ସେ ଘର ଭାଙ୍ଗି ଗଲାଣି ।

ମଧୁସୂଦନ ମଧ୍ୟ ତାଙ୍କ ଗ୍ରାମରେ ଗୋଟିଏ ସୁନ୍ଦର କୋଠାଘର ତୋଳିଥିଲେ । ତହିଁ ନିକଟରେ ଏକ ବଡ଼ ପୋଖରୀ ମଧ୍ୟ ଅଛି । ତାହା ସତ୍ୟଭାମାପୁର ଗ୍ରାମର ବାହାରେ । ସତ୍ୟଭାମାପୁର ଗଲେ ଦର୍ଶକ ସେହି ଘର ଦେଖିବେ । ମଧୁସୂଦନ ସେଠାରେ ତାଙ୍କ ପ୍ରୌଢ଼ ଅବସ୍ଥାରେ ମଧ୍ୟ ରହୁଥିଲେ । ସେ ସେହି ଘରେ ରହି ବିଲାତି ଆଳୁ, କୋବି, ପିଆଜ ପ୍ରଭୃତି ଚାଷର ପ୍ରସାର ଗ୍ରାମରେ କରିବାକୁ ଚେଷ୍ଟା କରିଥିଲେ । ପରେ ସେ ଘର ମଧୁସୂଦନ ଥାଉଁ ଥାଉଁ କରଜ ପାଇଁ ନିଲାମ ହୋଇ ଯାଇଅଛି ।

ସତ୍ୟଭାମାପୁରରେ ଏକ ସମ୍ଭ୍ରାନ୍ତ କରଣ ବଂଶରେ ୧୮୪୮ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସ ୨୮ ତାରିଖ ମଙ୍ଗଳବାର ଦିନ ମଧୁସୂଦନଙ୍କ ଜନ୍ମ । ମଧୁସୂଦନଙ୍କ ବଂଶର କୁଷିନାମାରୁ ଜଣାଯାଏ ଯେ ମଧୁସୂଦନଙ୍କ ପୂର୍ବ ପୁରୁଷମାନେ ଖଣ୍ଡାୟତ ଥିଲେ ଏବଂ ସେମାନେ ଖୋର୍ଦ୍ଧାରୁ ଆସିଥିଲେ । ମଧୁସୂଦନଙ୍କ ବଂଶର ମଧ୍ୟ ଖଣ୍ଡାୟତଙ୍କ ଘରେ ଅନେକ ବନ୍ଧୁ ବାନ୍ଧବ ଥିଲା । ଏଥିରେ ଗୋଟିଏ କୌତୁକ କଥା ସୁସ୍ପଷ୍ଟ । ଉତ୍କଳର ଖଣ୍ଡାୟତ ଓ କରଣଙ୍କ ମଧ୍ୟରେ ଯେପରି ଆଜିକାଲି ଗୋଟିଏ ସାମାଜିକ ଭେଦଭାବ ଦେଖା ଯାଉଅଛି, ସେପରି ପୂର୍ବେ ନ ଥିଲା । ମଧୁସୂଦନଙ୍କ ବଂଶଲତା ତଳେ ଦିଆ ଯାଉଅଛି—




ମଧୁସୂଦନ ତାଙ୍କ ନିଜ ବଂଶ ସମ୍ବନ୍ଧରେ ତାଙ୍କ ଲିଖିତ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖି ଅଛନ୍ତି —

"ମୁଁ ଏମିତି ଗୋଟିଏ ବଂଶରେ ଜନ୍ମ ହୋଇଥିଲି, ଯାହା ମୋ ଜନ୍ମପୂର୍ବରୁ ଅତି ସଚଳ ଅବସ୍ଥାରେ ଥିଲା । ବଂଶଟି ତାର ପୂର୍ବ ଆର୍ଥିକ ବିଭବ ନଷ୍ଟ କରି ଦେଇଥିଲା, କିନ୍ତୁ ସମ୍ମାନ ହରାଇ ନ ଥିଲା । ଠିକ୍ ବ୍ରାହ୍ମଣଙ୍କ ତଳକୁ ଏହି ଜମିଦାର ବଂଶକୁ ଗାଁରେ ସମସ୍ତେ ଯଥେଷ୍ଟ ସମ୍ମାନ ଦେଖାଉଥିଲେ ।"

ମଧୁସୂଦନଙ୍କ ଘରର ବଂଶାବଳୀ, କୁର୍ସିନାମା ଓ ବନ୍ଧୁ ତାଲିକାରୁ ଦେଖାଯାଏ—

" ଏହି ବଂଶ ଖୋର୍ଦ୍ଧା ମୁକାମରୁ ପ୍ରଥମେ ଆଗମନ କରିଥିଲେ । ମଣିମଲ୍ଲ ଦେ ଖୋର୍ଦ୍ଧା କିଲ୍ଲା ବାଘପୁର ମୁକାମରୁ ମୁଡାରଙ୍ଗା ମୌଜାରୁ (ବର୍ତ୍ତମାନ ସେଠି ଦୁଲଭ ନାୟକଙ୍କ ନାତି ରାମ ନାୟକଙ୍କ ଘର ଅଛି ) ଆସି ପଦ୍ମପୁର ପ୍ରଗନାରେ ସତ୍ୟଭାମାପୁର ବା ସଇତମାପୁର ମୌଜାରେ ବସବାସ କରିଥିଲେ ।"

ଚୌଧୁରୀ ରଘୁନାଥ ମଧୁସୂଦନଙ୍କ ପିତା । ପ୍ରଥମେ ଏହାଙ୍କର ଏକ କନ୍ୟା ଜାତ ହୋଇଥିଲା । ଦ୍ୱିତୀୟ ଗର୍ଭରେ ମଧୁସୂଦନ ଜନ୍ମଗ୍ରହଣ କରିଥିଲେ ।

ମଧୁସୂଦନଙ୍କ ଜନ୍ମ ପୂର୍ବରୁ ତାଙ୍କ ବଂଶରେ ଏକ ଗୌରବମୟ ଘଟନା ଘଟିଥିଲା । ମଧୁସୂଦନଙ୍କ ପ୍ରପିତାମହୀ ଅର୍ଥାତ୍ ସୁଦର୍ଶନ ଦାସଙ୍କ ପତ୍ନୀ 'ସତୀ' ହୋଇଥିଲେ । ମଧୁସୂଦନ ଏହି ବିଷୟରେ ପରକାଳରେ ଗୋଟିଏ ସୁନ୍ଦର ପ୍ରବନ୍ଧ ଲେଖିଥିଲେ । ପ୍ରବନ୍ଧଟିର ନାମ, —'ସତୀ ରକ୍ତର ପରମ୍ପରା ଓ ପ୍ରେରଣା' (**Heritage of a Satees blood and its inspiration**) । ମଧୁସୂଦନଙ୍କ ଏହି ଇଂରାଜି ପ୍ରବନ୍ଧର ଅନୁବାଦ ଦିଆଯାଉଅଛି :—

"ମୋ ବଂଶର ପ୍ରପିତାମହୀ ଜଣେ ସତୀ ଥିଲେ । ସେ ତାହାଙ୍କ ସ୍ୱାମୀଙ୍କ ଚିତାରେ ନିଜକୁ ଆହୁତି ଦେଇଥିଲେ । ଏହା ମୋ ଜନ୍ମପୂର୍ବରୁ ଘଟିଥିଲା; କିନ୍ତୁ ମୋ ପିଲାଦିନେ ମୋ ନିଜ ସାଆନ୍ତ ମା ମୋତେ ଏହି ଘଟଣା କହିଥିଲେ । ସାଆନ୍ତ ମା ନିଜେ ସେହି ଦୃଶ୍ୟ ଦେଖିଥିଲେ । କୌଣସି ବ୍ୟକ୍ତିର ହାତଲେଖାରୁ ଆମ୍ଭେମାନେ କେବଳ ଅକ୍ଷର ଦେଖୁଁ ନାହିଁ, ସେହି ବ୍ୟକ୍ତିର ମାନସିକ ଅବସ୍ଥା ମଧ୍ୟ ଦେଖୁଁ । ତାଙ୍କ ଜୀବନ୍ତ ବର୍ଣ୍ଣନାର ପୂର୍ଣ୍ଣ ସ୍ମୃତି ଅଦ୍ୟାପି ମୋର ମନେ ଅଛି । ସତୀଙ୍କର ସ୍ୱାମୀ ଗୃହ ଦିନ ଯାଏ ବେମାର ଥିଲେ । ସେ ଖାଇବାକୁ ମନା କଲେ । ସେ ଭାବିଲେ ଯେ ତାଙ୍କ ସମ୍ପର୍କୀୟଙ୍କ ଠାରୁ ତାଙ୍କର ଶେଷ ଡାକରା ଆସିଗଲା । ତାଙ୍କ ସ୍ତ୍ରୀ (ସତୀ) ସେହି ରୋଗଶଯ୍ୟାରେ ତାଙ୍କର ସେବା କରୁଥିଲେ । ସେ ମଧ୍ୟ କିଛି ଖାଉ ନ ଥିଲେ । ସେ ସକାଳୁ ମରିଗଲେ । ସେ ମରିଯିବା ପରେ ଚିତା ସଜାଡ଼ିବାକୁ ତାଙ୍କ ସ୍ତ୍ରୀ ବରାଦ ଦେଲେ । ତାଙ୍କ ଆଖିରୁ ବୁନ୍ଦାଏ ଲୁହ ମଧ୍ୟ ବୋହି ନ ଥିଲା । ବିବାହ ପୂର୍ବେ ଯୁବତୀ ଯେପରି ବେଶ ଭୂଷା ହୁଏ, ସେ ନିଜକୁ ସେହିପରି ସଜାଇଲେ । ସେ ମୋ ସାଆନ୍ତ ମାଆଙ୍କୁ ଦୁଇ ମାଳ ଫୁଲ ଗୁନ୍ଥିବାକୁ ବରାଦ ଦେଇଥିଲେ ଏବଂ ତାଙ୍କ ଆଦେଶ ଅନୁସାରେ ମୋ ମା ତାଙ୍କ ବେକରେ ଗୋଟିଏ ମାଳ ପିନ୍ଧାଇ ଦେଲେ । ଏହି ସମୟରେ ସେ ମୋ ମାଆଙ୍କୁ ଘରର ଘରଣୀ ପଦରେ ଅଭିଷିକ୍ତ କରି କେତେକ ଉପଦେଶ ଦେଲେ । ଅନ୍ୟ ଫୁଲ ମାଳକ ସେ ନିଜେ ହାତରେ ଧଇଲେ । ଭାଇ, କୁଟୁମ୍ବ ସମସ୍ତେ ଚିତା ପାଖକୁ ଗଲେ । ଗାଁର ଅନ୍ୟାନ୍ୟ ଲୋକେ ମଧ୍ୟ ସେଠାରେ ରୁଣ୍ଡ ହୋଇଥିଲେ । ସମସ୍ତେ ପୁଣ୍ୟମୟ ନୀରବତା ମଧ୍ୟରେ ଛିଡ଼ା ହୋଇ ରହିଲେ । ସେଠାରେ ସଙ୍ଗୀତ, ଜୟଧ୍ୱନି କିମ୍ବା କ୍ରନ୍ଦନ ପ୍ରଭୃତିର କୌଣସି ରୋଳ ନ ଥିଲା । ଚିତାରେ କାଠ ଦିଆ ହୋଇ ଧଜା ହେଲା । ବିଶେଷ ଭାବରେ ଚନ୍ଦନ କାଠରେ ଜୁଇ ସଜା ହେଲା ଏବଂ ତହିଁରେ ଘିଅ ପ୍ରଚୁର

ପରିମାଣରେ ତଳା ହେଲା । ଚିତା ଉପରେ ମୃତଦେହକୁ ରଖାଗଲା । 'ସତୀ' ଚିତା ଚାରିପାଖ ତିନିଥର ବୁଲି ଆସି ପ୍ରଣାମ କଲେ ଏବଂ ଚିତା ଉପରକୁ ଯାଇ ଫୁଲ ମାଳଟି ତାଙ୍କ ସ୍ୱାମୀଙ୍କ ଗଳାରେ ପିନ୍ଧାଇ ଦେଲେ । ସେ ତାଙ୍କ ସ୍ୱାମୀଙ୍କ ପାଦ ପାଖରେ ହାତଯୋଡ଼ି ବସି ରହିଲେ ଏବଂ ଚିତାରେ ନିଆଁ ଲଗାଇବା ପାଇଁ ଆଦେଶ ଦେଲେ ।

ପଲକ ମାତ୍ରକେ ଚିତା ଧୂ ଧୂ ହୋଇ ଜଳି ଉଠିଲା । ଅଗ୍ନିଶିଖା ଉପରକୁ ଉଠିଲା । ସୁବାସିତ ଧୂମଶିଖା ସ୍ୱର୍ଗଗାମୀ ସ୍ୱାମୀଙ୍କ ଆତ୍ମାକୁ ସତୀଙ୍କ ଆତ୍ମା ସଙ୍ଗେ ମିଶାଇ ସ୍ୱର୍ଗପୁରକୁ ବହି ନେଇଗଲା ।

"ସେ ଦୃଶ୍ୟ ଅମର କଲେବରରେ ଦୁଇଟି ବ୍ୟକ୍ତିର ଆତ୍ମାର ବିବାହ ବନ୍ଧନର ପ୍ରତୀକ ସ୍ୱରୂପ । ଯେଉଁ ଅଗ୍ନି ଦମ୍ପତିଙ୍କର ମର କଲେବରକୁ ଦଗ୍ଧ କଲା ତାହା ଦର୍ଶକମଣ୍ଡଳୀଙ୍କ ଅନ୍ତରରେ ଏକ ଅଗ୍ନି ପ୍ରଜ୍ୱଳିତ କଲା ।"

ମଧୁସୂଦନ ପରକାଳରେ ଏକ ସତୀଚିତ୍ର ତାଙ୍କ ଶୟନ-କକ୍ଷରେ ରଖିଥିଲେ । ତାହା ସେ ବଙ୍ଗ ଗଭର୍ଣ୍ଣର ସାର୍ ଜନ୍ ଉଡ଼ବର୍ଣ୍ଣଙ୍କ ଠାରୁ ଉପହାର ପାଇଥିଲେ ।

ମଧୁସୂଦନଙ୍କ ପିତା ଚୌଧୁରୀ ରଘୁନାଥ ଦାସ ସେ କାଳର ଜଣେ ଓକିଲ ଥିଲେ । ମଧୁସୂଦନଙ୍କ ବୋଉଙ୍କ ନାମ ପାର୍ବତୀ ଦେଈ । ମଧୁସୂଦନ ଜନ୍ମ ହେଲା ବେଳକୁ ବଂଶର ପୂର୍ବ ବୈଭବ ନ ଥିଲା । କିନ୍ତୁ ବଂଶଗତ ମର୍ଯ୍ୟାଦା ଅକ୍ଷୁଣ୍ଣ ରହିଥିଲା । କାରଣ ଏହି ପ୍ରାଚୀନ ପରିବାର ଅନେକ ମଠକୁ ଭୂମି ଦାନ କରିଥିଲେ, ଅନେକ ମନ୍ଦିର ତୋଳାଇଥିଲେ; ତେଣୁ ସେ ଅଞ୍ଚଳରେ ସେହି କରଣ ପରିବାରକୁ ଜମିଦାର ବଂଶ ବୋଲି ସମସ୍ତେ ଯଥେଷ୍ଟ ସମ୍ମାନ ଦେଖାଉଥିଲେ ।

ଯେପରି ଅନ୍ୟ ବଡ଼ ଲୋକଙ୍କ ସମ୍ବନ୍ଧରେ ନାନା କିମ୍ବଦନ୍ତୀ ଶୁଣାଯାଏ, ମଧୁସୂଦନଙ୍କ ସମ୍ବନ୍ଧରେ ମଧ୍ୟ ସେହିପରି ଶୁଣାଯାଏ । କଂସା କବାଟ, ଜନ୍ମ ପରେ ଶିଶୁ ଶୋଇଥିବା ବେଳେ ଗୋଖର ସାପ ଶିଶୁର ମୁଣ୍ଡ ଉପରେ ଫଣା ବିସ୍ତାର କରି ଖେଳିବା ଗପ ତହିଁରୁ ପ୍ରଧାନ ।

ମନୁଷ୍ୟ ନିଜ ଅଧ୍ୟବସାୟ ବଳରେ ବଡ଼ ହୋଇ ପାରେ । ଅବଶ୍ୟ ତହିଁରେ ବଂଶଗତ ପ୍ରଭାବ ଥାଏ । ମଧୁସୂଦନଙ୍କ ପୂର୍ବ ପୁରୁଷଙ୍କର ଅନେକ ଘୋଡ଼ା ଥିଲେ ବୋଲି ଶୁଣାଯାଏ । ଏପରିକି ମଧୁସୂଦନ ଜନ୍ମ ହେଲା ବେଳକୁ ମଧ୍ୟ ତାଙ୍କ ଅସ୍ତାବଲରେ ଅନେକ ଘୋଡ଼ା ଥିଲେ । ମଧୁସୂଦନ ତାଙ୍କ ବଂଶର ପୂର୍ବ ବିଭବ ପୁରା ମାତ୍ରାରେ ନିଜ ଚକ୍ଷୁରେ ଦେଖି ନ ଥିଲେହେଁ ସାଆନ୍ତ ମା ସେ ପୂର୍ବ ବିଭବର ଅନେକ କଥା ତାହାଙ୍କୁ ପିଲାବେଳେ କହିଥିଲେ । ଶିଶୁ

ଅବସ୍ଥାରୁ ଯେ ମଧୁସୂଦନ ସମ୍ପଦ-ସ୍ୱପ୍ନରେ ଭାସମାନ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ ।

ମଧୁସୂଦନଙ୍କ ଜନ୍ମପତ୍ରିକା ବା ଜାତକ ଖଣ୍ଡିଏ ତାଙ୍କ କଟକ କୋଠିରୁ ମିଳିଥିଲା । ତାହାର କେତେକାଂଶର ନକଲ ଏଠାରେ ଦିଆଗଲା :—

"ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ରାଜ୍ୟେ ଶୁଭରାଜ୍ୟେ ୩୮ ଅଙ୍କ ମେଷ ୧ ଦିନ ସନ ୧୨୫୫ ସାଲ ଜ୍ୟେଷ୍ଠ ମାସ କୃଷ୍ଣ ପକ୍ଷେ ଅଦ୍ୟ ଏକାଦଶୀ ତିଥୌ ଭୌମ ବାସରେ ଏ ଦିନ ବେଳ ଦ ୨୮।୧୦ ଲିତା ସମୟେ ତୁଲଲଗ୍ନ ଆଦ୍ୟ ପାଦରେ ଶ୍ରୀ ଚଉଧୁରୀ ଉପାଧି ରଘୁନାଥ ଦାସଙ୍କର ସ୍ୱପତ୍ନ୍ୟୋଦରେ ଦ୍ୱିତୀୟ ଗର୍ଭକୁ କୁଳୋଦ୍ଭବ ପୁତ୍ର ଜନ୍ମ । ସ୍ୱରାଶି ରେବତୀ (୨୭।୧୨) ମୀନ । ଜାତରେ ଦେବତାଗଣ, ରାଶିନାମ ଦୟାନିଧି, ଦାମୋଦର, ଦୈତ୍ୟାରି, ଶ୍ରଦ୍ଧା ନାମ ଗୋବିନ୍ଦ । ଅଥ ରାଶି ଲକ୍ଷଣ—ଦେହ ଗୌରବର୍ଣ୍ଣ, ଅକ୍ଷର ବକ୍ତା, ଏକ ଭାର୍ଯ୍ୟା ବିନାଶ, ଦ୍ୱିତୀୟ ଭାର୍ଯ୍ୟା ପ୍ରବନ୍ଧ । ଆଉ ପ୍ରଥମ ଭାର୍ଯ୍ୟା ପୁତ୍ରରେ କଷ୍ଟି × × ଗଳ କପୋଲେ, ଦେବତା— ବ୍ରାହ୍ମଣରେ ଶ୍ରଦ୍ଧା, ଗୀତ ବୀଣା-ବାଦ୍ୟରେ ଶ୍ରଦ୍ଧା, ଯଶ × × × ।"

୩
୧୧ ୫।୫୧
୨୭ ୨।୮
୧୨।୭୦
୧୨୩।୪୦
୪୨୫।୫
୨୮୧।୫
ଦ୍ୱ ୩୧
୧୫।୩୫

| | | |
|---|---|---|
| ଶୁ ବୁ | ର ରୁ | ଚ କେ ମ, ଶ |
| | ୨୭ / ୧୨ | |
| ରା | ଲ | |

## ବର୍ଷ ପତାକୀ

| | | |
|---|---|---|
| ଚ | ର | ଶୁ କେ |
| ମ | ୨୭ | ଚନ୍ଦ୍ର |
| ବୁ | ଶ୍ନ | ବୃ |

## ଗୁରୁ କୁଣ୍ଡଳୀ

| | | | | | | | | | | |
|---|---|---|---|---|---|---|---|---|---|---|
| ର | ମ | ୦ | ୦ | ଶ୍ନ | | ଚ / ର | | ମ | ଚ | ଘ |
| ମ | ବୁ | ବୃ | ଶୁ | ଘ | | ବୁ | | ବୃ | ଶୁ | ଶ୍ନ |
| କ୍ରେ | ୦ | ୦ | ୦ | ୦ | | କ୍ରେ | | କ୍ରେ | ଗ,କ୍ରେ | କ୍ରେ |

ମଧୁସୂଦନ ଜନ୍ମ ହେବା ପରେ ତାଙ୍କ ପିତାଙ୍କର ଆଉ ଦୁଇଟି ସନ୍ତାନ ଜାତ ହୋଇଥିଲେ । ଗୋଟିଏ ଝିଅ, ଅନ୍ୟଟି ପୁଅ । ମଧୁସୂଦନଙ୍କ ଉପର ଭଉଣୀଙ୍କ ନାମ କୁମୁଦ ଦେଈ, ସାନ ଭଉଣୀଙ୍କ ନାମ ଦୁର୍ଗା ଦେଈ ଓ ସାନ ଭାଇଙ୍କ ନାମ ଗୋପାଳବଲ୍ଲଭ ଦାସ । ଗୋପାଳବଲ୍ଲଭ ଏମ୍. ଏ. ପାସ କରିଥିଲେ ଏବଂ ଡେପୁଟି କଲେକ୍ଟର ହୋଇଥିଲେ । ସେ 'କବିତା ମଞ୍ଜରୀ', 'ଭୀମା ଭୂୟାଁ' ପ୍ରଭୃତି ପୁସ୍ତକର ରଚୟିତା । ଉତ୍କଳପ୍ରସିଦ୍ଧା ନାରୀ ନେତ୍ରୀ ଶ୍ରୀଯୁକ୍ତା ରମା ଦେବୀ ଏହାଙ୍କର କନ୍ୟା ।

ଶୈଶବ କାଳରେ ମଧୁସୂଦନ ତାହାଙ୍କ ସାଆନ୍ତ ମାଆଙ୍କ ଯତ୍ନରେ ପ୍ରତିପାଳିତ ହୋଇଥିଲେ । ବୁଢ଼ୀମା ଶିଶୁ ମଧୁସୂଦନଙ୍କୁ ବିଶେଷ ସ୍ନେହ କରୁଥିଲେ ଏବଂ ସର୍ବଦା ପଣତ କାନିରେ ଘୋଡ଼ାଇ ରଖିଲା ପରି ଘେନି ବୁଲୁଥିଲେ । ବୁଢ଼ୀ

ଅନେକ ବର୍ଷ ଯାଏ ବଞ୍ଚିଥିଲେ । ମଧୁସୂଦନ ଏହି ସାଆନ୍ତ ମାଆଙ୍କ ଠାରୁହିଁ 'ସତୀଗପ' ଶୁଣିଥିଲେ । ସେ ତାହାଙ୍କ ଉପରେ ସତୀଭକ୍ତିର ପରିଚୟ ଓ ତାହାର ପ୍ରେରଣା ପ୍ରବନ୍ଧରେ ଲେଖି ଅଛନ୍ତି:—

"ମୁଁ ପିଲାବେଳେ ଏହି ସତୀଗପ ବୁଢ଼ୀମାଙ୍କ ଠାରୁ ପ୍ରାୟ ପଚାଶ ଥର ଶୁଣିଥିବି ।

ଯେତେବେଳେ ସେ ସେହି ଘଟଣାର କୌଣସି ବିଶେଷ ବିବରଣ କହନ୍ତି, ସେ ମୋତେ ତାଙ୍କ ବୁକୁ ଭିତରେ ଭିଡ଼ି ଧରନ୍ତି ଏବଂ ତାଙ୍କ ଚକ୍ଷୁରୁ ଧାର ଧାର ହୋଇ ଲୁହ ବୋହି ଯାଉଥାଏ । ତାହା ଆନନ୍ଦର ଅଶ୍ରୁ । ସେ ତାଙ୍କ ଶାଶୁଙ୍କ ପାଇଁ ଗର୍ବ କରୁଥିଲେ । ସେହି ବର୍ଣ୍ଣନାରେ ମୋର କଳ୍ପନା କନକମୟ ହୋଇ ଉଠୁଥିଲା । ମୁଁ ଯେତେବେଳେ ସେହି କଥା ତାଙ୍କଠାରୁ ଶୁଣୁଥିଲି, ମୋର କଳ୍ପନା ଅଗ୍ନିମୟ ହୋଇ ଉଠୁଥିଲା । ସେହି ଭାବ ମୋ ପ୍ରାଣରେ ଛପି ହୋଇ ଯାଉଥିଲା ଏବଂ ମୋର ପ୍ରତ୍ୟେକ ଶିରା ସେ ଭାବକୁ ମୋର ସର୍ବାଙ୍ଗରେ ଖେଳାଇ ଦେଉଥିଲା । ପରିଣାମରେ ମୋ ମନରେ ଜାଗ୍ରତ ହେଲା ଯେ ସତୀଙ୍କ ରକ୍ତ ମୋ ଶିରା ପ୍ରଶିରାରେ ଏବଂ ପ୍ରତି ଧମନୀରେ ବହୁଅଛି ।

ମଧୁସୂଦନଙ୍କ ଶୈଶବ ଗଢ଼ା ହେଲା ସେହି ଅପୂର୍ବ ନାରୀଙ୍କ ଯତ୍ନରେ, ଯେ ଶିଶୁକୁ ଶୋଇବା ଶେଯରେ ବଂଶର ଅତୀତ ଗୌରବକାହାଣୀମାନ କହୁଥିଲେ । ଶିଶୁକୁ ଗଢ଼ିବାର ପ୍ରକୃତ ଭାର ନାରୀମାନଙ୍କ ଉପରେ । ଶିଶୁର ଭବିଷ୍ୟତ୍ ନାରୀହିଁ ଗଢ଼େ; ତେଣୁ ମଧୁସୂଦନଙ୍କ ସାଆନ୍ତମାଆ ଶିଶୁ ଅନ୍ତରରେ ଭବିଷ୍ୟତ୍ ପାଇଁ ଏକ ଉଚ୍ଚ ଆଦର୍ଶର ବୀଜ ରୋପଣ କରିଦେଲେ । ବୁଢ଼ୀ ୧୦୪ ବର୍ଷ ଯାଏ ବଞ୍ଚିଥିଲେ । ଏହାଙ୍କର ମୁଗଡାଲି ଚିହ୍ନିବାରେ ବିଶେଷ ପଟୁତା ଥିଲା । ମଧୁସୂଦନ ପରକାଳରେ ଏହି କଥା ଅନେକ ସ୍ଥାନରେ କହିଥିଲେ ।

ମଧୁସୂଦନଙ୍କ ମାଆ ମଧ୍ୟ ଜଣେ ଉଦାରହୃଦୟା ନାରୀ ଥିଲେ । ସେ ଜଣେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କଠାରେ ଗର୍ବ ଆଦୌ ଦେଖାଯାଉ ନ ଥିଲା । ପାର୍ବତୀ ଦେବୀ ଦେଖିବାକୁ ସୁନ୍ଦର ଗଣ୍ଡି । ଆଧୁନିକ ଶିକ୍ଷାରେ ଶିକ୍ଷିତା ନ ହେଲେ ମଧ୍ୟ, ସେ ବୁଦ୍ଧିମତୀ ଓ ସୁଗୃହିଣୀ ଥିଲେ । ଭାରତରେ ହିନ୍ଦୁନାରୀର ଘର ଚଳାଇବା ଶିକ୍ଷା ଘରେ ଭଲଭାବରେ ହୋଇଥାଏ; ତେଣୁ ହିନ୍ଦୁନାରୀ ଘରଣୀ ହେବା ବିଷୟରେ ପୂର୍ଣ୍ଣ ଶିକ୍ଷିତା ହୋଇଥାଏ । ପାର୍ବତୀ ଦେବୀ ସାଧାରଣ ହିନ୍ଦୁନାରୀ ଭଳି ଗୃହକର୍ମରେ ସୁଶିକ୍ଷିତା ଓ ଦୟାବତୀ ଥିଲେ । ପରଦୁଃଖ ଦେଖିଲେ ସେ ସହି ପାରୁ ନ ଥିଲେ । ସବୁ ସମୟରେ

ସେ ଗ୍ରାମର ଦୁଃଖୀମାନଙ୍କର ଆଶ୍ରୟଦାତ୍ରୀ ଥିଲେ । ପରକାଳରେ ମଧୁସୂଦନ ଓକାଲତି କରି ଯେଉଁ ଟଙ୍କା ତାହାଙ୍କ ମାଆଙ୍କୁ ଦେଉଥିଲେ, ପାବଂତୀ ଦେବୀ ଦୁଃଖୀ ରଙ୍କୀଙ୍କୁ ତାହା ବାଣ୍ଟି ଦେଉଥିଲେ । ମଧୁସୂଦନ ତାଙ୍କ ମାଆଙ୍କ ଠାରୁ ଗୋଟିଏ ପ୍ରଧାନ ଗୀତ ଶିଖିଥିଲେ । ସେହିଟି ହେଉଛି " ଆଲୋ ସଖି ! ଆପଣା ମହତ ଆପେ ରଖି । "

ନିଜ ମାତାଙ୍କର ଏହି ଉକ୍ତିଟି ମଧୁସୂଦନଙ୍କ ଉପରେ ବଡ଼ ପ୍ରଭାବ ପକାଇଥିଲା । ଆମ୍ଭେମାନେ ତାହା ପରବର୍ତ୍ତୀ ଜୀବନରେ ଦେଖିବା । ମାତା ତାଙ୍କୁ ଆଉ ଗୋଟିଏ ଉପଦେଶ ଦେଇଥିଲେ । ସମସ୍ତଙ୍କ ପଛରେ ରହି ନିଜ କାର୍ଯ୍ୟ କରିଯିବା ଆଦର୍ଶ ମଧୁସୂଦନ ନିଜ ମାଆଙ୍କ ଠାରୁ ଶିକ୍ଷା କରିଥିଲେ ।

ମଧୁସୂଦନ ପରବର୍ତ୍ତୀ ଜୀବନରେ ଖଣ୍ଡିଏ ଇଂରାଜୀ ଚିଠିରେ ଏହା ଲେଖିଥିଲେ—"ଅତି ବାଲ୍ୟକାଳରୁ ମୋର ସ୍ନେହମୟୀ ମାଆ ମୋତେ ଶିଖାଇଥିଲେ ଯେ, ଉଚ୍ଚପଦସ୍ଥ ଲୋକଙ୍କ ସହିତ କେବଳ ମିଶି ସମ୍ମାନ ପାଇବାକୁ ଚେଷ୍ଟା କରିବ ନାହିଁ । ଗୋଲାପ ଗଛ ପାଖର ଘାସ ଗୋଲାପ ଫୁଲର ସୁବାସ କିମ୍ବା ରଙ୍ଗ ପାଏ ନାହିଁ ।"

# ତୃତୀୟ ଅଧ୍ୟାୟ

## ଶୈଶବ

ପ୍ରଥମେ ଶିଶୁ ମଧୁସୂଦନଙ୍କର ଶିକ୍ଷା ଗ୍ରାମ ଅବଧାନଙ୍କ ପାଖରେ ଆରମ୍ଭ ହୋଇଥିଲା । ମଧୁସୂଦନଙ୍କ ବାପା ଜଣେ ଅବଧାନଙ୍କୁ ଘରେ ରଖାଇ ପୁଅର ଶିକ୍ଷାଭାର ତାଙ୍କ ହାତରେ ସମର୍ପି ଦେଇଥିଲେ । ପ୍ରଥମେ ମଧୁସୂଦନ ଓଡ଼ିଆ ଅକ୍ଷର ଚିହ୍ନିବା, ପଢ଼ିବା ଓ ଅଙ୍କ ପ୍ରଭୃତି କହିବାରେ ମନୋନିବେଶ କରିଥିଲେ । ଅବଧାନ ତାଙ୍କ ଘରେ ଥିଲେ ଏବଂ ମାସକୁ ସାତ ଟଙ୍କା ଦରମା ନେଉଥିଲେ ।

ମଧୁସୂଦନ ନିଜ ଲିଖିତ ଅସମ୍ପୂର୍ଣ୍ଣ 'ଆତ୍ମଜୀବନୀ' ରେ ସେହି ସମୟର ଚାଟଶାଳୀର ଏକ ସୁନ୍ଦର ଚିତ୍ର ଦେଇଅଛନ୍ତି । ମଧୁସୂଦନଙ୍କ ଚାଟଶାଳୀର ଛବି କ୍ରମେ ଉତ୍କଳରୁ ଲୁପ୍ତ ଯାଉଅଛି; ତେଣୁ ସେ ଛବିର ଗୋଟିଏ ଚିତ୍ର ତଳେ ତାଙ୍କ ଆତ୍ମଜୀବନୀରୁ ଉଦ୍ଧାର କରାଗଲା ।

"ମୋର ପ୍ରାଥମିକ ଶିକ୍ଷାଭାର ଓଡ଼ିଆ ଲେଖି ପଢ଼ି ଜାଣିଥିବା ଜଣେ ଅବଧାନଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେ ମଧ୍ୟ ଅଙ୍କଶାସ୍ତ୍ର ଜାଣିଥିଲେ । ତାଙ୍କୁ ଖାଇବାକୁ ପିନ୍ଧିବାକୁ ଦେବା ଛଡ଼ା ମାସିକ ସାତ ଟଙ୍କା ବେତନ ଦିଆଯାଉଥିଲା । ପଢ଼ିବା ଘର ଆମ ନିଜ ଘରର ଗୋଟିଏ ଅଂଶ । ଘରର ଚଟାଣ ଓ କାନ୍ଥ ମାଟିରେ ତିଆରି । ଇଟା କିମ୍ବା ପଥରତିଆରି ଚଟାଣ ପଢ଼ା ଘର ପାଇଁ ଉପଯୁକ୍ତ ବିବେଚିତ ହେଉ ନ ଥିଲା । ସେ ସମୟର ଶିକ୍ଷାପ୍ରଣାଳୀ ପାଇଁ ପକ୍କା ଘର ଚଟାଣ ସୁବିଧାଜନକ ନ ଥିଲା । ଖଡ଼ିରେ ମାଟି ଚଟାଣରେ ଲେଖି ଚାଟଶାଳୀରେ ପଢ଼ିବାକୁ ହେଉଥିଲା । ଅକ୍ଷରଗୁଡ଼ାକ ମାଟି ଉପରେ ଅବଧାନେ ଲେଖି ଦେଉଥିଲେ । ଚାଟ ସେଗୁଡ଼ିକ ବଡ଼ ପାଟିରେ ଡାକି ମଡ଼ାଉଥିଲେ । ମାଟି କାନ୍ଥ ଅବଧାନଙ୍କ ହିସାବ ଓ ଅନ୍ୟାନ୍ୟ ଘଟଣା ଟିପା ପାଇଁ ବ୍ୟବହୃତ ହେଉଥିଲା । ମାଟି କାନ୍ଥରେ ମଧ୍ୟ ମନୁଷ୍ୟ, ପଶୁ ଓ ଅନ୍ୟାନ୍ୟ ଦୃଶ୍ୟର ଛବି ଅଙ୍କା ଯାଉଥିଲା । ଅନେକ ସମୟରେ ଏହି ଚିତ୍ରଗୁଡ଼ିକ ଖୁବ୍ ସୁନ୍ଦର ଦେଖା ଯାଉଥିଲା । ଗେରୁମାଟି (ଡାଉ) ରେ ପାଣି ଗୋଳି ଆଙ୍ଗୁଠିକି ତୁଳି କରି ଚିତ୍ର ଅଙ୍କା ଯାଉଥିଲା । ଏହି ସମସ୍ତ ଛବି ଦେଖିଲେ ଅନେକ ସମୟରେ ଅନେକଙ୍କର ଏଥିରୁ ଛବି ଆଙ୍କିବାର ପ୍ରୀତି ବା କଳାପ୍ରୀତି ଥିବା ଭାବ ପରିସ୍ଫୁଟ ହେଉଥିଲା ।"*

* "କାନ୍ଥ ରଙ୍ଗ ଚିତ୍ର ଆଜକାଲିର ରୁଚି ଅନୁକୂଳ ନୁହେଁ । କିନ୍ତୁ ଭର୍ସେଲିସ ପ୍ରାସାଦରେ ଏସବୁ ଚିତ୍ର ଅନେକେ ଦେଖି ପାଇବେ । ନେପୋଲିୟନ ସେଠାରେ ତାଙ୍କ ଇଚ୍ଛା ଆକାଙ୍କ୍ଷାନୁ-

"ପିଲାଙ୍କୁ ଚଟ୍ଟାଳୀରେ ଠେର ହୋଇ ବସିବାକୁ ପଡ଼ୁଥିଲା । ଦେହର ସମସ୍ତ ଭାର ପାଦ ଉପରେ ପଡ଼ୁଥିଲା । ପିଲାଙ୍କୁ ବସିବାକୁ କୌଣସି ଆସନ ଦିଆଯାଉ ନ ଥିଲା । କାରଣ ଅକ୍ଷର ଲେଖା ହୋଇଥିବା ସମସ୍ତ ଅଂଶ ତାକୁ ବସି ବସି ଯିବାକୁ ପଡ଼ିବ । ଏହା ଦେହର ତଳ ଅଂଶ ପ୍ରତି ଗୋଟିଏ ବଡ଼ ଭଲ ବ୍ୟାୟାମ ।"

" ଅବଧାନଙ୍କ ବସିବା ପାଇଁ ଗୋଟିଏ ନଡ଼ିଆ ପତ୍ରରେ ବୁଣା ଛଟା ଦିଆଯାଉଥିଲା । ସେ ସେହି ଛଟାରେ ବସୁଥିଲେ । ଭୂମିରେ ଅକ୍ଷର ମଡ଼ାଇ ଶିଖିବା ପରେ ପିଲାଏ ତାଳପତ୍ରରେ ଲେଖି ଶିଖୁଥିଲେ । ଉତ୍କଳରେ ତାଳପତ୍ର ଓ ଲେଖନୀ ହିଁ ଲେଖିବାର ଉପକରଣ ଥିଲା । ପରେ କାଗଜ, କଲମ ଏବଂ କାଳି ବ୍ୟବହୃତ ହେଲେ ମଧ୍ୟ ସେଗୁଡ଼ିକ ଲେଖନ, ତାଳପତ୍ରକୁ ସମ୍ପୂର୍ଣ୍ଣରୂପେ ତଡ଼ି ଦେଇ ପାରି ନାହିଁ । ବର୍ତ୍ତମାନ ସୁଦ୍ଧା ଗ୍ରାମମାନଙ୍କରେ ଲେଖନ, ତାଳପତ୍ର ନିହାତି ଦରକାର । ଜଗନ୍ନାଥ ଦେଉଳରେ ପାଞ୍ଜି ଲେଖିବାରେ, ଜାତକ, ବିବାହ ନିମନ୍ତ୍ରଣ ଏବଂ କେତେକ ପର୍ବ ପର୍ବାଣିରେ ଏହା ବ୍ୟବହୃତ ହୁଏ । ଲେଖନ ଧାରରେ ତାଳପତ୍ର କଟାଯାଏ । ଲେଖନର ମୁନିଆ ମୁନରେ ତାଳ ପତ୍ରରେ ଲେଖାଯାଏ ।"

ମଧୁସୂଦନ ପିଲାଦିନେ ବଡ଼ ମେଧାବୀ, ତର୍କପ୍ରିୟ ଓ ଚପଳ ଥିଲେ । ସାଧାରଣ ପିଲାଙ୍କ ଭଳି ସେ ଗାଁରେ ଏଣେ ତେଣେ ବୁଲୁଥିଲେ । ସେ ସାମାନ୍ୟ କଥା ଘେନି ଖୁବ ତର୍କ କରୁଥିଲେ । ବାଲ୍ୟଚପଳତା ସହିତ ରହସ୍ୟପ୍ରିୟ ବୁଦ୍ଧି ମଧ୍ୟ ତାଙ୍କର ଯଥେଷ୍ଟ ଥିଲା । ଦିନେ ଅବଧାନେ ଚୂଲାଉ ଥିଲେ । ମଧୁସୂଦନ ଅତି ଗୋପନରେ ପଟେ ମରହଟ୍ଟୀ ଜୋତା ତାଙ୍କ ଗୋଡ଼ତଳୁ କାଢ଼ି ନେଇ ଲୁଚାଇ ଦେଲେ । ଅବଧାନଙ୍କ ଚୂଲ ଭାଙ୍ଗି ଯିବାରୁ ସେ ଜୋତା ପଟକ ଖୋଜିଲେ । ମଧୁସୂଦନ ତାହା ଦେଖି କହିଲେ, "ଆପଣ ବୋଧହୁଏ ପଟେ ଜୋତା ମାତ୍ର ଚଟ୍ଟାଳୀକୁ ଆସିଥିଲେ !"

ଦିନେ ରାତିରେ ମଧୁସୂଦନ କୌଣସି କାରଣରୁ ରାଗି 'ଖାଇବେ ନାହିଁ' ବୋଲି ତାଙ୍କ ମାଆଙ୍କୁ ମନା କଲେ । ମାଆ ପୁଅର କଥା ଶୁଣି ତାକୁ

---

ଜୀବନର ଅନ୍ତ ପର୍ଯ୍ୟନ୍ତ ଓ ଅନନ୍ୟମନସ୍କ ସମସ୍ତ କରୁଥିଲେ । କିନ୍ତୁ କୌଣସି ଉଦ୍ଦେଶ୍ୟକୁ ତାହାଙ୍କ ଅଫିସ ଘରେ କାର୍ଯ୍ୟ ବିବରଣୀ କାନ୍ଥରେ ଟିପି ରଖିଲେ ଖୁବ୍ ଭଲ ହେବ । କାରଣ ତାହା ସର୍ବଦା ଆଖି ଆଗରେ ରହିବ । କୌଣସି ଅଧିବକ୍ତା (Advocate)ଙ୍କୁ ଅନେକ ଗୁଡ଼ିଏ କାଗଜ ପତ୍ର ଦେଖି ଅନେକ ଦରଖାସ୍ତ ଘଟଣା ଟିପାଟିପି କରିବାକୁ ପଡ଼ି ପାରେ । ସେ ସବୁ କାଗଜକୁ କାନ୍ଥରେ ମାରି ନିଜର ସମ୍ମୁଖରେ ରଖିଲେ ଖୁବ୍ ଉପକୃତ ହେବେ । ଅରିଷ୍ଟଟଲ ଏବଂ ଟେଟେ ବୁଲି ବୁଲି ଯେପରି ଅନ୍ୟଙ୍କୁ ଶିକ୍ଷା ଦେଉଥିଲେ, ସେହିପରି ମଧ୍ୟ ସେ ନିଜେ ନିଜେ ଶିଖି ପାରନ୍ତି ।

ଆଉ ବାଧ ନ କରି ଶୋଇ ପଡ଼ିଲେ । ରାତିରେ କିନ୍ତୁ ମଧୁସୂଦନଙ୍କୁ ଭାରି ଭୋକ କଲା । ସେ ଭୋକ ସମ୍ଭାଳି ନ ପାରି ମାଆଙ୍କୁ ଉଠାଇଲେ ଏବଂ ଖାଇବାକୁ ମାଗିଲେ । ମାଆ ପାର୍ବତୀ ଦେବୀ କେବଳ ଧୀର ଗମ୍ଭୀର ସ୍ୱରରେ କହିଲେ,“ ତୁ ପରା କହିଚୁ ଆଜି ଖାଇବୁ ନାହିଁ । ତୋ କଥାଟି ତୁ ରଖିବୁ ନାହିଁ ?”

ମଧୁସୂଦନ ତାଙ୍କ ମାଆଙ୍କର କୋମଳ ଅଥଚ କଠୋର ଆଦେଶ ଶୁଣି ତୁନି ହୋଇ ଶୋଇ ପଡ଼ିଲେ ।

ଥରେ ତାଙ୍କ ବାପା ଠାକୁରଙ୍କୁ ଦଣ୍ଡବତ୍ କରିବାକୁ ତାଙ୍କୁ କହିଲେ । କିନ୍ତୁ ବାପା ନିଜେ ଠାକୁରଙ୍କୁ ଦଣ୍ଡବତ ନ କଲେ, ମଧୁସୂଦନ ଦଣ୍ଡବତ କରିବେ ନାହିଁ ବୋଲି ମନା କଲେ । ତାଙ୍କ ବାପା ଦଣ୍ଡବତ କଲାରୁ ସେ ଦଣ୍ଡବତ କଲେ । ମଧୁସୂଦନ ପିଲାଦିନେ ଦୁଷ୍ଟ ଥିଲେ । ଜମିଦାରଘର ପୁଅ ବୋଲି ହୁଏତ ସମସ୍ତେ ତାଙ୍କୁ ସମ୍ମାନ ଓ ଭୟ କରୁଥିଲେ । ଘରେ ମଧୁସୂଦନଙ୍କ ପ୍ରତି ସ୍ନେହର ମାତ୍ରାଟା ମଧ୍ୟ ବେଶୀ ଥିଲା ବୋଲି, ବୋଧ ହୁଏ ସମସ୍ତେ ମଧ୍ୟ ତାଙ୍କୁ ସ୍ନେହଚକ୍ଷୁରେ ଦେଖୁଥିଲେ ।

ମଧୁସୂଦନ ନିଜେ ତାଙ୍କର ଏହି ସମୟର ଜୀବନ ସମ୍ବନ୍ଧରେ ‘ଆତ୍ମଜୀବନୀ’ରେ କେତେକ ଘଟଣା ଲେଖି ଅଛନ୍ତି :—

“ମୁଁ ଗୋଟିଏ ଐତିହାସିକ ବଂଶର ନାମ ରଖିବି ବୋଲି ମୋତେ ସମସ୍ତେ ଗ୍ରହି ରହିଥିଲେ । ଆମ୍ଭ ବଂଶ ଅନେକ ମଠ, ମନ୍ଦିରକୁ ଭୂସମ୍ପତ୍ତି ଦାନ କରିଥିଲେ । ପ୍ରତ୍ୟେକ ବ୍ରାହ୍ମଣ ମୋତେ କଲ୍ୟାଣ କରୁଥିଲେ । କିନ୍ତୁ ସେମାନେ ମୋତେ ଯେଉଁ ଭାଷାରେ ଆଶୀର୍ବାଦ କରୁଥିଲେ, ତାହା ମୁଁ ବୁଝି ପାରୁ ନ ଥିଲି । କିନ୍ତୁ ସାଧାରଣତଃ “ଶହେ ଆଠବର୍ଷ ବଞ୍ଚ” ଏହାହିଁ ସେମାନଙ୍କର କଲ୍ୟାଣ ଥିଲା । ମୁଁ ଅନେକ ବୁଢ଼ା ବୁଢ଼ୀଙ୍କୁ ଦେଖୁଥିଲି, କିନ୍ତୁ ବୃଦ୍ଧାବସ୍ଥା ଜଣା ବୁଝି ପାରି ନ ଥିଲି ।”

“ମୋ ଗାଁ ଗୃହଅଙ୍ଗନର ବେଷ୍ଟନୀରେ ମୁଁ ଗର୍ବ ଅନୁଭବ କରୁଥିଲି । ଏହାକୁ ଗର୍ବ କହିବ, କି ବଡ଼ିମା କହିବ, ମୁଁ ଜାଣେ ନାହିଁ । ମନୁଷ୍ୟଜୀବନ ଗୋଟିଏ ଅଭିମାନ ଅଭିମାନରୁ ଆରମ୍ଭ ହୁଏ । ପ୍ରତ୍ୟେକ ଶିଶୁ ଯାହା ଦେଖେ, ସେ ତାହାର ମୁଁ ବୋଲି ଭାବେ । ଯଦି କୌଣସି ଭଦ୍ରଲୋକ ଘରକୁ ଗୋଟିଏ ଭଲ ଘଣ୍ଟା ନେଇ ଆସନ୍ତି, ପିଲା ସେ ଘଣ୍ଟାର ମାଲିକ ହେବାକୁ ଚେଷ୍ଟା କରେ । ଯଦି ଏଥିରେ କୌଣସି ବାଧା ଉପୁଯାଏ, ତେବେ ଶିଶୁ ମନରେ ରାଗ ଓ ଘୃଣା

ଜାତ ହୁଏ । କୌଣସି ଚୋର କିମ୍ବା ଡକାୟତ ମାଲିକର ଘଣ୍ଟାଟି ଚୋରି କରିନେଲେ ମାଲିକର ମନ ଯେପରି ହୁଅନ୍ତା, ପିଲାର ମନ ସେପରି ହୁଏ ।"

"ମୋର ଶୈଶବ ଏହି ସାଧାରଣ ମନୁଷ୍ୟ-ଜୀବନବିକାଶ ନିୟମରୁ ଭିନ୍ନ ନ ଥିଲା । ମୋର ଗୁରୁଆଡ଼ର ବେଷ୍ଟଙ୍କ ସଙ୍ଗରେ ଗୋଟିଏ ଭାବ ଜାଗ୍ରତ ହେଉଥିଲା—ଯାହାକୁ ଆତ୍ମବର୍ତ୍ତନା କୁହାଯାଇ ପାରେ ।"

# ଚତୁର୍ଥ ଅଧ୍ୟାୟ

## ଛାତ୍ରାବସ୍ଥା

ମଧୁସୂଦନଙ୍କ ପ୍ରାଥମିକ ଶିକ୍ଷା ଶେଷ ହେବା ପୂର୍ବରୁ ଜଣେ ଗଣେଶଙ୍କ ଜ୍ୟୋତିର୍ବିଦ ତାଙ୍କ ଘରକୁ ଆସିଥିଲେ । ସେ ମଧୁସୂଦନଙ୍କ ଜାତକ ଦେଖିଥିଲେ । ସେ ଶିଶୁ ମଧୁସୂଦନଙ୍କ ଉଜ୍ଜ୍ୱଳ ଭବିଷ୍ୟତ୍ ଜୀବନର ସନ୍ଧାନ ପାଇଥିଲେ ଏବଂ ପୁଅକୁ ଇଂରାଜି ସ୍କୁଲକୁ ପଠାଇବା ପାଇଁ ତାଙ୍କ ବାପାଙ୍କ ପ୍ରବର୍ତ୍ତାଇ ଥିଲେ ।

ଚୌଧୁରୀ ରଘୁନାଥ ଦାସ ଜ୍ୟୋତିଷଙ୍କ କଥା ମାନି ମଧୁସୂଦନଙ୍କୁ କଟକ ଆଣି, ସରକାରୀ ଜିଲ୍ଲା ସ୍କୁଲରେ ତାଙ୍କର ନାମ ଲେଖାଇ ଦେଲେ । ମଧୁସୂଦନ ସେତେବେଳେ କଟକରେ କେଉଁଠି ରହୁଥିଲେ, ଜଣା ନାହିଁ । ସେହି ସମୟରେ କର୍ମକାର ଗୌରୀଶଙ୍କର କେତେଦିନ ପାଇଁ ତାଙ୍କର ଶିକ୍ଷକ ଥିଲେ । ମଧୁସୂଦନ ଏ କଥା ନିଜେ ୧୯୧୮ ମସିହା ଉତ୍କଳ ସମ୍ମିଳନୀରେ ଗୌରୀଶଙ୍କରଙ୍କ ମୃତ୍ୟୁ ସମ୍ପର୍କରେ କହିଥିଲେ—

"ତାଙ୍କ ଠାରୁ ମୁଁ ଗୁରୁ, ପାଞ୍ଚଦିନ ଶିକ୍ଷା କରିଅଛୁ ।" ପରବର୍ତ୍ତୀ କାଳରେ ମଧୁସୂଦନ ଗୌରୀଶଙ୍କରଙ୍କୁ "ମାଷ୍ଟର" ବୋଲି ସମ୍ବୋଧନ କରୁଥିଲେ । ମଧୁସୂଦନ ତାଙ୍କ ଛାତ୍ରଜୀବନର କୌତୁକାବହ ଘଟନାବଳୀ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ବିଶଦରୂପେ ବର୍ଣ୍ଣନା କରି ଯାଇଅଛନ୍ତି । "ଇଂରାଜି ସ୍କୁଲରେ ଭର୍ତ୍ତି ହେବା ପରେ ବଙ୍ଗାଳି ପିଲା ଓ ଶିକ୍ଷକଙ୍କ ସଙ୍ଗେ ଜଣା ଶୁଣା ହେଲା । ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କ ଶାସନକାଳରେ ଓଡ଼ିଶାକୁ ଅନେକ ଗୁଡ଼ିଏ ବଙ୍ଗାଳି ଆସିଥିଲେ । ସେମାନେ ବ୍ରିଟିଶ ଶାସନନୀତି ଭଲରୂପେ ଜାଣିଥିଲେ । ବଙ୍ଗଳା ଅନେକ ଦିନରୁ ବ୍ରିଟିଶ ଶାସନାଧୀନ ଥିଲା । ସେମାନେ ଇଂରାଜୀ ଭାଷା ଜାଣିଥିଲେ ଏବଂ ବ୍ରିଟିଶ ଶାସନର ଆଇନ କାନୁନରେ ଧୁରନ୍ଧର ଥିଲେ । ଓଡ଼ିଶା ଶାସନ ଚଳାଉଥିବା ଅଫିସରମାନଙ୍କର ସେମାନେ ବଡ଼ ସାହାଯ୍ୟକାରୀ ଥିଲେ । ଓଡ଼ିଶାର ଲୋକେ ଶାସନତନ୍ତ୍ରର ଆଇନ କାନୁନ ବିଷୟରେ ପୁରା ଅନଭିଜ୍ଞ ଥିଲେ; ତେଣୁ ବଙ୍ଗାଳିଙ୍କର ଓଡ଼ିଆଙ୍କୁ ଘୃଣାଚକ୍ଷୁରେ ଦେଖିବା ସ୍ୱାଭାବିକ ଥିଲା ।

ଓଡ଼ିଶା ଭାରତର ପବିତ୍ର ଭୂମି । ବଙ୍ଗାଳିମାନଙ୍କ ଦ୍ୱାରା ଗୃହୀତ ବୈଦେଶିକ ଜୀବନଯାପନ ପ୍ରଣାଳୀକୁ ଓଡ଼ିଶାର ଲୋକମାନେ ଗ୍ରହଣ କରିବାକୁ ଅନିଚ୍ଛୁକ ଥିଲେ । ସେମାନଙ୍କର ବେଶ ଭୂଷା, ଭାଷା, ଖାଦ୍ୟ ଏବଂ ଅନ୍ୟାନ୍ୟ ବିଷୟରେ

ପାର୍ଥକ୍ୟ ଯଥେଷ୍ଟ ଥିଲା; ତେଣୁ ମୋ ଉପରେ ସମସ୍ତଙ୍କର ଆଖି ପଡୁଥିଲା । ମୋ ଶ୍ରେଣୀରେ ପଢୁଥିବା ବଙ୍ଗାଳି ବନ୍ଧୁମାନେ ମୋ ଉପରେ ସେମାନଙ୍କ ବ୍ୟଙ୍ଗୋକ୍ତିର ବାଣ ଛାଡୁଥିଲେ । ମୁଁ ଗାଁ ତନ୍ତୀବୁଣା ଲୁଗା ପିନ୍ଧୁଥିଲି । ଇଂରାଜି କୁର୍ତ୍ତା ସେତେବେଳକୁ ଓଡ଼ିଶାରେ ପଶି ନ ଥିଲା । ମୁଁ ମିରଯାଇ ପିନ୍ଧୁଥିଲି । ଥରେ ଭାରତର ବଡ଼ଲାଟ ଅନେକ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କର ଗୋଟିଏ ସମ୍ମିଳନୀ ଡାକିଥିଲେ । ଇଉରୋପରେ ମହାଯୁଦ୍ଧ ଆରମ୍ଭ ପରେ ଏହି ସମ୍ମିଳନୀ ଡକା ଯାଇଥିଲା । ଏହି ସମ୍ମିଳନୀ ଦିଲ୍ଲୀଠାରେ ବସିଥିଲା । ମୁଁ ମହାତ୍ମା ଗାନ୍ଧୀଙ୍କୁ ଦେଖିଥିଲି । ସେ ମିରଯାଇ ଏବଂ ମୋଟା ସ୍ୱଦେଶୀ ଲୁଗା ପିନ୍ଧିଥିଲେ । ତାଙ୍କ ପୋଷାକ ଆମ ଦେଶବାସୀଙ୍କ ଚକ୍ଷୁରେ ସମ୍ମାନକର ଥିଲା । ଆହା ! ମୋ ସ୍କୁଲ ଦିନର ପୋଷାକ ଦେଖି ମୁଁ କି ଖୁସି ହୋଇ ନ ଥିଲି !

କିନ୍ତୁ ଏହି ଦୈନନ୍ଦିନ ଅପମାନ ଓ ପରିହାସ ମୋ ମନରେ ଗୋଟିଏ କ୍ଷମାଭାବ ଆଣି ଦେଇଥିଲା । କ୍ରମେ ମୁଁ ଆଉ ସେଥି ପ୍ରତି ଲକ୍ଷ୍ୟ ଦେଲି ନାହିଁ । ମୋର ଲମ୍ବା ବଡ଼ା ବାଳ ଥିଲା । ତାହା ପଛରେ ଗଣ୍ଠି ପଡୁଥିଲା । ଏହାକୁ ମୋର ବଙ୍ଗାଳି ବନ୍ଧୁମାନେ ବାଳିକାଭାବର ଚିହ୍ନ ବୋଲି ବ୍ୟଙ୍ଗ କରୁଥିଲେ । କାରଣ ସେତେବେଳକୁ ବଙ୍ଗଳାରେ ଛୋଟ ବାଳ ରଖିବା ସାଧାରଣ ଫେସନ ହୋଇଥିଲା । ଦିନେ ଜଣେ ବଙ୍ଗାଳୀ ବନ୍ଧୁ ଗୋଟିଏ କତୁରୀରେ ମୋର ସେହି ଲମ୍ବା ବାଳକୁ କାଟି ପକାଇଲେ । ମୁଁ ଏହାକୁ ଭଲ ଭାବରେ ଗ୍ରହଣ କରିଥିଲି । ମୁଁ ମୋର ବନ୍ଧୁମାନଙ୍କୁ ସେ ବାଳ କେବଳ ରଖିବାକୁ ମାଗିଥିଲି । ମୁଁ କାଳେ କେବେ ବଙ୍ଗାଳି ଝିଅ ବାହା ହେବି, ତେଣୁ ମୋର ପୁରୁଷତ୍ୱର ପରିଚୟ ଦେବାପାଇଁ ସେ ବାଳ କେବଳ ରଖିବାକୁ ଚାହୁଁଥିଲି । ମୋର ଏହି ବ୍ୟବହାରରେ ଟିକିଏ ରାଗ ବି ଥିଲା ।

ଏହି ଘଟନା ପରେ ଜାତୀୟ ବିବାଦ ଶେଷ ସୀମାରେ ପହଞ୍ଚିଥିଲା । ଆମ୍ଭମାନଙ୍କର ପ୍ରଧାନ ଶିକ୍ଷକ ଜଣେ ବଙ୍ଗାଳୀ ଯୁବକ ଥିଲେ । ସେ ଏଣ୍ଟ୍ରାନ୍ସ ବା ମାଟ୍ରିକ୍ୟୁଲେଶନ ପାଶ କରିଥିଲେ । ଏଣ୍ଟ୍ରାନ୍ସରେ ପଢ଼ା ହେଉଥିବା ଇଂରାଜି ବହି ପ୍ରଧାନ ଶିକ୍ଷକ ପଢ଼ାଉଥିଲେ । ସେ ବଙ୍ଗଳାରୁ ନୂତନ ଆମଦାନୀ ହୋଇ ଆସିଥିଲେ । ସେ ଗୋଟିଏ ପ୍ରକାର ଗୋଟିଏ ବାକ୍ୟର ଅର୍ଥ ବୁଝାଉଥିଲେ । ମୁଁ ସେହି ଅର୍ଥକୁ ଭୁଲ ବୋଲି ବିଚାରିଲି ଏବଂ ଏହା ମଧ୍ୟ ମୁଁ ସାହସ କରି ପ୍ରକାଶ କଲି । ଏହା ସ୍ୱାଧୀନତା ଓ ଅବାଧ୍ୟତାର ଉଦାହରଣ ବୋଲି ହେଡ୍ ମାଷ୍ଟର ବିଚାର କଲେ ଏବଂ ଗୋଟିଏ ଓଡ଼ିଆ ବାଳକର ଏପରି ବ୍ୟବହାର ସେହିବା ବଙ୍ଗାଳୀ ଶିକ୍ଷକଙ୍କ ପକ୍ଷରେ ଅସହ୍ୟ ହୋଇ ଉଠିଲା । ମୋ ନାମ ସ୍କୁଲ ରେଜିଷ୍ଟରରୁ କାଟି ଦିଆଗଲା । ମୁଁ ସ୍କୁଲରୁ ବିତାଡ଼ିତ ହେଲି ।

"ଏହା ମୋ ଜୀବନରେ ଏକ ଜଟିଳ ସମସ୍ୟା ହୋଇ ଉଠିଲା । ବିଦ୍ୟାଳୟରୁ ବିତାଡ଼ିତ ହେବାର ତାତ୍ପର୍ଯ୍ୟ ମୁଁ ବେଶ୍ ବୁଝି ପାରିଥିଲି । ଏହା ମୋର ଇଂରାଜୀ ଶିକ୍ଷାରେ ପୂର୍ଣ୍ଣଚ୍ଛେଦ ପକାଇଲା । ଇଂରାଜୀ ଜ୍ଞାନ ବ୍ୟତୀତ ମୋର ଭବିଷ୍ୟତ୍ କେବଳ ଏକ ବିସ୍ତୀର୍ଣ୍ଣ ଶୁଷ୍କ ମରୁଭୂମିରେ ଭ୍ରମଣ କରିବା ହେବ ବୋଲି ଭାବିଲି । ମୋର କେତେଜଣ ଓଡ଼ିଆ ଶୁଭଚିନ୍ତକ ମୋତେ ହେଡ୍ ମାଷ୍ଟରଙ୍କ ଠାରୁ କ୍ଷମା ମାଗିବାକୁ ଉପଦେଶ ଦେଲେ । କିନ୍ତୁ ସେ ପ୍ରସ୍ତାବ ମୋର ବିବେକ କିମ୍ବା ଆତ୍ମସମ୍ମାନ ଜ୍ଞାନକୁ ଭଲ ଲାଗିଲା ନାହିଁ । ମୁଁ ବଡ଼ ବ୍ୟସ୍ତରେ ସେ ରାତିଟି କଟାଇଲି । ତହିଁ ଆରଦିନ ବଡ଼ି ସକାଳୁ ମୁଁ ମିଷ୍ଟର ହଲଙ୍କ ବଙ୍ଗଳାକୁ ଗଲି । ସେ ସ୍କୁଲର ସବୁ ବିଷୟରେ ହର୍ତ୍ତା କର୍ତ୍ତା ବିଧାତା ଥିଲେ । ତାଙ୍କ ପଦବୀ ମୋତେ ଜଣା ନ ଥିଲା । ସେ କଲେକ୍ଟରେଟ କୋଠିରେ କୌଣସି ରାଜକର୍ମ କରୁଥିଲେ । ମୁଁ ସେତେବେଳେ 'ଭାରତୀୟ ସିଭିଲ ସର୍ଭିସ୍' ଥିବା କଥା ଜାଣି ନ ଥିଲି । ଏହି ଘଟଣାର ଅଳ୍ପ ସମୟ ପରେ ମୁଁ ଜାଣିଲି ଯେ, ମିଷ୍ଟର ହଲ ବିଲାତରୁ ଆସିଅଛନ୍ତି ଏବଂ ଅଳ୍ପ କେତେକ ବର୍ଷ ପରେ ଦେଶର ଶାସନ ବିଭାଗର ସବୁଠାରୁ ଉଚ୍ଚ ଅଫିସ ତାଙ୍କ ଦ୍ୱାରା ଗୃହୀତ ହେବ ।

"ପରଦିନ ଅତି ସକାଳୁ ମୁଁ ଓଡ଼ିଶୀ ପୋଷାକ ପିନ୍ଧିସାରି ପିନ୍ଧି ସେହି ସାହେବଙ୍କ ବଙ୍ଗଳାକୁ ଗଲି । ମୁଁ ଗୋଟି ବାରଣ୍ଡାରେ ଟେବୁଲ ଉପରେ ପଡ଼ିଥିବା ଧଳା ଲିନେନ୍‌ରେ ଥୁଆ ହୋଇଥିବା ପିଆଲା, ଥାଳୀ ପ୍ରଭୃତି ଦେଖିଲି । ମୁଁ ସେତେବେଳେ ପୋର୍ସେଲିନ (Porcelain) କଅଣ ଜାଣି ନ ଥିଲି । ସେଠାରେ ଥିବା ପିଅନ ବା ଅର୍ଦ୍ଦଳୀ ଟେବୁଲ ଓ ତାହା ଉପରେ ଥିବା ପଦାର୍ଥର ବ୍ୟବହାର ବିଷୟ ମୋତେ ବୁଝାଇ ଦେଲା ।

"ମୁଁ ସେହି ପିଣ୍ଡାତଳେ ସାହେବଙ୍କ ଆସିବା ପର୍ଯ୍ୟନ୍ତ ଦେଖା କରିବାପାଇଁ ଛିଡ଼ା ହୋଇ ରହିଲି ।"

"ଅବଶେଷରେ ସେହି ଶୁଭମୁହୂର୍ତ୍ତ ଆସିଲା । ସାହେବ ପଦାକୁ ଆସିଲେ । ସେ ଓଡ଼ିଆରେ କଥାବାର୍ତ୍ତା କଲେ । ସେ ମୋତେ "କଅଣ ଚାହଁ" ବୋଲି ପଚାରିଲେ । ମୁଁ ସମସ୍ତ ଘଟଣା ବର୍ଣ୍ଣନା କଲି ଏବଂ ତାହାଙ୍କୁ ପାଠ୍ୟ ପୁସ୍ତକର ସେହି ଅଂଶକୁ ଦେଖାଇଲି । ଯେଉଁ ଅଂଶର ଅର୍ଥ ନେଇ ଏତେ କଥା, ମୁଁ ତାହାର ଅର୍ଥ କପରି ବୁଝିଥିଲି ଓ ହେଡ଼ମାଷ୍ଟର କିପରି ବୁଝାଇଥିଲେ, ଏକଥା ସେ ମୋତେ ପଚାରିଲେ । ମୁଁ ଓଡ଼ିଆ କି ନାଁ ? ମୋର ଜାତି କଅଣ ? ଏକଥା ସେ ମୋତେ ପଚାରି ବୁଝିଥିଲେ । ତହିଁ ଆରଦିନ ଏଗାରଟା ବେଳେ ମୋତେ ସ୍କୁଲକୁ ଯିବାପାଇଁ ସାହେବ ଆଦେଶ ଦେଲେ ।"

"ନିର୍ଦ୍ଦିଷ୍ଟ ସମୟର କିଛି ପୂର୍ବରୁ ମୁଁ ସ୍କୁଲକୁ ଗଲି ଏବଂ ସ୍କୁଲ ହତାର ଫାଟକ ପାଖରେ ଅପେକ୍ଷା କରି ରହିଲି । ମିଷ୍ଟର ହିଲ ଠିକ୍ ସମୟରେ ଆସିଲେ । ସେ ଯେତେବେଳେ ମୋ ପାଖରେ ତାଙ୍କ ବଗିରେ ଗଲେ, ମୁଁ ତାଙ୍କୁ ମୁଣ୍ଡ ନୁଆଇଁ ପ୍ରଣାମ କଲି । ତା ପରେ ହେଡ଼ମାଷ୍ଟର ଓ ମିଷ୍ଟର ହିଲଙ୍କ ମଧ୍ୟରେ କି କଥା ବାର୍ତ୍ତା ହେଲା, ମୁଁ ଜାଣେ ନାହିଁ । କିନ୍ତୁ ସେ ସମସ୍ତ ଜାଣିବାପାଇଁ ମୁଁ ଅତି ବ୍ୟଗ୍ରଭାବରେ ଚାହିଁ ରହିଥାଏଁ । ଅଳ୍ପକ୍ଷଣ ପରେ ମିଷ୍ଟର ହିଲ ସେ ସ୍ଥାନ ଛାଡ଼ି ଚାଲିଗଲେ । ମୋତେ ହେଡ଼ ମାଷ୍ଟର ଡକାଇ ପଠାଇଲେ ଏବଂ ଯେମିତି ସେ ମୋତେ ଦେଖିଲେ, ସେ କହିଲେ ଯେ "ସେ ମୋତେ କ୍ଷମା* ଦେଇଅଛନ୍ତି ଏବଂ ପୁଣି ମୋତେ ସ୍କୁଲରେ ନେବାକୁ ସ୍ଥିର କରିଅଛନ୍ତି ।

"ମଧୁସୂଦନ ପୁଣି ଜିଲ୍ଲା ସ୍କୁଲରେ ଛାତ୍ର ହେଲେ । ସେ ତାଙ୍କ ଆତ୍ମ-ଜୀବନୀରେ ଲେଖି ଅଛନ୍ତି ଯେ, ଏହି ଘଟନା ପରେ ବଙ୍ଗାଳି ବନ୍ଧୁମାନଙ୍କର ମୋ ପ୍ରତି ବ୍ୟବହାର ଅନେକ ପରିବର୍ତ୍ତିତ ହୋଇଗଲା । ଏହି ଘଟଣାର ଦାଗ ମୋ ମନରେ ପୂରି ଅଛି ଏବଂ ମୁଁ ତାହା ପୂର୍ଣ୍ଣ ମାତ୍ରାରେ ସ୍ମରଣ କରି ପାରୁଅଛି ।

"ଏହି ଘଟଣା ପରେ ମଧୁସୂଦନ ପ୍ରାୟ ଛାତ୍ରଙ୍କ ମଧ୍ୟରେ ସ୍କୁଲର ଗୋଟିଏ ହୀର ପାଲଟିଗଲେ ଓ ବଙ୍ଗାଳି ଛାତ୍ରମାନେ ତାଙ୍କୁ ଭୟ ଓ ସମ୍ମାନଚକ୍ଷୁରେ ଦେଖିଲେ । ମଧୁସୂଦନ ତାଙ୍କର ଏହି ବିଦ୍ୟାଳୟ ଜୀବନସ୍ମୃତି ବିଷୟରେ ତାଙ୍କ 'ଆତ୍ମଜୀବନୀ' ରେ ଲେଖିଅଛନ୍ତି,—"ସ୍କୁଲରେ ବଙ୍ଗାଳିମାନଙ୍କର ଏହି ଯନ୍ତ୍ରଣାଦାୟକ ଘଟଣା ସମୟରେ କଟକକୁ ଇଂରାଜି ଶିକ୍ଷା ପାଇଁ ଆସିବା ପୂର୍ବରୁ ମୁଁ ମୋ ଗାଁରେ କଟାଇଥିବା ଦିନସବୁ ଅତି କରୁଣଭାବରେ ଭାବେ ଏବଂ ବେଳେ ବେଳେ କାନ୍ଦେଁ । ସେହି ଦିନଗୁଡ଼ିକୁ ମୁଁ ଭାବେ, ଯେଉଁଦିନ ଗୋଟିଏ ଐତି-ହାସିକ ବଂଶର ହାଣକର୍ତ୍ତ୍ରୀ ଭାବରେ ମୋତେ ସମ୍ମାନ, ସ୍ନେହ ଓ ଆଶୀର୍ବାଦ ଚକ୍ଷୁରେ ସମସ୍ତେ ଦେଖୁଥିଲେ, ସେଦିନ କଅଣ ଆଉ ଆସିବ ନାହିଁ ? ମୁଁ ଏମିତି ଗୋଟିଏ ଜୀବନ ସଙ୍ଗେ ବନ୍ଧୁତା ବାନ୍ଧିଲି, ଯେଉଁଟି ଘୃଣା, ଅପମାନ କେବଳ ମୋ ଭାଗ୍ୟର ଚିରସହଚର ହେଲା ।

"ଦିଗ୍ବଳୟର ପୁଞ୍ଜୀଭୂତ କଳା ମେଘ ସ୍କୁଲରେ ପୁଣି ଭର୍ତ୍ତି ହେବା ଦ୍ୱାରା ପ୍ରାୟ ଘୁଞ୍ଚିଗଲା । ଭବିଷ୍ୟତ୍ ଜୀବନର ଦୀର୍ଘ ପଥ ମୋର ଦୃଷ୍ଟିଗୋଚର ହେଲ ମୁଁ ସଂସ୍କୃତ ଶ୍ଳୋକ ବା ପଦର ସତ୍ୟତା ଅନୁଭବ କଲି—

ସ୍ୱଦେଶେ ପୂଜ୍ୟତେ ରାଜା, ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ ।

---

*ଏଠାରେ ସେ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ କ୍ଷମାର ମନସ୍ତତ୍ତ୍ୱ (Psychology of Pardon) ବେଲ ଗୋଟିଏ ଯାଡ଼ି ଲେଖି କେତେକ ସ୍ଥାନ ଛାଡ଼ି ଦେଇଥିଲେ ।

"ମୁଁ ବଂଶଗତ ସମ୍ମାନ ଓ ସ୍ୱୋପାର୍ଜ୍ଜିତ ସମ୍ମାନର ପାର୍ଥକ୍ୟ ବୁଝିଲି ଓ ଜୀବନ ସାରା ନିଜର ଶକ୍ତିବଳରେ ଅର୍ଜ୍ଜିତ ସମ୍ମାନ ପାଇବାକୁ ଚେଷ୍ଟା କରିବ ବୋଲି ଠିକ୍ କଲି ।"

ଖ୍ରୀ:ଅ: ୧୮୬୪ ରେ ବାଳକ ମଧୁସୂଦନ ଷୋଳବର୍ଷ ବୟସରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

# ପଞ୍ଚମ ଅଧ୍ୟାୟ

## ଉଚ୍ଚ ଶିକ୍ଷାର ସ୍ୱପ୍ନ

ମଧୁସୂଦନ କଟକରେ ତାଙ୍କ ପାଠପଢ଼ା ଶେଷ କଲେ । କିନ୍ତୁ ସେ ପ୍ରାୟ ଏତିକି ଶିକ୍ଷାରେ ସନ୍ତୁଷ୍ଟ ନ ଥିଲେ । ସେତେବେଳେ ଉତ୍କଳରେ କୌଣସି କଲେଜ ନ ଥିଲା ; ତେଣୁ ଉଚ୍ଚଶିକ୍ଷା ପାଇବାକୁ ହେଲେ କଲିକତା ଯିବା ନିହାତି ଦରକାର ପଡ଼ୁଥିଲା । ସେତେବେଳେ କଲିକତାକୁ ରେଲ ରାସ୍ତା ହୋଇ ନ ଥିଲା । ଚାନ୍ଦବାଲି ବାଟେ ଲୋକେ ଜାହାଜରେ ଯା ଆସ କରୁଥିଲେ । ସେ ସମୟରେ ଓଡ଼ିଶାର କେବଳ ସାଧାରଣ ଲୋକେ ସାମାନ୍ୟ ଚାକିରି ସକାଶେ କଲିକତାକୁ ଯାଉଥିଲେ । କଲିକତାରେ ସେମାନେ କୁଲିକାମ କରୁଥିଲେ । ସେମାନେ ସଡ଼କରେ ଚାଲି ଚାଲି ଯାଉଥିଲେ । ସଡ଼କ ଧାରରେ ଚଟିଘର ସବୁ ଥିଲା । ବାଟୋଇମାନେ ସେହି ଘରେ ଆଶ୍ରୟ ନେଉଥିଲେ । ସେ ସମୟରେ ପ୍ରବାଦ ଥିଲା—

"ହଳଦୀ ମଖାମଖି
ନାରଣଗଡ଼ ପାରି ହେଲେ କୁଟୁମ୍ବ ଦେଖାଦେଖି ।"

ସେତେବେଳେ କଲିକତାକୁ ସଡ଼କରେ ଯିବା ଆସିବା ନିରାପଦ ନ ଥିଲା । ବାଟରେ ବାଟୋଇମାନେ ଚୋର, ଡକାୟତଙ୍କ ହାବୁଡ଼େ ପଡ଼ି ବିପଦଗ୍ରସ୍ତ ହେଉଥିଲେ ।

ଏହା ପୂର୍ବରୁ ଓଡ଼ିଶାରୁ ବେଶୀ ଲୋକ ପଢ଼ିବାକୁ କଲିକତା ଯାଇ ନ ଥିଲେ । ଅବଶ୍ୟ ୧୮୬୩ ମସିହାରେ କବିବର ରାଧାନାଥ ଏଫ୍.ଏ ପଢ଼ିବାକୁ କଲିକତା ଯାଇଥିଲେ । ମାତ୍ର ସେ ମଧ୍ୟ ଅଳ୍ପକାଳ କଲିକତାରେ ରହି ବାଲେଶ୍ୱର ଫେରି ଆସିଥିଲେ । ମଧୁସୂଦନ କଟକରୁ ଏଣ୍ଟ୍ରାନ୍ସ ପାସ କରି ବାଲେଶ୍ୱରରେ କିଛିକାଳ ଶିକ୍ଷକତା କରିଥିଲେ । ସେତେବେଳେ ବାଲେଶ୍ୱର ବ୍ୟବସାୟର କେନ୍ଦ୍ର ଥିଲା । ସ୍ୱର୍ଗୀୟ ଫକୀରମୋହନ ସେନାପତି ତାଙ୍କ "ଆତ୍ମଜୀବନୀ"ରେ ଏହି ସମୟର ଏକ ବର୍ଣ୍ଣନା ଦେଇ ଅଛନ୍ତି ।

"ବାବୁ ମଧୁସୂଦନ ଦାସ ( Honourable M.S.Das, M.A.,C.I.E.) ସେ ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଥାର୍ଡ ମାଷ୍ଟର (ତୃତୀୟ ଶିକ୍ଷକ) ଥିଲେ । ତାଙ୍କର ବସା ମଧ୍ୟ ଗଡ଼ଗଡ଼ିଆ ସମୀପରେ ଥିଲା ।

"ଗ୍ରୀଷ୍ମକାଳରେ ଆମ୍ଭେମାନେ ପ୍ରାୟ ପ୍ରତିଦିନ ପରସ୍ପର କଥୋପକଥନ ଓ ବାୟୁସେବନ ନିମନ୍ତେ ଉକ୍ତ ପୁଷ୍କରିଣୀର ପକ୍କା ଘାଟରେ ଏକତ୍ରିତ

ହେଉଥିଲୁଁ । ପିତାଙ୍କ ଭୟରେ ରାଧାନାଥ ଦିବାଲୋକରେ ପ୍ରକାଶ୍ୟରେ ଆମ୍ଭମାନଙ୍କ ସହିତ ଆସି ବସି ପାରନ୍ତି ନାହିଁ । ଦିନେ ଦିନେ ସନ୍ଧ୍ୟା ଉତ୍ତାରେ ଆସି ପହଞ୍ଚି ଯାଆନ୍ତି । କିନ୍ତୁ ମଧୁସୂଦନ ପ୍ରତ୍ୟହ ଆସି ଆମ୍ଭମାନଙ୍କ ଦଳରେ ମିଶୁଥିଲେ । ସେହି ତରୁଣ ବୟସରେ ମଧ୍ୟ ତାଙ୍କର ଉଚ୍ଚାକାଂକ୍ଷା ବିଷୟ ଶୁଣି ଆମ୍ଭେମାନେ ସ୍ତମ୍ଭିତ ହୋଇ ଯାଉଥିଲୁଁ । ସେ ସେଠାରୁ କର୍ମତ୍ୟାଗ କରି କଲିକତା ଚାଲି ଯାଇଥିଲେ ।"

ଉପର ବର୍ଣ୍ଣିତ ବିବରଣୀରୁ ସ୍ପଷ୍ଟ ଯେ ମଧୁସୂଦନ ନିଜ ଅନ୍ତରରେ ଉଚ୍ଚ ଶିକ୍ଷାର ଆଶା ପୋଷଣ କରି ଶିକ୍ଷକତା କରୁଥିଲେ । ହୁଏତ କିଛି ଟଙ୍କା ସଂଗ୍ରହ କରିବାକୁ ମଧୁସୂଦନ ଶିକ୍ଷକତା କାର୍ଯ୍ୟ ଗ୍ରହଣ କରିଥିଲେ । କାରଣ ତାଙ୍କୁ ଘରୁ କିଛି ସାହାଯ୍ୟ ମିଳିବାର ସମ୍ଭାବନା ନ ଥିଲା । ଏଣେ ତାଙ୍କ ବାପା ମଧ୍ୟ ଏତେ ଦୂରକୁ ତାଙ୍କୁ ପଠାଇବାକୁ ଅନିଚ୍ଛୁକ ହେଲେ । ଆହୁରି ଶୁଣାଯାଏ ଯେ, ତାଙ୍କର କୌଣସି ଆତ୍ମୀୟ ବାଲେଶ୍ୱରରେ ଥିଲେ । ଯାହାହେଉ, ମଧୁସୂଦନ ବାଲେଶ୍ୱରରେ କିଛିଦିନ ଶିକ୍ଷକତା କରି କଲିକତା ଯାତ୍ରା କରିଥିଲେ । ସେଠାରୁ ସେ ବୃନ୍ଦାବନ ବାଟେ ଜାହାଜରେ କମ୍ପା ବାଲେଶ୍ୱରରୁ ସଡ଼କରେ କଲିକତା ଯାତ୍ରୀ ହୋଇଥିଲେ । ମଧୁସୂଦନ ତାଙ୍କ 'ଆତ୍ମଜୀବନ'ରେ ଏ ପ୍ରସଙ୍ଗରେ କେତେ କଥା ଲେଖିଅଛନ୍ତି । ତାହାର ଅନୁବାଦ ନିମ୍ନରେ ଦିଆଗଲା—

"ସେତେବେଳେ ଓଡ଼ିଶାରେ ଆଦୌ କଲେଜ ନ ଥିଲା । ଉଚ୍ଚଶିକ୍ଷା ପାଇଁ ମୋତେ କଲିକତା ଯିବାକୁ ପଡ଼ିଥିଲା । କିନ୍ତୁ ବଙ୍ଗାଳିମାନଙ୍କୁ ତାଙ୍କ ନିଜ ଦେଶରେ ଦେଖିବା ମୋ ପ୍ରତି ଚିତ୍ତାକର୍ଷକ ନ ଥିଲା । ତେଣୁ ମୁଁ ବଙ୍ଗଳା କହିବାକୁ ଅଭ୍ୟାସ କଲି । କଲିକତାରେ ଥିବା ବଙ୍ଗାଳିମାନେ ଯେଉଁ ଭାଷାରେ କଥା କହନ୍ତି, ତାହାର ଶବ୍ଦ ଓ ବାକ୍ୟର ଉଚ୍ଚାରଣ ପୂର୍ବବଙ୍ଗ ଉଚ୍ଚାରଣ ଠାରୁ ବେଶ୍ ପୃଥକ୍ । "

ବୋଧହୁଏ ୧୮୬୬ ଖ୍ରୀ:ଅ: ରେ ମଧୁସୂଦନ ବାଲେଶ୍ୱର ଛାଡ଼ି କଲିକତା ଗଲେ ।



କଲେଜ ଛାତ୍ର ମଧୁସୂଦନ

# ଷଷ୍ଠ ଅଧ୍ୟାୟ

## କଲିକତା-ଜୀବନ

କଲିକତାରେ ସେତେବେଳେ ଓଡ଼ିଶାରୁ କେତେକ ଓଡ଼ିଆ କୁଲି ମାତ୍ର ରହୁଥିଲେ । ସେମାନେ ଅତି ନଗଣ୍ୟ ଭାବରେ ସେଠାରେ କାଳ କଟାଉଥିଲେ । ସେମାନଙ୍କ ପ୍ରତି ବଙ୍ଗାଳିମାନଙ୍କର ଯଥେଷ୍ଟ ଘୃଣା ଓ ତାଚ୍ଛଲ୍ୟ ଭାବ ଥିଲା । ସେମାନେ ଭାବୁଥିଲେ ଯେପରି କି ଓଡ଼ିଆ ଜାତଟା କୁଲିଙ୍କ ଜାତି ! ଏପରି କି ଓଡ଼ିଆ କୁଲିମାନେ ମଧ୍ୟ କଲିକତାରେ ଓଡ଼ିଆ ଭାଷା ନ କହି ଭଙ୍ଗା ବଙ୍ଗଳା ଭାଷା କହିବାକୁ ବେଶୀ ସୁଖ ପାଉଥିଲେ । ଖାମିନ୍ଦ ନେଇ ଭୃତ୍ୟର ଭାଷା ! ଓଡ଼ିଆ ଯୁବକ ମଧୁସୂଦନ ସେହି ସମୟରେ ଏକା ଉଚ୍ଚ ଶିକ୍ଷା ପାଇଁ କଲିକତା ନଗରୀରେ ଅବସ୍ଥାନ କରୁଥିଲେ । ସେ ଏହି ସମୟର ଘଟନା ନେଇ ତାଙ୍କ 'ଆତ୍ମ-ଜୀବନୀ'ରେ ଲେଖି ଅଛନ୍ତି:—

"ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ବ୍ରିଟିଶ ଜାତି ବଙ୍ଗଳାର ଶାସନଭାର ହାତକୁ ନେଲେ । ସେ ସମୟରେ ସରକାର ଜମିର ଖଜଣା ଆଦାୟଟାକୁ ବେଶୀ ନଜର ଦେଇଥିଲେ । ମୁସଲମାନ ରାଜତ୍ୱ ସମୟରେ ଏହି ଭୂରାଜସ୍ୱ ପ୍ରଧାନ ରାଜକର ଥିଲା । ଏଥିପାଇଁ ସେ ସମୟର ଭାରତୀୟ ବ୍ୟବସ୍ଥାପକ ସଭା କେତେକ ଆଇନ ପ୍ରଣୟନ କରିଥିଲେ । ସେଗୁଡ଼ିକୁ 'ରେଗୁଲେସନ୍' କୁହାଯାଉଥିଲା । ସେଥିରୁ ଅନେକ ଆଜି ସୁଦ୍ଧା ପ୍ରଚଳିତ ଅଛି । ପରେ ଯେଉଁ ସବୁ ଆଇନ ବ୍ୟବସ୍ଥାପକ ସଭାଦ୍ୱାରା ପ୍ରଣୀତ ହେଲା, ତାହାକୁ 'ଏକ୍ଟ' କୁହାଗଲା । ସେହି 'ରେଗୁଲେସନ୍'ରେ ବଙ୍ଗଳା ବିହାର ଓ ଓଡ଼ିଶାରୁ ଭୂକର ଉଠାଇବା ପାଇଁ କେତେକ ଉପାୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିଲା ।"

ମଧୁସୂଦନଙ୍କ ଆତ୍ମଜୀବନୀ ଏହିଠାରେ ଚିରଦିନ ସକାଶେ ଅପୂର୍ଣ୍ଣ ରହିଗଲା । ମଧୁସୂଦନ ତାଙ୍କ ଆତ୍ମ ଜୀବନୀରେ ବାଲ୍ୟଜୀବନର କେତେକ ବର୍ଣ୍ଣନା, କଲିକତା ଯିବାର ସୂଚନା ଦେଇ କ୍ଷାନ୍ତ ହେଲେ । ମଧୁସୂଦନ କଲିକତାରେ ପ୍ରଥମେ କେଉଁଠି ରହୁଥିଲେ ବା ପ୍ରଥମେ କାହାର ସାହାଯ୍ୟ ନେଇଥିଲେ ଜଣା ନାହିଁ । ସୁଦୂର ଅପରିଚିତ କଲିକତା ସହରରେ ସେ କିପରି ନିଜର ବୁଦ୍ଧି ଓ ସାହସିକତା ସାହାଯ୍ୟରେ କଲେଜରେ ଯୋଗ ଦେଲେ ବା କେଉଁଠି କିପରି ରହି ଚଳାଚଳ ହୋଇଥିଲେ, ତାହା ଜାଣିବା କଠିନ; କିନ୍ତୁ ଏହି କଲିକତାରେ ରହିବା ସମୟ ଯେ ତାହାଙ୍କ ଜୀବନର ଏକ ବଡ଼ ପରୀକ୍ଷାର ସମୟ, ଏଥିରେ ସନ୍ଦେହ ନାହିଁ । ଛାତ୍ରାବସ୍ଥାରେ ମଧୁସୂଦନଙ୍କୁ ଦୁଃଖ, ଦାରିଦ୍ର୍ୟ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା । ଅଧିକନ୍ତୁ ବଙ୍ଗାଳିଙ୍କ

ଭିତରେ ତାଙ୍କ ଦେଶରେ ଉତ୍କଳର ତଥା ଓଡ଼ିଆ ଜାତିର ସମ୍ମାନ ବଜାୟ ରଖିବାକୁ ସେ ସର୍ବଦା ଜାଗ୍ରତ ଥିଲେ । ସେ ଦେଖିଥିଲେ ଯେ, ତାଙ୍କ ଗୃହଆଡ଼େ ଓଡ଼ିଆ ଲୋକମାନେ ମଧ୍ୟ ଓଡ଼ିଆ ଭାଷା କହିବାକୁ କୁଣ୍ଠିତ ; ତେଣୁ ତାଙ୍କ ପ୍ରାଣରେ ତାହା ବଡ଼ ଆଘାତ ଦେଇଥିଲା ।

ତାଙ୍କ ମୁହଁରୁ ଶୁଣିଲି ଯେ, ସେ ବେଳେବେଳେ ମ୍ୟୁନିସିପାଲିଟି ରାସ୍ତା ପାଖ ଆଲୁଅରେ ନିଜ ପଢ଼ାବହି ପଢ଼ୁଥିଲେ । ଅନେକ ସମୟରେ ତାଙ୍କୁ ଉପବାସ ରହିବାକୁ ପଡ଼ୁଥିଲା । ଅନେକ ସମୟରେ ସେ ଦୁଇ ପଇସାର ମୁଢ଼ି ଖାଇ ଦିନ କଟାଇ ନେଉଥିଲେ । ତଥାପି ସେ ସାହସ ଧରି ଓଡ଼ିଆଙ୍କ ମଧ୍ୟରେ ପ୍ରଥମେ ଉଚ୍ଚଶିକ୍ଷା ଲାଭ କରିଥିଲେ । ଏହାହିଁ ତାଙ୍କର ଗଭୀର ଶିକ୍ଷା-ନୁରାଗର ପରିଚୟ । ୧୮୬୬ ମସିହାରେ ସେ ଏଫ୍. ଏ. (ବର୍ତ୍ତମାନ ଆଇ.ଏ.) ଶ୍ରେଣୀରେ ନାମ ଲେଖାଇ ଥିଲେ ଏବଂ ୧୮୬୮ ମସିହାରେ ସେ ଏଫ୍. ଏ. ପାଶ କଲେ । ତାଙ୍କର ଏହି କଲେଜଜୀବନ ଦୁଃଖମୟ ଥିଲା । ସେ ତତ୍କାଳୀନ ଏକ ଖ୍ରୀଷ୍ଟୀୟ ମିସନରୁ ମାସିକ ଆଠ ଟଙ୍କା ସାହାଯ୍ୟ ପାଉଥିଲେ । ତଥାପି ସେ ତାଙ୍କ ଆଦର୍ଶପଥରେ ଅବିଚଳିତ ଥିଲେ । ଘରୁ କୌଣସି ସାହାଯ୍ୟ ପାଇବାର ଆଶା ନ ଥିଲା । ହୁଏ ତ ସେ ଘରେ କାହାକୁ ନ କହି କଲିକତା ପଳାଇ ଯାଇଥିଲେ । ସେ ଏଫ୍. ଏ. ପାଶ କରିବା ପରେ ୧୮୬୯ ମସିହାରେ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ।

ମଧୁସୂଦନ କାହିଁକି ଖ୍ରୀଷ୍ଟିୟାନ ହେଲେ ? ଏହି ଛାତ୍ରାବସ୍ଥାରେ ମଧୁସୂଦନଙ୍କ ଯୁବକ ପ୍ରାଣକୁ ଖ୍ରୀଷ୍ଟଧର୍ମ ଖୁବ୍ ସ୍ପର୍ଶ କରିଥିଲା । ସେ ପ୍ରାୟ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ଅନେକ ବହି ପଢ଼ିଥିଲେ ଏବଂ ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ଉତ୍ତେଜନା-ପୂର୍ଣ୍ଣ ବକ୍ତୃତା ଡକ୍ଟର ଡଫ ନାମକ ଏକ ପାଦ୍ରୀଙ୍କ ଠାରୁ ଶୁଣିଥିଲେ । ଯୀଶୁ ମରିବାକୁ ଯାଉଛନ୍ତି, ତଥାପି ସେ କହୁଛନ୍ତି, "ପିତଃ ! ସେମାନଙ୍କୁ କ୍ଷମା ଦିଅ, ସେମାନେ କଅଣ କରୁଛନ୍ତି, ସେମାନଙ୍କୁ ଜଣା ନାହିଁ ।" ମୃତ୍ୟୁର କୋଳରେ ଶୋଇ, ମରଣର ବିଭୀଷିକା ଆଖି ଆଗରେ ଦେଖି ଯେଉଁ ଲୋକ ଏପରି କଥା କହିପାରେ, ସେ ସାଧାରଣ ମନୁଷ୍ୟ ନୁହେ । ଯୀଶୁଖ୍ରୀଷ୍ଟଙ୍କ ବ୍ୟକ୍ତିତ୍ୱର ଏହି ଉଦାହରଣ ତାଙ୍କ ଯୁବକପ୍ରାଣକୁ ବିଶେଷ ସ୍ପର୍ଶ କରିଥିଲା ବୋଧହୁଏ । ସେ ଏହି ଚର୍ଚ୍ଚରୁ ସେହି ବକ୍ତୃତା ଶୁଣି ତାଙ୍କ କଲେଜର ପ୍ରିନ୍ସିପାଲ ରେଭେରେଣ୍ଡ ଜେ. ପି. ଆସବର୍ନଙ୍କୁ ଧର୍ମ ପରିବର୍ତ୍ତନ କରିବା ପାଇଁ ଜଣାଇଥିଲେ । ୧୯୧୪ ମସିହାରେ ଉତ୍କଳ ସମ୍ମିଳନୀରେ ବକ୍ତୃତା ଦେଲାବେଳେ ମଧୁସୂଦନ ତାଙ୍କର ଏହି ଧର୍ମାନ୍ତର ଗ୍ରହଣ ବିଷୟରେ କହିଥିଲେ ।

"ମୁଁ ଖ୍ରୀଷ୍ଟିୟାନ ହୋଇଛୁ, କାରଣ ପ୍ରାଚ୍ୟର ଅଭି ମହତ୍ ଚରିତ୍ରର ଆଦର୍ଶକୁ ଅନୁସରଣ କରିବାକୁ। ସେ ଯୀଶୁଖ୍ରୀଷ୍ଟ।"

କିନ୍ତୁ ଏହି ସମସ୍ତ ଅବସ୍ଥାକୁ ବିଶ୍ଳେଷଣ କଲେ ଏବଂ ମଧୁସୂଦନଙ୍କ ପର ଜୀବନର ଭାବଧାରାକୁ ଲକ୍ଷ୍ୟ କଲେ ଜଣାଯିବ ଯେ, ମଧୁସୂଦନ ନିଜେ ଏକ ଶୁଭ ସ୍ପନ୍ଦନରେ ସ୍ପନ୍ଦିତ ହୋଇ ଖ୍ରୀଷ୍ଟିୟାନ ହୋଇ ନ ଥିଲେ।

୧। ମଧୁସୂଦନ ଲଣ୍ଡନ ମିସନାରୀ ଆସୋସିଏସନରୁ ସାହାଯ୍ୟ ପାଉଥିଲେ; ତେଣୁ ପାଦ୍ରୀମାନେ ତାଙ୍କୁ ଖ୍ରୀଷ୍ଟିୟାନ ହେବାକୁ ବାଧ୍ୟ କରିଥିବେ।

୨। ସେତେବେଳେ ପାଦ୍ରୀମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ପ୍ରବଳ ଝୁଙ୍କି ମଧ୍ୟ ଥିଲା ଏବଂ ମଧୁସୂଦନ ସେମାନଙ୍କ ଠାରୁ ଆର୍ଥିକ ସାହାଯ୍ୟ ପାଉଥିବାରୁ ସେମାନଙ୍କ କଥାରୁ ସେ ସହଜରେ ବାହାରି ଯାଇ ପାରି ନଥିବେ।

୩। ସେତେବେଳେ କଲିକତାରେ ଖ୍ରୀଷ୍ଟିୟାନ ହେବା ମଧ୍ୟ ଏକ ପ୍ରକାର ଢାଞ୍ଚା ବା ଫେସନ ହୋଇ ଯାଇଥିଲା। ଏହି ଧର୍ମାନ୍ତର ଗ୍ରହଣରେ ପ୍ରକୃତ ଧର୍ମଭାବ ଅତି ଅଳ୍ପ ମାତ୍ର ଥିଲା।

ତେଣୁ ମଧୁସୂଦନ ହୁଏ ତ ନାନା ଆଡ଼ୁର ପ୍ରଭାବକୁ ଏଡ଼ି ପାରି ନ ଥିବେ। ବିଶେଷତଃ ତାଙ୍କ ଉଚ୍ଚଶିକ୍ଷା ଲାଗି, ସେ ବାଧ୍ୟ ହୋଇ ଖ୍ରୀଷ୍ଟିୟାନ ହେବାକୁ ବାଧ୍ୟ ହୋଇଥିବେ।

ସେ ଯାହାହେଉ ୧୮୭୦ ମସିହାରେ ସେ ବି.ଏ. ପରୀକ୍ଷାରେ ପାଶ କଲେ। ସେ କଲିକତା ବିଶ୍ୱ ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସଂସ୍କୃତ ଶାଖାର ପ୍ରଶ୍ନର ଉତ୍ତର ନିଜ ନିଜ ମାତୃଭାଷାରେ ଲେଖିବାକୁ ଛାତ୍ରମାନେ ସ୍ୱାଧୀନତା ପାଇଥିଲେ, ମାତ୍ର ଓଡ଼ିଆରେ କେହି ଉତ୍ତର ଲେଖିପାରୁ ନ ଥିଲେ। ତାହାର କାରଣ ତତ୍କାଳୀନ ସଂସ୍କୃତ ପରୀକ୍ଷକ ଡକ୍ଟର କୃଷ୍ଣମୋହନ ବନ୍ଦୋପାଧ୍ୟାୟ ନିଜେ ଓଡ଼ିଆ ଜାଣି ନ ଥିଲେ; ତେଣୁ ପରୀକ୍ଷାର୍ଥୀଙ୍କ ଉତ୍ତରମାନ ଓଡ଼ିଆରେ ଲେଖା ହେଲେ ତାହାଙ୍କୁ ଅସୁବିଧା ହେବ ବୋଲି କେହି ଛାତ୍ର ଓଡ଼ିଆରେ ଉତ୍ତର ଲେଖିବାକୁ ଅନୁମତି ପାଇ ନ ଥିଲେ। ମଧୁସୂଦନ କଲିକତା ବିଶ୍ୱ ବିଦ୍ୟାଳୟର ଛାତ୍ର ଥିବା ସମୟରେ ଏହି ବିଷୟରେ ଆନ୍ଦୋଳନ କରି ଥିଲେ। ସେ ଏ ବିଷୟରେ ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟଙ୍କ ପାଖକୁ ୧୦।୨।୬୯ ତାରିଖରେ ଖଣ୍ଡିଏ ଚିଠିରେ ଲେଖିଥିଲେ—

"ସଂସ୍କୃତ ମୋର ଦ୍ୱିତୀୟ ଭାଷା ଥିଲା, କିନ୍ତୁ ସଂସ୍କୃତ କାଗଜ ଓଡ଼ିଆ ଅକ୍ଷରରେ ଲେଖିବା ପାଇଁ ମୋତେ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ସହିତ ଗୋଟିଏ ଲଢ଼ାଇ କରିବାକୁ ପଡ଼ିଥିଲା ।" ଶେଷରେ ମଧୁସୂଦନଙ୍କ ଦାବୀ ପୂରଣ କରାହେଲା । କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର ଥିବା ସମୟରେ ମଧୁସୂଦନ ବଡ଼ ରୁଗ୍ଣ ଥିଲେ । ତାଙ୍କୁ ଅନେକ ସମୟରେ ଜ୍ୱର ହେଉଥିଲା । ଏପରିକି ଅନେକ ପରୀକ୍ଷାରେ ସେ ପ୍ରଶ୍ନର ଉତ୍ତର ପୂରା ପୂରି ଲେଖି ପାରୁ ନ ଥିଲେ । ତଥାପି ସେ ପରୀକ୍ଷାରେ କେବେ ଅକୃତକାର୍ଯ୍ୟ ହୋଇ ନ ଥିଲେ । ତାଙ୍କ ସମୟରେ ପାଠ୍ୟ ପୁସ୍ତକର ଟୀକା ବା ନୋଟ୍ ବହିର ସଂଖ୍ୟା ଆଜି କାଲି ପରି ବେଶୀ ନ ଥିଲା, ତେଣୁ ସେ ପ୍ରାୟ ଅଭିଧାନ ଦେଖି ପଢ଼ୁଥିଲେ ।

୧୮୭୨ ଖ୍ରୀଷ୍ଟାବ୍ଦରେ ବି. ଏ. ପାଶ କରିବା ପରେ ମଧୁସୂଦନ ପ୍ରଥମେ ଖ୍ରୀଷ୍ଟିୟାନ ମିସନାରୀ ସୋସାଇଟି ହାଇସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ ଏବଂ ୧୮୭୨ ଖ୍ରୀଷ୍ଟାବ୍ଦରେ ଗାର୍ଡ଼େନ ରିଚ୍ [Garden Reach] ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକପଦରେ ନିଯୁକ୍ତ ହେଲେ । ସେତେବେଳେ ମଧ୍ୟ ସେ କଲିକତା ହାଇକୋର୍ଟରେ ଓଡ଼ିଆ ଟ୍ରାନ୍ସଲେଟର (ଅନୁବାଦକ) କାର୍ଯ୍ୟ କରୁଥିଲେ । ସେତେବେଳେ ସେ ଅଶୀ ଟଙ୍କା ମାସିକ ବେତନ ସ୍କୁଲରୁ ପାଉଥିଲେ, କିନ୍ତୁ ସହରର ସାଧାରଣ ଲୋକଙ୍କ ଅବସ୍ଥା ଉନ୍ନତ କରିବାକୁ ସେ ଗୋଟିଏ ନୈଶ ବିଦ୍ୟାଳୟ ଆରମ୍ଭ କରିଥିଲେ । ସେଥିରେ ମାସକୁ କୋଡ଼ିଏ ଟଙ୍କା ଖର୍ଚ୍ଚ ହୋଇ ଯାଉଥିଲା । ଏହା ବ୍ୟତୀତ ସେ ଘରୋଇ ଶିକ୍ଷକ କାର୍ଯ୍ୟ କରି କିଛି ବେଶୀ ଅର୍ଥ ଉପାର୍ଜନ କରୁଥିଲେ । ସେ କଲିକତାରେ ରହି ୧୮୭୩ ମସିହାରେ ଇଂରାଜୀରେ ଏମ୍.ଏ. ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥିଲେ ଏବଂ ସେହି ବର୍ଷ ସେ ଏକ ବଙ୍ଗୀୟ ଖ୍ରୀଷ୍ଟୀୟ ଯୁବତୀଙ୍କୁ ବିବାହ କରିଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ଥିଲା ସୌଦାମିନୀ । ସୌଦାମିନୀ ଶିକ୍ଷିତା ଥିଲେ । ମଧୁସୂଦନ କଲେଜରେ ଛାତ୍ର ଥିଲା ବେଳେ ଏହି ଯୁବତୀଙ୍କୁ ପ୍ରେମଚକ୍ଷୁରେ ଦେଖୁଥିଲେ । ସୌଦାମିନୀ ମଧୁସୂଦନଙ୍କଠାରୁ ବୟସରେ ଏକବର୍ଷ ବଡ଼ ଥିଲେ । ବିବାହ ହେଲା ବେଳକୁ ପତି, ପତ୍ନୀଙ୍କର ବୟସ କ୍ରମାନୁସାରେ ପଚିଶ ଓ ଛବିଶ ବର୍ଷ ଥିଲା । ସେତେବେଳେ ମଧୁସୂଦନ ଆଡ଼ମ୍ବରପ୍ରିୟ ନ ଥିଲେ ; ତେଣୁ ତାଙ୍କର ବିବାହ ମଧ୍ୟ ସେହିପରି ସରଳ ଭାବରେ ସମାହିତ ହୋଇଥିଲା । ମଧୁସୂଦନ ସ୍କୁଲରୁ ଆସି ନିଜର ସ୍କୁଲପୋଷାକ ନ ବଦଳାଇ ସେହି ପୋଷାକରେ ବିବାହ ହେବାକୁ ଗିର୍ଜାକୁ ଯାଇଥିଲେ ।

ସେହି ସମୟରେ ଭାରତୀୟ ଛାତ୍ରମାନଙ୍କ ପାଇଁ ଭାରତୀୟଙ୍କ ଦ୍ୱାରା କୌଣସି ଭଲ ଇଂରାଜୀ ବ୍ୟାକରଣ ବହି ନ ଥିଲା ; ତେଣୁ ଛାତ୍ରମାନଙ୍କ ଅସୁବିଧା ଦୂର କରିବାପାଇଁ ସେ ଖଣ୍ଡିଏ ଇଂରାଜୀ ବ୍ୟାକରଣ ବହି—ଆଦର୍ଶ ପ୍ରଶ୍ନୋତ୍ତର (Model

questions and answer) ୧୮୭୫ ରେ ଲେଖି ପ୍ରକାଶ କରିଥିଲେ । ତହିଁରୁ ସେ ଅର୍ଥ ଉପାର୍ଜନ ସଙ୍ଗେ ସଙ୍ଗେ ବହୁ ସମ୍ମାନ ମଧ୍ୟ ଲାଭ କରିଥିଲେ । ୧୮୭୫ ମସିହାରେ ଏହାର ପ୍ରଥମ ସଂସ୍କରଣ ହୋଇଥିଲା ଏବଂ ୧୮୮୪ ମସିହା ବେଳକୁ ତାହାର ଅଷ୍ଟମ ସଂସ୍କରଣ ଯାଏ ହୋଇ ସାରିଥିଲା । ବହିଟି ତତ୍କାଳୀନ ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍ସ ପରୀକ୍ଷାର ଛାତ୍ରମାନଙ୍କର ଉପଯୋଗୀ ହୋଇ ଥିବାରୁ ଖୁବ୍ ଦରକାରରେ ଆସୁଥିଲା । ସ୍ୱର୍ଗୀୟ ରାୟ ବାହାଦୁର ଜାନକୀନାଥ ବୋଷ (କଟକର ଭୂତପୂର୍ବ ପ୍ରସିଦ୍ଧ ଉକିଲ ଓ ନେତାଜୀ ସୁଭାଷ ବୋଷଙ୍କ ପିତା) ସେହି ବହିରୁ ଇଂରାଜୀ ଶିକ୍ଷା କରିଛନ୍ତି ବୋଲି ନିଜେ ମଧୁସୂଦନଙ୍କ ମୃତ୍ୟୁ ପରେ କଟକ ହାଇକୋର୍ଟ ଓକିଲଖାନାରେ ମଧୁସୂଦନଙ୍କ ସ୍ମୃତି ପ୍ରସଙ୍ଗରେ କହିଥିଲେ । କଲିକତାରେ ସମସ୍ତେ ଏହି ବହିକୁ 'ମଧୁ ଉତ୍ତରର' ବହି ବୋଲି କହୁଥିଲେ । ସେତିକି ନୁହେଁ, ଜାନକୀ ବାବୁ ମଧ୍ୟ ଆହୁରି କହିଥିଲେ ଯେ, ଥରେ ସାର୍ ଆଶୁତୋଷଙ୍କ ଇଂରାଜୀ ବକ୍ତୃତାରେ ମୁଗ୍ଧ ହୋଇ ଲୋକେ ତାଙ୍କୁ ପଚାରିଥିଲେ ଯେ ସେ କାହାଠାରୁ ଇଂରାଜୀ ଶିଖିଥିଲେ । ଏଥିର ଉତ୍ତରରେ ଆଶୁତୋଷ ମଧୁସୂଦନଙ୍କ ନାମ ଉଲ୍ଲେଖ କରି ଥିଲେ । ମଧୁସୂଦନଙ୍କ ମୁହଁରୁ ଅନେକ ଥର ଶୁଣାଯାଇଅଛି ଯେ ସେ ସ୍ୱର୍ଗୀୟ ସାର୍ ଆଶୁତୋଷଙ୍କ ବାଲ୍ୟକାଳରେ ତାଙ୍କର ଗୃହଶିକ୍ଷକ ଥିଲେ ଓ ତାଙ୍କର ଇଂରାଜୀ ଭାଷାରେ ଅସାଧାରଣ ଅଧିକାର ଥିବା ଦେଖି ସାହେବମାନେ ମୁଗ୍ଧ ହୋଇ ତାଙ୍କର ଶିକ୍ଷାଗୁରୁ କିଏ ଥିଲେ ବୋଲି ପଚାରିବାରୁ ଆଶୁତୋଷ ମଧୁସୂଦନଙ୍କ ନାମ କୃତଜ୍ଞତା ସହକାରେ ପ୍ରକାଶ କରୁଥିଲେ ।

ଏହି ସମୟରେ ମଧୁସୂଦନଙ୍କ ଜୀବନର କେତେକ କୌତୁକାବହ ଗଳ୍ପ ଶୁଣାଯାଏ । ତାଙ୍କର ବାଗ୍ମିତା ଓ ପାଣ୍ଡିତ୍ୟ ଦେଖି ତାଙ୍କୁ ଧର୍ମଯାଜକ ହେବାପାଇଁ ଖ୍ରୀଷ୍ଟିୟାନ ପାଦ୍ରୀମାନେ ଅନୁରୋଧ କରିଥିଲେ । ଏଥିର ଉତ୍ତରରେ ସେ କହିଥିଲେ ଯେ, ସେ ଯଦି ପାଦ୍ରୀ ହୁଅନ୍ତି, ତେବେ ଆଦୌ ଦରମା ନେବେ ନାହିଁ; ଫକୀର ଭାବରେ ଧର୍ମ ପ୍ରଚାର କରିବେ । କିମ୍ବା ସେ ଖୁବ୍ ବେଶୀ ଦରମା ନେବେ । ଏହି ଉଭୟ ସୀମା ମଧ୍ୟରେ ତାଙ୍କର କୌଣସି ମଧ୍ୟମ ପନ୍ଥା ଗ୍ରହଣ କରିବାର ଉଦ୍ଦେଶ୍ୟ ନ ଥିଲା । ତାଙ୍କର ଏପରି କହିବାର ତାତ୍ପର୍ଯ୍ୟ ମଧ୍ୟ ଥିଲା । ଯଦି ସେ ପାଦ୍ରୀମାନଙ୍କ ନିୟମ ମାନି ଧର୍ମପ୍ରଚାର କରିବେ, ତେବେ ଅତି ବେଶୀ ଦରମା ନେବେ । କାରଣ ତାଙ୍କୁ ନିଜ ବିବେକକୁ ବଳି ଦେବାକୁ ହେବ; ଯଦି ସେ ତାଙ୍କ ବିବେକ ଅନୁସାରେ ଧର୍ମ ପ୍ରଚାର କରିବେ, ତେବେ ତାଙ୍କର ଆଦୌ ଦରମା ଦରକାର ହେବ ନାହିଁ । ଏହା ବଡ଼ ସୁନ୍ଦର ଯୁକ୍ତି । ଏଥିରେ ପାଦ୍ରୀମାନେ ବଡ଼ ଉତ୍ୟକ୍ତ ହେଲେ ଏବଂ କହିଲେ, "ତୁମେ ସଇତାନ ।"

ଆଉ ଗୋଟିଏ ଗପ ମଧ୍ୟ ତାଙ୍କ ବିଷୟରେ ଶୁଣାଯାଏ । ସେହି ସମୟରେ ଶ୍ରୀରାମପୁର କଲେଜ ( ବିଦ୍ୟାପୀଠ ) ରେ ଗୋଟିଏ ଅଧ୍ୟାପକ କାମ ଖାଲି ଥିଲା । ମଧୁସୂଦନ ସେହି କାର୍ଯ୍ୟପାଇଁ ପ୍ରାର୍ଥୀ ହୋଇଥିଲେ । ଏହି ପ୍ରସଙ୍ଗରେ ସେ ନିଜେ ଶ୍ରୀରାମପୁର ଯାଇଥିଲେ । ମଧୁସୂଦନ ତାଙ୍କ ଆବେଦନପତ୍ର ସଙ୍ଗେ କୌଣସି ପ୍ରଶଂସାପତ୍ର ପଠାଇ ନ ଥିଲେ । ଶ୍ରୀରାମପୁର କଲେଜର ତତ୍କାଳୀନ ପୀଠପତି ବା ପ୍ରିନ୍ସିପାଲ ମଧୁବାବୁଙ୍କ ଠାରୁ ପ୍ରଶଂସାପତ୍ର ମାଗିବାରୁ, ସେ ପ୍ରଶଂସାପତ୍ର ଦେବାକୁ ନାରାଜ ହେଲେ ଏବଂ କହିଲେ ଯେ ସାହେବ ତାହାଙ୍କୁ ନିଜେ ପରୀକ୍ଷା କରି କଲେଜରେ ଗ୍ରହଣ କରି ପାରନ୍ତି । ମଧୁସୂଦନଙ୍କର ତଥାକଥିତ ପ୍ରଶଂସାପତ୍ର ଉପରେ ଆସ୍ଥା ନ ଥିଲା; ତେଣୁ ତାହାହିଁ ହେଲା । ମଧୁସୂଦନଙ୍କ ଶିକ୍ଷାଦାନ ପଦ୍ଧତିରେ ପୀଠପତି ଖୁବ୍ ପ୍ରୀତ ହେଲେ । ସେହି ପରୀକ୍ଷା ପରେ ମଧୁସୂଦନ ବେଶୀ ବେତନ ନେବାକୁ ଦାବୀ କଲେ । କିନ୍ତୁ କଲେଜ 'ଏତେ ଦରମା ଦେଇ ପାରିବ ନାହିଁ' ବୋଲି କହିବାରୁ ସେ ସେଠାରେ କୌଣସି କାର୍ଯ୍ୟ ଗ୍ରହଣ କଲେ ନାହିଁ । ତାହା ପରେ ଯେତେବେଳେ ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାର ସଦସ୍ୟ ହେଲେ, ଶ୍ରୀରାମପୁର କଲେଜର ପୀଠପତି ଯଥେଷ୍ଟ ସମ୍ମାନ ଦେଖାଇ ତାଙ୍କୁ ଏକ ଭୋଜିକୁ ନିମନ୍ତ୍ରଣ କରିଥିଲେ ।

ମଧୁସୂଦନ ଏମ୍. ଏ. ପାଶ୍ କରିବା ପୂର୍ବରୁ କିଛିଦିନ ପାଇଁ କଲିକତା ହାଇକୋର୍ଟରେ ଓଡ଼ିଆ ଅନୁବାଦକ କାର୍ଯ୍ୟ କରିଥିଲେ ଏବଂ ସେଠାରେ କାମ କଲାବେଳେ ସେ ଓକାଲତି ପଢ଼ି ୧୮୬୮ ମସିହାରେ ଓକାଲତି ପାଶ୍ କରି ଅଦାଲତରେ ଯୋଗ ଦେଇଥିଲେ ।

ମଧୁସୂଦନ ଗାର୍ଡନ ରିଚ୍ ସ୍କୁଲରେ ପ୍ରଧାନ ଶିକ୍ଷକ ଥିବା ସମୟରେ ସେ ଜୀବନରେ ଏକ ଶ୍ରେଷ୍ଠ ଶିଷ୍ୟ ଲାଭ କରିଥିଲେ । ୧୮୬୭ ମସିହାରୁ ୧୮୬୯ ମସିହାପର୍ଯ୍ୟନ୍ତ ଡାକ୍ତର ଗଙ୍ଗାଧର ମୁଖାର୍ଜୀଙ୍କ ପୁଅ ଆଶୁତୋଷ ମୁଖାର୍ଜୀ ( ପରେ ସାର୍ ) ତାଙ୍କର ପ୍ରଧାନ ଶିଷ୍ୟ ଥିଲେ । ଡାକ୍ତର ଗଙ୍ଗାଧର ଶିଶୁପୁତ୍ରଙ୍କ ଶିକ୍ଷାଭାର ମଧୁବାବୁଙ୍କ ଉପରେ ଦେଇଥିଲେ । ସେ ନିଜ ପୁଅର ଶିକ୍ଷା ପ୍ରତି ତୀକ୍ଷ୍ଣ-ଦୃଷ୍ଟି ଦେଉଥିଲେ । ମଧୁସୂଦନ ଗଙ୍ଗାଧର ବାବୁଙ୍କର ଘନିଷ୍ଠ ବନ୍ଧୁ ଥିବାରୁ ଆଶୁତୋଷଙ୍କ ଜୀବନ ଉପରେ ସେ ଖୁବ୍ ପ୍ରଭାବ ପକାଇ ପାରିଥିଲେ । ଆଶୁତୋଷ ମଧ୍ୟ ମଧୁ ବାବୁଙ୍କ ତାଙ୍କ ଗୁରୁ ବୋଲି ସାଧାରଣ କ୍ଷେତ୍ରରେ ସ୍ୱୀକାର କରୁଥିଲେ । ୧୯୧୪ ମସିହା ମାର୍ଚ୍ଚ ୧୯ ତାରିଖରେ ପାଟଣାରୁ ସାର୍ ଆଶୁତୋଷ ସାର୍ ଓ୍ୟାର୍ଡୀଙ୍କ ପାଖକୁ ଉତ୍କଳ ଟ୍ୟାନେରୀ ସମ୍ପର୍କରେ ଏକ ଚିଠିରେ ଲେଖିଥିଲେ "ସେ ମୋର ଗୁରୁ ।"

ମଧୁସୂଦନଙ୍କ ପ୍ରଭାବରେ ଆଶୁତୋଷ ଯେ କେବଳ ଇଂରାଜୀ ଶିକ୍ଷାରେ ଉନ୍ନତିଲାଭ କରିଥିଲେ, ତାହା ନୁହେଁ; ଆଶୁତୋଷଙ୍କ ବ୍ୟକ୍ତିତ୍ୱ ଓ ରଚନାଭଙ୍ଗୀ ଉପରେ ମଧୁସୂଦନଙ୍କ ଭାବ ଓ ପ୍ରେରଣା ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା । ମଧୁସୂଦନଙ୍କ ସ୍ତ୍ରୀ ସୌଦାମିନୀ ବଡ଼ ସରଳ ଓ ଉଦାରହୃଦୟା ଏବଂ ଅତିଧର୍ମପ୍ରାଣା ନାରୀ ଥିଲେ । ଥରେ ତାଙ୍କ ଘରେ ଜଣେ ଚାକର ଝାଡ଼ାବାନ୍ତି ରୋଗରେ ପୀଡ଼ିତ ହେଲା । ସୌଦାମିନୀ ନିଜେ ସେହି ଚାକରର ସମସ୍ତ ସେବା କରିଥିଲେ । ସୌଦାମିନୀ ଓ ମଧୁସୂଦନଙ୍କ ମଧ୍ୟରେ ଗଭୀର ପ୍ରେମ ଥିଲା । ଏଥି ପୂର୍ବରୁ ସ୍ୱର୍ଗୀୟ ଅମ୍ବିକା ପ୍ରସାଦ ହାଜରା ଓ ମଧୁସୂଦନ ଏକାଦିନେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିଲେ; ତେଣୁ ଉଭୟ ବନ୍ଧୁଙ୍କ ମଧ୍ୟରେ ନିବିଡ଼ ବନ୍ଧୁତା ଜାତ ହୋଇଥିଲା । ୧୮୭୫ ମସିହାରେ ଅମ୍ବିକା ପ୍ରସାଦ ହାଜରାଙ୍କ ପତ୍ନୀ ପ୍ରସନ୍ନମୟୀ ମଧୁସୂଦନଙ୍କ ବସା ଘରେ ରହିଥିଲେ । ସୌଦାମିନୀ ପ୍ରସନ୍ନମୟୀଙ୍କୁ ପଢ଼ାଇଥିଲେ; ତେଣୁ ତାଙ୍କର ସେ ଧର୍ମଝିଅ ଥିଲେ । ଅମ୍ବିକା ପ୍ରସାଦଙ୍କ ମୃତ୍ୟୁ ପରେ ମଧୁସୂଦନ ପ୍ରସନ୍ନମୟୀ ଓ ତାଙ୍କ ପୁତ୍ରକନ୍ୟାମାନଙ୍କୁ କଟକ ଆଣି ପ୍ରତିପାଳନ କରିଥିଲେ ଏବଂ ମଧୁସୂଦନଙ୍କ ସାହାଯ୍ୟ ଓ ସହାନୁଭୂତିରେ ସେମାନେ ଉଚ୍ଚଶିକ୍ଷା ପାଇ ପାରିଥିଲେ । ଏଥିରୁ ସହଜରେ ଦେଖାଯିବ ଯେ, ମଧୁସୂଦନ କପରି ସାମାଜିକ ଦୁରବସ୍ଥା ଓ ପରଦୁଃଖ ଦୂର କରିବାକୁ ତତ୍ପର ଥିଲେ । କଲିକତାରେ ଯୁବକ ମଧୁସୂଦନ ବଡ଼ କଠୋର କର୍ମଠ ଜୀବନ ଯାପନ କରୁଥିଲେ । ତାଙ୍କର ଅବସର ଅତି ଅଳ୍ପ ଥିଲା । ଏହି ସମୟରେ ପଶୁ, ପକ୍ଷୀ ପାଳିବା ମଧୁସୂଦନଙ୍କର ଭାରି ଝୁଙ୍କି ଥିଲା ।

'୧୮୭୮ ମସିହାରେ ଦିନେ ରାତିରେ ମଧୁସୂଦନ ତାଙ୍କ ପ୍ରିୟ ପତ୍ନୀ ସୌଦାମିନୀଙ୍କୁ ଟିକିଏ ପିଇବା ପାଣି ଆଣିବାକୁ କହିଲେ । ସୌଦାମିନୀ ପାଖ ଘରକୁ ଯାଇ ପିଇବା ପାଣି ମାଠିଆ ପାଖରେ ବସୁ ବସୁ ହଠାତ୍ ତାଙ୍କ କଲିଜା ଫାଟିଗଲା । ଏହା ବଡ଼ ଆକସ୍ମିକ ଭାବରେ ଘଟିଥିଲା । ବିଳମ୍ବ ହେବାରୁ ମଧୁସୂଦନ ନିଜେ ପାଖ ଘରକୁ ଯାଇ ଦେଖିଲେ ଯେ ସୌଦାମିନୀ ଭୂତଳରେ ଗଡ଼ି ପଡ଼ି ଅଛନ୍ତି । କି କରୁଣ ସେ ଦୃଶ୍ୟ !!!

୧୮୪୭ ମସିହାରେ ସୌଦାମିନୀ ଜନ୍ମଗ୍ରହଣ କରିଥିଲେ । ମରିବା ବେଳକୁ ତାଙ୍କର ବୟସ ମାତ୍ର ଏକତିରିଶ ବର୍ଷ ହୋଇଥିଲା । ତାଙ୍କର କୌଣସି ସନ୍ତାନ ମଧ୍ୟ ହୋଇ ନ ଥିଲା । ମଧୁସୂଦନ ଓ ସୌଦାମିନୀ ପାଞ୍ଚ ବର୍ଷ ମାତ୍ର ବୈବାହିକ ଜୀବନ ଯାପନ କରିଥିଲେ । ମଧୁସୂଦନ ସୌଦାମିନୀଙ୍କ ମୃତ୍ୟୁ ପରେ ଆଉ ବିବାହ କରି ନ ଥିଲେ ।

ଯେତେଦୂର ସମ୍ଭବ, ମଧୁସୂଦନ ୧୮୮୦ ମସିହାରେ କଲିକତା ଛାଡ଼ି ଓଡ଼ିଶାରେ ଓକିଲାତି କରିବାକୁ କଟକ ଚାଲି ଆସିଥିଲେ । ଓଡ଼ିଶା ଯେ

ମଧୁସୂଦନଙ୍କୁ ଗ୍ରହି ବସିଥିଲେ ! କିନ୍ତୁ ଯୁବକ ମଧୁସୂଦନଙ୍କ ପ୍ରାଣରେ ପତ୍ନୀ-ବିୟୋଗର ଗଭୀର ଦାଗ ସହଜରେ ଲିଭି ନ ଥିଲା । ସେ ତାଙ୍କ ଶୋଇବା ଘରେ ଓ ନିଜ ପତ୍ନୀଙ୍କ ସମାଧିରେ ଲେଖିଥିଲେ, "ମର ନାହିଁ, ଆଗେ ଯାଇଛ ମାତ୍ର !"

# ସପ୍ତମ ଅଧ୍ୟାୟ

## ଓକାଲତି ଜୀବନ

"ପାଠ ପଢ଼ିବ, ଓକିଲ ହେବ
ମଧୁ ବାରିଷ୍ଟର ସଙ୍ଗେ ଲଢ଼ିବ ।"

ଓଡ଼ିଶାର ଗ୍ରାମମାନଙ୍କରେ ଏହି ପ୍ରବଚନ ଶୁଣାଯାଏ । ମଧୁବାବୁଙ୍କୁ ଉତ୍କଳର ସାଧାରଣ ଗ୍ରାମବାସୀମାନେ "ମଧୁ ବାରିଷ୍ଟର" ବୋଲି ଜାଣୁ ଥିଲେ । 'ମଧୁ ବାରିଷ୍ଟର' ବୋଲି ମଧ୍ୟ ଲୋକେ ତାହାଙ୍କୁ ଡାକୁଥିଲେ । ମଧୁବାବୁ ଓକାଲତି କରି ଯେପରି ସୁଖ୍ୟାତି ଅର୍ଜ୍ଜନ କରିଅଛନ୍ତି, ସେପରି ସୌଭାଗ୍ୟ ଅତି ଅଳ୍ପଙ୍କ ଭାଗ୍ୟରେ ଘଟେ ।

ମଧୁସୂଦନ ଯେ ଏତେ ପରିଶ୍ରମ କରି ପାଠ ପଢ଼ିଲେ, ତାହା କାହାପାଇଁ ? ଓଡ଼ିଶାରୁ ପ୍ରଥମେ ଏମ୍. ଏ., ପ୍ରଥମେ ବି. ଏଲ୍. ପାଶ କରି ସେ କା ବିଦେଶରେ କାହିଁକି ଜୀବନ କଟାଇବେ ? ଉତ୍କଳ ଯେ ତାଙ୍କୁ ଲୋଡ଼ୁଥିଲା ଏ କଥା ହୁଏ ତ ସେ ମନେ ମନେ ଭାବୁ ଥିଲେ । ଅନେକ ବନ୍ଧୁ ମଧ୍ୟ ତାହାଙ୍କୁ ଓଡ଼ିଶାକୁ ଆସିବାକୁ ଅନୁରୋଧ କରୁଥିଲେ । ତେଣୁ ମଧୁସୂଦନ କଲିକତାରୁ କଟକ ଆସିଲେ ଓ କଟକରେ ଓକାଲତି ଆରମ୍ଭ କଲେ । ସେତେବେଳେ କଟକ ଅଦାଲତରେ ବଙ୍ଗାଳି ଓକିଲଙ୍କର ଭାରି ପ୍ରତିପତ୍ତି । ଏପରିକି ମଧୁସୂଦନଙ୍କୁ ଓକିଲଖାନାରେ ବଙ୍ଗାଳି ଓକିଲମାନେ ବସିବାକୁ ପ୍ରଥମେ ସ୍ଥାନ ଦେଲେ ନାହିଁ । ସେମାନେ ତାହାଙ୍କୁ ନାନା ପରିହାସ କଲେ । ମଧୁସୂଦନଙ୍କୁ ସେମାନେ ମଧ୍ୟ ଘୃଣା ବା ଈର୍ଷା ଚକ୍ଷୁରେ ଦେଖୁଥିଲେ । କିନ୍ତୁ ମଧୁସୂଦନଙ୍କର ଅସୀମ ଧୈର୍ଯ୍ୟ, ସହିଷ୍ଣୁତା ତଥା ବିଚକ୍ଷଣତା କ୍ରମେ ଜୟଯୁକ୍ତ ହେଲା । ମଧୁବାବୁ ସେ ସମୟରେ ପ୍ରଥମ ଓଡ଼ିଆ ଓକିଲ ଥିଲେ ଓ ମଧୁବାବୁଙ୍କ ଓକାଲତିରେ ହାକିମମାନେ ମୁଗ୍ଧ ହୋଇଥିଲେ । ଓକିଲଖାନାରେ ବସିବାକୁ ସେ ସ୍ଥାନ ନ ପାଇବା କଥା ଜଜ୍ ସାହେବ ଶୁଣି ପାରିଲେ ଏବଂ କଚେରୀର ଗୋଟିଏ କୋଠରୀ ମଧୁବାବୁଙ୍କ ପାଇଁ ଛାଡ଼ି ଦେଇଥିଲେ । ବର୍ତ୍ତମାନ ଟୌନ୍‌ହଲ୍‌ଙ୍କର ପାର୍କ ପାଖରେ ଯେଉଁଠାରେ ଓଡ଼ିଶା ସରକାରଙ୍କ ଅଫିସ ହୋଇଅଛି, ସେଠାରେ ପୂର୍ବେ ଦେବାନୀ ଅଦାଲତ ଓ ଜଜ୍‌ଅଦାଲତ ବସୁ ଥିଲା । ସେହି କୋଠାର ପଶ୍ଚିମ ଅଂଶରେ ମଧୁବାବୁଙ୍କର କାମରା ଥିଲା । ସେଠାରୁ ଅଦାଲତ ଉଠି ଆସିବା ପର୍ଯ୍ୟନ୍ତ ମଧୁବାବୁ ସେହି କାମରାରେ ବସୁ ଥିଲେ । ତତ୍‌ପରେ ଓଡ଼ିଆ ଓକିଲଙ୍କ ସଂଖ୍ୟା କ୍ରମଶଃ ବଢ଼ିବାରୁ ଓଡ଼ିଆ

ଉକିଲମାନେ ଉକିଲଖାନାରେ ଆସନ ଓ ସିରସ୍ତା ପାଇଁ ସ୍ଥାନ ପାଇଲେ ଏବଂ ମେମ୍ବର ହେଲେ । ମଧୁବାବୁ ମଧ୍ୟ ଉକିଲଖାନାର ସଭାପତି ହୋଇଥିଲେ ତଥାପି ତାଙ୍କ ଅଧିକୃତ ଜଜକୋର୍ଟର କୋଠରୀଟିରେ ତାଙ୍କର ସିରସ୍ତା ବସୁଥିଲା ଓ ସେଠାରେ ସେ କଚେରୀ ସମୟରେ ଅଫିସ କରୁଥିଲେ ।

୧୮୮୩ ମସିହାରୁ ୧୮୯୦ ମସିହା ଯାଏ ମଧୁସୂଦନ ରେଭେନ୍ସା କଲେଜର ଆଇନ-ଅଧ୍ୟାପକ ଥିଲେ । ଆଇନ-ଅଧ୍ୟାପକ ଭାବରେ ତାଙ୍କର ବେଶ୍ ସୁଖ୍ୟାତି ଥିଲା । ଏହା ପୂର୍ବରୁ ବିଶ୍ୱବିଦ୍ୟାଳୟର ପରୀକ୍ଷାରେ ଆଇନ ଛାତ୍ରମାନେ ଭଲ ଫଳ ଦେଖାଇ ପାରୁ ନ ଥିଲେ । କିନ୍ତୁ ମଧୁସୂଦନ ଅଧ୍ୟାପକ ହେବା ପରେ ତାଙ୍କ ସୁଅଧ୍ୟାପନା ଯୋଗୁଁ ପରୀକ୍ଷାରେ ଛାତ୍ରମାନେ ଅତି ଉତ୍ତମ ଫଳ ଦେଖାଇଲେ । ସେତେବେଳେ ସେ ଅନେକ ଓଡ଼ିଆ ଯୁବକଙ୍କୁ ସ୍ୱାଧୀନ ଭାବରେ ଓକିଲାତି ଜୀବନ ଗ୍ରହଣ କରିବାକୁ ଉତ୍ସାହ ଦେଇଥିଲେ ।

ମଧୁସୂଦନଙ୍କୁ ଏଣେ ଅଦାଲତରେ ନାମ କରିବା ଲାଗି ପ୍ରଗାଢ଼ ପରିଶ୍ରମ କରିବାକୁ ପଡ଼ିଥିଲା । ତାଙ୍କ ସମୟରେ କଟକ ଅଦାଲତରେ ଓକିଲାତିଟା ବଙ୍ଗାଳୀ ଉକିଲମାନଙ୍କର ଏକଚାଟିଆ ବ୍ୟବସାୟ ଥିଲା । ଜଣେ ପ୍ରତିଭାଶାଳୀ ଓଡ଼ିଆ ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ହେବାରୁ ମଧୁସୂଦନ ସେମାନଙ୍କ ଚକ୍ଷୁଶୂଳ ହେଲେ ଏହା ହେବା ସ୍ୱାଭାବିକ; କିନ୍ତୁ ପ୍ରତିଭା ପାଖରେ ସମସ୍ତଙ୍କ ମୁଣ୍ଡ ନଇଁପଡ଼େ ପ୍ରତିଭାବାନ୍ ଲୋକ ଶେଷରେ ଜୟୀ ହୁଏ ।

ଗୋଟିଏ ମକଦ୍ଦମାରେ ତାଙ୍କ ଗୁଣ ବିକଶି ଉଠିଲା । ତାଙ୍କର ପ୍ରାଧାନ୍ୟ ପ୍ରତିଭାର ଖ୍ୟାତି ଚାରିଆଡ଼େ ବାଜିଉଠିଲା । ପୁରୀର ଜଣେ ମହନ୍ତ ଗୋଟିଏ ସାଧାରଣ ଲୋକ ନାମରେ କଟକ ସବ୍‌ଜଜ ଅଦାଲତରେ ଗୋଟିଏ ମୋକଦ୍ଦମା କଲେ; ସେତେବେଳେ ପୁରୀରେ ସବ୍‌ଜଜ ଅଦାଲତ ନ ଥିଲା । ପୁରୀରେ ସବ୍‌ଜଜ ଅଦାଲତ ପ୍ରାୟ ପନ୍ଦର ଷୋଳ ବର୍ଷତଳେ ସ୍ଥାପିତ ହେଲା । ପୁରୀର ବଡ଼ ବଡ଼ ମକଦ୍ଦମାମାନ କଟକ ଅଦାଲତରେ ବିଚାର ହେଉଥିଲା । ସେତେବେଳେ କଟକରେ ପ୍ରାୟ ବାର ଚଉଦ ଜଣ ଥିଲେ ବଙ୍ଗାଳୀ ଉକିଲ । ଓଡ଼ିଆ ଥିଲେ କେବଳ ଏକା ମଧୁବାବୁ । ସେ ମହନ୍ତ ଗୋଟିଏ ଚକ୍ରବ୍ୟୂହ ଗଢ଼ିଲେ ଯେପରି ତାଙ୍କ ବିପକ୍ଷ ପକ୍ଷ ପାଇଁ କୌଣସି ଉକିଲ ନ ମିଳିବେ । ସେ ସବୁ ବଙ୍ଗାଳି ଉକିଲଙ୍କ ଠାରୁ ଓକିଲାତିନାମାରେ ଓ ଅର୍ଜିରେ ଦସ୍ତଖତ କରାଇ ଶେଷରେ ମଧୁବାବୁଙ୍କ ପାଖକୁ ଆସିଲେ । ଉଦ୍ଦେଶ୍ୟ ଥିଲା, " ଏ ଓଡ଼ିଆ ଓକିଲଟା ବାକି ରହିବ କାହିଁକି ? ଏଇଠାରୁ ବି ଦସ୍ତଖତ କରାଇନେଲେ ଆଉ ଉକିଲ ପ୍ରତିବାଦୀ ପାଇଁ ନ ଥିବେ । ସେ ଗରିବ, ପଇସା ପାଇବ ନା ଅନ୍ୟ ଆଉ ଉକିଲ ଆଣି ଲଢ଼ିବ । ମଧୁବାବୁ ଯେତେବେଳେ ଦେଖିଲେ ସବୁ ଉକିଲ




ମଧୁସୂଦନଙ୍କ
ବୈଠକଖାନା



ମଧୁସୂଦନଙ୍କ ବାସଭବନ (କଟକ)

ମହନ୍ତଙ୍କ ପାଇଁ ଦସ୍ତଖତ କଲେଣି, ସେ କହିଲେ, " ଆପଣ ଅପର ପକ୍ଷ ପାଇଁ ଗୋଟିଏ ଓକିଲ ସ୍ଥିର ଦେଖନ୍ତୁ ।" ମହନ୍ତ ଯେତେ ଅନୁରୋଧ କଲେ ମଧ୍ୟ ସେ ତାଙ୍କ ପକ୍ଷ ଗ୍ରହଣ କଲେ ନାହିଁ । କାଳେ କାଳେ ଅପରପକ୍ଷ ମଧୁବାବୁଙ୍କ ପାଖକୁ ଆସିଲା, ମକଦ୍ଦମା ଲଢ଼େଇ ହେଲା । ମଧୁବାବୁ ନିଜ ପ୍ରତିଷ୍ଠା ପାଇଁ ବିଶେଷ ଯତ୍ନ ଓ ପରିଶ୍ରମ କରି ମକଦ୍ଦମା ଲଢ଼ିଲେ; ମୋକଦ୍ଦମରେ ଜୟୀ ହେଲେ । ସେହି ଘଟଣା ପରେ ତାଙ୍କର ସମ୍ମାନ ଓ ଖ୍ୟାତି ବଢ଼ିଗଲା ।

ତାଙ୍କ ଦୀର୍ଘ ଓକିଲାତି ଜୀବନରେ ମଧୁବାବୁ ଯେ କେତେ ଶ୍ରେଷ୍ଠ, ବଡ଼ ମକଦ୍ଦମାରେ ଓକିଲନାମା ଗ୍ରହଣ କରିଥିଲେ, ତାହାର ତାଲିକା କେହି ପ୍ରସ୍ତୁତ କରି ପାରିବେ ନାହିଁ । ସେ ସମସ୍ତ ମକଦ୍ଦମାର ତାଲିକା ଜାଣି ମଧ୍ୟ ଆମ୍ଭମାନଙ୍କର ବିଶେଷ କିଛି ଉପକାର ହେବ ନାହିଁ । ତେବେ କେତୋଟି ପ୍ରଧାନ ପ୍ରଧାନ ମକଦ୍ଦମା ଲାଗି ମଧୁସୂଦନଙ୍କ ସୁଖ୍ୟାତି ଦେଶ ତମାମ ବ୍ୟାପି ଯାଇଥିଲା । ପ୍ରସିଦ୍ଧ ମକଦ୍ଦମାଗୁଡ଼ିକ ମଧ୍ୟରେ (୧) ପୁରୀ ମନ୍ଦିର ମକଦ୍ଦମା, (୨) ମାନସିଂ ପାଟଣା ଡକାୟତି ମକଦ୍ଦମା, (୩) ଖଣ୍ଡପଡ଼ା ରାଜାଙ୍କ ମକଦ୍ଦମା, (୪) କେନ୍ଦୁଝର ରାଜାଙ୍କ ମକଦ୍ଦମା ଓ (୫) ଭୂମ୍ୟଧିକାରିଣୀ ସୂର୍ଯ୍ୟମଣି ଦେଈଙ୍କ ପୋଷ୍ୟପୁତ୍ର ମକଦ୍ଦମା, (୬) ପଟିଆ ରାଜାଙ୍କ ପୋଷ୍ୟପୁତ୍ର ମକଦ୍ଦମା, (୭) ପୁରୀ ରାଜା ରାମଚନ୍ଦ୍ର ଦେବଙ୍କ ପୋଷ୍ୟପୁତ୍ର ମକଦ୍ଦମା ଉଲ୍ଲେଖଯୋଗ୍ୟ ।

**୧ । ପୁରୀ ମନ୍ଦିର ମକଦ୍ଦମା**—୧୮୮୫ ସାଲରେ ଗଭର୍ଣ୍ଣମେଣ୍ଟ ଦ୍ୱୀପାନ୍ତରିତ ରାଜା ଦିବ୍ୟସିଂହ ଦେବଙ୍କ ନାମରେ ୧୮୮୨ ସାଲର ୧୪ ଆଇନ ଅନୁସାରେ ମକଦ୍ଦମା ଦାଏର କଲେ ଏବଂ ପୁରୀ ମନ୍ଦିର ଦଖଲ କଲେ । ଏ ମକଦ୍ଦମାରେ ଦିବ୍ୟସିଂହ ଦେବଙ୍କ ମାତା ଓ ମୁକୁନ୍ଦଦେବ ନାବାଳକଙ୍କ ପିତାମହୀ ମହାରାଣୀ ସ୍ୱର୍ଣ୍ଣମୟୀ ମୁକୁନ୍ଦଦେବଙ୍କର ମହାଫିଜ ସ୍ୱରୂପ ଥିଲେ । ସେ ସମୟରେ ଜିଲ୍ଲା କଟକ, ପ୍ରଗନା କୋଦଣ୍ଡା, ମୌଜା ନିମାଇପୁର ନିବାସୀ ସ୍ୱର୍ଗୀୟ ଦାମୋଦର ମହାନ୍ତି ହାଇକୋର୍ଟର ମୁକ୍ତାର ଥିଲେ । ଓଡ଼ିଶାର ଅପିଲ ମକଦ୍ଦମାମାନ ମକ୍କେଲମାନେ ଦାମୋଦର ବାବୁଙ୍କଠାକୁ ପଠାଉଥିଲେ । ଦାମୋଦର ବାବୁ ସେ ମକଦ୍ଦମାମାନଙ୍କରେ ପକ୍ଷମାନଙ୍କ ଏଜେଣ୍ଟ ସ୍ୱରୂପ କାର୍ଯ୍ୟ କରି ହାଇକୋର୍ଟରେ ଓକିଲ, ବାରିଷ୍ଟର ନିଯୁକ୍ତ କରୁଥିଲେ । ପୁରୀର ରାଜପିତାମହୀ ସରକାରଙ୍କ ସହିତ ମକଦ୍ଦମା ଲଢ଼ିବା ପାଇଁ ପରାମର୍ଶ କରିବାକୁ ଦାମ ବାବୁଙ୍କ ଠାକୁ ଲୋକ ପଠାଇଲେ । ସେ ମକଦ୍ଦମାକୁ ପୁରୀ ରାଣୀଙ୍କ ପକ୍ଷରୁ କଟକରେ ଚଳାଇବା ପାଇଁ ଦାମବାବୁଙ୍କ ସୁପାରିଶ କ୍ରମେ ମଧୁବାବୁ କଟକକୁ ଓକିଲ ରୂପେ ଆସିଲେ । କଟକରେ ସେ ମକଦ୍ଦମା ଚଳାଇଲେ ଓ ଓକିଲାତି ବ୍ୟବସାୟ ମଧ୍ୟ ଆରମ୍ଭ କଲେ । ସରକାରଙ୍କ ଦାବୀ କଟକ ସବ୍ ଜଜଙ୍କ

କୋର୍ଟରେ ଡିକ୍ରୀ ହେଲା । ମଧୁବାବୁ କଲିକତା ଯାଇ ସେଠାରେ ପ୍ରଧାନ ତିନିଜଣ ବାରିଷ୍ଟର—ସ୍ୱର୍ଗୀୟ ସାର୍ ଗୁରୁଦାସ ବନ୍ଦୋପାଧ୍ୟାୟ, ମିଷ୍ଟର ଉଡ୍‌ରଫ ଓ ମିଷ୍ଟର ଇଭାନସ୍‌ଙ୍କ ସଙ୍ଗେ ପରାମର୍ଶ କଲେ । ଏମାନେ ପରେ କଲିକତା ହାଇକୋର୍ଟର ବିଚାରପତି ହୋଇଥିଲେ ।

ପୁରୀ ଦେଉଳର ଆୟ, ବ୍ୟୟ ହିସାବ ବୁଝାଇବାକୁ କଟକର ଜଜ୍ ସାହେବଙ୍କ ଆଦେଶ ଅନୁସାରେ ଜଣେ କର୍ମଚାରୀ ନିଯୁକ୍ତ ହୋଇଥିଲେ । ସରକାର ପକ୍ଷରୁ ରିସିଭରଙ୍କ ନିଯୁକ୍ତି ଓ ଦଖଲ ପୁରୀରାଜାଙ୍କ ସ୍ୱତ୍ୱ ଓ ସମ୍ମାନ ପ୍ରତି ବିଶେଷ ହାନିକର ଥିଲା । ପୁରୀ ରାଜାଙ୍କ ଦାବୀ ବିଷୟରେ ମଧୁସୂଦନଙ୍କର ମତ ଥିଲା ଯେ, "ଦେଉଳର ସମସ୍ତ ସମ୍ପତ୍ତି ପୁରୀରାଜାଙ୍କର ବ୍ୟକ୍ତିଗତ ସମ୍ପତ୍ତି ।" ସାଧାରଣ ଲୋକେ କେବଳ ଜଗନ୍ନାଥ ମନ୍ଦିରକୁ ଯାଇ ଦର୍ଶନ ଓ ପୂଜା କରିବାର ଅଧିକାର ପାଇଅଛନ୍ତି, ଏହି ପୂଜା ଓ ଦର୍ଶନ ଅଧିକାର ପୁରୀ ରାଜାଙ୍କ ମନ୍ଦିରରେ ସର୍ବସାଧାରଣଙ୍କର ଗୋଟିଏ ଦଖଲି ସ୍ୱତ୍ୱ ମାତ୍ର ।

କଲିକତାରେ ମଧ୍ୟ ବଡ଼ ବଡ଼ ଓକିଲମାନେ ମଧୁସୂଦନଙ୍କୁ ଅନୁକୂଳ ମତ ଦେଲେ ନାହିଁ; ତେଣୁ ମଧୁବାବୁ ନିଜେ ମକଦ୍ଦମା ସପକ୍ଷରେ ସମସ୍ତ ଯୁକ୍ତି ଛିଠା କରି, ତାକୁ ଛାପି ବାରିଷ୍ଟରମାନଙ୍କୁ ନିଜ ହାତରୁ ଦର୍ଶନୀ ଦେଇ ତାହା ଦେଖିବାକୁ ଦେଲେ । ସେମାନେ ତାହା ପାଠ କରି ଅପିଲରେ ରାଣୀ ଜିତିବେ ବୋଲି ଆଶା ଦେଲେ । ହାଇ କୋର୍ଟରେ ରାଣୀଙ୍କର ଜୟ ହେଲା ଓ ହାଇ କୋର୍ଟ ଟେଲିଗ୍ରାମ ଦ୍ୱାରା ସରକାରଙ୍କ ପକ୍ଷରୁ ରିସିଭରଙ୍କ ଦଖଲ ପୁରୀ ମନ୍ଦିରରୁ ଉଠାଇ ଦେବାପାଇଁ ସ୍ଥାନୀୟ ହାକିମଙ୍କଠାକୁ ହୁକୁମ ପଠାଇଲେ । ଏହି ଅପିଲ ମକଦ୍ଦମା ସମଗ୍ର ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଯେଉଁ ଦିନ ଏ ଅପିଲ ଶୁଣାଣି ହେଲା, ସେଦିନ କଲିକତା ହାଇକୋର୍ଟ ଲୋକାରଣ୍ୟ ହୋଇଥିଲା ଓ ହାଇ କୋର୍ଟର ଦାଣ୍ଡ ପାଖ ଆଗନ୍ତୁକମାନଙ୍କର ଶତ ଶତ ଯାନ ବାହନରେ ପୂରି ଯାଇଥିଲା । ହାଇକୋର୍ଟର ଜଜ୍‌ମାନେ ମକଦ୍ଦମାର ବଡ଼ ନଥି ଦେଖି ଅପିଲ ଶୁଣାଣି ପାଇଁ ଦୁଇ, ତିନି ଦିନ ନିର୍ଦ୍ଦିଷ୍ଟ କରିଥିଲେ । କିନ୍ତୁ ରାଣୀଙ୍କ ପକ୍ଷର ବାରିଷ୍ଟରମାନେ ତିନି ଘଣ୍ଟାରେ ଜବାବ୍ ସୁଆଲ ଶେଷ କଲେ ।

ଏତେ ଅଳ୍ପ ସମୟରେ ଜବାବ୍ ସୁଆଲ ଶେଷ କରିଥିବା ଯୋଗୁଁ ଜଜ୍‌ମାନେ ରାଣୀଙ୍କ ବାରିଷ୍ଟରଙ୍କୁ ଧନ୍ୟବାଦ ଦେଲେ । ବାରିଷ୍ଟର ଜଜ୍‌ମାନଙ୍କୁ କହିଲେ, "ଏ ଧନ୍ୟବାଦ ଆମର ପ୍ରାପ୍ୟ ନୁହେଁ । କଟକରୁ ଆଗତ ଆମର ଏହି ଯୁବକବନ୍ଧୁ (ମଧୁବାବୁ କଚେରୀରେ ଉପସ୍ଥିତ ଥିବାରୁ ତାଙ୍କୁ ଦେଖାଇ ଦେଇ) ଙ୍କର ନୋଟ୍ ଓ ସୂଚନା ଅନୁସାରେ ଆମେ ଜବାବ୍ ସୁଆଲ

କରିଅଛନ୍ତି । ଏ ଧନ୍ୟବାଦ ତାଙ୍କର ପ୍ରାପ୍ୟ ଅଟେ ।" ଏହା ଶୁଣି ଜଜମାନେ ମଧୁବାବୁଙ୍କ ନାମ, ଧାମ ବୁଝି ତାଙ୍କ ପ୍ରତି ପରମ ପରିତୋଷ ପ୍ରକାଶ କଲେ । ସେଦିନ ଗୋଟିଏ ସାନ୍ଧ୍ୟ ସମ୍ମିଳନକୁ ମଧୁବାବୁ ନିମନ୍ତ୍ରିତ ହେଲେ । ସେଠାରେ ହାଇକୋର୍ଟ ଜଜମାନେ ବହୁ ଗଣ୍ୟ ମାନ୍ୟ ସରକାରୀ ଓ ବେସରକାରୀ ବ୍ୟକ୍ତିଙ୍କ ସଙ୍ଗେ ମଧୁବାବୁଙ୍କୁ ପରିଚିତ କରାଇ ଦେଲେ । କେବଳ ସେତିକି ନୁହେଁ, ଏ ଅପୀଲର ନିଷ୍ପତ୍ତି ପରେ ବଙ୍ଗର ତତ୍କାଳୀନ ଲାଟ ସାହେବ ପୁରୀ ରାଜାଙ୍କ ସହିତ ରଫା କରିବା ପାଇଁ ମଧୁବାବୁଙ୍କୁ ତାଙ୍କ କୋଠିକି ଡକାଇ ଥିଲେ । ସରକାର ଓ ପୁରୀ ରାଜାଙ୍କ ମଧ୍ୟରେ ୧୮୮୮ ସାଲରେ ଗୋଟିଏ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା । ପୁରୀ ରାଜା ବଂଶାନୁକ୍ରମେ ପୁରୀ ମନ୍ଦିରର ପରିଚାଳକ ବା ସୁପରିଣ୍ଟେଣ୍ଡେଣ୍ଟ ରହିବେ ବୋଲି ସରକାର ସ୍ୱୀକାର କଲେ ଓ ମୁକୁନ୍ଦ ଦେବଙ୍କ ନାବାଳଗି ଥିବା ପର୍ଯ୍ୟନ୍ତ ପିତାମହୀ ସ୍ୱର୍ଣ୍ଣମୟୀ ତାଙ୍କ ମହାଫିଜ୍ ସ୍ୱରୂପ ମନ୍ଦିର ଚଳାଇବେ ଓ ଜଣେ ଉପଯୁକ୍ତ ମ୍ୟାନେଜର ନିଯୁକ୍ତ କରିବେ ବୋଲି ସ୍ଥିର ହେଲା । ଭବିଷ୍ୟତରେ ସରକାର ଏପରି ମୋକଦ୍ଦମା ଚଳାଇ ପାରିବେ ନାହିଁ ବୋଲି ସ୍ୱୀକୃତ ହେଲେ ।

ଦିବ୍ୟସିଂହଙ୍କ ବୃଦ୍ଧା ମାତା ରାଣୀ ସ୍ୱର୍ଣ୍ଣମୟୀ ମଧୁବାବୁଙ୍କୁ ନଅରକୁ ଡକାଇ ନେଇଥିଲେ ଓ କହିଥିଲେ ଯେ ଯଦି ତାଙ୍କ ହାତରେ ଖଣ୍ଡା ଥାଆନ୍ତା, ସେ ଦେଖାଇ ଦିଅନ୍ତେ ପୁରୀ ରାଜବଂଶର କି ସମ୍ମାନ ଲାଭ ଅଛି । ମଧୁବାବୁ ବୁଢ଼ୀ ରାଣୀଙ୍କର ମହାନୁଭବତା ଭାବାପନ୍ନ କଥାସବୁ ଶୁଣି ନିଜେ ବଡ଼ ଉତ୍ସାହିତ ହୋଇଥିଲେ । ଏହି ମକଦ୍ଦମା ସମ୍ପର୍କରେ ଆଉ ଏକ କଥା ପ୍ରବଚନରେ ପରିଣତ ହୋଇଅଛି । ପୁରୀ ଦେଉଳ ବିଷୟରେ ମଧୁବାବୁ କହିଥିଲେ ଯେ ଯେପରି ବଜାରରେ ଖରାପ ଘିଅ ବିକ୍ରୀ ହେଲେ ଗାଈକୁ ଦୋଷ ଦିଆଯାଇ ନ ପାରେ, ସେହିପରି ରାଣୀଙ୍କ ହାତରେ ପୁରୀ ଦେଉଳ ଗୃହକାଠି ଅଛି ବୋଲି ଦେଉଳର ମନ୍ଦ ପରିଚାଳନା ପାଇଁ ତାଙ୍କୁ ଦୋଷ ଦେବା ଅନୁଚିତ ।

ପୁରୀ ରାଜାଙ୍କ ମକଦ୍ଦମାରେ ଜୟୀ ହେବା ପରେ ତାଙ୍କର ସୁଖ୍ୟାତି ଦେଶ ତମାମ ବ୍ୟାପି ଯାଇଥିଲା ଏବଂ ସେ ଏହି ମକଦ୍ଦମାରୁ ଲକ୍ଷାଧିକ ଟଙ୍କା ପାରିଶ୍ରମିକ ସ୍ୱରୂପ ପାଇଥିଲେ । ସେହି ଦିନଠାରୁ ସେ ଉତ୍କଳର ପୁରପଲ୍ଲୀରେ "ମଧୁବାରିଷ୍ଟର" ନାମରେ ଖ୍ୟାତିଲାଭ କଲେ । ମଧୁସୂଦନ ନିଜ ମୁଖରେ ସ୍ୱୀକାର କରିଛନ୍ତି ଯେ ପୁରୀ ମନ୍ଦିରର ଏହି ଅପିଲ ମକଦ୍ଦମା ତାହାଙ୍କ ଓକିଲତି ପ୍ରସାରର ମୂଳଦୁଆ ।

ପୁରୀ ରାଜାଙ୍କ ମକଦ୍ଦମା ପରେ ମଧୁସୂଦନଙ୍କ ମାଆ ପାର୍ବତୀ ଦେବୀ ଥରେ ପୁରୀ ଦେଉଳକୁ ଦର୍ଶନ ପାଇଁ ଯାଇଥିଲେ । ରାଣୀଙ୍କ ଆଦେଶ ଅନୁସାରେ

ତାଙ୍କପାଇଁ " ଦେଉଳ ଶୋଧ " ହୋଇଥିଲା ; ଅର୍ଥାତ୍ ତାଙ୍କ ଦର୍ଶନ ବେଳେ ମନ୍ଦିର ବେଢ଼ାରେ କେବଳ ଅତ୍ୟାବଶ୍ୟକ ସେବକଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ ବାହାରେ ରଖାଯାଇ ଥିଲା । ଏପରି ସମ୍ମାନଲାଭ ସହଜ କଥା ନୁହେଁ । ପୁରୀ ବଡ଼ ଦେଉଳରେ କୋଟିପତି ରାଜା ମହାରାଜା ମାନେ ଶତ ଶତ ଟଙ୍କା ଖରଚ କରି ' ଦେଉଳଶୋଧ ' କରାନ୍ତି । ମଧୁବାବୁଙ୍କ ଯୋଗୁଁ ପାର୍ବତୀ ଦେବୀ ଏ ସମ୍ମାନଲାଭ କରି ସୁପୁତ୍ରଜନନୀ ରୂପେ କି ଆନନ୍ଦ ଲାଭ କରି ନ ଥିବେ ?

୨ । **ମାନସିଂହପାଟଣା ଡକାୟିତି ମୋକଦ୍ଦମା—୧୯୦୨** ମସିହାର ମାନସିଂହ ପାଟଣା ଡକାୟିତି ମକଦ୍ଦମା ତାଙ୍କ ଓକିଲାତି ଜୀବନର ଆଉ ଏକ ଉଲ୍ଲେଖଯୋଗ୍ୟ ଘଟନା । ସେତେବେଳେ କଟକ ମାନସିଂହପାଟଣାରେ ଏକ ଭୀଷଣ ଡକାୟିତି ହୋଇ ଅନେକ ସୁନା, ରୂପା ଚୋରି ଯାଇ ଥିଲା । ପୁଲିସ ନାନା ଅନୁସନ୍ଧାନ କରି ଶେଷରେ ମାନସିଂହପାଟଣାର ଦୁଇ ଜଣ ନିରୀହ ବ୍ୟକ୍ତି ଦାମା ଓ ରଙ୍ଗାଙ୍କୁ ଗିରଫ କଲେ ଏବଂ ପୁଲିସଙ୍କ ଉପସ୍ଥାପିତ ପ୍ରମାଣ ଉପରେ ସେମାନେ ଅପରାଧୀ ସାବ୍ୟସ୍ତ ହୋଇ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହେଲେ । ସେ ସମୟରେ ଶ୍ରୀ ଅନଙ୍ଗମୋହନ ଚକ୍ରବର୍ତ୍ତୀ କଟକରେ ପୁଲିସ ଦାରୋଗା, ମିଷ୍ଟର ସୁର ସାହେବ କଟକ ଜିଲ୍ଲାର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ, ମିଷ୍ଟର କେ. ଜି. ଗୁପ୍ତ ଓଡ଼ିଶାର କମିସନର ଓ ଫିସର ସାହେବ କଟକର ମାଜିଷ୍ଟ୍ରେଟ ଥିଲେ । ସେମାନେ ଯେ କେବଳ ଏହି ଦୁଇ ଜଣଙ୍କୁ ଆସାମୀ କରିଥିଲେ ତାହା ନୁହେଁ; ୧୯୦୩ ମସିହାରେ ସରକାରଙ୍କ ଭିତରି ଗୋପନୀୟ ଖବର ଦେଇଥିଲେ ଯେ ଚୋରି ଯାଇଥିବା ସମସ୍ତ ସୁନା ରୂପା ମଧୁସୂଦନଙ୍କ ହାତରେ ଅଛି । ସେତେବେଳକୁ ମଧୁସୂଦନଙ୍କ ଓଡ଼ିଶା ସୂକ୍ଷ୍ମକଳା ବ୍ୟବସାୟ (Orissa Art Works) ର କାରଖାନା ବସି ସାରିଥିଲା, ତେଣୁ ପୁଲିଶଙ୍କର ପୂରା ବିଶ୍ୱାସ ହୋଇଥିଲା ଯେ, ଏହି କାରଖାନାରେ ଚୋରି ମାଲ ସୁନା ରୂପା ସବୁ ଆଉଟା ହେଉଅଛି । ସ୍ୱାଧୀନ ଓ ନିର୍ଭୀକ ସମାଲୋଚନା ଯୋଗୁ ମଧୁସୂଦନ ସ୍ଥାନୀୟ ରାଜକର୍ମଚାରୀଙ୍କର ଚକ୍ଷୁଶୂଳ ହୋଇଥିଲେ । ତେଣୁ ପୁଲିଶର ସୂଚନାକୁ ସେମାନେ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କଲେ । ଏହି ମୋକଦ୍ଦମା ନିଷ୍ପତ୍ତି ହେବାର କିଛି ଦିନ ପରେ ମିଷ୍ଟର କାରଲାଇଲ୍ ନାମକ ଜଣେ ବଙ୍ଗ ପ୍ରଦେଶର ଗୁପ୍ତଚର ବିଭାଗର ପୁଲିଶ ଅଫିସର ନିର୍ଣ୍ଣୟ କଲେ ଯେ ମାନସିଂହ ପାଟଣା ଡକାୟିତି କାଳକତାର ଏକ ଡକାୟିତ ଦଳଙ୍କ ଦ୍ୱାରା ସଂଘଟିତ ହୋଇଥିଲା । ସେମାନେ ଆଉ ଗୋଟିଏ ମକଦ୍ଦମାରେ ଧରା ପଡ଼ିଲେ । ମଧୁସୂଦନ ଏହି ସମ୍ବାଦ ପାଇ ବଙ୍ଗଳାର ଗଭର୍ଣ୍ଣର ସାର ଆଣ୍ଡ୍ରୁ ଫ୍ରେଜରଙ୍କ କଟକର ସେହି ମକଦ୍ଦମାର ସମସ୍ତ ବିବରଣୀ ଲେଖିଲେ । ଫଳରେ 'ରଙ୍ଗା' ଓ 'ଦାମା' ନିରପରାଧ ସାବ୍ୟସ୍ତ ହୋଇ ଦ୍ୱୀପାନ୍ତରରୁ

ଫେରି ଆସିଲେ ଏବଂ ସଂପୃକ୍ତ ପୁଲିସ କର୍ମଚାରୀମାନଙ୍କୁ କାର୍ଯ୍ୟରୁ ବହିଷ୍କୃତ କରିବାର ଆଦେଶ ହେଲା । ଏହାଦ୍ୱାରା ସରକାରୀ ମହଲରେ ବଡ଼ ଚହଲ ପଡ଼ିଗଲା । ମଧୁସୂଦନଙ୍କୁ ଏହା ପରେ ପରେ ୧୯୦୪ ମସିହାରେ ସରକାର ସି. ଆଇ. ଇ. ଉପାଧିରେ ଭୂଷିତ କଲେ । ପୁଲିସ ଦୃଷ୍ଟିରେ ଚୋର-ମାଲ-ରକ୍ଷକ ମଧୁସୂଦନ ଭାରତୀୟ ସାମ୍ରାଜ୍ୟର ସହଚରରୂପେ ସରକାରଙ୍କ ଦ୍ୱାରା ସମ୍ମାନିତ ହେଲେ ।

୩ । **ଖଣ୍ଡପଡ଼ା ରାଜାଙ୍କ ମକଦ୍ଦମା**—ଖଣ୍ଡପଡ଼ା ରାଜାଙ୍କ ମକଦ୍ଦମା ମଧୁସୂଦନଙ୍କ ଓକିଲତି ଜୀବନର ଅନ୍ୟ ଏକ କୀର୍ତ୍ତି । ଖଣ୍ଡପଡ଼ାର ରାଜା ନଟବର ପ୍ରତାପ ସିଂହ ନୂଆପଡ଼ା ମେଳରେ ସାତ ଜଣ ଲୋକଙ୍କୁ ପ୍ରାଣଦଣ୍ଡ ଦେଇଥିଲେ । ଖଣ୍ଡପଡ଼ାରେ ଏ ସମସ୍ତ କାଣ୍ଡ ଘଟାଇ ରାଜା କଟକ ପଳାଇ ଆସି ମଧୁବାବୁଙ୍କ ସଙ୍ଗେ ସାକ୍ଷାତ କଲେ ଓ ସଙ୍ଗାତ ବସି କହିଲେ, "ସଙ୍ଗାତ, ଏ ଜୀବନଟା ତୁମର । ତୁମ ପାଖରେ ଶରଣ ପଶିଲି । ଖଣ୍ଡପଡ଼ା ରାଜା ତୁମର ।" ମଧୁବାବୁ ତାହାଙ୍କୁ ନିଜ କୋଠିରେ ରଖିଲେ । ପ୍ରଥମେ ମଧୁବାବୁ କମିଶନର ସାହେବଙ୍କ ସଙ୍ଗେ ରାଜାଙ୍କୁ ଦେଖା କରାଇ ତାହାଙ୍କ ପାଇଁ ଲଢ଼ିଲେ । ମାତ୍ର ରାଜା ଦୋଷୀ ବୋଲି କଟକରେ ସାବ୍ୟସ୍ତ ହୋଇଥିଲେ । କିନ୍ତୁ ମଧୁସୂଦନ କଲିକତା ହାଇକୋର୍ଟରେ ଅପିଲ କରି ଶେଷରେ ତାଙ୍କୁ ଖଲାସ କରାଇଥିଲେ ।

ଏହି ମକଦ୍ଦମାରେ ମଧୁସୂଦନ ଓକିଲ ଜୀବନରେ ସବୁଠାରୁ ବେଶୀ ଟଙ୍କା ଏକାଦିନକେ ରୋଜଗାର କରିଥିଲେ । ପ୍ରାୟ ଏକ ଲକ୍ଷ ଟଙ୍କା, ଅନେକ ମଣି, ମାଣିକ୍ୟ ଓ ସୁନା ଅଳଙ୍କାର ସେ ଖଣ୍ଡପଡ଼ା ରାଜାଙ୍କ ଠାରୁ ଉପହାର ସ୍ୱରୂପ ପାଇଥିଲେ ।

୪ । **କେନ୍ଦୁଝର ମେଳି ମକଦ୍ଦମା**—୧୮୯୧ ମସିହାରେ କେନ୍ଦୁଝର ମେଳି ସମୟରେ ମଧ୍ୟ ରାଜା ଧନଞ୍ଜୟ ଭଞ୍ଜଙ୍କୁ ମଧୁସୂଦନ ଯତ୍ପରୋନାସ୍ତି ସାହାଯ୍ୟ କରିଥିଲେ । ରାଜା ଧନଞ୍ଜୟ ଭଞ୍ଜଙ୍କୁ ମେଳି ସମୟରେ କଟକ ବସାରେ ରଖି ତାଙ୍କ ପାଇଁ ସରକାରଙ୍କ ପାଖରେ ଲଢ଼ି ପୁଣି ତାଙ୍କୁ ରାଜ୍ୟ ଫେରି ପାଇବାରେ ସେ ବିଶେଷ ସାହାଯ୍ୟ କରିଥିଲେ । ମୁଖ୍ୟତଃ ମଧୁସୂଦନଙ୍କ ଲାଗି କେନ୍ଦୁଝର ରାଜା ମେଳି ପରେ ତାଙ୍କ ରାଜ୍ୟ ଫେରି ପାଇଥିଲେ ।

କେନ୍ଦୁଝର ରାଜ୍ୟର ତତ୍କାଳୀନ ମ୍ୟାନେଜର ଔପନ୍ୟାସିକ ଫକୀର ମୋହନ ସେନାପତି ତାଙ୍କ "ଆତ୍ମଜୀବନୀ"ରେ ଲେଖି ଅଛନ୍ତି—

"ଉତ୍କଳର ସର୍ବପ୍ରଧାନ ଓକିଲ ବାବୁ ମଧୁସୂଦନ ଦାସ କେନ୍ଦୁଝର ମହାରାଜଙ୍କ ତରଫରୁ କଲିକତାକୁ ଯାଇ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କ

ଦରବାରରେ ମହାରାଜାଙ୍କ ସପକ୍ଷରେ ଟେଯ୍ନବୀ ସାହେବଙ୍କ ଦ୍ଵାରା ଆନୀତ ବିଦ୍ରୋହ ସମ୍ବନ୍ଧରେ ଦୋଷମାନ ଖଣ୍ଡନ କରି ମହାରାଜାଙ୍କ ନିର୍ଦ୍ଦୋଷିତା ପ୍ରମାଣ କଲେ ।"

କେନ୍ଦୁଝର ରାଜାଙ୍କ ମକଦ୍ଦମା ସମ୍ପର୍କରେ ମଧୁବାବୁଙ୍କ ମୁହଁରୁ ଯାହା ଶୁଣାଯାଇ ଅଛି, ତାହାର ବିବରଣୀ ଏଠାରେ ଦିଆ ଯାଉଅଛି—

"କେନ୍ଦୁଝରରେ ମେଳି ହେବାରୁ ସରକାର ଏଥିପାଇଁ କେନ୍ଦୁଝର ରାଜାଙ୍କୁ ଦୋଷୀ କରି କେନ୍ଦୁଝର ରାଜ୍ୟର ଶାସନଭାର ନିଜ ହାତକୁ ନେଲେ ଓ କେନ୍ଦୁଝର ରାଜା କଟକ ପଳାଇ ଆସିଲେ । ଦିନେ ମଧୁବାବୁ ତାଙ୍କ କୋଠିରେ ବସି ଅଛନ୍ତି, ଖଣ୍ଡିଏ ଲୁଗା ପିନ୍ଧି ଓ ଦେହରେ ଖଣ୍ଡେ ଗାମୁଛା ପକାଇ ଜଣେ ବ୍ୟକ୍ତି ଆସି ତାଙ୍କ ଆଗେ ଉପସ୍ଥିତ ହେଲେ । ସେ କହିଲେ, "ମୁଁ କେନ୍ଦୁଝରର ରାଜା ଧନଞ୍ଜୟ ନାରାୟଣ ଭଞ୍ଜ । ମୁଁ ଆପଣଙ୍କ ନାମ ଶୁଣି କଟକ ଆସିଛି । ପ୍ରଜାମାନେ ମେଳି କଲେ । କିନ୍ତୁ କେତେକ ଲୋକ ମୁଁ ପ୍ରଜାପୀଡ଼କ ଓ ଅତ୍ୟାଚାରୀ ଥିବା ଯୋଗୁଁ ମେଳି ଘଟିଛି ବୋଲି କମିଶନର ସାହେବଙ୍କୁ ବୁଝାଇ ଦେବାରୁ ସାହେବ ଜଣେ ଗୋରାକୁ ପଠାଇ ମୋତେ ରାଜ୍ୟରୁ ବେଦଖଲ କରି ଅଛନ୍ତି । ମୁଁ ନିର୍ଦ୍ଦୋଷ । ମୁଁ ଆପଣଙ୍କ ଆଶ୍ରୟ ନେଲି । ମୁଁ ଏହିପରି ଏକ ବସ୍ତ୍ର ଓ କପର୍ଦ୍ଦକଶୂନ୍ୟ ହୋଇ ପଳାଇ ଆସିଅଛି ।"

ମଧୁବାବୁ ଏହା ଶୁଣି ସଙ୍ଗେ ସଙ୍ଗେ ଶତାଧିକ ଟଙ୍କା ନିଜ ହାତରୁ ଖର୍ଚ୍ଚ କରି ରାଜାଙ୍କ ଲୁଗାପଟା, ବ୍ୟବହାର୍ଯ୍ୟ ବସ୍ତୁମାନ ଓ ବସାର ବନ୍ଦୋବସ୍ତ କଲେ । ତତ୍ପରଦିନ ରାଜାଙ୍କ ପକ୍ଷରୁ ମଧୁବାବୁ ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ଟେଯ୍ନବୀ ସାହେବଙ୍କୁ ଦେଖା କରିବାକୁ ପତ୍ର ଲେଖିଲେ ଓ ପରେ ରାଜା ମଧ୍ୟ ପତ୍ର ଲେଖିଲେ । ଟେଯ୍ନବୀସାହେବ କେନ୍ଦୁଝରର ମ୍ୟାନେଜରଙ୍କ ଠାରୁ ଏକତରଫା ରିପୋର୍ଟ ପାଇ ରାଜାଙ୍କ ଉପରେ ଏପରି ବିରକ୍ତ ହୋଇଥିଲେ ଯେ, ସେ ଦେଖା ଦେବାକୁ ଅନୁମତି ଦେଲେ ନାହିଁ ଓ ମଧୁବାବୁଙ୍କୁ କହିଲେ ଯେ ସେ କେନ୍ଦୁଝର ସମ୍ପର୍କରେ କୌଣସି କଥା ତାଙ୍କଠାରୁ ଶୁଣିବେ ନାହିଁ । ତତ୍ପରେ ମଧୁବାବୁ ଷ୍ଟେଟଲଟଙ୍କ ପାଖକୁ ତାର କରି ରାଜାଙ୍କ ଓକିଲ ସ୍ଵରୂପ କମିଶନରଙ୍କ ଅଫିସରୁ ଏହି ସମ୍ପର୍କୀୟ ନଥି ଦେଖିଲେ ଓ ସେଥିରେ କେନ୍ଦୁଝରକୁ ଖାସ କରିବା ପାଇଁ କେତେକ ସରକାରୀ କର୍ମଚାରୀଙ୍କ ଅଭିସନ୍ଧିର ନିଦର୍ଶନ ପାଇ ଟେଯ୍ନବୀ ସାହେବଙ୍କଠାରୁ ପ୍ରତିକାରର ଆଶା ନ ଦେଖି ଷ୍ଟେଟଲଟଙ୍କ ପାଖରେ ଅପିଲ କରିବା ପାଇଁ ସ୍ଥିର କଲେ ।

ଏଣେ ଟେଯ୍ନବୀ ସାହେବ ରାଜାଙ୍କ ବିରୁଦ୍ଧରେ ଷ୍ଟେଟଲଟଙ୍କଠାରୁ ଗୁଡ଼ିଏ ଅତିରଞ୍ଜିତ ରିପୋର୍ଟ ଦେଇ ଷ୍ଟେଟଲଟଙ୍କ ମନକୁ ରାଜାଙ୍କ ବିରୁଦ୍ଧରେ ତିକ୍ତ କରି

ଥାନ୍ତି । ଷ୍ଟେଟଲ୍‌ଟଙ୍କ ଆଦେଶକ୍ରମେ ମଧୁବାବୁଙ୍କର ରାଜାଙ୍କ ଓକିଲ ସ୍ୱରୂପ ନଥି ଦେଖିବା କଥାରୁ ଟୟୁନବୀ ସାହେବ ଆଶଙ୍କା କଲେ ଯେ, ଷ୍ଟେଟଲ୍‌ଟଙ୍କ ଠାରେ ଅପୀଲ ହେବ; ଏହି ଆଶଙ୍କା କରି ଟୟୁନବୀ ସାହେବ ମଧୁବାବୁଙ୍କୁ ଓ ରାଜାଙ୍କୁ ଏକାଧିକ ଥର ଡ଼କାଇଲେ । ମଧୁବାବୁଙ୍କ ପରାମର୍ଶରେ ରାଜା ଧନଞ୍ଜୟ ଭଞ୍ଜ ଉତ୍ତର ଦେଲେ " ଆପଣ ସାକ୍ଷାତ କରିବାକୁ ଓ କେନ୍ଦୁଝର କଥା ଶୁଣିବାକୁ ନାହିଁ କରୁଛନ୍ତି, ପୁଣି ଅମ୍ଭେମାନେ କପରି ଯିବୁ ?"

ତତ୍‌ପରେ ଅପୀଲର ଉଜ୍‌ଦ୍ଧାତ ତିଆରି କରି, ରାଜାଙ୍କ ଆବେଦନପତ୍ର ମୁଦ୍ରଣ କରି ରାଜାଙ୍କ ତରଫରୁ ମଧୁବାବୁ କଲିକତା ଗଲେ ଓ ସାର୍ ଆସଲିଇଡେନ ଷ୍ଟେଟଲ୍‌ଟଙ୍କ ଠାରେ ନିବେଦନପତ୍ର ଦାଖଲ କଲେ । ଷ୍ଟେଟଲ୍‌ଟ ସାହେବ ପୂର୍ବରୁ ଟୟୁନବୀ ସାହେବଙ୍କ ରିପୋର୍ଟ ପାଇ ଅଡ଼ି ବସିଥିଲେ । ମଧୁବାବୁ ନିବେଦନପତ୍ରଟି ଦେବାମାତ୍ରେ ତାହାକୁ ତାଚ୍ଛଲ୍ୟ ସହକାରେ ପ୍ରତ୍ୟାଖ୍ୟାନ କଲେ ଏବଂ କହିଲେ, "ରାଜାଙ୍କ ଅତ୍ୟାଚାରରୁ ଏ ମେଳି ହୋଇଅଛି । ରାଜା ଦୋଷୀ । ମୁଁ ଏ ସମ୍ବନ୍ଧରେ ଆପଣଙ୍କଠାରୁ କିଛି ଶୁଣିବାକୁ ଚାହେଁ ନାହିଁ ।"

ମଧୁବାବୁ ଏହା ଶୁଣି ବିଚାରିଲେ " ମୁଁ ଯାହା ପାଇଁ ଲଢ଼ିବାକୁ ଏଠାକୁ ଆସିଛି, ତା'ପାଇଁ ଏ ପ୍ରାଣ ଯାଉ ପଛକେ, ମୁଁ ଅବଶ୍ୟ ଲଢ଼ିବି ।" ଏହା ବିଚାରି ସେ ଲାଟ ସାହେବଙ୍କୁ କହିଲେ, "ହଜୁର ! ମୁଁ ବିଦାୟ ହେଉଛି । ଯେତେବେଳେ ଆପଣ ମୁଦାଲାଠାରୁ କିଛି ନ ଶୁଣି ରାୟ ଦେଇ ସାରିଲେଣି, ମୋର ଏ ସମ୍ବନ୍ଧରେ ଆଉ କିଛି କହିବାର କଥା ନାହିଁ । ମୁଁ ଆଜଯାଏ ବିଶ୍ୱାସ କରିଥିଲି ଯେ, ସ୍ଥାନୀୟ ହାକିମଙ୍କ ଅତ୍ୟାଚାର ଅବିଚାର ବିରୁଦ୍ଧରେ ସୁବିଚାର ପାଇବା ଓ ପ୍ରତିକାର ପାଇଁ ଷ୍ଟେଟଲ୍‌ଟ ପଦର ସୃଷ୍ଟି, କିନ୍ତୁ ଆଜି ମୋର ଭ୍ରାନ୍ତି ଦୂର ହୋଇଅଛି ; ଆଜି ମୁଁ ବୁଝିଛି ଯେ ସ୍ଥାନୀୟ ହାକିମଙ୍କ ଯଥେଚ୍ଛାଚାରରେ ପ୍ରଶ୍ରୟ ଦେବାଲାଗି ଷ୍ଟେଟଲ୍‌ଟ ପଦର ସୃଷ୍ଟି ହୋଇଅଛି । ମୁଁ ଏହି ବିଶ୍ୱାସ ନେଇ ଏଠାରୁ ଫେରୁଛି ଓ ରାଜାଙ୍କୁ ଯାଇ କହିବି ଯେ, ଇହ-ଜଗତରେ ସୁବିଚାର ଆଶା କରନ୍ତୁ ନାହିଁ । ଅଚ୍ଛା ତେବେ, ମୁଁ ବିଦାୟ ଗ୍ରହଣ କରୁଛି (ଗୁଡ୍‌ବାଇ) !

ମଧୁବାବୁ ପ୍ରତ୍ୟକ୍ଷ କଲେ ଯେ, ତାଙ୍କ ମୁହଁରୁ ଏ ବାକ୍ୟବାଣ ବାହାରିଲା-ବେଳେ ଷ୍ଟେଟଲ୍‌ଟ କ୍ରୋଧରେ ଲାଲ ହୋଇଗଲେ । ମଧୁବାବୁ ଏତକ କହି ସଲାମଟିଏ ପକାଇ ଷ୍ଟେଟଲ୍‌ଟଙ୍କ ଦପ୍ତରରୁ ବାହାରି ଆସିଲେ । ଦପ୍ତରଖାନା ଦ୍ୱାରରୁ ସେ ପ୍ରାୟ ୨୦ ହାତ ଆସିଛନ୍ତି, ଏହି ସମୟରେ ପଛରୁ ଡାକ ଶୁଣିଲେ, "ମିଷ୍ଟର ଦାସ ! ଅନୁଗ୍ରହପୂର୍ବକ ଫେରି ଆସ ।" ସେ ବୁଲି ପଡ଼ି ଚାହିଁଲେ

ଯେ ଷ୍ଟେଟଲ୍ଟ ସ୍ୱୟଂ ତାଙ୍କ ଦପ୍ତରର ଦ୍ୱାରରେ ଠିଆ ହୋଇ ତାଙ୍କୁ ଡାକୁଅଛନ୍ତି । ମଧୁବାବୁ ଅଗତ୍ୟା ଫେରିଲେ । ଷ୍ଟେଟଲ୍ଟ କହିଲେ, "ଭିତରକୁ ଆସ ଓ ଚଉକିରେ ବସ ।"

ପ୍ରଥମ ଥର ସାକ୍ଷାତରେ ଲ୍ଟ ସାହେବ ଏପରି କ୍ରୁଦ୍ଧ ଥିଲେ ଯେ, ମଧୁବାବୁଙ୍କୁ ବସିବାକୁ କହି ନ ଥିଲେ ଓ ତାଙ୍କ ପ୍ରଦତ୍ତ ନିବେଦନପତ୍ରଟି ତଳକୁ ପକାଇ ଦେଇଥିଲେ । ମଧୁବାବୁ ବସିଲାକ୍ଷଣି ଷ୍ଟେଟଲ୍ଟ ତଳେ ପଡ଼ିଥିବା ନିବେଦନପତ୍ରଟି ଉଠାଇ ନେଇ ମନୋଯୋଗପୂର୍ବକ ପଢ଼ିଲେ ଓ ମଧୁବାବୁଙ୍କୁ କହିଲେ, "ମିଷ୍ଟର ଦାସ । ଆପଣ ମୋ ବ୍ୟବହାରରେ ବିରକ୍ତ ହୋଇଗଲେ । ଆଚ୍ଛା, ମୁଁ ଆପଣଙ୍କୁ ପଚାରୁଛି, ଆପଣ କଣ ହୃଦୟରେ ବିଶ୍ୱାସ କରନ୍ତି ଯେ ରାଜା ସାହେବ ନିର୍ଦ୍ଦୋଷ ? ଆପଣଙ୍କୁ ରାଜା ସାହେବ କେତେ ପାରିଶ୍ରମିକ ଦେଇଛନ୍ତି ବା ଦେବେ ?" ମଧୁବାବୁ ଏହି ଶୁଣି କହିଲେ, "ଯେବେ ମୋତେ ଆଜି ମୃତ୍ୟୁର ଡାକରା ଆସେ, ତେବେ ମୁଁ ମୃତ୍ୟୁ ଶଯ୍ୟାରେ ଶୋଇ ଶେଷ ନିଃଶ୍ୱାସରେ କହିବି—ରାଜା ସାହେବ ଅତ୍ୟାଚାରୀ ନୁହନ୍ତି, ସେ ଅମଲାତନ୍ତ୍ର ଦ୍ୱାରା ଅତ୍ୟାଚାରିତ । ରାଜାଙ୍କଠାରୁ ମୋର ପାରିଶ୍ରମିକ ନେବା କଥା ଦୂରେ ଥାଉ, ସେ ଏକବସ୍ତ୍ର ହୋଇ ଭିକ୍ଷବେଶରେ ମୋ ଦ୍ୱାରରେ ଠିଆ ହେବାରୁ ମୁଁ ତାଙ୍କୁ ମୋ ହାତରୁ ଖର୍ଚ୍ଚ କରି ଆଶ୍ରୟ ଦେଇଛି ଓ ତାଙ୍କୁ ଲୁଗାପଟା ଦେଇଛି । ଟୟୁନବୀ ସାହେବଙ୍କ ଅଫିସରେ ମୁଁ ଯେଉଁ ନଥି ଦେଖିଛି, ସେହି ନଥିରେ ଅମୁକ ଅମୁକ କାଗଜରୁ ସରକାରୀ ଅମଲାତନ୍ତ୍ରର ରାଜାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କଥା ସ୍ପଷ୍ଟ ଜଣାଯିବ ।"

ଏହା କହି ସେ ଦୁଇ ତିନିଖଣ୍ଡ ଚିଠିର ମର୍ମ ଷ୍ଟେଟଲ୍ଟ ସାହେବଙ୍କୁ ଦେଲେ । ସାହେବ ଏହା ଶୁଣି କ୍ଷଣକାଳ ସ୍ତବ୍ଧ ହେଲେ ଓ ତା ପରେ ମଧୁବାବୁଙ୍କ ସଙ୍ଗେ ମଧୁର ସମ୍ଭାଷଣ କରି କହିଲେ, "ମୁଁ ଦେଖି ପାରୁଛି ଯେ, କେନ୍ଦୁଝରର ରାଜାଙ୍କ ପ୍ରତି ଅବିଚାର ହୋଇଛି । ରାଜାସାହେବ ଟୟୁନବୀ ସାହେବଙ୍କ ସଙ୍ଗେ ଦେଖା କରନ୍ତୁ । ତାଙ୍କୁ ରାଜ୍ୟକୁ ଫେରିଯିବାକୁ ସାହେବ ଅର୍ଡର ବା ଆଦେଶ ଦେବେ ।"

ଏହା ଶୁଣି ମଧୁବାବୁ ଷ୍ଟେଟଲ୍ଟଙ୍କୁ କହିଲେ, "ଟୟୁନବୀ ସାହେବ ଆଜି ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ହୋଇଅଛନ୍ତି । ଏ କାର୍ଯ୍ୟରୁ ପେନ୍‌ସନ ପାଇ ଦେଶକୁ ଫେରିଲେ ତାଙ୍କୁ ଆଶ୍ରୟ ପାଇବା ପାଇଁ ହୁଏ ତ ଅସୁବିଧାରେ ପଡ଼ିବାକୁ ହେବ । କେନ୍ଦୁଝର ରାଜାସାହେବ ପୁରୁଷାନୁକ୍ରମେ ରଜା ଅଛନ୍ତି । ତାଙ୍କ ଜୀବିତାବସ୍ଥା କଥା ଦୂରେ ଥାଉ, ତାଙ୍କ ମୁର୍ଦ୍ଦାର ପଡ଼ିଥିଲେ ମୁର୍ଦ୍ଦାରକୁ ମୁଣ୍ଡିଆ ମାରିବାକୁ ହଜାର ହଜାର ଲୋକ ଆସିବେ । ଜଣେ ଆଜନ୍ମ ରାଜା ଓ ଜଣେ

ଖଜଣା ଅସୁଲକାରୀ ତହସିଲଦାର ମଧ୍ୟରେ ଯେଉଁ ପ୍ରଭେଦ, କେନ୍ଦୁଝର ରାଜା ଓ ଟ୍ୟୁନବୀ ସାହେବଙ୍କ ମଧ୍ୟରେ ସେହି ପ୍ରଭେଦ । ସେ ବିପନ୍ନ ଅବସ୍ଥାରେ ସାହେବଙ୍କ ସଙ୍ଗେ ଦେଖା କରିବାକୁ ଚାହୁଁଥିଲେ । ସାହେବ ନାହିଁ କରି ଅଛନ୍ତି । ଏପରି ସ୍ଥଳରେ କେନ୍ଦୁଝର ରାଜା ରାଜ୍ୟ ନ ପାଇଲେ ସୁଦ୍ଧା ଟ୍ୟୁନବୀ ସାହେବଙ୍କ ସଙ୍ଗେ ଦେଖା କରି ପାରିବେ ନାହିଁ, କିମ୍ବା ଦେଖା କରିବାକୁ ମୁଁ ତାଙ୍କୁ ପରାମର୍ଶ ଦେଇ ପାରିବି ନାହିଁ । କାରଣ ମୋ ସଙ୍ଗେ କେନ୍ଦୁଝର ରାଜାଙ୍କ ସମ୍ବନ୍ଧରେ କଥା ଭାଷା କରିବାକୁ ଚାହାନ୍ତି ନାହିଁ ବୋଲି ସାହେବ ମୋତେ ନିଜେ ନାହିଁ କରିଛନ୍ତି । ମୁଁ ଉକିଲ ଲୋକ, ସାହେବ ଯେବେ ତାଙ୍କ ନିଜକଥା ପ୍ରତ୍ୟାହାର କରି କେନ୍ଦୁଝର ରାଜାଙ୍କ ସମ୍ବନ୍ଧରେ କଥାବାର୍ତ୍ତା କରିବାକୁ ପୁଣି ମୋତେ ଡାକନ୍ତି, ରାଜାଙ୍କ ଉକିଲ ସ୍ୱରୂପ ମୁଁ ଅବଶ୍ୟ ଯିବି ।”

ଛୋଟଲାଟ ସାହେବ ଏହା ଶୁଣି ଟିକିଏ ଚିନ୍ତା କଲେ । ସେ କହିଲେ, “ମୁଁ ଟ୍ୟୁନବୀ ସାହେବଙ୍କୁ ଆଦେଶ ପଠାଉଛି, ସେ କେନ୍ଦୁଝର ରାଜାଙ୍କ ଉକିଲ ରୂପେ ଆପଣଙ୍କୁ ଗଭର୍ଣ୍ଣମେଣ୍ଟଙ୍କ ଦଖଲତ୍ୟାଗ ଆଦେଶ ଜଣାଇବେ ଓ ତାଙ୍କ ରାଜ୍ୟ ସରକାରଙ୍କ ନିଯୁକ୍ତ ମ୍ୟାନେଜରଙ୍କ ଠାରୁ ବୁଝି ନେବାକୁ ତାଙ୍କୁ ଉପଦେଶ ଦେବେ । ମୁଁ ତିନିମାସ ପରେ କଟକ ଯିବି, ସେହି ସମୟରେ ରାଜା ସାହେବ କଟକ ଆସିବେ ବୋଲି ଆପଣ ରାଜା ସାହେବଙ୍କୁ ମୋ ପକ୍ଷରୁ ଅନୁରୋଧ କରିବେ ।” ସେଦିନ ସନ୍ଧ୍ୟାରେ ଚାହା ଖାଇବାକୁ ଛୋଟଲାଟ ସାହେବ ମଧୁବାବୁଙ୍କୁ ନିମନ୍ତ୍ରଣ କଲେ ଓ ଚାହା ଖାଇଲାବେଳେ କହିଲେ, “ଟ୍ୟୁନବୀ ସାହେବ ରିପୋର୍ଟ କରିଥିଲେ, “ରାଜା ମଧୁବାବୁଙ୍କୁ ହଜାର ହଜାର ଟଙ୍କା ଦେଇ ଟଙ୍କାର ଅପବ୍ୟୟ କରୁଅଛନ୍ତି । ମୁଁ ତାଙ୍କୁ ଲେଖିଛି, ସେ ଟଙ୍କା ତାଙ୍କର, ସେ ତାଙ୍କ ଟଙ୍କା ପାଣିରେ ଫୋପାଡ଼ି ଦେଇ ପାରନ୍ତି, ସରକାରଙ୍କର କିଛି କହିବାର ଅଧିକାର ନାହିଁ । ”

ମଧୁବାବୁ କଟକ ଫେରି ଆସିଲେ ଓ ଟ୍ୟୁନବୀ ସାହେବ ତାଙ୍କୁ ଲାଟ ସାହେବଙ୍କ ଅର୍ଡର ଦେଖାଇଲେ । ରାଜା ସାହେବ ଗଡ଼କୁ ଫେରିଯାଇ ରାଜ୍ୟର ଭାର ନେଲେ । ଏହାର କେତେ ମାସ ପରେ ଛୋଟଲାଟ କଟକ ଆସି କମିଶନର କୋଠିରେ ରହିଲେ । କେନ୍ଦୁଝର ରାଜା କଟକ ଆସିଲେ । ଲାଟ ସାହେବ ମଧୁବାବୁଙ୍କୁ ଓ ରାଜା ସାହେବଙ୍କୁ ଡକାଇ ନେଲେ ; ଟ୍ୟୁନବୀ ସାହେବ ଓ କେନ୍ଦୁଝର ମହାରାଜାଙ୍କୁ ମିଳାଇ ଦେଲେ । ଟ୍ୟୁନବୀ ସାହେବ ରାଜା-ସାହେବଙ୍କ ପ୍ରତି ରୁକ୍ଷ ବ୍ୟବହାର କରିଥିବାରୁ ଦୁଃଖ ପ୍ରକାଶ କଲେ ।

ମଧୁବାବୁ କହୁଥିଲେ ଯେ ଛୋଟଲାଟଙ୍କ ଠାରେ ପାଞ୍ଚ ମିନିଟ୍ ମହକିଲ ପାଇଁ ନିଜ ମୁଣ୍ଡକୁ ପାଣି ଛଡ଼ାଇଦେବାରୁ ନଗଦ ଏକଲକ୍ଷ ଟଙ୍କା ଫିସ୍ ଗୋଟିଏ

ହାତୀ ଓ ରାଜା ବଞ୍ଚିଥିବା ଯାଏ ବାର୍ଷିକ ହଜାରେ ଟଙ୍କା ଲେଖାଏଁ ବରାବର ପାଉଥିଲେ ।

ମଧୁସୂଦନ କେନ୍ଦୁଝର ରାଜାଙ୍କ ପାଇଁ ଏତେ କରି ସୁଦ୍ଧା ତାଙ୍କର ଦୋଷ ପାଇଁ ତାଙ୍କୁ ମଧ୍ୟ ଭର୍ତ୍ସନା କରୁଥିଲେ । ଦିନକର ରହସ୍ୟ ଘଟଣାରୁ ତାହା ଜଣା ପଡ଼ିବ । ଦିନେ ମଧୁବାବୁ ରାଜାଙ୍କୁ କହିଲେ ରାତି ଆଠଟା ବେଳେ ତାଙ୍କ ସହିତ ଦେଖା କରିବାକୁ; ମାତ୍ର ରାଜାଙ୍କର ଆସିବାକୁ ବିଳମ୍ବ ଘଟିଲା । ସେ ଆସି ପହଞ୍ଚିବା ବେଳକୁ ୯ଟା ବାଜିଥିଲା । ଚପରାସି ଯାଇଁ ଜଣାଇଲା "ରାଜା ସାହେବ ଆସିଛନ୍ତି ।" ମଧୁବାବୁ କହିଲେ "ବସିବାକୁ କହ" । ରାଜାସାହେବ ଦେଢ଼ ଘଣ୍ଟା ବସିଲେ, ମଧୁବାବୁ ଅନ୍ୟ ମକ୍କେଲଙ୍କ କାମ କରୁଥାନ୍ତି, ରାତି ପ୍ରାୟ ଦଶଟାବେଳେ ଡାକରା ହେଲା । ମଧୁବାବୁ ପ୍ରଥମେ ପଚାରିଲେ "ରାଜାସାହେବ ! ଏହି କାନ୍ଥରେ ଯେଉଁ ଘଣ୍ଟାଟି ଝୁଲୁଛି, ତାର ଦାମ କେତେ ହୋଇଥିବ ବୋଲି ଆପଣ ଅନୁମାନ କରନ୍ତି ।" ରାଜା ସାହେବ କହିଲେ "ଶହେ ଟଙ୍କା ହେବ" ମଧୁବାବୁ କହିଲେ "ଶହେଟଙ୍କାର ଘଣ୍ଟାଟାଏ, ସେ ଆପଣଙ୍କ ପାଇଁ ଅପେକ୍ଷା କଲା ନାହିଁ । କେନ୍ଦୁଝର ରାଜା ଆସିବେ, ମୁଁ ଆଠଟା ଠାରେ ଅଟକି ଯାଏଁ ; ଏହା ଭାବିଲା ନାହିଁ । ମଧୁବାବୁର ମୂଲ୍ୟ କଅଣ ସେ ଶହେ ଟଙ୍କିଆ ଘଣ୍ଟାରୁ କମ୍ ? ଯାହା ହେଉ ଏଣିକି ଆପଣଙ୍କ ସୁଝାଇ ଦେବାକୁ ଡାକିଲି । ମୋର ଆଜି ସମୟ ନାହିଁ, ଆପଣ ଯାଇ ପାରନ୍ତି । ମୋର ଯେବେ ସମୟ ଓ ସୁବିଧା ହେବ ତାହା ବୁଝି ଆପଣ ଆସିବେ ।" ପୁଣି ବହୁ କ୍ଷମାପ୍ରାର୍ଥନା ପରେ ଦୁଇ ଚାରିଦିନ ପରେ ମଧୁବାବୁ ରାଜାଙ୍କୁ ଦେଖା କରିବାକୁ ଅନୁମତି ଦେଲେ ।

ମଧୁସୂଦନଙ୍କ ଓକିଲତି ଜୀବନ ବଡ଼ ଜ୍ୱଳନ୍ତ । ତାଙ୍କର ସାକ୍ଷୀଙ୍କୁ ଜେରା, ସୁଆଲ ଜବାବ୍ ବଡ଼ ଚିତ୍ତାକର୍ଷକ ହେଉଥିଲା । ସେ ଅଧିବକ୍ତା (advocate) ଭାବରେ ଯୁକ୍ତିରେ ବଡ଼ ମୌଳିକତା ଦେଖାଉଥିଲେ । ସାଧାରଣତଃ ଆଇନର ସାଧାରଣ ନୀତି ଦିଗରୁ ତର୍କ ଆରମ୍ଭ କରୁଥିଲେ ଏବଂ ସୁଆଲ ଜବାବ୍ ତାଙ୍କର ହାସ୍ୟରସଦ୍ୱାରା ପୂର୍ଣ୍ଣ ଥିବାରୁ ତାହା ବଡ଼ ଚିତ୍ତାକର୍ଷକ ହେଉଥିଲା । ତାଙ୍କର ସୁଆଲ ଜବାବ୍‌ରେ ରସିକତା, ବିଚାର୍ଯ୍ୟ ବିଷୟରେ ବିଶାରଦତା ସ୍ପଷ୍ଟରୂପେ ପ୍ରକାଶ ପାଉଥିଲା ।

ମଧୁସୂଦନ ଅତି ବିଚକ୍ଷଣ ବକ୍ତା ଥିଲେ । ତାଙ୍କ ଭଳି ମେଧାବୀ ବ୍ୟକ୍ତି ଉତ୍କଳ କାହିଁକି, ଭାରତରେ ବିରଳ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତ୍ୟୁତ୍ପନ୍ନମତିତ୍ୱ ତାଙ୍କ ଗୁଣର ବିଶିଷ୍ଟତା ଥିଲା । ଥରେ ମଧୁବାବୁ ବିଚାରାଳୟରେ କହିଲେ, "ମୋ ମକ୍କେଲ ଫୁଟବଲ ଭଳି ଗୋଟିଏ ଦରବେଶରୁ

ଅନ୍ୟ କଚେରୀକୁ ଗଡ଼ି ଯାଉଛି" (My client is kicked like a football from Court to Court)

ବାଗୁଇପତି କହିଲେ, "ତଥାପି ସଙ୍ଗେ ସଙ୍ଗେ ଆପଣଙ୍କ ଫିସ୍ ବି ଚାଲିଛି ।" (Paying your fees just the same)

ମଧୁ ବାବୁ ସଙ୍ଗେ ସଙ୍ଗେ କହିଲେ "କୋର୍ଟଫିସ ଦେଇ ହଜୁରଙ୍କ ଦରମା ମଧ୍ୟ ସେ ଯୋଗାଉଛନ୍ତି ।" (Also paying your Lordship's salary in the shape of Courtfees)

ବାଗୁଇପତି ତୁନି ହେଲେ ।

ପ୍ରତ୍ୟୁତ୍ପନ୍ନମତିତ୍ୱ ସହିତ ହାକିମମାନଙ୍କୁ ସଙ୍ଗେ ସଙ୍ଗେ ଜବାବ୍ ଦେବାରେ ସେ ଧୂରନ୍ଧର ଥିଲେ ; ଏପରି କେତେଗୁଡ଼ିଏ ଘଟଣା ଉଦାହରଣସ୍ୱରୂପ ଉଲ୍ଲେଖ କରାଯାଇ ପାରେ ।

ମଧୁବାବୁ କେବେ କୌଣସି ମକଦ୍ଦମାର ନଥି ତନ୍ନ ତନ୍ନ କରି ନ ଦେଖି ଶୁଆଲ ଜବାବ୍ କରିବାକୁ ଯାଉ ନ ଥିଲେ । ସେ ପରିଶ୍ରମ ନ କରି, କୌଣସି ନିରୀହ ମହକିଲକୁ ଠକାଇ ଫିସ ନେଉ ନ ଥିଲେ । ଏଥିପାଇଁ ସେ ଦେଶର ସମସ୍ତ ମହକିଲଙ୍କ ପ୍ରଶଂସାଭାଜନ ହୋଇଥିଲେ । ସେ ତାହାଙ୍କ ସହକାରୀ ଓକିଲମାନଙ୍କର ଉନ୍ନତି ପାଇଁ ବେଳେ ବେଳେ ସେମାନଙ୍କୁ ବଡ଼ ବେଶୀ ଭର୍ତ୍ସନା କରୁଥିଲେ ; କିନ୍ତୁ କେବେ ସେ ସହକାରୀ ଓକିଲମାନଙ୍କୁ ବେଠି ଖଟାଉ ନ ଥିଲେ । ସେ ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରାପ୍ୟ ନିୟମିତ ଭାବରେ ମହକିଲଙ୍କଠାରୁ ଦିଆଉଥିଲେ । ଏ ବିଷୟରେ ତାହାଙ୍କର ଅନେକ ସହକାରୀ ଓକିଲଙ୍କଠାରୁ ପ୍ରମାଣ ମିଳିଅଛି । ସେ ରାତିରେ ବହୁତ ବେଳଯାଏ ମକଦ୍ଦମା କାମ କରୁଥିଲେ । ସାଧାରଣତଃ ସେ କଥାବାର୍ତ୍ତା ଛାଡ଼ି ସାତ ଆଠଟା, ନଅଟା ବେଳକୁ ତାଙ୍କ ଓକିଲ୍ତି କାମ ଆରମ୍ଭ କରୁଥିଲେ; ତେଣୁ ଅନେକ ସମୟରେ ରାତି ବାରଟା, ଗୋଟାଏ ବାଜିଯାଏ । ଓକିଲ ଭାବରେ ସେ ଦେଶର ଅନେକ ରାଜା, ମହାରାଜାଙ୍କଠାରୁ ଆରମ୍ଭ କରି ଦରିଦ୍ରମାନଙ୍କର ମଧ୍ୟ ଉପକାର କରି ଯାଇଅଛନ୍ତି । ସେ ମହକିଲମାନଙ୍କଠାରୁ ଭଲ ଫିସ ନେଉଥିଲେ, କିନ୍ତୁ ତାହା ପରିବର୍ତ୍ତରେ ସେ ବିଶ୍ୱସ୍ତଭାବରେ ସେମାନଙ୍କ ପାଇଁ କାମ କରୁଥିଲେ । କଟକର ଭୂତପୂର୍ବ ବିଖ୍ୟାତ ଓକିଲ ଜାନକୀ ବାବୁ ତାଙ୍କ ମୃତ୍ୟୁ ପରେ କହିଥିଲେ, "ଓକିଲମାନଙ୍କ ମଧ୍ୟରେ ମଧୁସୂଦନ ଜଣେ ଅସାଧାରଣ ପଣ୍ଡିତ ଓ ସୁବକ୍ତା ଓକିଲ ଥିଲେ । (He was one of the most erudite and eloquent lawyers that we have ever seen. "ଓକିଲଭାବରେ ସେ ସୁବକ୍ତା, ଭାବୁକ ଓ ଆଇନଶାସ୍ତ୍ରରେ ସୁପଣ୍ଡିତ ଥିଲେ । ତାଙ୍କର

ବିଚକ୍ଷଣତା, ପ୍ରତ୍ୟୁତ୍ପନ୍ନମତିତ୍ୱ, ତର୍କର ମୌଳିକତା ଓ ନିର୍ଭୀକତା ତାଙ୍କୁ ଆଇନ ବ୍ୟବସାୟରେ ଶ୍ରେଷ୍ଠ ସ୍ଥାନ ଦେଇଥିଲା ।

ସେ ଉତ୍କଳରେ ଅନେକ ଓକିଲଙ୍କର ଆଦର୍ଶ ହୋଇଥିଲେ । ଥରେ କୁଆଡ଼େ ଏମିତି ଘଟିଥିଲା ଯେ, ସେ ଗୋଟିଏ ମକଦ୍ଦମାରେ ତାଙ୍କ ପକ୍ଷର ସମସ୍ତ ଯୁକ୍ତି ସ୍ୱପ୍ନରେ ଦେଖି ଥିଲେ । ସେ ସଙ୍ଗେ ସଙ୍ଗେ ଉଠି ସେଗୁଡ଼ିକ ଟିପି ରଖି ଥିଲେ ଏବଂ ପରେ ମୋକଦ୍ଦମାରେ ଜୟୀ ହୋଇଥିଲେ ।

ଥରେ ସେ ସେସନ୍ସ ଜଜ ଅଦାଲତରେ ଗୋଟିଏ ଫୌଜଦାରୀ ମକଦ୍ଦମା ସୁଆଲ ଜବାବ୍ କରୁଥିଲେ । ମଧୁବାବୁ ତର୍କ କଲା ବେଳେ ଜଜ୍ ମକଦ୍ଦମା ସମ୍ପୃକ୍ତ ପୁଲିସ ଡାଏରୀ ଖାଲି ପଢ଼ୁଥିଲେ । ମଧୁବାବୁ ଏହା ଦେଖି ପାରି ରଗିଯାଇ, ସାକ୍ଷ ଆଇନ ( Evidence Act ) କୁ ତଳେ ଫୋପାଡ଼ି ଦେଇ ତାକୁ ଗୋଡ଼ରେ ଦଳି ଦେଇ କହିଲେ, "ହଜୁର, ସାକ୍ଷ ଆଇନକୁ ଏପରି ଗୋଡ଼ରେ ଦଳିଲେ, ମୁଁ ଆଉ ସୁଆଲ ଜବାବ କରିବାକୁ ଚାହେଁ ନାହିଁ ।" ଏହା କହି ମଧୁବାବୁ ସେହି ହାକିମଙ୍କ ଇଜଲାସରୁ ଚାଲିଗଲେ । ହାକିମ ନିଜର ଭ୍ରମ ବୁଝିପାରି ମକଦ୍ଦମା ସ୍ଥଗିତ ରଖିଲେ ଏବଂ ପରେ ମଧୁବାବୁଙ୍କୁ ଖାସ୍ କାମେରାକୁ ଡକାଇ ଦୋଷ କ୍ଷମା ମାଗିଥିଲେ ।

ମଧୁବାବୁଙ୍କ ପାଖରେ ସହକର୍ମୀ ଓକିଲ ରୂପେ କାମ କରିବାକୁ ଯେଉଁ ମାନଙ୍କ ସୁବିଧା ମିଳିଥିଲା, ସେ ଆଇନ ବିଷୟରେ ସେମାନଙ୍କୁ ବହୁ ଉପଦେଶ ଦେଇଥିଲେ ଓ ନଥି ପଢ଼ିବା ବେଳେ ଅନ୍ୟମନସ୍କ ନ ହେବାକୁ ବାରମ୍ବାର ତାକିଦ୍ କରୁଥିଲେ । ସେ କହୁଥିଲେ ଯେ ଓକିଲାତି ବ୍ୟବସାୟରେ ଯେତେ ବିଚକ୍ଷଣତା ଲୋଡ଼ା, ଅନ୍ୟ କୌଣସି ବ୍ୟବସାୟରେ ସେତେ ଲୋଡ଼ା ନୁହେଁ । ଡାକ୍ତରି ବିଦ୍ୟାରେ ପୂର୍ଣ୍ଣ ଅଧିକାର ନ ଜନ୍ମିଲେ ଡାକ୍ତରଙ୍କୁ ଜେରା କରି ହେବ ନାହିଁ । ହିସାବ ଲେଖାରେ ପୂର୍ଣ୍ଣ ଅଧିକାର ଲାଭ ନ କଲେ ବିପକ୍ଷ ପକ୍ଷର ଦାଖଲ ହିସାବକୁ ତନ୍ନ ତନ୍ନ ପରୀକ୍ଷା କରି ହେବ ନାହିଁ । ଯେତେବେଳେ ଯେଉଁ ଶ୍ରେଣୀର ସାକ୍ଷୀଙ୍କୁ ଜେରା କରିବାକୁ ହେବ, ସେହି ଶ୍ରେଣୀର ସାକ୍ଷୀଙ୍କ ଅଭ୍ୟସ୍ତ ବିଦ୍ୟାରେ ପାରଙ୍ଗମ ନ ହେଲେ ସେ ସାକ୍ଷୀଙ୍କ ଦୋଷ ଧରି ହେବ ନାହିଁ । ଏଥିର ଉଦାହରଣ ସ୍ୱରୂପ ତାଙ୍କର ନିଜର ଗୋଟିଏ ଅନୁଭୂତ ସେ କହୁଥିଲେ ।

ଥରେ ଗୋଟିଏ ନରହତ୍ୟା ମକଦ୍ଦମାରେ ସେସନ୍ସ ଅଦାଲତରେ ମକଦ୍ଦମା ଚାଲିଥାଏ ଯେ, ମୁଦାଲା ନିଜର ଗୋଟିଏ ଚଉଡ଼ାମୁହାଁ କୁରାଢ଼ିରେ ଗୋଟିଏ ଲୋକର ମୁଣ୍ଡକୁ ହାଣି ଦେବାରୁ ସେ ମନୁଷ୍ୟ ମରିଗଲା ବୋଲି ସରକାର ତରଫରୁ ଅଭିଯୋଗ ହୋଇଥାଏ । ପୁଲିସ ମୁର୍ଦ୍ଦାରକୁ ଡାକ୍ତରମାନଙ୍କ ସକାଶେ ପଠାଇଲେ ଓ ସଙ୍ଗେ ସଙ୍ଗେ ଗୋଟିଏ କୁରାଢ଼ୀ ମଧ ପଠାଇଲେ ।

ଗୋଗ୍ ଡାକ୍ତର ସାହେବ ମୁର୍ଦ୍ଦାରେ ଖପୁରି ମାଇନା କରି ଖପୁରିରେ ଫ୍ରେଟ ବସିଥିବା ଅସ୍ଥିମାନଙ୍କର ନାମୋଲ୍ଲେଖ କରି ରିପୋର୍ଟ ଦେଲେ ଯେ ଏହି ଲୁଗ୍ରିଡ଼ୀ ଫ୍ରେଟରେ ମନୁଷ୍ୟର ଖପୁରି ଜଖମ ହୋଇଅଛି । ମୁଦାଲି ତଳ କୋର୍ଟରେ ଦୋଷ ଅସ୍ୱୀକାର କରି ଜବାବ ଦେଲା ଓ ମକଦ୍ଦମା ଦୌରାସୁପର୍ଦ୍ଦ ହେଲା । ମୁଦାଲି ଜେଲରେ ଥାଏ । ସେସନ୍ସ କୋର୍ଟରେ ମୁଦାଲିର ଓକିଲ ହେଲେ ମଧୁବାବୁ । ସରକାରଙ୍କ ଆଗତ ସାକ୍ଷ ପ୍ରମାଣରୁ ପ୍ରମାଣିତ ହେଲା ଯେ ମୃତ ବ୍ୟକ୍ତି ବସିଥିଲା, ମୁଦାଲି ପଛଆଡ଼ୁ ଆସି ତା ମୁଣ୍ଡରେ ଲୁଗ୍ରିଡ଼ୀର ଫ୍ରେଟ ବସାଇ ଦେବାରୁ ମୃତ ଲୋକ ମରିଗଲା । ଏହାକୁ ସମର୍ଥନ ପୂର୍ବକ ଡାକ୍ତର ସାହେବ ରିପୋର୍ଟ ପେଶ କରି ସାକ୍ଷ୍ୟ ଦେଲେ ଯେ ଖପୁରିରେ ଆଘାତ ଲୁଗ୍ରିଡ଼ୀର ଫ୍ରେଟ ଦ୍ୱାରା ହୋଇଥିଲା ଏବଂ ସେଥି ସଙ୍ଗାଶେ ଲୋକର ମୃତ୍ୟୁ ହୋଇଥିଲା ।

ସେସନ୍ସ ଜଜଙ୍କ କୋର୍ଟରେ ମୁଦାଲି ପକ୍ଷର ଓକିଲ ମଧୁବାବୁ କହିଲେ ଯେ ଘଟଣା ସମ୍ପୂର୍ଣ୍ଣ ମିଥ୍ୟା । ମଧୁବାବୁ ମୁଦାଲି ନିକଟରୁ ବିଷୟଟି ବୁଝିବାକୁ ଜେଲକୁ ଗଲେ । ମୁଦାଲି ତାଙ୍କୁ କହିଲା ଯେ ମୃତ ବ୍ୟକ୍ତି ଗ୍ରାମର ଅନ୍ୟ ବ୍ୟକ୍ତିଙ୍କ ଦ୍ୱାରା ଆହତ ହୋଇ ମରିଛି, ଏ ଲୁଗ୍ରିଡ଼ୀ ମୁଦାଲିର ଅଟେ, ଏ ଲୁଗ୍ରିଡ଼ୀ ଆଘାତରେ ସେ କଦାପି ମରି ନାହିଁ । ଗ୍ରାମରେ ଦଳାଦଳି ଥିବାରୁ ବିପକ୍ଷ ଗ୍ରାମବାସୀମାନେ ମୁଦାଲିଘରୁ ଏ ଲୁଗ୍ରିଡ଼ି କାଢ଼ି ମୁଦାଲିକୁ ମିଛରେ ହତ୍ୟାକାରୀ ବୋଲି ପୁଲିସ ସାହାଯ୍ୟରେ ପ୍ରମାଣ କରୁଅଛନ୍ତି । ମୁଦାଲି ଜେଲରେ ଏପରି ଦୃଢ଼ତା ଓ ଶପଥ ସହକାରେ ମଧୁବାବୁଙ୍କୁ ଏକଥା କହିଲା ଯେ, ତା କଥାରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା । ତାଙ୍କର ଏ ମକଦ୍ଦମାରେ ବ୍ୟକ୍ତିଗତ ଜିଦ୍ ଲାଗିଲା, କିପରି ନିରପରାଧ ଲୋକଟି ଖଲାସ ହେବ । ସେ କଚେରୀକୁ ଯାଇ ଡାକ୍ତର ରିପୋର୍ଟର ନକଲ ଆଣିଲେ । କ୍ଷତର ରେଖା କେଉଁ କେଉଁ ହାଡ଼ର ମଧ୍ୟଦେଇ ଯାଇଛି, ତାହାସବୁ ସେଥିରେ ବୈଜ୍ଞାନିକ ନାମ ଦିଆଯାଇ ଲେଖା ହୋଇଥାଏ । ପ୍ରଥମେ ସେ ସବୁ ହାଡ଼ର ନାମରୁ କିଛି ବୁଝି ପାରିଲେ ନାହିଁ । ସେ ନିଜେ ଶ୍ମଶାନକୁ ଯାଇ ଗୋଟିଏ ମନୁଷ୍ୟମୁଣ୍ଡ ଆଣିଲେ ଓ ଡାକ୍ତରୀ ଶରୀରବିଜ୍ଞାନ (Anatomy) ବହିକୁ ପଢ଼ି ଏ ଖପୁରୀର ହାଡ଼ମାନଙ୍କ ସଙ୍ଗେ ମିଳାଇ ଦେଖିଲେ ଯେ, ଡାକ୍ତର ସାହେବ ଲକ୍ଷିତ କ୍ଷତକୁ ଯେଉଁ ଯେଉଁ ଅସ୍ଥି ବାଟେ ଯାଇଥିବା ଲେଖିଅଛନ୍ତି, ସେହି ସେହି ବାଟେ ରେଖା କାଟିଲେ ତାହା କଦାପି ସିଧା ରେଖା ହେବ ନାହିଁ । ତାହା ଗୋଟିଏ ଗୁରିବାଙ୍କିଆ ରେଖା ହେବ ଏବଂ ଲୁଗ୍ରିଡ଼ିର ଫ୍ରେଟ ଏପରି ଗୁରି ବାଙ୍କିଆ ( M ) କ୍ଷତ ହେବା ଅସମ୍ଭବ । ଏହା ଦେଖି ମୁଦାଲିର ନିରପରାଧତା ବିଷୟରେ ସେ ନିଃସନ୍ଦେହ ହେଲେ । ତହୁଁ ଆରଦିନ କଚେରୀରେ ମକଦ୍ଦମା ବିଚାର ହେଲା । ସରକାରଙ୍କ ତରଫରୁ

ଏହା କ୍ରମେ ସାତଜଣ ସାକ୍ଷୀ ଜବାନବନ୍ଦି ଦେଇଗଲେ ଯେ, ମୁଦାଲ୍ଲି "ଏହି କୁରାଢ଼ିର ଏକ ଚୋଟରେ ମୃତ ବ୍ୟକ୍ତିକୁ ହାଣି ଦେବାରୁ ସେ ତତ୍‌କ୍ଷଣାତ୍ ମରିଗଲା । ଆସାମୀ ପକ୍ଷରୁ ଉକ୍ତ ସାକ୍ଷୀମାନଙ୍କୁ ମଧୁବାବୁ ଆଦୌ ଜେରା କଲେ ନାହିଁ। ଏହା ଦେଖି ଜଜ୍ ସାହେବ ସୁଦ୍ଧା ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ କହିଲେ, "ମିଷ୍ଟର ଦାସ ! ଆପଣଙ୍କ ମକ୍କେଲ ବିପକ୍ଷରେ ଏପ୍ରମାଣମାନ ଭାରି ମାରାତ୍ମକ । ଆପଣ ଏମାନଙ୍କୁ ଜେରା କାହିଁକି କରୁ ନାହାନ୍ତି?" ତଥାପି ମଧୁବାବୁ ନିରୁତ୍ତର ଥିଲେ । ଶେଷକୁ ଗୋରା ଡାକ୍ତର ସାହେବ ଆସି ସାକ୍ଷୀଅଡ଼ାରେ ଠିଆ ହୋଇ କହିଗଲେ ଯେ ସେହି କୁରାଢ଼ି ଦ୍ୱାରାହିଁ ମୃତ ବ୍ୟକ୍ତିର ଖପୁରିରେ କ୍ଷତ ହୋଇଅଛି । ଏହା କହି ସେ ତାଙ୍କ ରିପୋର୍ଟ ପ୍ରମାଣ କଲେ । ତା ପରେ ମଧୁବାବୁ ତାଙ୍କୁ ଜେରା କରିବାକୁ ଉଠି ପ୍ରଥମେ ତାଙ୍କ ଖୁବ୍ କଅଁଳେଇ ସଅଁଳେଇ ଠେକାଠେକି କରି ପ୍ରଶ୍ନ କରିବାରୁ ସେ ବୁଝିଲେ ଯେ ଶରୀରବିଦ୍ୟା ବିଷୟରେ ଓକିଲ ଅଜ୍ଞ ଅଟନ୍ତି । ଏପରି ବାଗୁଆ ଦେଖାଡିଆ ଭାବରେ ମଧୁବାବୁଙ୍କ ପ୍ରଶ୍ନର ଉତ୍ତର ଦେଲେ । ଶେଷରେ ମଧୁବାବୁ ତାଙ୍କ ବହି ମୁଣିଭିତରୁ ମଣିଷ ମୁଣ୍ଡଟିଏ ବାହାର କରି ହାକିମଙ୍କ ଆଗରେ ଡାକ୍ତର ସାକ୍ଷୀଙ୍କ ସାମନାରେ ରଖିଦେଲେ । ତାଙ୍କୁ କହିଲେ "ଆପଣ କେଉଁ ଜାଗାରେ ଖପୁରିରେ କ୍ଷତଜାଗା ଦେଖିଥିଲେ ଓ ପରୀକ୍ଷା କରିଥିଲେ, ସେ ରେଖାଟି ଜଜ୍ ସାହେବଙ୍କୁ ଦେଖାଇ ଦିଅନ୍ତୁ । " ଡାକ୍ତର ସେ ମୁଣ୍ଡଟାକୁ ଧରି ଦେଖାଡିଆ ଭାବରେ ଖପୁରିଉପରେ ପେନ୍‌ସିଲରେ ଗୋଟିଏ ସରଳରେଖା ଟାଣିଦେଲେ ଯାହା କୁରାଢ଼ି ଦାଢ଼ର ପରିସର ପରି ଲମ୍ବ । ସାହେବ ଗାର ଆଙ୍କିବାରୁ ମଧୁବାବୁ କହିଲେ ଏ ଗାରକୁ ଆପଣ ଜଜ୍ ସାହେବଙ୍କୁ ଦେଖାନ୍ତୁ । ଡାକ୍ତର ଜଜ୍ ସାହେବଙ୍କୁ ସେ ରେଖାଟି ଦେଖାଇବାରେ ମଧୁବାବୁ, "ବର୍ତ୍ତମାନ ଆପଣଙ୍କ ରିପୋର୍ଟକୁ ମୁଁ ପଢ଼ୁଛି । ଆପଣ ଯେଉଁ ଗାର କାଟିଦେଲେ ତାକୁ ଆପଣଙ୍କ ରିପୋର୍ଟର ଲେଖାରେ ହାଡ଼ମାନଙ୍କ ସଙ୍ଗେ ମିଳାନ୍ତୁ ।" ମଧୁବାବୁ ରିପୋର୍ଟ ପଢ଼ୁଥାନ୍ତି ଏଣେ ଖପୁରିକୁ ଦୃଷ୍ଟି ରଖିଥାନ୍ତି । ଡାକ୍ତର ସାହେବ ରିପୋର୍ଟରେ ଲେଖା ହାଡ଼ ବାଟେ ଗାର ନେଇ ନ ପାରି ମନମୁଖି ସରଳ ରେଖା ବାଟେ ପେନ୍‌ସିଲ ନେବାରୁ ମଧୁବାବୁ ଶରୀରବିଜ୍ଞାନ ( Anatomy ) ବହିରୁ ଡାକ୍ତରଙ୍କ ଭ୍ରମ ଦର୍ଶାଇ ଦେଉଥାଆନ୍ତି । ଏହିପରି ତର୍କବିତର୍କ ହେଉଁ ହେଉଁ ଏକ ଘଣ୍ଟା ବିତିଗଲା । ସେତେବେଳକୁ ଡାକ୍ତର ସାହେବ ଗଳଦ୍‌ଘର୍ମ ଓ ଅରୁଣମୁଖ ହୋଇ ସାରିଲେଣି । ଶେଷକୁ ରିପୋର୍ଟକୁ ଅନୁସରଣ କରି ଯେଉଁ ଗାରଟି ପେନ୍‌ସିଲରେ ଟାଣିଲେ ତାହି ଗୋଟି ବାଙ୍କିଆ ହେଲା ଓ କୁରାଢ଼ିର ଦାଢ଼ ପରିସର ଅପେକ୍ଷା ଅଧ ଇଞ୍ଚ ଛୋଟ ହେଲା । ଏହା ଦେଖି ଜଜ୍ ସାହେବ, ସରକାରୀ ଓକିଲ ଓ ପୁଲିଶ କର୍ମଚାରୀ ସମସ୍ତେ ହେତୁଡମା ପରି ଚାହିଁଲେ । ଶେଷରେ ମଧୁବାବୁ ଡାକ୍ତର ସାହେବଙ୍କୁ ପଚାରିଲେ,

ମଧୁସୂଦନ ଓ ତାଙ୍କର
କେତେକ ବନ୍ଧୁ



ପ୍ରଥମ ଧାଡ଼ି—(ବାମରୁ ଡାହାଣ ଅଡ଼କୁ) ଦେବାନବାହାଦୁର ଲକ୍ଷ୍ମୀଧର ମହାନ୍ତି, ଉତ୍କଳ ଗୌରବ ମଧୁସୂଦନ, ସାରକଟ କୋର୍ଟର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର, ମୌଲବୀ ଅବଦୁଲ ହାଫିଜ୍, ସତ୍ୟେନ୍ଦ୍ର ନାରାୟଣ ରାୟ (ମହାଶୟ)
ଦ୍ୱିତୀୟ ଧାଡ଼ି—ମୌଲବୀ ଅବଦୁସ୍ ଶୋଭାନ ଖାଁ, ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟ, ମୌଲବୀ କମରୁଦ୍ଦିନ ଖାଁ ।

"ଏ ଲୋକଙ୍କୁ ଅନ୍ୟ ଡାକ୍ତର ମାଇକ୍ରା କରି ରିପୋର୍ଟ ଲେଖି ଦେଇଛନ୍ତି, ଆପଣ ଖପୁରିକୁ ମାଇକା ନ କରି ସେ ରିପୋର୍ଟରେ ଦସ୍ତଖତ କରିଛନ୍ତି ।" ଡାକ୍ତର ସାହେବ କହିଲେ, "ହଁ ।" ମଧୁବାବୁ ପଚାରିଲେ, "ଆପଣ ତ ବାଇବେଲ ଧରି ଶପଥ କରିଅଛନ୍ତି, ଅବଶ୍ୟ ସତ କହୁ ଅଛନ୍ତି । ଆପଣଙ୍କ ଦସ୍ତଖତୀ ରିପୋର୍ଟ ମୁତାବକ ଏହି ଖପୁରିବାକ୍ସିଆ କମ ଚଉଡ଼ା ରେଖା ଏ କୁରାଢ଼ି ଆଘାତଦ୍ୱାରା ହୋଇ ପାରେ କି ନାହିଁ ?" ଡାକ୍ତର ସାହେବ ଉତ୍ତର କଲେ "ଏ କୁରାଢ଼ି ଦ୍ୱାରା ଖପୁରିରେ ଏପରି କ୍ଷତ ହେବା ଅସମ୍ଭବ ।" ଏତିକିରେ ମକଦ୍ଦମା ଶେଷ ହେଲା । ଜଜ୍ ସାହେବ ସଙ୍ଗେ ସଙ୍ଗେ ରାୟ ଦେଇ ଆସାମୀକୁ ବେକସୁରରେ ଖଲାସ ଦେଲେ ।

ମଧୁବାବୁ ତାଙ୍କ ଓକିଲାତି ଜୀବନରେ ଏପରି ଅନେକ ଆଶ୍ଚର୍ଯ୍ୟଜନକ ଘଟନା ଦେଖାଇ ଅଛନ୍ତି । ନିଜେ ଜବାବ ସୁଆଲ କରି କେତେକ ମକଦ୍ଦମାରେ ସହକର୍ମୀମାନଙ୍କୁ ଜବାବ୍ ସୁଆଲର ମାର୍ଗ ଓ ଆନୁକ୍ରମିକ ସୋପାନ ଶିଖାଉଥିଲେ ଓ ସହକର୍ମୀ ମକଦ୍ଦମାରେ ଜବାବ ସୁଆଲ କରି ଫେରିବା ପର୍ଯ୍ୟନ୍ତ ସେ ଓକିଲ ଖାନାରେ ଅପେକ୍ଷା କରି ବସି ରହୁଥିଲେ ।

ଉଚ୍ଚ ଅଦାଲତର ବିଚାରପତିଙ୍କ ଠାରୁ ଆରମ୍ଭ କରି ସକଳ ଶ୍ରେଣୀର ଓକିଲ, ମୁକ୍ତାର ଓ ମହକିଲ ମଧୁସୂଦନଙ୍କୁ ପ୍ରଶଂସା କରିଅଛନ୍ତି । ସମସ୍ତେ ତାହାଙ୍କୁ ଭକ୍ତି ଓ ଭକ୍ତ ଚକ୍ଷୁରେ ଦେଖୁଥିଲେ ।

୧୮୮୬ ମସିହା ଜାନୁଆରୀ ୨୫ ତାରିଖରେ ସେ କଲିକତା ଉଚ୍ଚ ଅଦାଲତ ବା ହାଇକୋର୍ଟର ଓକିଲ ରୂପେ ଯୋଗ ଦେଇଥିଲେ । ୧୯୧୬ ମସିହାରେ ସେ ପାଟନା ଉଚ୍ଚ ଅଦାଲତରେ ଓକିଲ ହୋଇଥିଲେ । ୧୯୨୫ ମସିହାରେ ସେ ପାଟଣା ଉଚ୍ଚ ଅଦାଲତରେ ଆଡ଼ଭୋକେଟ୍ ହୋଇଥିଲେ ।

ମଧୁସୂଦନଙ୍କ ଓକିଲାତି ଜୀବନ ସମ୍ବନ୍ଧେ ଫକୀରମୋହନ ତାଙ୍କ 'ଉତ୍କଳ ଭ୍ରମଣ' ପୁସ୍ତକରେ ଲେଖିଥିଲେ:—

"ଭଲାବେଲେ କରିଅଛୁ ଓକିଲାତି ପାସ୍,
ସାବାସ୍ ସାବାସ୍ ଭାଇ ସାବାସ୍, ସାବାସ୍
କେତେଥର ଭାଇ ଶୁଣିଅଛୁ ତୁମ୍ଭ ପ୍ଲିଡ଼ (Plead)
କରିପାରି ବଡ଼ ବଡ଼ ବାରିଷ୍ଟର ଡିଫିଟ (Barister defeat)
ଆରେ ଭାଇ ଏମ୍: ଏସ୍: ରଖିଯା ଯଶ
ଦୁଇ ଗୁରୁ ଓଡ଼ିଆଙ୍କ କରିଯା ମଣିଷ ।"

ଉତ୍କଳର ବ୍ୟକ୍ତିଗତ ଓ ଜାତିଗତ ସଙ୍କଟ ସମୟରେ ମଧୁସୂଦନ ଉଭୟ ଭାବରେ ଶ୍ରେଷ୍ଠ ଆଶ୍ରୟଦାତା ଥିଲେ । ଲୋକେ କହୁଥିଲେ, "ବିପତ୍ତୌ ମଧୁସୂଦନଂ" ବିପଦ ପଡ଼ିଲା ବେଳେ ମଧୁସୂଦନ ଏକମାତ୍ର ରକ୍ଷାକର୍ତ୍ତା । ଜୀବନର ଶେଷ କାଳ ପର୍ଯ୍ୟନ୍ତ ଏହି ଓକିଲାତି ବ୍ୟବସାୟ କରି ମଧୁସୂଦନ ସ୍ୱାଧୀନ ଭାବରେ ଜୀବନ ନିର୍ବାହ କରି ପାରୁଥିଲେ ।



ଉତ୍କଳ ସମ୍ମେଳନୀ ନେତା ମଧୁସୂଦନ

# ଅଷ୍ଟମ ଅଧ୍ୟାୟ

## ଉତ୍କଳ ସମ୍ମିଳନୀ ଓ ଓଡ଼ିଆ ଆନ୍ଦୋଳନ

"ଏହୁ ସମ୍ମିଳନୀ ଜାତପ୍ରାଣସିନ୍ଧୁ,
କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ !
ଡେଇଁ ପଡ଼ି ସିନ୍ଧୁନୀରେ ।"
(ମଧୁବାବୁ)

ମଧୁସୂଦନଙ୍କ ଭଳି ଉତ୍ସାହୀ, ଦେଶପ୍ରେମିକ, ପ୍ରତିଭାଶାଳୀ ବ୍ୟକ୍ତି ଯେ କେବଳ ଓକିଲାତି କରି ବହୁ ଅର୍ଥ ଉପାର୍ଜନ କରି ଶାନ୍ତିରେ ରହି ପାରିବେ, ତାହା ଅସମ୍ଭବ । ମନୁଷ୍ୟ ସ୍ୱାର୍ଥସିଦ୍ଧିରେ କେତେ ସୁଖ ପାଏ ? ସେ ସୁଖର ପରିଣାମ କେଉଁଠି ? ତେଣୁ ପ୍ରତ୍ୟେକ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଅନ୍ତରରେ ଏକ ବିଶିଷ୍ଟ ଆହ୍ୱାନ ଆସେ । ତହିଁରେ ହୃଦୟର କ୍ଷୁଦ୍ରତା, ସ୍ୱାର୍ଥପରତା ରହିପାରେ ନାହିଁ । ମଧୁସୂଦନଙ୍କ ଜୀବନରେ ତାହା ହିଁ ହୋଇଥିଲା । ମଧୁସୂଦନ କେବଳ ବ୍ୟକ୍ତିଗତ ଜୀବନ ଧାରଣ କରି କିପରି ସନ୍ତୁଷ୍ଟ ହୋଇ ରହିବେ ? ତେଣୁ ବ୍ୟକ୍ତିଗତ ଜୀବନର ବିକାଶ ସଙ୍ଗେ ସଙ୍ଗେ ସେ ଜାତୀୟ ପୀଠ ପ୍ରତିଷ୍ଠା କରିବାକୁ ବଡ଼ ବ୍ୟଗ୍ର ହୋଇ ପଡ଼ିଲେ ।

ଉତ୍କଳରେ ତଥା ଭାରତରେ ଜାତୀୟ ଜୀବନର କି ଶୋଚନୀୟ ଅବସ୍ଥା, ତାହା ଶିକ୍ଷିତ ବ୍ୟକ୍ତିମାନେ ଜାଣନ୍ତି । ବିଂଶ ଶତାବ୍ଦୀ ପ୍ରଥମ ପାଦରେ ଉତ୍କଳରେ ଜାତୀୟ ଜୀବନ ବିକାଶ ପାଇ ନ ଥିଲା । ଊନବିଂଶ ଶତାବ୍ଦୀ ଗତ ହୋଇଛି ମାତ୍ର, ସେ ସମୟରେ ଦେଶ ଓ ଦଶର ଅବସ୍ଥା ପ୍ରତି ଟିକିଏ ଦୃଷ୍ଟି ଦେବା ଉଚିତ । ଅତୀତକୁ ଅନୁଶୀଳନ କରିବାକୁ ହେଲେ ଅତୀତର ଦେଶ, କାଳ ପାତ୍ରକୁ ବିବେଚନା କରିବା ଉଚିତ । ତାହା ବ୍ୟତୀତ ଅତୀତର ସୁବିଚାର ଅସମ୍ଭବ । ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ପୂର୍ବରୁ ମଧୁସୂଦନ କଟକ ଜିଲ୍ଲା ବୋର୍ଡ଼ର ଭାଇସ୍ ଚେୟାରମ୍ୟାନ ଓ ଚେୟାରମ୍ୟାନ ହୋଇ ସାରିଥିଲେ । ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ମଧ୍ୟ ହୋଇଥିଲେ । ଅର୍ଥାତ୍ ସେତେବେଳକୁ ସେ ଉତ୍କଳ ଜାତୀୟ ଜୀବନର ଅଗ୍ରଦୂତ ହୋଇ ସାରିଥିଲେ । କିନ୍ତୁ ମଧୁସୂଦନ ସେତିକିରେ ସନ୍ତୁଷ୍ଟ ହୋଇ ନ ଥିଲେ ।

ଉତ୍କଳ ସମ୍ମିଳନୀ ଓଡ଼ିଶାରେ ବା ପ୍ରାକୃତିକ ଓଡ଼ିଆଭାଷୀ ଅଞ୍ଚଳରେ ପ୍ରଥମ ଓ ପ୍ରଧାନ ଜାତୀୟ ପୀଠ । ଏଠାରେ ଦେଶବାସୀ ସେମାନଙ୍କ ଅଭାବ,

ଅଭିଯୋଗ, ଦାବି, ଲାଭ ବିଷୟ ଆଲୋଚନା କରି ନାନା ପ୍ରସ୍ତାବ ଗ୍ରହଣ କରୁଥିଲେ । ଏହା ଦ୍ୱାରା ପ୍ରଥମେ ଉତ୍କଳରେ ଲୋକମତ ଗଠିତ ହୋଇଥିଲା । ଲୋକଶାସନ (Democracy)ରେ ଲୋକମାନଙ୍କୁ ପ୍ରଥମେ ତାଲିମ କରିଛି ଉତ୍କଳ ସମ୍ମିଳନୀ ।

ଉତ୍କଳ ସମ୍ମିଳନୀ ସୃଷ୍ଟିହେଲା କାହିଁକି ? ଏହି ପ୍ରଶ୍ନର ଉତ୍ତର ମଧୁସୂଦନ ଆମ୍ଭମାନଙ୍କୁ ତାହାଙ୍କ ବକ୍ତୃତା ମାନଙ୍କରେ ସ୍ପଷ୍ଟ ଜଣାଇ ଦେଇ ଯାଇଅଛନ୍ତି । ମଧୁସୂଦନ ତାହାଙ୍କ ଦେଶହିତ ଜୀବନର ପ୍ରାଥମିକ ଅବସ୍ଥାରେ ଦେଖିଲେ ଯେ ଉତ୍କଳ କେବଳ ନାମତଃ ଉତ୍କଳ ରୂପେ କଥିତ, କିନ୍ତୁ ତାର ବହୁ ଅଞ୍ଚଳ ଅନ୍ୟ ପ୍ରଦେଶମାନଙ୍କର ଅନ୍ତର୍ଭୁକ୍ତ । ତେଣୁ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ଏକଶାସନାଧୀନ କରିବା ଉତ୍କଳ ସମ୍ମିଳନୀ ପ୍ରତିଷ୍ଠାର ପ୍ରଧାନ ଲକ୍ଷ୍ୟ ହେଲା । କିନ୍ତୁ କେବଳ ଏହି ଦେଶମିଶ୍ରଣ ନାମକ ରାଷ୍ଟ୍ରନୈତିକ କାର୍ଯ୍ୟର ସୀମା ମଧ୍ୟରେ ମଧୁସୂଦନଙ୍କର କର୍ମୀ ସମ୍ମିଳନୀର ଦୃଷ୍ଟି ଆବଦ୍ଧ ରହି ନ ଥିଲା ।

୧୯୦୩ ମସିହାରେ କେତେକ ଘଟନା ଘଟିଥିଲା, ଯାହାଯୋଗୁଁ ଉତ୍କଳ ସମ୍ମିଳନୀ ସୃଷ୍ଟି କରିବାକୁ ମଧୁସୂଦନ ଦୃଢ଼ ପରିକର ହୋଇଥିଲେ ।

୧ । ବଙ୍ଗଳାର ସମସାମୟିକ ରାଜନୀତିଜ୍ଞ ସାର୍ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ସେହି ସମୟରେ ଗୋଟିଏ ବଙ୍ଗଳା ପ୍ରାଦେଶିକ କଂଗ୍ରେସ କମିଟି ଗଠନ କରିଥିଲେ ଏବଂ ଉତ୍କଳକୁ ସେହି ଅନୁଷ୍ଠାନର ଅଧୀନରେ ରଖିବାକୁ ମଧୁବାବୁଙ୍କୁ ଅନୁରୋଧ କରିଥିଲେ ଓ କଟକରେ ଏହାର ଅଧିବେଶନ କରିବେ ବୋଲି ଠିକ୍ କରୁଥିଲେ; କିନ୍ତୁ ମଧୁସୂଦନ ଏହାର ତୀବ୍ର ପ୍ରତିବାଦ କରି କଟକରେ ବଙ୍ଗଳା ପ୍ରାଦେଶିକ କମିଟିର ବୈଠକ ଆଦୌ ବସାଇ ଦେଇ ନ ଥିଲେ ।

୨ । ୧୯୦୩ ମସିହାର ଇଷ୍ଟର ଛୁଟିରେ ଗଞ୍ଜାମ ଅଞ୍ଚଳର ଓଡ଼ିଆମାନେ "ଗଞ୍ଜାମ ଜାତୀୟ ସମିତି"ର ଗୋଟିଏ ସଭା ଆୟୋଜନ କରିଥିଲେ । ତହିଁରେ ମଧୁସୂଦନ ଯୋଗ ଦେଇଥିଲେ ଏବଂ ତାଙ୍କ ମନରେ ଭାବ ଆସିଥିଲା ଯେ ସମଗ୍ର ଉତ୍କଳର ଗୋଟିଏ ଜାତୀୟ ସମ୍ମିଳନୀ ଗଢ଼ିବା ଯୁଗୋଚିତ ହେବ ।

୩ । ୧୯୦୨ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷାରୂପେ ସ୍ୱୀକୃତ ହୋଇଥିଲା । କିନ୍ତୁ ଏଥିପାଇଁ ବଙ୍ଗାଳିମାନେ ନିରର୍ଥକ ନାନା ଆପତ୍ତି ଉଠାଇଥିଲେ ।

ତେଣୁ ବଙ୍ଗ ଓ ଉତ୍କଳ ମଧ୍ୟରେ ଏକ ଫାଙ୍କ ସୃଷ୍ଟି ହୋଇଥିଲା । ଏଣେ ଉତ୍କଳର ସ୍ୱତନ୍ତ୍ରତା ରକ୍ଷିବା ପାଇଁ ସେ ସମୟର ଶିକ୍ଷିତ ନାଗରିକମାନେ ଚେଷ୍ଟା

କରୁଥିଲେ । ତେଣୁ ମଧୁସୂଦନ ସୁରେନ୍ଦ୍ରନାଥଙ୍କ ବଙ୍ଗଳା ପ୍ରାଦେଶିକ କଂଗ୍ରେସ କମିଟିରେ ଯୋଗ ନ ଦେଇ ଏକ ସ୍ୱତନ୍ତ୍ର ସମ୍ମିଳନୀ ଉତ୍କଳରେ ସ୍ଥାପନ କରିବାକୁ ସ୍ଥିର କଲେ ।

ଉତ୍କଳ ସମ୍ମିଳନୀର ସୃଷ୍ଟିମୂଳରେ କେବଳ ଏତିକି କାରଣ ନାହିଁ । ଇଉରୋପରେ ଜାତୀୟତାର ଜାଗରଣ ପରେ ଭାରତରେ ଶିକ୍ଷିତ ସମ୍ପ୍ରଦାୟ କ୍ରମେ ଏହି ଜାତୀୟତା ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ଜାତିର ଜାତୀୟ ଜୀବନ ବିକାଶ ହେଲେ ତାହାକୁ ଦବେଇ ଦେଇ ହେବ ନାହିଁ । ଉତ୍କଳ ସମ୍ମିଳନୀ ସୃଷ୍ଟି ପୂର୍ବେ ଜାତୀୟତା କେବଳ ସ୍ୱଦେଶୀ ଶିଳ୍ପରେ ପର୍ଯ୍ୟବସିତ ଥିଲା । କ୍ରମେ ଶିକ୍ଷିତ ଓଡ଼ିଆମାନେ ଜାତୀୟ ଜୀବନ ଗଠନ ଓ ବିକାଶ ପାଇଁ ଏକ ପୀଠ ଖୋଜୁଥିଲେ । ତେଣୁ ସେହି ଅଭାବ ଉତ୍କଳ ସମ୍ମିଳନୀ ମେଣ୍ଟାଇ ଥିଲା । ସମୟର ଏହି ସୁଯୋଗରେ ମଧୁସୂଦନ ସମ୍ମିଳନୀ ସ୍ଥାପନ କରି ପାରିଥିଲେ । ମଧୁସୂଦନ ଜାତିହୃଦୟର ଲୁକ୍କାୟିତ ଜାତୀୟ ଭାବକୁ ତଥା ସ୍ୱପ୍ନକୁ ରୂପରେଖ ଦେଇଗଲେ । ୧୯୦୩ ମସିହା ଅକ୍ଟୋବର ୨୫ ତାରିଖ ଦିନ କଟକ କନିକା ରାଜବାଟୀରେ ଗୋଟିଏ "ପ୍ରାରମ୍ଭିକ ସାଧାରଣ ପ୍ରକାଶ୍ୟ ସଭାର ଅଧିବେଶନ"ରେ ମଧୁସୂଦନ ଏହି ସମ୍ମିଳନୀର ଉଦ୍ଦେଶ୍ୟ ଜଣାଇବାକୁ ଯାଇ କହିଥିଲେ- "ଇଉରୋପରେ ନେଶନ୍ ଅର୍ଥାତ୍ ଜାତି ଶବ୍ଦ ଗୋଟିଏ ରାଷ୍ଟ୍ର ବା ଦେଶର ଲୋକ ସମୂହକୁ ବୁଝାଏ । ଇଉରୋପୀୟ ଜାତିସମୂହ ପରସ୍ପରଠାରୁ ଯେଉଁ ପରିମାଣରେ ବିଭିନ୍ନ, ଭାରତବର୍ଷର ପ୍ରାଦେଶିକ ଲୋକସମୂହ ସେହିପରି ନାନା ବିଷୟରେ ପରସ୍ପରଠାରୁ ବିଭିନ୍ନ । ଏହି ହେତୁରୁ ଭାରତବର୍ଷରେ ଜାତୀୟତା ଏହି ଶବ୍ଦ ଗୋଟିଏ ବିଶେଷ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ । ଅତଏବ ଦୁଇ ଜାତି ବା ସମାଜ ମଧ୍ୟରେ ମିତ୍ରତା ବର୍ଦ୍ଧନ କରିବା ପାଇଁ ଦୃଢ଼ ବନ୍ଧନ ସହିତ କୌଣସି ଜାତୀୟ ଅନୁଷ୍ଠାନ ଗଢ଼ିବା ଏକାନ୍ତ ଆବଶ୍ୟକ । ଅତଏବ ଏକ ଜାତିର ନିମନ୍ତେ ଉନ୍ନତି ଅପର ଜାତିର ସହଯୋଗ ଆବଶ୍ୟକ ଏବଂ ପ୍ରସ୍ତାବିତ ଉତ୍କଳୀୟ ସାର୍ବଜନୀନ ସଭା ସେହି ନୀତି ଅନୁସାରେ ପ୍ରତିଷ୍ଠିତ ହେବା ଉଚିତ । ଉକ୍ତ ମହାସଭାରେ ଓଡ଼ିଆ ଜାତି ଓ ସେଥି ସଙ୍ଗେ ଏକୀଭୂତ ଉତ୍କଳୀୟମାନେ ଉଦ୍‌ଯୋକ୍ତା ରୂପେ ନିମନ୍ତ୍ରଣକାରୀ ତଥା ଶିକ୍ଷାର୍ଥୀ ଭାବେ ମଧ୍ୟ ସ୍ଥଳାଭିଷିକ୍ତ ହେବେ । ବର୍ତ୍ତମାନ ଅବସ୍ଥାରେ ଦୋଷାଦୋଷ ବିଚାର ଅପେକ୍ଷା ଆତ୍ମନିର୍ଭରଶୀଳତା ସହ ଉଦ୍‌ଯୋଗ ଅଧିକ ଶ୍ରେୟସ୍କର ।"

ପ୍ରଥମେ ଉତ୍କଳ ସମ୍ମିଳନୀ ପ୍ରାକୃତିକ ଉତ୍କଳର ସାମାଜିକ, ବୈଷୟିକ ଓ ରାଜନୈତିକ ଉନ୍ନତିବିଧାନ ପାଇଁ ସୃଷ୍ଟ ହୋଇଥିଲା । ଉତ୍କଳ ସମ୍ମିଳନୀ ତାହାର ଦୀର୍ଘ ଜୀବନକାଳ ମଧ୍ୟରେ ଦେଶରେ କିପରି ଓଡ଼ିଆ ଆନ୍ଦୋଳନ

ଚଳାଇବା ସଙ୍ଗେ ସଙ୍ଗେ ଓଡ଼ିଶା ପ୍ରଦେଶ ଗଠନ କରି ଉତ୍କଳର ନାନା-ଦେଶହିତକର କାମ କରି ଅଛନ୍ତି, ତାହା ଆଲୋଚନା କରାଯାଉ । ମଧୁସୂଦନଙ୍କ ମୃତ୍ୟୁ ପରେ ମଧ୍ୟ ଉତ୍କଳ ସମ୍ମିଳନୀ ତାର କାର୍ଯ୍ୟ କରି ଚାଲିଅଛି । କାରଣ ଉତ୍କଳ ସମ୍ମିଳନୀ ଯେଉଁ ଲକ୍ଷ୍ୟ ପାଇଁ ସୃଷ୍ଟି ହୋଇଥିଲା, ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣଭାବରେ ସେ ଲକ୍ଷ୍ୟ ସ୍ଥାନରେ ପହଞ୍ଚ ପାରିନାହିଁ । ୧୯୦୩ ମସିହା ଡିସେମ୍ବର ମାସରେ କଟକ ଇଦଗା ପଡ଼ିଆଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓଙ୍କ ସଭାପତିତ୍ୱରେ ଆରମ୍ଭ ହୋଇଥିଲା । ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକ ବିବରଣୀରେ ଏହି ସମ୍ମିଳନୀର ଆଦର୍ଶ ସମ୍ପର୍କରେ ଲିପିବଦ୍ଧ ହୋଇ ଅଛି ଯେ—"ଏହି ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ । ଏଥିରେ ସମସ୍ତ ଉତ୍କଳ-ଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବ । ବର୍ତ୍ତମାନ ସରକାର ବାହାଦୁରଙ୍କ ରାଜତ୍ୱରେ ଓଡ଼ିଶାର ସୀମା ଢେର କମି ଯାଇଅଛି । ଫଳରେ ଦେଖାଯାଉଅଛି ଯେ ସମ୍ବଲପୁର, ଛୋଟନାଗପୁର, ମେଦିନୀପୁର, ଗଞ୍ଜାମ ଇତ୍ୟାଦି ସ୍ଥାନମାନ ଓଡ଼ିଶାର ବାହାରେ ଥାଇ ସୁଦ୍ଧା ସେ ଅଞ୍ଚଳରେ ଓଡ଼ିଆଙ୍କ ସଂଖ୍ୟା ବହୁତ, ସେଥିପାଇଁ ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ "ଉତ୍କଳ" ବୋଲି ନାମ ଦିଆ ହୋଇଅଛି ଏବଂ ଏହି ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ ହୋଇଅଛି । ବର୍ତ୍ତମାନ ଉତ୍କଳ ସମ୍ମିଳନୀ ଉତ୍କଳୀୟମାନଙ୍କ ମଙ୍ଗଳ ସାଧନ ଅଭିପ୍ରାୟରେ ସ୍ଥାପିତ ହୋଇଅଛି । ଯେଉଁମାନେ ଉତ୍କଳର ସ୍ଥାୟୀ ଅଧିବାସୀ ହୋଇଅଛନ୍ତି, ଅର୍ଥାତ୍ ଯେଉଁମାନେ ଉତ୍କଳକୁ ସେମାନଙ୍କ ଗୃହସ୍ୱରୂପ ମଣି ଅଛନ୍ତି, ସେମାନେ ଭିନ୍ନ ଜାତୀୟ ହେଲେ ସୁଦ୍ଧା ସେମାନଙ୍କୁ ଉତ୍କଳୀୟ ବୋଲି ଗଣନା କରାଯିବ । ଯେଉଁମାନେ ଅନେକ ଦିନ ହେଲା ଏଠାକୁ ଆସି ଓଡ଼ିଶାକୁ ଆପଣାର ମାତୃଭୂମି ସ୍ୱରୂପ ଗ୍ରହଣ ଏବଂ ସ୍ୱୀକାର କରୁଅଛନ୍ତି ଓ ଓଡ଼ିଆ ମାନଙ୍କ ହିତସାଧନକୁ ସ୍ୱଜାତିର କର୍ତ୍ତବ୍ୟ କର୍ମ ବୋଲି ମନେ କରୁଅଛନ୍ତି, ସେମାନଙ୍କୁ ଆମ୍ଭେମାନେ ଉତ୍କଳୀୟ ବୋଲି ଡାକୁଅଛୁ ।"

## ଉତ୍କଳ ସମ୍ମିଳନୀର ଚାରୋଟି ଲକ୍ଷ୍ୟ

୧ । ପ୍ରାକୃତିକ ଉତ୍କଳର ଏକତା ସ୍ଥାପନ;
୨ । ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ;
୩ । ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଶାସନସୂତ୍ରରେ ଏକତ୍ରୀକରଣ, ଏବଂ
୪ । ପ୍ରବାସୀ ଓ ପରିତ୍ୟକ୍ତ ଅଞ୍ଚଳରେ ଥିବା ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ ।

ଏହା ବ୍ୟତିତ ୧୯୨୧ ମସିହାରେ ଚକ୍ରଧରପୁର ସମ୍ମିଳନୀରେ ପଣ୍ଡିତ ଗୋପବନ୍ଧୁଙ୍କ ଆଗତ ପ୍ରସ୍ତାବାନୁଯାୟୀ ଭାରତର ସ୍ୱାଧୀନତା ସମ୍ମିଳନୀର ଲକ୍ଷ୍ୟ ବୋଲି ଗୃହୀତ ହୋଇଥିଲା ।

**ଉତ୍କଳ ସମ୍ମିଳନୀ** ଉତ୍କଳୀୟମାନଙ୍କ ଜାତୀୟ ଜୀବନର ନାନା ସମସ୍ୟା ସମାଧାନରେ ନାନା ପ୍ରକାର ସାହାଯ୍ୟ କରି ଆସିଅଛି, କହିବାକୁ ହେବ ଯେ ସମ୍ମିଳନୀ ଉତ୍କଳରେ ଜାତୀୟ ଜୀବନର ସୂତ୍ରପାତ କରିଅଛି । ପ୍ରତିବର୍ଷ ସମ୍ମିଳନୀରେ ପ୍ରାକୃତିକ ଉତ୍କଳର ସବୁ ଅଞ୍ଚଳର ପ୍ରତିନିଧିଗଣ ଉତ୍ସାହିତ ହୋଇ ସମବେତ ହେଉଥିଲେ । ସଭାପତି ଅଭିଭାଷଣ ଦେଉଥିଲେ । ନାନା ଦେଶହିତକର ପ୍ରସ୍ତାବ ଆଲୋଚିତ ହୋଇ ଗୃହୀତ ହେଉଥିଲା । ମଧୁସୂଦନ ବଞ୍ଚିଥିବା ବେଳେ ନିଜ ହାତରୁ ସମ୍ମିଳନୀ ପାଇଁ ବହୁ ଟଙ୍କା ଖର୍ଚ୍ଚ କରୁଥିଲେ । ଦେଶହିତ ସାଧନ ପାଇଁ ଦେଶର ଧନୀ ଦରିଦ୍ର ଯେ କୌଣସି ଶ୍ରେଣୀର ଲୋକେ ଚାନ୍ଦା ଦେଲେ ମଧୁବାବୁ ତାହା ଗ୍ରହଣ କରୁଥିଲେ; ମାତ୍ର କୌଣସି ଚାନ୍ଦା ପାଇଁ ଅପେକ୍ଷା ନ ରଖି ସେ ନିଜର ହାତରୁ ସହସ୍ର ସହସ୍ର ଟଙ୍କା ଖରଚ କରୁଥିଲେ । ସେ କେତେ ଥର କହିବାର ଆମ୍ଭେମାନେ ଶୁଣିଅଛୁଁ—"ଚାନ୍ଦାପାଇଁ ଅପେକ୍ଷା କରି, ଚାନ୍ଦାସଂଗ୍ରହ କରି କାମ କଲାବେଳକୁ ଘରବୁଡ଼ି ପାଣି ଆଣିବା ହୋଇଯିବ ।" ଦେଶହିତକର କାର୍ଯ୍ୟରେ ଟଙ୍କା ଖରଚ କରି କରି ଶେଷକୁ ଯେତେବେଳେ ସେ ନିଃସ୍ୱ ହୋଇଗଲେ ସେତେବେଳେ ସୁଦ୍ଧା ସେ କହୁଥିଲେ "ମୁଁ ଟଙ୍କାଥଳି ହାତରେ ଧରି ଜନ୍ମ ହୋଇ ନ ଥିଲି । ଟଙ୍କା କମାଇଥିଲି ମୁଁ । ମୋର ମା, ମୋର ଦେଶ, ମୋର ଭାଇଙ୍କ ପାଇଁ ମୁଁ ଖରଚ କରି ଶୂନ୍ୟ ହାତରେ ଫେରିଯିବି, ସେଥିପାଇଁ ଦୁଃଖ କଣ ? ଦୁଃଖ ମୋର ଏତିକି ଯେ, ମୋ ମନମାଫିକ ମୁଁ ମୋ ଦେଶଟାକୁ ମୋ ଜାତିଟାକୁ ଗଢ଼ିପାରିଲି ନାହିଁ ।" ଟଙ୍କା ଖରଚ ବିଷୟରେ ତାଙ୍କର ଯେ ଉଦାର ହୃଦୟ ତାହା କଳନା କରି ହେବ ନାହିଁ । ତାଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବେ ମହାନଦୀ ଓ କାଠଯୋଡ଼ିରେ ଭୀଷଣ ବନ୍ୟା ହୋଇ ଅନେକ ଘର ଦ୍ୱାର ଭାସି ଯାଇଥିଲା । ବନ୍ୟାପ୍ରପୀଡ଼ିତ ଅଞ୍ଚଳର ଲୋକଙ୍କୁ ସାହାଯ୍ୟ କରିବାକୁ ଗୋଟିଏ ସମିତି ଗଠିତ ହୋଇଥାଏ । ସେତେବେଳକୁ ମଧୁବାବୁ ଦରିଦ୍ର; ଦେବାଳିଆ ହୋଇ ଗଲେଣି । କମିଟିର ସଭ୍ୟମାନଙ୍କ ମଧ୍ୟରୁ କେହି କେହି ଭାବିଲେ ଏତେବେଳେ ତାଙ୍କର ଚାନ୍ଦା ଦେବାର କ୍ଷମତା ନାହିଁ, ତାଙ୍କୁ କିଛି ମାଗିବା ନାହିଁ; କିନ୍ତୁ ମଧୁବାବୁ କାଳେ ଭାବିବେ ତାଙ୍କୁ କାହିଁକି ନ ମାଗିଲେ, ଏହିପରି ସାତପାଞ୍ଚ ଭାବି ସମିତିର ସଭ୍ୟ-ମାନଙ୍କ ମଧ୍ୟରୁ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ରାୟବାହାଦୁର ହରିହରଚରଣ ପଟ୍ଟନାୟକ ଓ ଶ୍ରୀ ବ୍ରଜବନ୍ଧୁ ଦାସ ପ୍ରଭୃତି ତାଙ୍କ ପାଖକୁ ଗଲେ । ସେତେବେଳେ ଜଣେ ମହାଜନ ଦୁଇ ଶହଟି ଟଙ୍କା ଦେଇ ଗୋଟିଏ ମକଦ୍ଦମାରେ ପରାମର୍ଶ ନେଇଥାଏ । ମଧୁବାବୁ ଏମାନଙ୍କ ଠାରୁ ସମସ୍ତ ବୃତ୍ତାନ୍ତ ଶୁଣି କାନ୍ଦି ପକାଇଲେ, କହିଲେ "ଏସବୁ କାମ ମୁଁ ନିଜେ ନିଜେ ଦିନେ କରିଥିଲି; ଏଥିପାଇଁ କାହାରିକୁ ଚାନ୍ଦା ମାଗୁ ନ ଥିଲି; ଚାନ୍ଦାସଂଗ୍ରହ କରି ସାହାଯ୍ୟ ଦେଲା ବେଳକୁ ଲୋକଙ୍କ ପ୍ରାଣ ଯାଇଥିବ । ଆଜି ମୋର ଶକ୍ତି ନାହିଁ । ଏଥିପାଇଁ ଚାନ୍ଦାଖାତାରେ ଦସ୍ତଖତ

ଜବଦେଇ ପରେ ଦେଲେ ତ ଚଳିବ ନାହିଁ; ଯାହାହେଉ ଜଣେ ମହାକଲ ୫୨୦୦୯ ଙ୍କା ଦେଇଛି । ମୋଠାରେ ଏତିକ ମାବ ଅଛି ନିଅ । ମୁଁ ଅଧିକ ଦେଇ ପାରୁ ନାହିଁ, ବଡ଼ ଦୁଃଖ ହେଉଛି; କିନ୍ତୁ କଅଣ କରିବି ?” ଏହି ଗୋଟିଏ ଘଟଣାରୁ ତାଙ୍କର ଦେଶପାଇଁ ପଇସା ଖରଚ କରିବା ଓ ହୃଦୟର ଉଦାରତା ସହଜରେ ଅନୁମାନ କରାଯାଇ ପାରେ । ଦେଶମିଶ୍ରଣ ଆନ୍ଦୋଳନ ସହିତ ସମ୍ମିଳନୀ ଉତ୍କଳର ଶିଳ୍ପ, କୃଷି, ଶିକ୍ଷା ଓ ସଂସ୍କୃତି ପାଇଁ ମଧ୍ୟ ବହୁକାମ କରୁଥିଲା । ସମ୍ମିଳନୀର ବାର୍ଷିକ ବିବରଣୀ ଆଲୋଚନା କଲେ ଜଣାଯାଏ ଯେ, ନିମ୍ନଲିଖିତ ସମସ୍ୟାମାନଙ୍କ ସମାଧାନ ବିଷୟରେ ସମ୍ମିଳନୀ ତତ୍ପର ଥିଲା ।

୧ । ଲୋକମାନଙ୍କ ମଧ୍ୟରେ ଜାତୀୟ ଭାବ ସଞ୍ଚାର କରି ଜାତୀୟ ଜାଗରଣ ଆଣିବା ଓ ଜାତୀୟ ଜୀବନ ଗଠନ କରିବା,

୨ । ଲୋକମାନଙ୍କ ଅଭାବ, ଅସୁବିଧା ପ୍ରତି ସାଧାରଣ ତଥା ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା,

୩ । ପ୍ରାକୃତିକ ଉତ୍କଳର ବିଚ୍ଛିନ୍ନ ଅଞ୍ଚଳଗୁଡ଼ିକୁ ଏକ ଶାସନାଧୀନ କରିବା ପାଇଁ ଚେଷ୍ଟା କରିବା ଓ ଆନ୍ଦୋଳନ ଚଳାଇବା,

୪ । ଉତ୍କଳର କୃଷି, ବାଣିଜ୍ୟ, ଶିଳ୍ପ, ଶିକ୍ଷା ଓ ସାହିତ୍ୟର ଅଭିବୃଦ୍ଧି ସାଧନ କରିବା ପାଇଁ ପନ୍ଥା ନିରୂପଣ କରିବା ଓ ଦେଶକୁ ଉନ୍ନତିପଥରେ ଅଗ୍ରସର କରାଇବା ।

ମଧୁସୂଦନ ସମ୍ମିଳନୀର ଜନ୍ମଦାତା, ମନ୍ତ୍ରଦାତା ଓ ପାଳୟିତା ଥିଲେ ମାତ୍ର ସେ କାଳର ବଡ଼ ଅବେକ୍ଷଣୀ ସମ୍ମିଳନୀ କାର୍ଯ୍ୟର ବଡ଼ ପ୍ରତିବନ୍ଧକ ଥିଲା । ଉତ୍କଳର ସର୍ବାଙ୍ଗୀନ କଲ୍ୟାଣସାଧନ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଥିଲା । ମଧୁସୂଦନ ନିଜେ ସମ୍ମିଳନୀର ପ୍ରଥମେ ସମ୍ପାଦକ ଥିଲେ ଏବଂ ୧୯୧୩ ଓ ୧୯୧୮ ମସିହାରେ ସଭାପତି ମଧ୍ୟ ହୋଇଥିଲେ । ୧୯୧୬ ମସିହାରେ ସେ ସମ୍ମିଳନୀର ଅଭ୍ୟର୍ଥନା ସମିତିର ସମ୍ପାଦକ ମଧ୍ୟ ହୋଇଥିଲେ ।

ଉତ୍କଳ ସମ୍ମିଳନୀର କାର୍ଯ୍ୟାବଳୀ ଓ ପରିକଳ୍ପନା ଉତ୍କଳ ଇତିହାସରେ ଓ ଉତ୍କଳ ଜାତୀୟ ଜୀବନରେ ଉଜ୍ଜ୍ୱଳ ଓ ଅସାଧାରଣ ।

ସମ୍ମିଳନୀ ସେତେବେଳେ କିପରି ଉତ୍କଳରେ ଜାଗରଣ ଆଣିଥିଲା, ତାହା ସମ୍ମିଳନୀର ବିଭିନ୍ନ ଅଧିବେଶନର ବିବରଣୀ ପଢ଼ିଲେ ସହଜରେ ଜଣା ପଡ଼େ । ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ୩୦,୩୧ ତାରିଖ ରାଜା ବନ କନିକାଙ୍କ ପ୍ରାସାଦରେ ବସିଥିଲା । ସେତେବେଳେ ପ୍ରାକୃତିକ ଉତ୍କଳକୁ


DAUGHTER
IN EXILE.
MOTHER
UTKAL.
GULF OF ADMINISTRATION
GANJAM
ORISSA

ଶାସନ-ସମୁଦ୍ର

ଓଡ଼ିଶା ଓଡ଼ିଆ ବାହାରୁ ୩୫୫ ଜଣ ପ୍ରତିନିଧି ସମ୍ମିଳନୀରେ ଯୋଗ ଦେଇଥିଲେ । ସମସ୍ତଙ୍କ ମନରେ ଗୋଟିଏ ଜାତୀୟ ଭାବ ଜାଗରଣ ଲାଗି ମଧୁସୂଦନ ଗୋଲାପି ରଙ୍ଗର ଏକ ପଗଡ଼ି ବ୍ୟବହାର କରିବାକୁ ନିର୍ଦ୍ଦେଶ ଦେଇଥିଲେ ! ରାଜା ମହାରାଜା, ଧନୀ ନିର୍ଦ୍ଧନ ଯେଉଁମାନେ ସମ୍ମିଳନୀରେ ଯୋଗ ଦେଇଥିଲେ ସମସ୍ତେ ସେହି ପଗଡ଼ି ବ୍ୟବହାର କରିଥିଲେ । ଏହି ପ୍ରଥମ ସମ୍ମିଳନୀରେ ତତ୍କାଳୀନ ଓଡ଼ିଶା ଦେଶୀୟ ରାଜ୍ୟରୁ ମଧ୍ୟ ପାଞ୍ଚ ଜଣ ରାଜା ଯୋଗ ଦେଇଥିଲେ । ସମ୍ମିଳନୀର ପ୍ରଥମ ଅଧିବେଶନ ବେଳେ ଗୋଟିଏ କୃଷି ଶିଳ୍ପ ପ୍ରଦର୍ଶନୀ ମଧ୍ୟ ବସିଥିଲା; ସାହିତ୍ୟ ଓ ସଂସ୍କୃତି, କୃଷି ଓ ଶିଳ୍ପ ପ୍ରଭୃତିର ଉନ୍ନତି କରିବା ନିମିତ୍ତ କେତେ-ଗୁଡ଼ିଏ ସମିତି ମଧ୍ୟ ଗଠିତ ହୋଇଥିଲା । ପ୍ରଥମ ଅଧିବେଶନ ବର୍ଷ ସମ୍ମିଳନୀର ୩୧ ଟି ଶାଖା ପ୍ରାକୃତିକ ଉତ୍କଳରେ ଗଠନ କରାଯାଇଥିଲା ।

ଉତ୍କଳ ସମ୍ମିଳନୀର ବିବରଣୀମାନ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ ଭାଷାସୂତ୍ରରେ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ବ୍ୟତୀତ କୃଷି, ଶିଳ୍ପ, ବାଣିଜ୍ୟ ଓ ସାହିତ୍ୟ, ସଂସ୍କୃତି ସମ୍ବନ୍ଧ ଲୋକକଲ୍ୟାଣକର କାର୍ଯ୍ୟରେ ସମ୍ମିଳନୀରେ ପ୍ରସ୍ତାବମାନ ଗ୍ରହଣ ସଙ୍ଗେ ସଙ୍ଗେ ସଂଗଠନମୂଳକ କାର୍ଯ୍ୟ ମଧ୍ୟ ଆରମ୍ଭ କରାଯାଇଥିଲା । ମଧୁସୂଦନ କିପରି ନିଜେ ସ୍ୱଦେଶୀ ଶିଳ୍ପର ଉନ୍ନତି ପାଇଁ ଚେଷ୍ଟା କରିଥିଲେ, ତାହା ପରେ ଆଲୋଚିତ ହେବ ।

ମଧୁସୂଦନଙ୍କର ଲକ୍ଷ୍ୟ ଥିଲା, ସମ୍ମିଳନୀର ସାହାଯ୍ୟରେ ଉତ୍କଳର ସମୃଦ୍ଧି ଓ ସମ୍ବନ୍ଧ ଲୋକକଲ୍ୟାଣ ସାଧନ କରିବା । ସମ୍ମିଳନୀର ଆଦର୍ଶ ବା ଲକ୍ଷ୍ୟ ମହତ୍ ଏବଂ ଲୋକକଲ୍ୟାଣକର ହେଲେ ମଧ୍ୟ ନିଃସ୍ୱାର୍ଥ, ନିରଳସ କର୍ମୀ ଅଭାବରୁ ସଂଗଠନରେ ଦୁର୍ବଳତା ପରିଲକ୍ଷିତ ହୋଇଥିଲା । ମଧୁସୂଦନଙ୍କ ଚିନ୍ତାଧାରା ପରବର୍ତ୍ତୀ ଯୁଗର ଭାରତୀୟ ଚିନ୍ତାଧାରାର ଅଗ୍ରଗାମୀ ଥିଲେ ମଧ୍ୟ, ବିଶ୍ୱସ୍ତ କର୍ମୀ ଅଭାବରୁ, ତାଙ୍କର ପରିକଳ୍ପନା ବିଶେଷଭାବରେ କାର୍ଯ୍ୟରେ ପରିଣତ ହୋଇ ପାରି ନ ଥିଲା । ଦ୍ୱିତୀୟରେ ସମ୍ମିଳନୀ ହେଲା ବେସରକାରୀ ପ୍ରଚେଷ୍ଟା । ବିଦେଶୀ ଶାସନରେ ବେସରକାରୀ ଅନୁଷ୍ଠାନ କେବଳ ଆଦର୍ଶ ଅସ୍ପୃଷ୍ଟ ରଖି ଲୋକମତ ଗଠନ କରିବା ବ୍ୟତୀତ ଆଉ କଣ ବା କରି ପାରିବ ?”

ମଧୁସୂଦନଙ୍କର ଉତ୍କଳ ସମ୍ମିଳନୀରେ ପ୍ରଦତ୍ତ ବିଭିନ୍ନ ବକ୍ତୃତା ପଢ଼ିଲେ, ସହଜରେ ଜଣାପଡ଼ିବ, ସେ କିପରି ସମ୍ମିଳନୀ ସାହାଯ୍ୟରେ ଜାତି ସଂଗଠନ ପାଇଁ ବ୍ୟଗ୍ର ଥିଲେ । ୧୯୧୩ ମସିହାରେ ମଧୁସୂଦନ ସମ୍ମିଳନୀର ସଭାପତି ଭାବରେ କହିଥିଲେ, “ପ୍ରଥମେ ଉତ୍କଳ ସମ୍ମିଳନୀର ଅର୍ଥ ବୁଝିବା ଉଚିତ ଏବଂ ଉତ୍କଳ ସମ୍ମିଳନୀର ଅର୍ଥ ବୁଝିବା ପୂର୍ବେ ସମ୍ମିଳନୀର ଅର୍ଥ ବୁଝିବା ଆବଶ୍ୟକ । ପୃଥିବୀର ନାନା ପ୍ରକାର ମିଳନ ହୁଏ । ଜଡ଼ ପଦାର୍ଥର ମିଳନ ହୁଏ । ପଶୁମାନଙ୍କର

ମିଳନ ହୁଏ ଏବଂ ମନୁଷ୍ୟର ମଧ୍ୟ ମିଳନ ହୁଏ । ବଢ଼େଇ ଦୁଇଖଣ୍ଡ କାଠକୁ ମିଳନ କରାଏ । ଏହା ଜଡ଼ ପଦାର୍ଥର ମିଳନର ଗୋଟିଏ ଉଦାହରଣ । ଆହୁରି ମଧ୍ୟ ଆପଣମାନେ ଦେଖିଥିବେ ଗୋଲାପଗଛ କଲମ ଦ୍ୱାରା ଏକ ପ୍ରକାର ମିଳନ ହୁଏ ଯେ ଏକ ବୃକ୍ଷରେ ନାନା ରଙ୍ଗର ଫୁଲ ଫୁଟେ । ମନୁଷ୍ୟ ଜାତିର ମିଳନ ମଧ୍ୟ ନାନା ଅଭିପ୍ରାୟରେ ହୁଏ । ଏ ସମୁଦାୟ ଉଦାହରଣରୁ ମିଳନ କାହାକୁ କହନ୍ତି, ତାହା ଆମ୍ଭେମାନେ ବୁଝି ପାରୁଅଛୁଁ । କିନ୍ତୁ ମିଳନ ଓ ସମ୍ମିଳନ ଏକ ଶବ୍ଦ ନୁହେଁ କିମ୍ବା ଏକ ଅର୍ଥ ବୁଝାଏ ନାହିଁ । କାଠ ଦୁଇଖଣ୍ଡ ଏକାଠି କରିବାକୁ ବଢ଼େଇ କଣ୍ଟା ମାରେ କିମ୍ବା ଶିରିଷ ଲଗାଏ । ଦୁଇଟି ଗଛ ଏକ ଦେଖାଗଲେ ମଧ୍ୟ ଭିନ୍ନ ଭିନ୍ନ ଫଳ ଫଳନ୍ତି । ପଶୁମାନଙ୍କର ମିଳନ ଶବ୍ଦ ଉଦ୍ଦେଶ୍ୟରେ ହୋଇଥାଏ । ଏହିପରି ସମ୍ମିଳନ ଦ୍ୱାରା ଉଭୟ ପଦାର୍ଥ ମଧ୍ୟରୁ କାହାରି ପ୍ରକୃତିର ପରିବର୍ତ୍ତନ ହୁଏ ନାହିଁ । ରସାୟନଶାସ୍ତ୍ରରୁ ଆପଣମାନେ ଜାଣନ୍ତି ଏପରି ଜିନିଷ ଅଛି, ଯହିଁରୁ ଦୁଇଗୋଟି ମିଶାଇ ଦେଲେ ଯେ ପଦାର୍ଥ ହୁଏ, ତାହାର ଗୁଣ ଓ ପ୍ରକୃତି ସମ୍ପୂର୍ଣ୍ଣ ପୃଥକ୍ । ଯେଉଁ ଦୁଇ ପଦାର୍ଥ ମିଳନରେ ତାହା ଉତ୍ପନ୍ନ ହୋଇଅଛି, ସେ ଦୁଇ ପଦାର୍ଥର ଗୁଣ ଓ ଲକ୍ଷଣ ଏକ ପ୍ରକାର ଏବଂ ଉକ୍ତ ମିଳନଦ୍ୱାରା ଯେଉଁ ପଦାର୍ଥ ଜାତ ହୁଏ, ତାହାର ଗୁଣ ସମ୍ପୂର୍ଣ୍ଣରୂପେ ଅନ୍ୟ ପ୍ରକାର । ଉଦାହରଣ ସ୍ୱରୂପ ଉଲ୍ଲେଖ କରୁଅଛି, ପାଣି ଦୁଇ ଗୋଟି ବାଷ୍ପରୁ ଉତ୍ପନ୍ନ ହୁଏ । ବାଷ୍ପକୁ ଏକ ପ୍ରକାର ବାୟୁ କୁହାଯାଇ ପାରେ । ମାତ୍ର ଦୁଇଗୋଟି ବାଷ୍ପର ସମ୍ମିଳନରେ ଯାହା ଉତ୍ପନ୍ନ ହେଲା, ତାହା ପାଣି । ବାଷ୍ପ ଦୃଷ୍ଟିର ଅଗୋଚର, ପାଣି ଦୃଶ୍ୟମାନ, ବାଷ୍ପ ଊର୍ଦ୍ଧ୍ୱଗାମୀ, ଜଳ ନିମ୍ନଗାମୀ । ଏହିପରି ଦୁହିଙ୍କର ଗୁଣ ଓ ଲକ୍ଷଣ ସମ୍ପୂର୍ଣ୍ଣରୂପେ ପୃଥକ୍ । ଅତଏବ ସମ୍ମିଳନୀର ଅର୍ଥ ଏପ୍ରକାର ମିଳନ ଯେ ମିଳିତ ପଦାର୍ଥମାନଙ୍କର ପୃଥକ୍ ଅସ୍ତିତ୍ୱ ଓ ଗୁଣ ଲୋପ ହୋଇ ଏକ ନୂତନ ପଦାର୍ଥ ଉତ୍ପନ୍ନ ହେବ ! ବ୍ୟକ୍ତିଗତ ଜୀବନ ଲୋପ ହୋଇ ଜାତୀୟ ଜୀବନରେ ପରିଣତ ନ ହେବା ଯାଏ ପ୍ରକୃତ ମିଳନ ଅସମ୍ଭବ । ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସମସ୍ତ ଉତ୍କଳବାସୀଙ୍କର ମଙ୍ଗଳସାଧନ । ଉତ୍କଳ ସମ୍ମିଳନୀ ଜାତିର ସଭା ।”

ଉତ୍କଳ ସମ୍ମିଳନୀର ମଧ୍ୟ ରାଜନୀତି ଦିଗରୁ ଅନ୍ୟ-ଏକ ପ୍ରାଧାନ୍ୟ ଅଛି । ମଧୁସୂଦନ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ କହିଥିଲେ, “ ଏହି ସମ୍ମିଳନୀ ସଭାରେ ଉତ୍କଳୀୟ, ବଙ୍ଗୀୟ, ତେଲୁଗୁ, ଗୁଜରାଟୀ, ମାରୱାଡ଼ି ପ୍ରଭୃତି ବିଭିନ୍ନ ଜାତୀୟ ପ୍ରତିନିଧିମାନେ ଉପସ୍ଥିତ ହୋଇଅଛନ୍ତି । ଏହା ଯେବେ ଭାରତୀୟ ଅନୁଷ୍ଠାନ ମଧ୍ୟରେ ଗଣ୍ୟ ନ ହେବ, ତେବେ କଂଗ୍ରେସ କଦାପି ଜାତୀୟ ଅନୁଷ୍ଠାନରେ ମଧ୍ୟ ଗଣ୍ୟ ହୋଇ ନ ପାରେ ।” ଉତ୍କଳ ସମ୍ମିଳନୀ ତେଣୁ ଉତ୍କଳର ପ୍ରଥମ ପ୍ରଧାନ ପ୍ରତିନିଧିମୂଳକ ଜାତୀୟ ଅନୁଷ୍ଠାନ ।

ମଧୁସୂଦନ ପୁଣି ଏହି ସମ୍ମିଳନୀ ବିଷୟ ବୁଝାଇବାକୁ ଯାଇ ୧୯୧୨ ମସିହାରେ ଉତ୍କଳ ସମ୍ମିଳନୀରେ କହିଥିଲେ, "ସମ୍ମିଳନୀର ଅର୍ଥ ମୁଁ ବୁଝି ପାରି ନାହିଁ ଏବଂ ଅନେକ ବୁଝି ନାହାନ୍ତି । ଇନ୍‌ସିଓରାନ୍‌ସ କମ୍ପାନୀ (ଜୀବନ ବୀମା କମ୍ପାନୀ), କରଣସଭା, ବ୍ରାହ୍ମଣସଭା ଭଳି ଏ ଗୋଟିଏ ସଭା ନୁହେଁ । କେତେକ ମହାଜନ ତାଙ୍କର ସ୍ୱାର୍ଥରକ୍ଷା ପାଇଁ ଗୋଟିଏ ସଭା ଗଠନ କଲେ । କରଣ, ବ୍ରାହ୍ମଣମାନେ ସଭା କଲେ । ସମ୍ମିଳନୀର ସଂଖ୍ୟା ବା ସୀମା ନାହିଁ । ଅନ୍ୟ ସଭାର ସଭ୍ୟ ତାଲିକା ଅଛି । ମାତ୍ର ଉତ୍କଳ ସମ୍ମିଳନୀର ସଭ୍ୟମାନଙ୍କର ସଂଖ୍ୟା ନାହିଁ କି ତାଲିକା ନାହିଁ । ସମସ୍ତ ଓଡ଼ିଆ ଜାତି ଏହାର ସଭ୍ୟ । ପ୍ରଥମେ ଏହା ଭୁଲି ଯିବା ଉଚିତ ଯେ ଏ ସଭା ନୁହେ କିମ୍ବା କମ୍ପାନୀ ନୁହେ, ଏହା ଜାତିର ଅଟେ । ଯାହା ହୋଇଅଛି, ସେଥିରେ ଜାତିର ଦାବି ଅଛି । ପୁଣି ଯାହା ହେବ, ସେଥିରେ ସୁଦ୍ଧା ଜାତିର ଦାବି ହେବ; ଏହି ପ୍ରଭେଦ ମନେ ରଖିଲେ ଅନେକ ଗୋଳମାଳ ତୁଟିଯିବ ।"

ଉତ୍କଳ ସମ୍ମିଳନୀ ବିଷୟରେ ୧୯୧୩ ମସିହାରେ ସେହି ସମ୍ମିଳନୀରେ ପ୍ରଦତ୍ତ ସଭାପତି ଅଭିଭାଷଣରେ ମଧୁସୂଦନ କହିଛନ୍ତି—"ସମ୍ମିଳନୀ ଜାତିର ସମ୍ମିଳନ ନିମନ୍ତେ ସମସ୍ତ ଉତ୍କଳବାସୀଙ୍କ ହୃଦୟରେ ଜାତୀୟ ଜୀବନ ସଞ୍ଚାର କରିବା ନିମନ୍ତେ ସ୍ଥାପିତ ହୋଇଅଛି । ଏ ସମ୍ମିଳନୀ କୌଣସି ଏକ ସମ୍ପ୍ରଦାୟଭୁକ୍ତ ବ୍ୟକ୍ତିମାନଙ୍କର ଉନ୍ନତିସାଧନ ନିମନ୍ତେ ହୋଇ ନାହିଁ । ଯାହାଦ୍ୱାରା ସମସ୍ତ ଉତ୍କଳବାସୀଙ୍କର ଉନ୍ନତି ହେବ, ସେହି ପ୍ରକାର ସବୁ ଆଲୋଚନା କରିବା ନିମନ୍ତେ ଏ ସମ୍ମିଳନୀର ସୃଷ୍ଟି ।"

୧୯୧୮ ମସିହାରେ ମଧୁସୂଦନ ପୁଣି କହିଥିଲେ, "ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଓଡ଼ିଆ ଜାତିକୁ ଉଠାଇବା; ତେଣୁ ଉତ୍କଳ ସମ୍ମିଳନୀ "ଉତ୍କଳବାସୀଙ୍କ ସମ୍ମିଳନୀ—ଜନନୀ ଜନ୍ମଭୂମିଙ୍କ ପୂଜା ମଣ୍ଡପ ।" ସମ୍ମିଳନୀ ବିଷୟରେ 'ଓଡ଼ିଆ ଆନ୍ଦୋଳନ' (The Oriya movement) ବହିର ଲେଖକମାନେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ନିମ୍ନରେ ବିବୃତ ହେଲା—

"ଉତ୍କଳ ସମ୍ମିଳନୀ ଯେଉଁ କର୍ମପନ୍ଥା ଦେଇଅଛି, ତାହା ଜାତୀୟ ଇଚ୍ଛାର ପ୍ରକାଶ ମାତ୍ର । ଏହା ନିରାଶାପ୍ରଦ ନୁହେଁ, ଏହା ଗଣତନ୍ତ୍ର ମୂଳକ । କାରଣ ଅତି ନୀଚ ସ୍ତରର ଲୋକ ମଧ୍ୟ ଆଲୋଚନାରେ ନିଜ କଥା କହି ପାରେ । ଏହାର ସ୍ଥିତି ଏବଂ ଅଧିବେଶନ ସମୟରେ ଉତ୍ସାହ ଯେତେ ଭଣା ହେଉନା କାହିଁକି, ଏହା ଅନେକ ଭିନ୍ନ ଭିନ୍ନ ମତବାଦୀ ଲୋକଙ୍କୁ ଏକାଠି କରି ପାରିଛି ଏବଂ ଏହାର କାର୍ଯ୍ୟାବଳୀ ସମସ୍ତ ଲୋକଙ୍କ ନିଜ ନିଜ କଥିତ ଭାଷାରେ ସମ୍ପାଦିତ ହେଉଅଛି । ଏହା ଲୋକଙ୍କର ପ୍ରୟୋଜନୀୟତା ପ୍ରତି ଦୃଷ୍ଟି ଦେଉଅଛି ଏବଂ ଭାବ ଓ ଉଦ୍ଦେଶ୍ୟକୁ ରୂପ ଦେଇ ପାରୁଅଛି । ଏହାକୁ ସମ୍ପୂର୍ଣ୍ଣ

ସେବାରେ ଲଗାଇବାକୁ ହେଲେ ଆମ୍ଭର ନିୟମିତ ଓ ଅବିରତ କାମ କରିବାକୁ ହେବ ଏବଂ ଆମ୍ଭର ଯେପରି ବେଶୀ ସାଧାରଣ ଲୋକ ଯୋଗ ଦିଅନ୍ତି, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ଏହା ନିଖିଳ ଭାରତୀୟ ଅନୁଷ୍ଠାନ ନ ଥିବା ହେତୁ ଲୋକେ ଏହାର ଉଦ୍ଦେଶ୍ୟ ଓ ଆଦର୍ଶ ସମ୍ବନ୍ଧରେ ଅନେକ ସମୟରେ ଭୁଲ ଧାରଣା କରନ୍ତି । ପ୍ରାଦେଶିକ ଜାତୀୟ ଭାବ ପୋଷଣ କରି କାର୍ଯ୍ୟ କରିବା ଏହି ଅନୁଷ୍ଠାନ ପ୍ରତି ନ୍ୟାୟତଃ ସ୍ୱାଭାବିକ ହୋଇପାରେ, କିନ୍ତୁ ଏ ଯେଉଁ ସମସ୍ୟା ନେଇ ବ୍ୟସ୍ତ, ଏହା ଭାରତରେ ନୂତନ । ଏହି କାରଣରୁ ଏହି ପ୍ରଶ୍ନ ନିଖିଳ ଭାରତରେ ପ୍ରାଧାନ୍ୟ ଲାଭ କରିବା ଉଚିତ; କିନ୍ତୁ ଅନ୍ୟାନ୍ୟ ବୃହତ୍ତର ଦରକାରୀ ସମସ୍ୟାରେ ମଧ୍ୟ ଏହାର ଅଧିବେଶନ ଆଲୋଚନା କରିବା ଉଚିତ । କାରଣ ଏହାର ଗୋଟିଏ ବଡ଼ ବିପଦ ଅଛି । ଏହା ଉଚ୍ଚ ଏବଂ ବ୍ୟାପକ ପ୍ରଶ୍ନରେ ନ ମିଶିଲେ, ଏହି ଜାତିର ପ୍ରଶ୍ନ ପଛକୁ ପଡ଼ିଯାଇ ପାରେ । ଯେତେବେଳେ ବୃହତ୍ତର କ୍ଷମତା ଆମକୁ ତାହା ମଧ୍ୟକୁ ଟାଣିନେବ, ସେତେବେଳେ ଆମର ଶତ ଚେଷ୍ଟା ସତ୍ତ୍ୱେ ଆମ୍ଭେମାନେ ରହି ପାରିବୁ ନାହିଁ ।"

ସମ୍ମିଳନୀ ସମ୍ପର୍କରେ ସେହି ସମୟରେ ଜଣେ ସମ୍ମିଳନୀ-ଭକ୍ତ, କବି ଲେଖିଥିଲେ:—

"ଦୁଃଖ-କଷ୍ଟ-ଜର୍ଜରିତ ଉତ୍କଳ ଦେଶରେ,
ସମ୍ମିଳନୀ ତୁହି ସିନା ଢାଳୁଛୁ ଅମିୟ
ନୈରାଶ୍ୟ—ସମୀର ଘୋର ଦୁର୍ଭେଦ୍ୟ ଅରଣ୍ୟରେ
ତୁହି ସିନା ସଞ୍ଚାରିଲୁ ଉଜ୍ଜ୍ୱଳ ଆଲୁଅ ।
ଲକ୍ଷ ଲକ୍ଷ ଉତ୍କଳୀୟ ପଥଭ୍ରାନ୍ତ ହୋଇ
ଭ୍ରମୁଥିଲେ ଇତସ୍ତତଃ ଶୂନ୍ୟମନେ ଦିନେ
ତୋହର ଆବିର୍ଭାବେ ସତ୍ୟ ! ଚଇତନ୍ୟ ପାଇ
ଧାଇଁଚାଲିଲେଣି ସର୍ବେ ଆଜି କର୍ମ ପ୍ରାଙ୍ଗଣେ ।"

( ରହିରେଣୁ—ବାଳକୃଷ୍ଣ ପଟ୍ଟନାୟକ )

ଉତ୍କଳ ସମ୍ମିଳନୀ ଆଉ ଗୋଟିଏ ବଡ଼ ନୀତି ଗ୍ରହଣ କରିଥିଲା, ଆଜି ଯାହା ଭାରତରେ ମଧ୍ୟ ତୁଙ୍ଗ ନେତାମାନେ ଗ୍ରହଣ କରିଅଛନ୍ତି, ତାହା ହେଉଛି ଧର୍ମ ସହିତ ରାଷ୍ଟ୍ରନୀତିକୁ ଯୋଗ କରିବା ଅନୁଚିତ ସେଥିପାଇଁ ଧର୍ମ ସମ୍ପର୍କୀୟ ଆଲୋଚନା ସମ୍ମିଳନୀ ମଣ୍ଡପରୁ ବାଦ ଦେଇଥିଲେ ।

**ଓଡ଼ିଆ ଆନ୍ଦୋଳନ ଓ ମଧୁସୂଦନ:**—ଯେ ଯାହା ହେଉ, ଏହି ସମ୍ମିଳନୀ ସୃଷ୍ଟି କରି ମଧୁସୂଦନ ଦେଶର କି ଉପକାର କଲେ, ତାହା ଆଲୋଚିତ ହୋଇଅଛି । ଏହି ସମ୍ମିଳନୀ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ସେ ଉତ୍କଳରେ ଏକ ବଡ଼ ଜାତୀୟ ଆନ୍ଦୋଳନରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କରିବା ପାଇଁ ଯେଉଁ ଆନ୍ଦୋଳନ ସୃଷ୍ଟି ହୋଇଥିଲା, ସେହି ଆନ୍ଦୋଳନର ନାମ "ଓଡ଼ିଆ ଆନ୍ଦୋଳନ" । ଏହି "ଓଡ଼ିଆ ଆନ୍ଦୋଳନ" ସ୍ୱପ୍ନ ହୁଏ ତ ଓଡ଼ିଶାର ଅନେକ ଭଦ୍ରବ୍ୟକ୍ତିଙ୍କ ପ୍ରାଣରେ ଜାତ ହୋଇଥିଲା, ମାତ୍ର ଏହି ଜାତୀୟ ସ୍ୱପ୍ନକୁ ରୂପରେଖ ଦେଲେ ମଧୁସୂଦନ । ମଧୁସୂଦନ ଏହି ଆନ୍ଦୋଳନର ସୂତ୍ରଧର ଥିଲେ । ଉତ୍କଳ ସମ୍ମିଳନୀର ପ୍ରତି ଅଧିବେଶନରେ ଉତ୍କଳବାସୀ ସେହି ଜାତୀୟ ଶୁଭ ପ୍ରେରଣା ଓ ବୃହତ୍ତର ଉଦ୍‌ବୋଧନରେ ଉଦ୍‌ବୋଧିତ ହୋଇଥିଲେ । ପ୍ରାକୃତିକ ଉତ୍କଳ ଓ ରାଷ୍ଟ୍ରନୈତିକ ଓଡ଼ିଶା ସମାନ ନୁହେଁ । ସେତେବେଳେ "ତିନଥେଣ୍ଟିଆ କାବୁଡ଼ି ବାଡ଼ି" ଭଳି ଓଡ଼ିଆଭାଷୀ ଅଞ୍ଚଳ ବିଚ୍ଛିନ୍ନ ଅବସ୍ଥାରେ ରହିଥିଲା । ଉତ୍କଳର ଦେଶୀୟ ରାଜ୍ୟଗୁଡ଼ିକ ଓଡ଼ିଶାଠାରୁ ସ୍ୱତନ୍ତ୍ର ଥିଲା । ଓଡ଼ିଶା ମଧ୍ୟ ଗୋଟିଏ ଡିଭିଜନ ହୋଇ ପ୍ରଥମେ ବଙ୍ଗ, ତାହା ପରେ 'ବିହାର ଓଡ଼ିଶା' ଅନ୍ତର୍ଭୁକ୍ତ ହୋଇଥିଲା । ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ, ବିହାର ସର୍ବତ୍ର ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡ ବିଖଣ୍ଡ ହୋଇ ରହିଥିଲା ।

ବ୍ରିଟିଶ ଜାତି ଉତ୍କଳକୁ ମରହଟ୍ଟାମାନଙ୍କଠାରୁ ଏପରି ଅନ୍ୟଭାବରେ ଓଡ଼ିଆଭାଷୀ ଅଞ୍ଚଳକୁ ଛିନ୍ନ ବିଚ୍ଛିନ୍ନ କରିଥିଲେ, ଏ ସମ୍ପର୍କରେ "ଓଡ଼ିଆ ଆନ୍ଦୋଳନ" (The oriya movement) ନାମକ ଏକ ଇଂରାଜୀ ପୁସ୍ତକ ପ୍ରକାଶ ପାଇଅଛି । ଓଡ଼ିଆ ଆନ୍ଦୋଳନର ଧାରାବାହିକ ଇତିହାସ ଜାଣିବା ପାଇଁ ପୁସ୍ତକଟି ଉପାଦେୟ । ଏହି ପୁସ୍ତକର ମୁଦ୍ରଣବ୍ୟୟ ମଧୁସୂଦନ ବହନ କରିଥିଲେ । ଉକ୍ତ ପୁସ୍ତକରେ ଓଡ଼ିଆ ଆନ୍ଦୋଳନର ଇତିହାସ କେତେକ ପରିମାଣରେ ସଂକଳିତ ହୋଇଅଛି ।

ମଧୁସୂଦନଙ୍କର ଉତ୍କଳ ଜାତୀୟ ଜୀବନରେ ନେତୃତ୍ୱ ଗ୍ରହଣ କଲା ବେଳକୁ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ କିପରି ବିଭିନ୍ନ ପ୍ରଦେଶରେ ମିଶି ରହିଥିଲା, ତାହା ନିମ୍ନରେ ଦିଆଯାଉଅଛି । ଯେଉଁ ଅଞ୍ଚଳଗୁଡ଼ିକ ଓଡ଼ିଶା ସୀମାର ବାହାରେ ରହିଥିଲା—

୧ । **ମାନ୍ଦ୍ରାଜ**—(କ) ଚିକାକୋଲ ଓ ନରସିଂପେଠା ତାଲୁକ ଛଡ଼ା ଗଞ୍ଜାମର ମାଳ ଓ ସମ ତଳଭୂମି, (ଖ) ଗୁଡ଼େମ୍ ତାଲୁକ ଛଡ଼ା ଜୟପୁର ଜମିଦାରୀ ଲଗାଇ ଭିଜାଗାପଟ୍ଟମ୍ ଏଜେନ୍‌ସି ।

୨ । **ମଧ୍ୟ ପ୍ରଦେଶ**—(କ) ଖଡ଼ିଆଲ, (ଖ) ପଦ୍ମପୁର ଓ ଚନ୍ଦ୍ରପୁର, (ଗ) ଫୁଲଝର, (ଘ) ମାଲ ଖୁରଦା ଜମିଦାରୀ, (ଙ) ରାଯ୍ପୁର ଜିଲ୍ଲାର ବିନ୍ଦ୍ରାନୁଆଗଡ଼, (ଚ) ନାଗପୁର ଜିଲ୍ଲାରୁ ନଅଟି ଯୋଗିନୀ ଗ୍ରାମ ଓ (ଛ) ସମ୍ବଲପୁର ।

୩ । **ବିହାର ଓଡ଼ିଶା**—(୧) ଓଡ଼ିଶା ଡିଭିଜନ, (୨) ସିଂହଭୂମି ଜିଲ୍ଲା, (୩) ଦକ୍ଷିଣ ମାନଭୂମିର ବାରଭୂମ, ମାନ ବଜାର ଏବଂ ଗୁନ୍ଦିଲ ରେଭିନ୍ୟୁ ଥାନାମାନ ।

୪ । **ବଙ୍ଗଳା**—(କ) (୧) ଦାନ୍ତନ, (୨) କେଶିଆଡ଼ି, (୩) ଖଡ଼୍ଗପୁର, (୪) ମୋହନପୁର, (୫) ନାରାୟଣଗଡ଼ ଥାନା ମାନ । (ଖ) ଝାଡ଼ଗ୍ରାମ ଓ କଣ୍ଟାଇ (କାନ୍ଥୀ) ସବ୍‌ଡିଭିଜନ ଦ୍ୱୟ । (ଗ) ଦକ୍ଷିଣ ବାଙ୍କୁଡ଼ାର ଶିମିଳିପାଳ, ଶାଡଡ଼ା ଓ ରାୟପୁର ରେଭିନ୍ୟୁ ଥାନାମାନ ।

୫ । **ଉତ୍କଳର ବିଚ୍ଛିନ୍ନ ଦେଶୀୟ ରାଜ୍ୟ ସକଳ**:—(୧) ଆଠଗଡ଼, (୨) ତିଗିରିଆ, (୩) ବଡ଼ମ୍ବା, (୪) ନରସିଂହପୁର, (୫) ହିନ୍ଦୋଳ, (୬) ଆଠମଲ୍ଲିକ, (୭) ରେଢାଖୋଲ, (୮) ବୌଦ, (୯) ସୋନପୁର, (୧୦) ପାଟଣା, (୧୧) କଳାହାଣ୍ଡୀ, (୧୨) ଖଣ୍ଡପଡ଼ା, (୧୩) ଦଶପଲ୍ଲା, (୧୪) ରଣପୁର, (୧୫) ନୟାଗଡ଼, (୧୬) ବାମଣ୍ଡା, (୧୭) ଗାଙ୍ଗପୁର, (୧୮) ବଣାଇ, (୧୯) ଢେଙ୍କାନାଳ, (୨୦) କେନ୍ଦୁଝର, (୨୧) ମୟୂରଭଞ୍ଜ, (୨୨) ନୀଳଗିରି, (୨୩) ତାଳଚେର, (୨୪) ପାଲଲହଡ଼ା, (୨୫) ଖରସୁଆଁ, (୨୬) ସରେଇକଳା, (୨୭) ବସ୍ତର, (୨୮) ସାରଙ୍ଗଗଡ଼, (୨୯) ରାୟଗଡ଼, (୩୦) ଉଦୟପୁର ଓ (୩୧) ଯାସପୁର । ଏହିସବୁ ଅଞ୍ଚଳକୁ ଓଡ଼ିଶା ଡିଭିଜନ ସହିତ ମିଶାଇ ଏକ ଶାସନାଧୀନ କରିବା ଲାଗି ଉତ୍କଳରେ ଯେଉଁ ପ୍ରବଳ ଆନ୍ଦୋଳନ ହୋଇଥିଲା, ତାହା ସହିତ ମଧୁସୂଦନ ଗଭୀର ଭାବରେ ସଂପୃକ୍ତ ଥିଲେ ।

ଓଡ଼ିଆ ଆନ୍ଦୋଳନ ଉତ୍କଳର ଏକ ଜୀବନ ମରଣ ସମସ୍ୟା ଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ଏହି ଆନ୍ଦୋଳନ କେତେକ ପରିମାଣରେ ଶିଥିଳ ହୋଇ ଯାଇଥିଲା । ୧୯୪୮ ମସିହାରେ ଓଡ଼ିଶାର ଦେଶୀୟ ରାଜ୍ୟମାନ ଓଡ଼ିଶା ପ୍ରଦେଶ ସହିତ ମିଶିଲା; ସରେଇକଳା ଓ ଖରସୁଆଁ ଦୁଇଟି ଗଡ଼ଜାତ ବିହାରକୁ ଚାଲିଗଲା । ମୟୂରଭଞ୍ଜ ରାଜ୍ୟ ମିଶିଲା ୧୯୪୯ ଜାନୁୟାରୀ ମାସରେ । ଉତ୍କଳର ଦେଶମିଶ୍ରଣ ଆନ୍ଦୋଳନ ଉତ୍କଳର ଦୀର୍ଘ ଜାତୀୟ ଆନ୍ଦୋଳନ । ଭାରତର ସ୍ୱାଧୀନତା ଆନ୍ଦୋଳନ ଭଳି ବହୁ ଶିକ୍ଷିତ ଓଡ଼ିଆ ଏହି ଆନ୍ଦୋଳନରେ ମନ, ପ୍ରାଣ ଢାଳି ଦେଇଥିଲେ ।




ନବବର୍ଷର ଉପହାର

ବିଚ୍ଛିନ୍ନ ଉତ୍କଳମାତାର ଅବସ୍ଥାକୁ ଚିତ୍ରରେ ମଧୁସୂଦନ ଭାରତୀୟ ଷ୍ଟେଟ୍ ସେକ୍ରେଟେରୀ ଓ ଉଚ୍ଚ ପଦସ୍ଥ ରାଜକର୍ମଚାରୀଙ୍କୁ ନବ-ବର୍ଷରେ ଉପହାର ଦେଇଥିଲେ ।

ଓଡ଼ିଆ ଆନ୍ଦୋଳନ (The oriya movement) ପୁସ୍ତକ ମୁଖବନ୍ଧରେ ଜାନ୍‌ରେଡ଼ମଣ୍ଡଙ୍କର ଗୋଟିଏ ଉକ୍ତି ଚିନ୍ତାତ୍ମକ ବିଷୟ ଲେଖକମାନେ ଉଦ୍ଧୃତ କରିଅଛନ୍ତି —

"ଯେପରି ସୁସ୍ଥ ବ୍ୟକ୍ତି ତାର ହାଡ଼ର ଖବର ରଖେ ନାହିଁ, ସେହିପରି ସୁସ୍ଥ ଜାତି ତା ଜାତୀୟତାର ଖବର ସେତେ ରଖେ ନାହିଁ । କିନ୍ତୁ ଗୋଟିଏ ଜାତୀୟତା ଥରେ ଭାଙ୍ଗି ଦେଲେ, ତାହା ପୁଣି ନ ଯୋଡ଼ିବା ଯାଏ ସେ ଅନ୍ୟ କଥା ଭାବେ ନାହିଁ । ଏକତ୍ରୀକରଣ ଓ ସ୍ୱାଧୀନତା ଆଣିବା ବ୍ୟତୀତ ସେ ଅନ୍ୟ ଜରୁରି ଦରକାରୀ ପ୍ରସଙ୍ଗ ପ୍ରତି ଆଦୌ ଦୃଷ୍ଟି ଦିଏ ନାହିଁ ।"

ତେଣୁ ଉତ୍କଳର ଜାତୀୟ ଜୀବନରେ ଏହି ଉକ୍ତିର ସତ୍ୟତାହିଁ ପ୍ରମାଣିତ ହୋଇଅଛି । ଅର୍ଥନୈତିକ ଅସୁବିଧା ଓ ରାଷ୍ଟ୍ରନୈତିକ ପରାଧୀନତା ମଧ୍ୟରେ ଉତ୍କଳ ଚାହୁଁଥିଲା, ଏକତ୍ରୀକରଣ ଓ ସ୍ୱତନ୍ତ୍ରତା । ପ୍ରଥମେ ଏହି ସ୍ୱତନ୍ତ୍ରତା ପାଇଁ ଓଡ଼ିଆ ନେତା ଓ କର୍ମୀମାନେ ବେଶୀ ଦୃଷ୍ଟି ଦେଇଥିଲେ । କାରଣ ଜାତିର ସ୍ୱତନ୍ତ୍ରତା ଥରେ ନଷ୍ଟ ହେଲେ ଏହାର ଶିକ୍ଷା, ସଂସ୍କୃତି ମଧ୍ୟ ଲୋପ ହେବା ସ୍ୱାଭାବିକ । ତାହାର ଫଳରୁ ଦକ୍ଷିଣ ପଶ୍ଚିମ ମେଦିନୀପୁର କିମ୍ବା ସିଂହଭୂମ ଜିଲ୍ଲାରେ ଓଡ଼ିଆ ସଂସ୍କୃତି କ୍ରମେ ଲୋପ ପାଇ ଯାଇଅଛି ।

ପ୍ରଥମେ ଏହି ଓଡ଼ିଆ ଆନ୍ଦୋଳନର ସଂକ୍ଷିପ୍ତ ବିବରଣୀ କ୍ରମାନ୍ୱୟରେ ଦିଆଯାଉଅଛି । ମଧୁସୂଦନ ଏ ସମ୍ପର୍କରେ କଅଣ କରିଥିଲେ, ତାହା ମଧ୍ୟ ଆଲୋଚନା କରାଯିବ ।

୧ । ୧୮୬୬ ମସିହାରେ ଭାରତୀୟ ସରକାରଙ୍କ ସେକ୍ରେଟାରୀ ଏଚ୍.ଚ. ବଜାଲ ବଙ୍ଗଳା ସରକାରଙ୍କ ପ୍ରଧାନ ସେକ୍ରେଟେରୀଙ୍କୁ ବଙ୍ଗରୁ ଓଡ଼ିଶାକୁ ବିଚ୍ଛିନ୍ନ କରିବାକୁ ଏକ ପତ୍ର ଲେଖିଥିଲେ; ମାତ୍ର କ୍ଷମତାଶାଳୀ ବାଙ୍ଗର ସାଧାରଣ ନେତା ଓ କର୍ମଚାରୀମାନେ ଏହି ପ୍ରସ୍ତାବର ବିରୋଧ କରିବାରୁ ଏହା କାର୍ଯ୍ୟରେ ପରିଣତ ହୋଇ ପାରି ନ ଥିଲା ।

୨ । ୧୮୭୬ ମସିହାରେ ରାଜା ବୈକୁଣ୍ଠନାଥ ଦେ ବାହାଦୁର ଓ ସ୍ୱର୍ଗୀୟ ବାବୁ ବିଚିତ୍ରାନନ୍ଦ ପଟ୍ଟନାୟକ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଭାରତୀୟ ସରକାରଙ୍କ ନିକଟରେ ନିବେଦନ କରିଥିଲେ ।

୩ । ୧୮୯୫ ମସିହାରେ ଓଡ଼ିଶାର ତତ୍‌କାଳୀନ କମିଶନର କୁକ୍ ସାହେବ ଆଇ. ସି. ଏସ୍. ଏହି ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରୀକରଣ ପାଇଁ ତାଙ୍କ ଶାସନ ବିବରଣୀରେ ଉଲ୍ଲେଖ କରିଥିଲେ । ତାହା ମଧ୍ୟ କଲିକତା ଗେଜେଟ୍‌ରେ ପ୍ରକାଶିତ ହୋଇଥିଲା ।

୪ । ମାନ୍ଦ୍ରାଜରେ ଏହି ଓଡ଼ିଆ ଆନ୍ଦୋଳନ ମଧ୍ୟ ତୀବ୍ର ଭାବରେ ଆରମ୍ଭ ହୋଇଥିଲା । ୧୮୭୩ ମସିହାରେ ଜନସାଧାରଣଙ୍କ ପ୍ରବଳ ଦାବୀ ଅନୁସାରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ପଢ଼ାଇବା ପାଇଁ ସ୍ୱତନ୍ତ୍ର ବନ୍ଦୋବସ୍ତ ହୋଇଥିଲା ।

୫ । ୧୮୯୦ ମସିହା ବେଳକୁ ମାନ୍ଦ୍ରାଜର ଓଡ଼ିଆଭାଷୀ ଅଞ୍ଚଳରେ ଓଡ଼ିଆ ସରକାରୀ ଭାଷାରୂପେ ବ୍ୟବହୃତ ହେବା ପାଇଁ ଅନୁମତି ମିଳିଥିଲା ।

୬ । ୧୯୦୨ ମସିହା ବେଳକୁ ଗଞ୍ଜାମରେ ଓଡ଼ିଆ ଜାଗରଣ ଖୁବ୍ ପ୍ରସାର ଲାଭ କରିଥିଲା ଏବଂ ତତ୍କାଳୀନ ଭାଇସରୟ ଲର୍ଡ କର୍ଜନଙ୍କ ପାଖକୁ ଗୋଟିଏ ଆବେଦନପତ୍ର ପଠା ଯାଇଥିଲା ।

୭। ୧୯୦୩ ମସିହାର ଇଷ୍ଟର ଛୁଟିରେ ଗଞ୍ଜାମ ଜାତୀୟ ସମିତି ବ୍ରହ୍ମପୁରରେ ବସିଥିଲା ଓ ଗଞ୍ଜାମ ଜାତୀୟ ସମିତିର ସଭାରେ ଉତ୍କଳର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ ।

୮ । ୧୯୦୩ ଡିସେମ୍ବରରେ କଟକରେ ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇ ଏହି ଆନ୍ଦୋଳନକୁ ଉତ୍କଳବ୍ୟାପୀ ଏକ ଜାତୀୟ ଆନ୍ଦୋଳନରେ ପରିଣତ କରି ଯାଇଥିଲା ।

୯ । ସମ୍ବଲପୁର ମଧ୍ୟ-ପ୍ରଦେଶରେ ଥିବାରୁ, ସେଠାରେ ମଧ୍ୟ ଓଡ଼ିଆ ଆନ୍ଦୋଳନ ଅତି ତୀବ୍ରଭାବରେ ଚାଲିଥିଲା । ସେଠାରେ ହିନ୍ଦୀ ସରକାରୀ ଭାଷାରୂପେ ପ୍ରଚଳିତ ଥିଲା । ୧୮୯୫ ମସିହାରେ ସାର ଜନ୍ ଉଡବର୍ଣ୍ଣ ସମ୍ବଲ-ପୁରରୁ ଓଡ଼ିଆ ଭାଷା ଉଠାଇ ଦେଇ ହିନ୍ଦୀ ଭାଷା ଚଳାଇବା ଲାଗି ଆଦେଶ ଦେଇଥିଲେ । ମଧୁସୂଦନ ଏହା ବିରୁଦ୍ଧରେ ଭାରତରେ ଶାସନସମ୍ପୃକ୍ତ ସେକ୍ରେଟେରୀ (Secretary of State for India)ଙ୍କୁ ପ୍ରତିବାଦ ଜଣାଇଥିଲେ । ଶେଷରେ ତାଙ୍କର ପ୍ରତିବାଦ ସଫଳ ହୋଇଥିଲା ।

୧୦ । ଓଡ଼ିଆ ଆନ୍ଦୋଳନ ଓ ଉତ୍କଳ ସମ୍ମିଳନୀର କାର୍ଯ୍ୟ ଯୋଗୁଁ ୧୯୦୪ ରେ ମଧ୍ୟ ସମ୍ବଲପୁର ମଧ୍ୟ-ପ୍ରଦେଶରୁ ଆସି ଓଡ଼ିଶା ଡିଭିଜନ ଅନ୍ତର୍ଭୁକ୍ତ ହୋଇଥିଲା ।

୧୧ । କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷାରୂପେ ସ୍ୱୀକୃତ ହୋଇ ପାରି ନ ଥିଲା । ବଙ୍ଗାଳୀମାନେ ଓଡ଼ିଆକୁ ବଙ୍ଗଳା ଭାଷାର ଗୋଟିଏ କଥିତ ଭାଷା ମାତ୍ର ବୋଲି ଦାବୀ କରୁଥିଲେ । ୧୯୦୨ ରେ ଏଫ୍. ଏ. ଏବଂ ବି. ଏ. ପରୀକ୍ଷାରେ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷାରୂପେ ବଙ୍ଗଳା

ଗଭର୍ଣ୍ଣରଙ୍କ ଦ୍ୱାରା ଗୃହୀତ ହୋଇଥିଲା । କିନ୍ତୁ କଲିକତା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଏହାକୁ ପ୍ରଥମେ କାର୍ଯ୍ୟରେ ପରିଣତ କଲେ ନାହିଁ ।

୧୨ । ଉତ୍କଳ ସମ୍ମିଳନୀ ସୂତ୍ରପାତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ନେତାମାନଙ୍କ ମଧ୍ୟରେ ଓଡ଼ିଶା ଗୋଟିଏ ପ୍ରଦେଶ ସହିତ ମିଶି ରହିବ, ଯଦି ରହିବ ତେବେ କେଉଁ ପ୍ରଦେଶ ସହିତ ମିଶି ରହିବ ବା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ, ଏ ବିଷୟରେ ନେତାମାନଙ୍କ ମଧ୍ୟରେ ବିଭିନ୍ନ ମତର ସୃଷ୍ଟି ହୋଇଥିଲା । ମଧୁସୂଦନ ମତ ପ୍ରକାଶ କରିଥିଲେ ଯେ ଏହା ବଙ୍ଗ ପ୍ରଦେଶ ସହିତ ରହିବା ଉଚିତ । କିନ୍ତୁ ✝ଗୋକୁଳାନନ୍ଦ ଚୌଧୁରୀଙ୍କ ମତ ଥିଲା ଯେ ଏହା ମଧ୍ୟ-ପ୍ରଦେଶ ଅଧୀନ ହୋଇ ରହିବା ଉଚିତ ; କିନ୍ତୁ ଓଡ଼ିଶାରେ ପ୍ରାୟ ସମସ୍ତେ ଏକମତ ହୋଇଥିଲେ ଯେ ଅଭିଳଷିତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ହେଉ ।

୧୩ । ୧୯୦୩ ମସିହା ଡିସେମ୍ବର ମାସରେ ଲର୍ଡ଼ କର୍ଜ୍ଜନ ବଙ୍ଗ ଦେଶକୁ ଦୁଇ ଭାଗରେ ବିଭାଗ କଲେ ଏବଂ ଗଡ଼ଜାତ ଓ ମୋଗଲବନ୍ଦୀ ବା ଉତ୍କଳର ପାର୍ବତ୍ୟ ଅଞ୍ଚଳ ସହ ଉପକୂଳ ଅଞ୍ଚଳକୁ ମିଶାଇ ଏକ ପ୍ରଦେଶ କରିବା ପାଇଁ ଏକ ସୁପାରିଶ କରିଥିଲେ । ଭାରତ ସରକାରଙ୍କ ଘରୋଇ ସମ୍ପାଦକ ଏଚ. ଏଚ. ରିଜଲି ମଧ୍ୟ ଏହି ଚିଠିର ନକଲମାନ ସମ୍ପୃକ୍ତ ପ୍ରାଦେଶିକ ସରକାରଙ୍କଠାକୁ ପଠାଇଥିଲେ ।

୧୪ । ଉତ୍କଳ ସମ୍ମିଳନୀରେ ମଧ୍ୟ ଏହି ପ୍ରସ୍ତାବ ସପକ୍ଷରେ ଲୋକମତ ପ୍ରକାଶ ପାଇଥିଲା । ମାତ୍ର ଉନବିଂଶ ଭାରତୀୟ କଂଗ୍ରେସରେ ଲର୍ଡ଼ କର୍ଜ୍ଜନଙ୍କ ବିରୁଦ୍ଧରେ ପ୍ରସ୍ତାବ ଗୃହୀତ ହୋଇଗଲା । ଏପରି କି ମାନ୍ଦ୍ରାଜରୁ ଗଞ୍ଜାମ ଓଡ଼ିଶାକୁ ନ ଆସୁ ବୋଲି କଂଗ୍ରେସରେ ପ୍ରସ୍ତାବ ଗୃହୀତ ହେଲା ।

୧୫ । ବଙ୍ଗର ଜାତୀୟ ବାଣିଜ୍ୟ ପ୍ରତିଷ୍ଠାନ (National Chamber of Commerce) କଲିକତା କେନ୍ଦ୍ରୀୟ ମହମ୍ମଦୀୟ ସଂଘ ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରାଯାଉ ବୋଲି ବଙ୍ଗ ସରକାରଙ୍କଠାରେ ଦାବୀ ଉପସ୍ଥାପନ କରିଥିଲେ ।

୧୬ । ବ୍ୟାପକ ଲୋକ ଆନ୍ଦୋଳନ ଫଳରେ ୧୯୦୪ ମସିହାରେ ବଙ୍ଗ ସରକାର ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ସପକ୍ଷରେ ମତ ବ୍ୟକ୍ତ କରିଥିଲେ । ମଧ୍ୟ-ପ୍ରଦେଶର ଚିଫ କମିଶନର ସମ୍ବଲପୁରର ଅନ୍ୟାନ୍ୟ ଗଡ଼ଜାତ ସୋନପୁର, ବାମଣ୍ଡା, ପାଟଣା, କଳାହାଣ୍ଡୀ, ରେଢ଼ାଖୋଲ ପ୍ରଭୃତି ଓଡ଼ିଶା ଦେଶୀୟ ରାଜ୍ୟ ଅନ୍ତର୍ଭୁକ୍ତ ହେବାକୁ ମତ ବ୍ୟକ୍ତ କରିଥିଲେ ।

୧୭ । ଦେଶମିଶ୍ରଣ ପାଇଁ ଗଞ୍ଜାମରେ ଓଡ଼ିଆ ଆନ୍ଦୋଳନ ଏହି ସମୟରେ ତୀବ୍ରଭାବରେ ଚାଲିଥିଲା । ସେତେବେଳେ ଓଡ଼ିଶାକୁ ଚିଫ୍ କମିଶନରି ଏକ ପ୍ରଦେଶ କରିବା କଳ୍ପନା ଜଳ୍ପନା ଚାଲିଥିଲା । ଯେତେବେଳେ ଏହିପରି ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କେତେକାଂଶରେ କାର୍ଯ୍ୟରେ ପରିଣତ ହେବାକୁ ବସିଥିଲା, ଗଞ୍ଜାମର ତେଲୁଗୁମାନେ ସେହି ଜିଲ୍ଲାର ଓଡ଼ିଆ ଜମିଦାରମାନଙ୍କୁ ଭୁଲାଇ ମିଶ୍ରଣ ବିରୁଦ୍ଧରେ କେତେକ ଆବେଦନପତ୍ର ଭାରତ ସରକାରଙ୍କୁ ପଠାଇଦେଲେ । ଗଞ୍ଜାମର ତତ୍କାଳୀନ "ପ୍ରଜାବନ୍ଧୁ" କାଗଜରେ ଏ ସମ୍ପର୍କୀୟ ବିବରଣୀମାନ ପ୍ରକାଶ ପାଇଅଛି । ମାନ୍ଦ୍ରାଜ ସରକାର ଭାଷା-ସୂତ୍ରରେ ପ୍ରଦେଶ ଗଠନ ନୀତିକୁ ଗ୍ରହଣ କଲେ ନାହିଁ, ବରଂ ଗଞ୍ଜାମ ଓଡ଼ିଶାକୁ ଆସିବାରେ ଘୋର ପ୍ରତିବନ୍ଧକ ସୃଷ୍ଟି କଲେ ।

୧୮ । ମାନ୍ଦ୍ରାଜ ସରକାର ଏହା ବିରୁଦ୍ଧରେ ମତ ପ୍ରକାଶ କରିଥିଲେ ସୁଦ୍ଧା ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତି କ୍ରମେ ଭାରତ ସରକାର ଓ ଭାରତର ଜାତୀୟ କଂଗ୍ରେସ ସ୍ୱୀକାର କରିଅଛନ୍ତି । ୧୯୧୧ ମସିହାରେ ଲର୍ଡ଼ ହାଡିଞ୍ଜ ଏହି ନୀତିଟି ଗ୍ରହଣ କରିଥିଲେ ।

୧୯୧୮ ମସିହାରେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ମଧ୍ୟ ତାହାଙ୍କ ରିପୋର୍ଟରେ ଏହି ନୀତି ସପକ୍ଷରେ ମତ ବ୍ୟକ୍ତ କରିଥିଲେ ।

୧୯ । ଓଡ଼ିଶାର ସ୍ୱାତନ୍ତ୍ର୍ୟଲାଭ ବିପକ୍ଷରେ ଆଉ ଗୋଟିଏ ଘଟଣା ଘଟିବାରୁ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣରେ ବିଳମ୍ବ ଘଟିଲା । ୧୯୦୫ରେ ମାନ୍ଦ୍ରାଜର ଗଭର୍ଣ୍ଣର ଆମ୍ପିଥିଲ୍ ଲର୍ଡ କର୍ଜନଙ୍କ ପରେ ଭାରତର ଅସ୍ଥାୟୀ ଭାଇସ୍‌ରୟ ହେଲେ । ସେ ମହାଶୟ ଓଡ଼ିଆ ଆନ୍ଦୋଳନର ବିପକ୍ଷ-ବାଦୀ ଥିଲେ; ତେଣୁ ସେ ବଡ଼ଲାଟ ଗାଦିରେ ବସି ଓଡ଼ିଆମାନଙ୍କ ଏହି ନ୍ୟାଯ୍ୟ ଦାବୀକୁ ଚପାଇ ଦେଲେ ।

୨୦ । କିନ୍ତୁ ଗଞ୍ଜାମରେ ଏହା ଏକ ଜାତୀୟ ଅଶାନ୍ତିରେ ପରିଣତ ହୋଇଥିଲା । ଲର୍ଡ଼ ଆମ୍ପିଥିଲ ମାନ୍ଦ୍ରାଜ ଫେରି ଆସି ଓଡ଼ିଆମାନଙ୍କୁ ଦବାଇବାକୁ ବହୁ ଚେଷ୍ଟା କଲେ । ଛତ୍ରପୁର କଲେକ୍ଟରଙ୍କ ପାଖରେ ଓଡ଼ିଆ-ମାନଙ୍କ ଆବେଦନପତ୍ରସବୁ ଅଳନ୍ଧା ଠେକେଇରୁ ଫୋପଡା ହେଲା । ତଥାପି ଗଞ୍ଜାମବାସୀ କେବେ ହତୋତ୍ସାହ ହୋଇ ନ ଥିଲେ । ସେମାନେ ପୂର୍ବପରି ପ୍ରବଳ ଉତ୍ସାହରେ ଉତ୍କଳ ସମ୍ମିଳନୀରେ ଯୋଗ ଦେଉଥିଲେ ।

୨୧ । ଏହି ସମୟରେ ୧୯୦୮ ମସିହାରେ ମଧୁସୂଦନ ଇଂଲଣ୍ଡରେ ଓଡ଼ିଆ ଆନ୍ଦୋଳନର ସୂତ୍ରପାତ କରିଥିଲେ । ସେ ଇଂଲଣ୍ଡ ଯାଇ ସେଠାରେ

"ଅଶାନ୍ତିମୟ ଭାରତ" (discontented India) ନାମକ ଏକ ପୁସ୍ତିକା ପ୍ରକାଶ କରିଥିଲେ ଏବଂ ପାର୍ଲିଆମେଣ୍ଟର ସଭ୍ୟମାନଙ୍କ ଆଗରେ ମଧ୍ୟ ଓଡ଼ିଆ ଆନ୍ଦୋଳନ ସମ୍ପର୍କରେ ବକ୍ତୃତା ଦେଇଥିଲେ । ଇଂଲଣ୍ଡର ସାଂବାଦିକମାନଙ୍କ ଦୃଷ୍ଟି ମଧ୍ୟ ଏହି ସମସ୍ୟା ପ୍ରତି ଆକୃଷ୍ଟ ହୋଇଥିଲା ।

୨୨ । ୧୯୦୭ ମସିହାରେ ଯେଉଁ ଶାସନର ଅକେନ୍ଦ୍ରୀକରଣ ସମ୍ପର୍କରେ ରୟାଲ କମିସନ ବସିଥିଲା (Royal Commission on de-Centralisation) ତାହା ସମ୍ମୁଖରେ ମଧ୍ୟ ଓଡ଼ିଆମାନଙ୍କ ଦାବୀ ଉପସ୍ଥାପନ କରାଯାଇଥିଲା ।

୨୩ । ମାତ୍ର ୧୯୧୧ ମସିହାରେ ଲର୍ଡ଼ ହାଡ଼ିଞ୍ଜ ବିହାର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୁପାରିଶ କରିଥିଲେ, କିନ୍ତୁ ଓଡ଼ିଆମାନଙ୍କ ଆବେଦନ ପ୍ରତି ଦୃଷ୍ଟି ଦେଇ ନ ଥିଲେ । ଲର୍ଡ଼ ହାଡ଼ିଞ୍ଜ ଓଡ଼ିଆ ଆନ୍ଦୋଳନର ଦାବୀ କିମ୍ବା ଓଡ଼ିଶା-ବାସୀଙ୍କ ଜନମତ ପ୍ରତି ଭ୍ରୂକ୍ଷେପ ନ କରି ତାଙ୍କ ମନ୍ତବ୍ୟ ବିଲାତକୁ ପଠାଇଲେ । ଏହାର ଫଳରେ ବିହାର ଓଡ଼ିଶା ପ୍ରଦେଶ ଗଠନ ୧୯୧୨ ମସିହାରେ ହୋଇଗଲା ।

୧୯୧୨ ମସିହାରେ ଲର୍ଡ଼ କର୍ଜନ ବିଲାତ ପାର୍ଲିଆମେଣ୍ଟରେ ହାଉସ ଅଫ୍ ଲର୍ଡସ୍‌ରେ ଓଡ଼ିଆମାନଙ୍କ ସପକ୍ଷରେ ମତ ବ୍ୟକ୍ତ କରିଥିଲେ । ହାଉସ୍ ଅଫ୍ କମନସ୍‌ରେ ମଧ୍ୟ ମିଷ୍ଟର ମାକ୍ କ୍ୟାଲମ୍ ସ୍କଟ ଓଡ଼ିଆ ଆନ୍ଦୋଳନ ସପକ୍ଷରେ ମତ ବ୍ୟକ୍ତ କରିଥିଲେ; ମାତ୍ର ଭାରତୀୟ ମନ୍ତ୍ରୀ ଦପ୍ତରର ଅଣ୍ଡର ସେକ୍ରେଟେରୀ ମିଷ୍ଟର ମଣ୍ଟେଗୁ ମଧ୍ୟ ଏମନ୍ତ ମିଳିଲେ ଗଞ୍ଜାମ ଓଡ଼ିଶା ଅନ୍ତର୍ଭୁକ୍ତ ହେବ ବୋଲି ମତ ପ୍ରକାଶ କରିଥିଲେ ଏହା ସତ୍ତ୍ୱେ ଲର୍ଡ଼ ହାଡ଼ିଞ୍ଜ ମତ ଦେଲେ ଯେ ଗଞ୍ଜାମ ଓଡ଼ିଶାରେ ମିଶିବା ଅବାଞ୍ଛନୀୟ ।

ଏହି ସମସ୍ତ ନିରୁତ୍ସାହ ଏବଂ ବିଫଳତା ସତ୍ତ୍ୱେ ଓଡ଼ିଆ ଆନ୍ଦୋଳନ ମୃତ ନ ହୋଇ ଜୀବିତ ରହିଥାଏ । ଗଞ୍ଜାମରେ ଆନ୍ଦୋଳନ କ୍ରମେ ତୀବ୍ରଭାବରେ ଗତି କଲା । ମେଦିନୀପୁର, ସିଂହଭୂମି କିମ୍ବା ମଧ୍ୟପ୍ରଦେଶର ଓଡ଼ିଆ ଭାଇମାନେ ଗଞ୍ଜାମ ଭାଇମାନଙ୍କ ଭଳି ଅଗ୍ରସର ହୋଇ ପାରି ନ ଥିଲେ । ୧୯୧୨ ମସିହାରେ ଗଞ୍ଜାମରେ ଉତ୍କଳ ସମ୍ମିଳନୀର ବୈଠକ ବସିଲା । ଗଞ୍ଜାମକୁ ଓଡ଼ିଆ ଆନ୍ଦୋଳନର କର୍ମକେନ୍ଦ୍ର କରାଗଲା । ଏହି ସମୟରେ ଗୁରୁ ଜଣ ପାର୍ଲିଆମେଣ୍ଟ ସଭ୍ୟ ବିଲାତରେ ଓଡ଼ିଆ ଆନ୍ଦୋଳନକୁ ସାହାଯ୍ୟ କରିବେ ବୋଲି ସ୍ୱୀକୃତି ଦେଇଥିଲେ, କିନ୍ତୁ ସରକାର ଦୃଢ଼ଭାବରେ ଓଡ଼ିଆ ଆନ୍ଦୋଳନକୁ ଦବାଇ ଦେବାକୁହିଁ ନୀତି ନିୟନ୍ତ୍ରଣ କରୁଥିଲେ ।

୨୪। ୧୯୧୭ ମସିହାରେ ମିଷ୍ଟର ଇ. ଏସ୍. ମଣ୍ଟେଗୁ ଭାରତୀୟ ମନ୍ତ୍ରୀ ହୋଇ ଭାରତ ଭ୍ରମଣରେ ଆସିଥିଲେ। ତାହାଙ୍କୁ ଓଡ଼ିଆ ଆନ୍ଦୋଳନ ସମ୍ପର୍କରେ ଓଡ଼ିଆମାନଙ୍କ ଦାବୀ ଜଣାଇବା ସକାଶେ ୧୯୧୬ ରେ ବାଲେଶ୍ୱରରେ ବସିଥିବା ଉତ୍କଳ ସମ୍ମିଳନୀରେ ଗୋଟିଏ କମିଟି ଗଠିତ ହୋଇଥିଲା।

ଏହି କମିଟିର ନାମ ଥିଲା "ଉତ୍କଳ ଇଉନିୟନ କମିଟି"। ଏହି କମିଟିରେ ମଧୁସୂଦନ, କନିକାର ତତ୍କାଳୀନ ରାଜା ସାର୍ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେଓ, ବ୍ରଜସୁନ୍ଦର ଦାସ, ସୁଦାମଚରଣ ନାୟକ ଓ ଶେରଗଡ଼ର ତତ୍କାଳୀନ ରାଜା ସଦସ୍ୟ ଥିଲେ।

୧୯୧୭ ଡିସେମ୍ବର ୧୧ ତାରିଖରେ ଏହି କମିଟି ମିଷ୍ଟର ମଣ୍ଟେଗୁ ଓ ଲର୍ଡ ଚେମସଫୋର୍ଡଙ୍କ ସହିତ କଲିକତା ମୁକାମରେ ସାକ୍ଷାତ କରିଥିଲେ। ମଧୁବାବୁ ଓ କନିକାର ରାଜା ମହୋଦୟ ଇଂଲଣ୍ଡରୁ ଆସିଥିବା ଦୁଇ ରାଜନୀତିଜ୍ଞଙ୍କ ସହିତ ସାକ୍ଷାତ କରିଥିଲେ ଏବଂ ଓଡ଼ିଆ ଆନ୍ଦୋଳନର ଦାବୀ ଜଣାଇ ଏକ ଆବେଦନପତ୍ର ଦାଖଲ କରିଥିଲେ। ଏହି ଆବେଦନପତ୍ରରେ ସ୍ପଷ୍ଟଭାବରେ ଓଡ଼ିଆ ଆନ୍ଦୋଳନର ଦାବୀ ଓ ନୀତି ଉଲ୍ଲେଖ କରାଯାଇଥିଲା। ବ୍ରିଟିଶ ଶାସନରେ କିପରି ଓଡ଼ିଶାକୁ ଛିନ୍ନ ବିଚ୍ଛିନ୍ନ କରି ରଖାଯାଇଅଛି, ତାହା ଦର୍ଶାଇ ଦିଆଯାଇଥିଲା। ଏହି ବିଚ୍ଛିନ୍ନତା ସରକାର ତଥା ଲୋକସାଧାରଣ କାହାରି ପକ୍ଷରେ ମଙ୍ଗଳକର ନୁହେ। ଏହିଦ୍ୱାରା ଉତ୍କଳୀୟ ଜାତୀୟତା ଓ ସଂସ୍କୃତିର ବିଶେଷ କ୍ଷତି ଘଟୁଅଛି ଏବଂ କ୍ରମେ ଭାଷାଗତ, ଶାସନଗତ ଅସୁବିଧାରେ ଲୋକେ ସେମାନଙ୍କ ଜାତୀୟତା ଓ ସଂସ୍କୃତି ଭୁଲି ଯାଉଅଛନ୍ତି। ଓଡ଼ିଆ-ମାନଙ୍କ ରାଷ୍ଟ୍ରୀୟ ଅଧିକାରରେ ମଧ୍ୟ ଏହା ବାଧା ଦେଉଅଛି; ତେଣୁ ଓଡ଼ିଆଭାଷୀ ଅଞ୍ଚଳକୁ ଏକଶାସନାଧୀନ କରିବା ପାଇଁ ଉତ୍କଳ ସମ୍ମିଳନୀ ତରଫରୁ ପ୍ରବଳ ଦାବୀ ଓ ଅକାଟ୍ୟ ଯୁକ୍ତି ଉପସ୍ଥାପିତ ହୋଇଥିଲା।

୧୯୧୭ ଡିସେମ୍ବର ମାସରେ କଲିକତାର ପ୍ରବାସୀ ଓଡ଼ିଆମାନେ ମଧ୍ୟ ଏହି ଦାବୀକୁ ସମର୍ଥନ କରି ବିରାଟ ସଭା କରିଥିଲେ। ମଧୁସୂଦନ ଏହି ସଭାରେ ଭାଷଣ ଦେଇଥିଲେ। ଏହି ସମୟରେ "ଦି ଓଡ଼ିଆ" (The oriya) ନାମକ ଏକ ଇଂରାଜି ସାପ୍ତାହିକ ପତ୍ରିକା ମଧ୍ୟ ମଧୁସୂଦନଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଇଥିଲା। ମଣ୍ଟେଗୁ ଚେମସଫୋର୍ଡଙ୍କ ରିପୋର୍ଟ ପ୍ରକାଶ ପାଇଲେ ମଧ୍ୟ ଓଡ଼ିଆଙ୍କ ଭାଗ୍ୟ ପରିବର୍ତ୍ତିତ ହେଲା ନାହିଁ। ମାତ୍ର ୧୯୨୪ ମସିହାରେ ଆସିଥିବା ଫିଲିପ୍‌ଡଫ କମିଟି ଓଡ଼ିଆମାନଙ୍କ ଦାବୀ ସପକ୍ଷରେ ମତ ପ୍ରକାଶ କରିଥିଲେ।

୨୫। ୧୯୨୨ ମସିହାରେ ଅସହଯୋଗ ଆନ୍ଦୋଳନରେ ଓଡ଼ିଶା ତଥା ଭାରତର ଦୃଷ୍ଟି ଅନ୍ୟ ଏକ ବୃହତ୍ତର ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଯାଇଥିଲା । ତଥାପି ମଧୁସୂଦନ ବୃଦ୍ଧ ହୋଇ ଯାଇଥିଲେ ସୁଦ୍ଧା ଓଡ଼ିଆ ଆନ୍ଦୋଳନକୁ ଜୀବନ୍ତ ରଖିଥିଲେ । ଓଡ଼ିଆ ଆନ୍ଦୋଳନର ନେତାମାନେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ପୁଣି ସୁଯୋଗ ଖୋଜୁଥିଲେ । ଏହି ସମୟରେ ଆସିଲା ସାଇମନ କମିଶନ; ସାର୍ ଜନ ସାଇମନ କମିଶନ ସହ ସମ୍ବନ୍ଧ ତ୍ୟାଗ ( ବୟକଟ ) କରିବାକୁ ଭାରତୀୟ କଂଗ୍ରେସ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ଉତ୍କଳ ସମ୍ମିଳନୀର ନେତାମାନେ ଦେଖିଲେ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ହାତରେ ତ ରାଷ୍ଟ୍ର; ତେଣୁ ଓଡ଼ିଆମାନଙ୍କ ଭାଗ୍ୟ ପରିବର୍ତ୍ତନର ସୂତ୍ର ସେମାନଙ୍କ ହାତରେ । ତେଣୁ ବୟକଟ କିମ୍ବା ଅସହଯୋଗରେ ଏହି ଲକ୍ଷ୍ୟ କଣ ହାସଲ କରି ହେବ ? ତେଣୁ ସେମାନେ ସହଯୋଗ ପନ୍ଥା ଧରି ତତ୍କାଳୀନ କନିକାର ରାଜା ସାହେବ, ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି ପ୍ରଥମେ ବିହାର ସରକାରଙ୍କ ଦ୍ୱାରା ମନୋନୀତ ହୋଇ ସର୍ ଜନ ସାଇମନ ସହିତ ଦେଖା କରିଥିଲେ । ପାଟଣାରେ ଓଡ଼ିଆମାନଙ୍କ ତରଫରୁ ସାଇମନ କମିଶନଙ୍କୁ ଏକ ଅଭ୍ୟର୍ଥନା ଦିଆ ଯାଇଥିଲା । ବ୍ରଜସୁନ୍ଦର ଦାସ, ଗୋପାଳଚନ୍ଦ୍ର ପ୍ରହରାଜ, ଭିକାରୀଚରଣ ପଟ୍ଟନାୟକ ପ୍ରମୁଖ ପ୍ରତିନିଧିରୂପେ ସାଇମନ କମିଶନର ସଭ୍ୟମାନଙ୍କୁ ଭେଟିଥିଲେ ଏବଂ ସ୍ମାରକପତ୍ର ଦେଇଥିଲେ । କନିକାର ରାଜା ସେତେବେଳେ ବିହାର ଓଡ଼ିଶା ଏକ୍‌ଜିକ୍ୟୁଟିଭ୍ କାଉନ୍ସିଲର ଥିଲେ । ସେ ମହୋଦୟ ଏଥିପାଇଁ ବିଶେଷ ଯତ୍ନ କରିଥିଲେ ଏବଂ ଏହାର ଫଳରେ ଅଟଲି ସବ୍‌କମିଟି ଗଠିତ ହୋଇ ଓଡ଼ିଆଭାଷୀ ଅଞ୍ଚଳ ଏକତ୍ରୀକରଣ ପାଇଁ ବହୁ ପରିମାଣରେ ପଥ ପରିଷ୍କାର ହୋଇ ଯାଇଥିଲା । ସାଇମନ କମିଶନ ଓଡ଼ିଶା ଏବଂ ସିନ୍ଧୁ ଦୁଇ ପ୍ରଦେଶ ଗଠନ ସପକ୍ଷରେ ମତ ଦେଲେ ଏବଂ ଏହି ମତାନୁସାରେ ୧୯୩୧ ମସିହାରେ ଓଡ଼ନେଲ କମିଟି ଓଡ଼ିଶାର ସୀମା ନିର୍ଣ୍ଣୟ କରିବାକୁ ବସିଥିଲା । ଏହି କମିଟି ଆଗରେ ସାକ୍ଷ୍ୟ ଦେବାଲାଗି ସମସ୍ତ ଭାର ଉତ୍କଳ ସମ୍ମିଳନୀ ଏବଂ ଓଡ଼ିଆ ଆନ୍ଦୋଳନର ମୁରୁବୀ ନେତାମାନେ ଗ୍ରହଣ କରିଥିଲେ । ମଧୁସୂଦନ ମଧ୍ୟ ଏହି କାର୍ଯ୍ୟରେ ଯଥାସମ୍ଭବ ସାହାଯ୍ୟ ଓ ସହଯୋଗ କରିଥିଲେ । ମାତ୍ର ଉତ୍କଳ ସମ୍ମିଳନୀର ତତ୍କାଳୀନ ସମ୍ପାଦକ ବ୍ରଜସୁନ୍ଦର ଦାସ ପ୍ରାୟ ମୁଖ୍ୟ ଭାଗ ଗ୍ରହଣ କରିଥିଲେ । ଏହା ବ୍ୟତୀତ ପାରଳା ଖେମଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, କନିକାର ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ, ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀଯୁକ୍ତ ମୁକୁନ୍ଦପ୍ରସାଦ ଦାସ ପ୍ରଭୃତି ମଧ୍ୟ ଏଥିରେ ପ୍ରଗାଢ଼ ଯତ୍ନ କରିଥିଲେ ।

ଇତି ମଧ୍ୟରେ ପଣ୍ଡିତ ଗୋପବନ୍ଧୁ ସିଂହଭୂମ ଜିଲ୍ଲାରେ ୧୯୧୮ ମସିହାରୁ ଓଡ଼ିଆ ଆନ୍ଦୋଳନର କର୍ମକେନ୍ଦ୍ର ସ୍ଥାପନ କରିଥିଲେ । ଅସହଯୋଗ ଆନ୍ଦୋଳନ ଆରମ୍ଭବେଳେ ପଣ୍ଡିତ ଗୋପବନ୍ଧୁଙ୍କ ସହକର୍ମିମାନେ ମଧ୍ୟ ସିଂହ-ଭୂମିରେ ଅସହଯୋଗ ଅଗ୍ନି ଜାଳିଥିଲେ । ମାତ୍ର ଓଡ଼ନେଲ କମିଟି ଆସିଲା ପରେ କେବଳ ଓଡ଼ିଶା ଗଞ୍ଜାମ, କୋରାପୁଟ ଏବଂ ମଧ୍ୟ ପ୍ରଦେଶରୁ କେତେ ଅଞ୍ଚଳ ପାଇବା ବ୍ୟତୀତ ଅନ୍ୟାନ୍ୟ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ ପାଇ ପାରି ନ ଥିଲା । ୧୯୩୬ ମସିହାରେ ଅସମ୍ପୂର୍ଣ୍ଣ ଓଡ଼ିଶା ପ୍ରଦେଶର ଘୋଷଣା ପ୍ରକାଶ ପାଇଥିଲା । ଯେ ଯାହାହେଉ, ମଧୁସୂଦନ ଏହି ଆନ୍ଦୋଳନର ଶ୍ରେଷ୍ଠ ନେତା । ୧୯୦୩ ମସିହାରୁ ସେ ଏହି ଆନ୍ଦୋଳନକୁ ଚଳାଇ ଆସିଥିଲେ । ଏହି ଆନ୍ଦୋଳନର ନୀତି ଓ କାର୍ଯ୍ୟକ୍ରମ ଅନ୍ୟାନ୍ୟ ଆନ୍ଦୋଳନଠାରୁ ପୃଥକ୍ । ତେଣୁ ଏହି ନୀତିକୁ ମଧ୍ୟ କେହି କେହି ଉଗ୍ର ରାଷ୍ଟ୍ରନୀତିଙ୍କ ସମାଲୋଚନା କରିବା ସ୍ୱାଭାବିକ । ମାତ୍ର ଭାରତରେ ସହଯୋଗ ଏବଂ ଅସହଯୋଗ ମଧ୍ୟରେ କେଉଁ ପନ୍ଥା ଜୟ-ଲାଭ କଲା, ଏହାର ସପକ୍ଷ ଓ ବିପକ୍ଷରେ ବହୁ ଆଲୋଚନା, ପ୍ରତ୍ୟାଲୋଚନା ସମ୍ଭବପର ।

ମଧୁସୂଦନ କିନ୍ତୁ ସମସ୍ତ କ୍ଷେତ୍ରରେ ଇଂଲଣ୍ଡଠାରୁ ଆରମ୍ଭ କରି ଦେଶର ସମସ୍ତ ଖବର କାଗଜ, ସଭାମଞ୍ଚ, ବ୍ୟବସ୍ଥାପକ ସଭା ସର୍ବତ୍ର ସେ ଏହି ଓଡ଼ିଆ ଆନ୍ଦୋଳନ ସପକ୍ଷରେ ତାଙ୍କ ଶକ୍ତି ଅନୁଯାୟୀ କାର୍ଯ୍ୟ କରି ଆସିଥିଲେ । ମଧୁସୂଦନ ନାନା କମିଟି ଆଗରେ ଆବେଦନପତ୍ର ଓ ସାକ୍ଷ୍ୟ ମଧ୍ୟ ଦେଇଥିଲେ ।

ମଧୁସୂଦନ ୧୯୧୩ ମସିହାରେ ଉତ୍କଳ ସମ୍ମିଳନୀରେ ଏହି ଆନ୍ଦୋଳନ ସମ୍ପର୍କରେ ଯେପରି ଓଜସ୍ୱିନୀ ଭାଷାରେ ବକ୍ତୃତା କରିଥିଲେ, ତାହା ଏଠାରେ ଉଦ୍ଧାର କରିବା ଅପ୍ରାସଙ୍ଗିକ ହେବ ନାହିଁ:— "ମୁଣ୍ଡ ଏକ ସ୍ଥାନରେ, ହାତ ଏକ ସ୍ଥାନରେ, ପାଦ ଏକ ସ୍ଥାନରେ ପଡ଼ି ରହିଅଛି । ଏହି ଅବସ୍ଥାକୁ କେହି ମନୁଷ୍ୟର ସୁସ୍ଥ ଅବସ୍ଥା ବୋଲି କହି ନ ପାରେ । ଉପେନ୍ଦ୍ରଭଞ୍ଜ ପରି ମସ୍ତକ ଗଞ୍ଜାମରେ ଉତ୍କଳ ମାତାଙ୍କ ଗଣ୍ଡିରୁ ବିଚ୍ଛିନ୍ନ ହୋଇ ପଡ଼ି ରହିଅଛି । ଯଦି ଏ ଦେଶର ମିଳନ ହୁଏ, ତେବେ ମନେ କର ଏ ଅନ୍ତଃକରଣ କଅଣ ହେବ । ନଈରେ ଯେପରି ଜୁଆର ହୋଇଥାଏ, ପୁଣି ଭଟ୍ଟା ହୋଇଗଲେ ପାଣି ସବୁ ସ୍ଥାନେ ସ୍ଥାନେ ରହିଯାଏ, ସେହିପରି ଓଡ଼ିଶାର ଦିନେ ଜୁଆର ଅବସ୍ଥା ଥିଲା । କିନ୍ତୁ ବର୍ତ୍ତମାନ ଭଟ୍ଟା ଅବସ୍ଥାରେ ସ୍ଥାନେ ସ୍ଥାନେ ମନ୍ଦାଏ ମନ୍ଦାଏ ପାଣି ରହିଲା ପରି ଦେଶଟା ଏଠାରେ ଖଣ୍ଡେ ସେଠାରେ ଖଣ୍ଡେ ହୋଇ ପଡ଼ି ରହିଅଛି । ଯେପରି ସେହି ସମସ୍ତ ଜଳାଶୟକୁ ପୁଣି ଏକତ୍ର କରିବାକୁ ହେଲେ ଜୁଆର ଆବଶ୍ୟକ, ସେହିପରି ଏହି ଦେଶକୁ ଏକତ୍ର କରିବାକୁ ହେଲେ ସବୁଦିନ ଜାତୀୟ ଭାବର ଜୁଆର ଉଠାଇବାକୁ ହେବ ।

ଗୋପବନ୍ଧୁ ବାବୁ ଯାହା କହିଥିଲେ କେବଳ ବିଶ୍ୱାସହିଁ ସବୁ ଜୟ କରିବ, ମୁଁ ମଧ୍ୟ ତାହା କହୁଅଛି—କେବଳ ବିଶ୍ୱାସ କର । ବିଶ୍ୱାସରେ ବଳୀୟାନ୍ ହୁଅ, ଜାତୀୟ ଉନ୍ନତିର ଜୁଆର ଦେଶର ଘରଅଗ୍ରେ ଉଠାଅ; ତୁମର ଅଭୀଷ୍ଟ ଫଳ ଆପେ ଆପେ ଆସିବ ।”

ଉତ୍କଳ ସମ୍ମିଳନୀର ସ୍ରଷ୍ଟା ଓ ଓଡ଼ିଆ ଆନ୍ଦୋଳନର ମୁଖ୍ୟ ନେତା ଭାବରେ ମଧୁସୂଦନ ଚିରଦିନ ଉତ୍କଳ ଇତିହାସରେ ଏକ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତି ଭାବରେ ଆସନ ପାଇ ରହିଥିବେ । ଇଟାଲିର ଗାରିବାଲ୍ଡି ମାଜିନୀଙ୍କ ଭଳି ମଧୁସୂଦନ ଉତ୍କଳ ଇତିହାସରେ ଚିରଦିନ ଏକ ଜାତୀୟ ବୀରଭାବରେ ପୂଜିତ ହେଉଥିବେ ।

# ନବମ ଅଧ୍ୟାୟ

## ସ୍ୱଦେଶ ଶିଳ୍ପୋନ୍ନତ

ଓଡ଼ିଆ ଜାତିର ଜୀବନମରଣ ସମସ୍ୟାର ଉତ୍ତର ଦେବା ଲାଗି ସେ ଜନ୍ମିଥିଲେ । ଆଧୁନିକ ଜଗତର ସବୁଠାରୁ ବଡ଼ ସମସ୍ୟା—ଅନ୍ନ ବସ୍ତ୍ରର ସମସ୍ୟା । ଏହି ସମସ୍ୟାର ସମାଧାନହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ଜାତିକୁ ବଞ୍ଚି ରହିବାକୁ ପ୍ରଥମେ ବଡ଼ ବୋଲି ଧରି ନେଇଥିଲେ । ଖାଇବାକୁ ଦାନା ପିନ୍ଧିବାକୁ କନା ଯୋଗାଇବା ଥିଲା ତାଙ୍କର ପ୍ରଥମ ଲକ୍ଷ୍ୟ । କାରଣ ସେ ଯେଉଁ ସମୟରେ ଓଡ଼ିଶାରେ ଜନ୍ମିଥିଲେ, ସେତେବେଳେ ଚତୁର୍ଦ୍ଦିଗରେ "ହା ଅନ୍ନ ହା ଅନ୍ନ" ଚିତ୍କାର ସେ ଶୁଣିବାକୁ ପାଇଥିଲେ । ଅନ୍ନ ନାହିଁ, ବସ୍ତ୍ର ନାହିଁ, ଏହିପରି ଯେଉଁ ଜାତି ସେହି ଜାତିକୁ ଉଠାଇବାକୁ ହେଲେ ସର୍ବପ୍ରଥମେ ତାର ବଞ୍ଚିରହିବା ପ୍ରଶ୍ନକୁ ସହଜ କରିବାକୁ ହେବ । ଏହି ସତ୍ୟ ପ୍ରଥମେ ସେ ଉଦ୍ଭାବନ କରିଥିଲେ । ଅନ୍ନବସ୍ତ୍ର ଚିନ୍ତାର ପ୍ରଶ୍ନ ପ୍ରଥମେ ମଧୁସୂଦନ ଓଡ଼ିଶାରେ ଉଠାଇଥିଲେ ଏବଂ ଏହାର ମୀମାଂସା କରିବାକୁ ଚେଷ୍ଟା କରି ସେ ବୁଝିଥିଲେ, ଏହି ଅଭିଶପ୍ତ ଜାତିକୁ ବଞ୍ଚାଇବାକୁ ହେବ । ଏହି ଦୃଷ୍ଟିରୁ ସେ ଥିଲେ ଓଡ଼ିଶାର ଭାଗ୍ୟବିଧାତା । କଙ୍କାଳ-ପ୍ରାଣରେ ପ୍ରଥମେ ଜୀବନ ଦେବାକୁ ହେବ । ସେ ପ୍ରଥମେ ଅନ୍ନ ଦେଇ, ଏହି ଦେଶର କଙ୍କାଳପୂଜା ଆରମ୍ଭ କରିଥିଲେ ।

ମଧୁସୂଦନଙ୍କ ମୃତ୍ୟୁ ପରେ ଜଣେ ସାହିତ୍ୟିକ ଉପରଲିଖିତ ଭାବରେ ଜନନେତା ମଧୁସୂଦନଙ୍କ ସ୍ମୃତିତର୍ପଣ କରିଥିଲେ । ଶିଳ୍ପପ୍ରେମିକ ମଧୁସୂଦନ ସ୍ୱଦେଶ ଶିଳ୍ପ ସଂଗଠନ ପାଇଁ ପ୍ରଥମରୁ ମନ ଦେଇଥିଲେ । ଏପରି କି ସେ ଦେଶମନ୍ତ୍ରଣ ବାଣୀରେ ଦେଶକୁ ଉଦ୍‌ବୋଧନ କରିବା ପୂର୍ବରୁ କଟକର ତାରକସି କାମ ଓ ଚର୍ମଶିଳ୍ପର ଉନ୍ନତି ପାଇଁ ଉଦ୍ୟମ କରିଥିଲେ । କାରଣ ସେ ଉତ୍ତମରୂପେ ଜାଣିଥିଲେ ଯେ ଜାତି କେବଳ ସ୍ପନ୍ଦନରେ ବଞ୍ଚେ ନାହିଁ । ଏଥିପାଇଁ ସେ ଜାତିର ଛିନ୍ନବିଚ୍ଛିନ୍ନ ଅଙ୍ଗର ଏକୀକରଣ କରିବା ପାଇ ଆନ୍ଦୋଳନ କରିବା ସଙ୍ଗେ ସଙ୍ଗେ ଦେଶର ଆର୍ଥନୀତିକ ସଂଗଠନ ପାଇଁ ଅଣ୍ଟା ଭିଡ଼ିଥିଲେ । ୧୯୦୪ ମସିହାରେ ମଧୁସୂଦନ ନିଜେ ଉତ୍କଳ ସମ୍ମିଳନରେ ଏହି ସମ୍ପର୍କରେ କହିଥିଲେ, "କଲିକତାରେ ଥିବା ଇଂରାଜ ଜୋତା ଦୋକାନରେ ଜଣେ ସାହେବ ପଚାରି ଦେଖିଲେ ଯେ ବିଦେଶୀୟ ଜିନିଷ ଶସ୍ତା, ସ୍ୱଦେଶୀୟ ଜିନିଷ ମହଙ୍ଗା; କିନ୍ତୁ ଇଂରେଜ ବିଦେଶୀୟ ଜୋତା କିଣିବେ ନାହିଁ । ମୁଁ ଦଶ ବର୍ଷ ପୂର୍ବେ

ମନେ କରିଥିଲି, ଇଂରାଜି ଜୋତା ମୋ ଭାଗ୍ୟରେ ନ ପଡ଼ୁ । କିନ୍ତୁ ଦଶ ବର୍ଷ ମଧ୍ୟରେ ମୁଁ ଦେଶୀ ଜୋତା ପିନ୍ଧିଅଛି । ଆମର ପ୍ରତିଜ୍ଞା କରିବା ଉଚିତ ଯେ ବିଦେଶୀୟ ଦ୍ରବ୍ୟ କିଣିବା ପୂର୍ବରୁ ଚିନ୍ତା କରିବା । ମୋର ପରାମର୍ଶ ଯେ ଗୋଟିଏ ଜିଦ୍ ଧର । ଦଶ, କୋଡ଼ିଏ ଜଣ ପ୍ରତ୍ୟେକ ଗ୍ରାମରୁ ଏକାଠି ହୁଅ; ପ୍ରତିଜ୍ଞା କର, ଏକ ନମ୍ବର ସୂତା, ଏକରକମ ଧଡ଼ିର ଲୁଗା ପଞ୍ଚାଳିଜଣଯାକ ଲୁଗା ସ୍ୱରୂପ ପିନ୍ଧିବା । ତନ୍ତୀ ବୁଣିବାକୁ ପ୍ରସ୍ତୁତ । ତାକୁ ଏଠାକୁ ପଠାଅ । ସେ ପାଞ୍ଚହାତ ବୁଣୁଥିଲେ ଏଠାରେ ବାର ପନ୍ଦର ହାତ ବୁଣି ଶିଖିଯିବ ।”

ମଧୁସୂଦନ କିପରି ସ୍ୱଦେଶୀ ଶିଳ୍ପର ଉନ୍ନତି ଏବଂ ସଂଗଠନ ପାଇଁ ବ୍ୟସ୍ତ ଥିଲେ, ତାହା ଏହି ବକ୍ତୃତାରୁ ସ୍ପଷ୍ଟ ଜଣାପଡ଼ୁଅଛି ।

ସେ ସ୍ୱଦେଶୀ ଶିଳ୍ପର ଉନ୍ନତି ପାଇଁ ତିନୋଟି ଦିଗରୁ ଚେଷ୍ଟା କରିଥିଲେ ।

୧ । ୧୮୯୭ ମସିହାରେ ଓଡ଼ିଶା ସୂକ୍ଷ୍ମକଳା କାରଖାନା (Orisa Art ware works) ସ୍ଥାପନ କରିଥିଲେ ।

୨ । ୧୯୦୫ ରେ ଉତ୍କଳ ଟ୍ୟାନେରୀ ଜୋତା କାରଖାନା ସ୍ଥାପନ କରିଥିଲେ ।

୩ । ଉତ୍କଳ ସମ୍ମିଳନୀ ସାହାଯ୍ୟରେ ସେ ଶିଳ୍ପ ପ୍ରସାର ପାଇଁ ଚେଷ୍ଟା କରିଥିଲେ ।

**ଓଡ଼ିଶା ସୂକ୍ଷ୍ମକଳା କାରଖାନା:**—ମଧୁସୂଦନ ୧୮୯୭ ମସିହାରେ ପ୍ରଥମ ଥର ପାଇଁ ବିଲାତ ଯାଇଥିଲେ । ସେଠାରେ ସେ ଇଂଲଣ୍ଡର ଆର୍ଥିକ ଉନ୍ନତି ଏବଂ ଶିଳ୍ପଜାଗରଣ ଦେଖି ନିଜେ ଉଦ୍‌ବୁଦ୍ଧ ହୋଇ ସ୍ୱଦେଶକୁ ଫେରି ସେ ସ୍ୱଦେଶୀ ଶିଳ୍ପର ଉନ୍ନତି ପାଇଁ ନିଜ ପ୍ରାଣରେ ଏକ ଗଭୀର ପ୍ରେରଣା ଲାଭ କରିଥିଲେ; ୧୮୯୭ ମସିହାରେ ସେ କଟକ ସହରର ପ୍ରସିଦ୍ଧ ତାରକସି କାମର ଉନ୍ନତି ଏବଂ ସଂଗଠନ ପାଇଁ ଓଡ଼ିଶା ସୂକ୍ଷ୍ମକଳା କାରଖାନା(Orissa Art wares)ନିଜର ମୂଳ ଧନରେ ପ୍ରଥମେ କଟକରେ ଆରମ୍ଭ କରିଥିଲେ । କଟକର ବଣିଆମାନଙ୍କୁ ବୈଜ୍ଞାନିକ ଶିକ୍ଷା ଓ କଳକବ୍‌ଜା ଯୋଗାଇ ସେ ଏହି ସୂକ୍ଷ୍ମକଳାର ଉନ୍ନତି ପାଇଁ ଯଥାସମ୍ଭବ ଚେଷ୍ଟା କରିଥିଲେ । ତାହାଙ୍କ ମିଷନ ରୋଡ଼ ଘର ହତାରେ ଏହି କାରଖାନା ସ୍ଥାପନ କରାଯାଇ ଥିଲା ଏବଂ ପ୍ରାୟ ଏକଶ ପଚିଶ ଜଣ ଶିଳ୍ପୀ ପ୍ରତ୍ୟହ ଏହି ଓଡ଼ିଶା ସୂକ୍ଷ୍ମକଳା କାରଖାନାରେ କାମ କରୁଥିଲେ । ମଧୁସୂଦନ କଟକର ଏତେ଼ଗୁଡ଼ିଏ ଶିଳ୍ପୀଙ୍କୁ କାମ ଯୋଗାଇ ଖୋରାକ ଦେଉଥିଲେ ଏବଂ ତାହା ସହିତ କଟକର ଏକ ପ୍ରାଚୀନ ଓ ପ୍ରସିଦ୍ଧ ଶିଳ୍ପକୁ ମୃତ୍ୟୁମୁଖରୁ ରକ୍ଷା କରି ପାରିଥିବାରୁ ଆଜି କଟକର ତାରକସି କାମ ପୃଥିବୀବିଖ୍ୟାତ ହୋଇ ପାରି

ଅଛି । ମଧୁସୂଦନ ବିଶ୍ୱାସ କରୁଥିଲେ ଯେ, ପୃଥିବୀର ପ୍ରତ୍ୟେକ ଜାତିର କୌଣସି ବିଶିଷ୍ଟ ଗୁଣ ବା ଦକ୍ଷତା ଥାଏ । ସେହି ଜାତି ସେହି ବିଶିଷ୍ଟ ଦକ୍ଷତା ଯୋଗୁଁ ପୃଥିବୀରେ ପ୍ରସିଦ୍ଧି ଲାଭ କରେ । ତେଣୁ ସେ ଅନୁଭବ କରୁଥିଲେ ଯେ, ଓଡ଼ିଆ ଜାତି କଳାଣୀ ଜାତି; ପୁରୀ, ଭୁବନେଶ୍ୱର, କୋଣାର୍କର ସୂକ୍ଷ୍ମ କାରୁକଳା ଓ କଟକରେ ବଣିଆମାନଙ୍କ ଧାତୁକାମ ତାହାଙ୍କୁ ଏହି ଆଦର୍ଶରେ ଅନୁପ୍ରାଣିତ କରିଥିଲା । ୧୯୨୩ ମସିହାରେ ଉତ୍କଳ ସମ୍ମିଳନୀର ସଭାପତି ଭାବରେ ସେ ନିଜେ କହିଥିଲେ—"ସମସ୍ତ ମନୁଷ୍ୟଙ୍କର ହାତ, ଆଖି, କାନ, ନାକ ଓ ଜିଭ ଅଛି । ଶିକ୍ଷାଦ୍ୱାରା ବୁଦ୍ଧିର ଯେଉଁ ପ୍ରକାର ଉନ୍ନତି ହୋଇପାରେ, ପରିଚାଳନା ଦ୍ୱାରା ହସ୍ତାଦିମାନଙ୍କର ମଧ୍ୟ ସେହି ପ୍ରକାର ଉନ୍ନତି ହୋଇପାରେ । ସାଧାରଣ ଚକ୍ଷୁ ଅପେକ୍ଷା ସୁଶିକ୍ଷିତ ଚକ୍ଷୁର ମୂଲ୍ୟ ଅଧିକ ହୁଏ । ଯେଉଁ ହାତ କୋଡ଼ି ଧରି ମାଟି ହାଣି ସାରାଦିନ ପରିଶ୍ରମ କରି ଦୁଇଅଣା ପଇସା ରୋଜଗାର କରୁଅଛି, ସେ ହାତ ଶିଳ୍ପୀର ହାତ ହେଲେ ଦିନରେ ଦୁଇ ଟଙ୍କା ରୋଜଗାର କରିପାରେ । ହସ୍ତାଦିମାନଙ୍କର ଶିକ୍ଷାଦ୍ୱାରା ଯେ ଜାତିର ଆର୍ଥିକ ଅବସ୍ଥା ଭଲ ହୋଇପାରେ, ତାହାର ଦୃଷ୍ଟାନ୍ତ ପୃଥିବୀରେ ଅନେକ ଦେଖାଯାଏ । ଜର୍ମାନ ଜାତିର କାନ ସୁଶିକ୍ଷିତ । ଏମାନେ ସଙ୍ଗୀତ ବିଦ୍ୟାରେ ନିପୁଣ । ଏହାର ଫଳ ଏହି ଯେ ପୃଥିବୀର ସମସ୍ତ ଦେଶରେ ଜର୍ମାନନିର୍ମିତ ବାଦ୍ୟଯନ୍ତ୍ରର ବିକ୍ରି ହେଉଅଛି ଏବଂ ତଦ୍ୱାରା ସେ ଜାତି କୋଟି କୋଟି ଧନ ଉପାର୍ଜନ କରୁ ଅଛନ୍ତି । ଫ୍ରେଞ୍ଚ ଜାତି, ଚକ୍ଷୁ ନାସିକା ଓ ଜିହ୍ୱାକୁ ସୁଶିକ୍ଷିତ କରିଅଛନ୍ତି । ଫ୍ରେଞ୍ଚ ଜାତୀୟ ଲୋକଙ୍କର ସୁଶିକ୍ଷିତ ଚକ୍ଷୁ ଥିବାରୁ ସେମାନେ କେଉଁ କେଉଁ ପଦାର୍ଥ ସୁନ୍ଦର, କେଉଁ ରଙ୍ଗ ସୁଦୃଶ୍ୟ, ଏ ବିଷୟ ଭଲ ବିବେଚନା ଓ ପ୍ରଚାର କରି ପାରନ୍ତି । ଏହି ହେତୁରୁ ଫ୍ରାନ୍ସ ଦେଶରୁ ସବୁ ଜାତିର ପରିଧେୟ ବସ୍ତ୍ର ଟୋପି ଏବଂ ଅନ୍ୟାନ୍ୟ ବିଳାସ ପଦାର୍ଥ ପ୍ରତ୍ୟେକ ଲୋକ ବହୁ ମୂଲ୍ୟରେ କ୍ରୟ କରୁଅଛନ୍ତି । ଆହୁରି ମଧ୍ୟ ଫ୍ରେଞ୍ଚ ଜାତି, ସେମାନଙ୍କର ଜିହ୍ୱା ଓ ନାସିକାକୁ ସୁଶିକ୍ଷିତ କରିଥିବାରୁ ଫ୍ରେଞ୍ଚ ଦେଶର ପାଚକମାନେ ବେଶି ବେତନରେ ନାନା ଦେଶରେ କାର୍ଯ୍ୟ ପାଉ ଅଛନ୍ତି । ଅଧିକ ଉଦାହରଣ ଦେବା ଅନାବଶ୍ୟକ । ଯାହା ଉଲ୍ଲେଖ କରାଗଲା, ତହିଁରୁ ଆପଣମାନେ ବୁଝି ପାରିବେ ଯେ, ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ସୁଶିକ୍ଷିତ ହେବାଦ୍ୱାରା ଜାତିର ଉନ୍ନତି ସମ୍ପାଦନ ଓ ଜାତୀୟ ଧନ ବୃଦ୍ଧି ହୋଇପାରେ । ମୁଁ ବୋଧକରେ ଉପସ୍ଥିତ ଉତ୍କଳବାସୀଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଭୁବନେଶ୍ୱର ରାଜାରାଣୀ ମନ୍ଦିରରେ ଥିବା ପ୍ରସ୍ତରଖୋଦିତ ମୂର୍ତ୍ତିମାନ ଦେଖିଥିବେ । ଓଡ଼ିଶାର ଯେଉଁ ହାତ ସେ ମୂର୍ତ୍ତି ନିର୍ମାଣ କରିଥିଲା, ସେ ହାତ ଆଜି ଥିଲେ ମର୍ମର ପଥରରେ ଯେଉଁ ମୂର୍ତ୍ତି ପ୍ରସ୍ତୁତ କରିଥାନ୍ତା, ତାହା ବହୁମୂଲ୍ୟ ହୋଇଥାନ୍ତା । କିନ୍ତୁ ଯେ ବ୍ୟକ୍ତି ସେହି ସବୁ ମୂର୍ତ୍ତି ପ୍ରସ୍ତୁତ କରିଥିଲା, ତାହାର ବଂଶଧରମାନେ ତିମାନ ପଥରର ଶିଳ ଚକି ତିଆରି କରି ଦିନରେ ସାମାନ୍ୟ

ଅର୍ଥ ଉପାର୍ଜ୍ଜନ କରୁ ଅଛନ୍ତି । କିଛିଦିନ ପୂର୍ବେ ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆଙ୍କର ଜଣେ କର୍ମଚାରୀ ମୋତେ କହିଥିଲେ ଯେ, ପଥରର ସେ ପ୍ରକାର ମୂର୍ତ୍ତି ଓଡ଼ିଶାରେ କରାଇ ପାରିଲେ, କଲିକତାରେ ଏବଂ ଅନ୍ୟାନ୍ୟ ସ୍ଥାନରେ ଗଭର୍ଣ୍ଣମେଣ୍ଟ ଯେଉଁ ବହୁମୂଲ୍ୟ ଅଟ୍ଟାଳିକାମାନ ନିର୍ମାଣ କରୁଅଛନ୍ତି, ସେହିସବୁ ମୂର୍ତ୍ତି ଅଟ୍ଟାଳିକାର ଶୋଭା ନିମନ୍ତେ ଭିତରେ ବ୍ୟବହାର କରାଯାଇ ପାରେ । କିନ୍ତୁ ତାହା ହେବା ବର୍ତ୍ତମାନ ଅସମ୍ଭବ । କି କାରଣରୁ ଅସମ୍ଭବ ? ଓଡ଼ିଶାରେ ପଥର ଅଛି, ଯେଉଁମାନେ ମୂର୍ତ୍ତି ତିଆରି କରୁଥିଲେ ସେମାନଙ୍କ ବଂଶର ଲୋକେ ଅଛନ୍ତି । ସେମାନଙ୍କର ହାତ ଅଛି । ମାତ୍ର ସେ ହାତ କାର୍ଯ୍ୟ କରିପାରୁ ନାହିଁ, ଯେଉ ହାତ ଅଛି ତାହା ପଥୁରିଆର ହାତ, ପଥୁରିଆ ଜାତିର ଅବନତ ଅବସ୍ଥାର ହାତ । ଉନ୍ନତ ଅବସ୍ଥାରେ ପଥୁରିଆ ଜାତିର ଯେଉଁ ହାତ ଥିଲା, ସେ ହାତ ବର୍ତ୍ତମାନ ନାହିଁ । ସେ ହାତ ପୁନର୍ବାର ଉନ୍ନତ କରିବାକୁ ହେଲେ, ଶିକ୍ଷା ଓ ଅଭ୍ୟାସ ଆବଶ୍ୟକ । ଉନ୍ନତ ଅବସ୍ଥାର ହାତ ଯେଉଁ କାର୍ଯ୍ୟ ସହଜରେ କରୁଥିଲା, ବର୍ତ୍ତମାନ ଅବନତ ହାତ କଷ୍ଟରେ ମଧ୍ୟ ସେ କାର୍ଯ୍ୟ କରି ପାରୁ ନାହିଁ । ଏହି ଉଦାହରଣରୁ ଆପଣମାନେ ବୁଝିବେ ଜାତିର ହାତର ମୂଲ୍ୟ କିପରି ବଢ଼ି ପାରେ ଓ କମି ପାରେ ।"

ତେଣୁ ମଧୁସୂଦନ ଓଡ଼ିଶାର ଶିଳ୍ପ ଓ କଳାର ସଂଗଠନ ଆଧୁନିକ ବୈଜ୍ଞାନିକ ରୀତିରେ କରିବାକୁ ଚାହୁଁଥିଲେ । ଓଡ଼ିଶା ସୂକ୍ଷ୍ମ କଳା କାର୍ଯ୍ୟାଳୟରେ ସୁନ୍ଦର ସୁନ୍ଦର ଅଳଙ୍କାର ବ୍ୟତୀତ ବିଭିନ୍ନ ପ୍ରକାର ନକ୍ସା ଅନୁସାରେ ଆଲ୍ୟୁମିନିୟମ, ସୁନା, ରୂପା, ଓ କାଠ ପ୍ରଭୃତିରେ ନାନା ପ୍ରକାର ସୁନ୍ଦର, ସୌଖିନ ଦ୍ରବ୍ୟ ପ୍ରସ୍ତୁତ କରାଯାଇ ଓଡ଼ିଶାର ଶିଳ୍ପ ଓ ଚାରୁକଳାର ଖ୍ୟାତି ବଢ଼ାଇ ପାରିଥିଲା । ସେହି ସମୟର କଟକ ଗେଜେଟିୟରରେ ଯେଉଁ ପ୍ରଶଂସା ଉକ୍ତ କାରଖାନା ସମ୍ପର୍କରେ ପ୍ରକାଶ ପାଇଥିଲା, ତାହା ତଳେ ଦିଆଗଲା

" ଓଡ଼ିଶା ସୂକ୍ଷ୍ମକଳା କାର୍ଯ୍ୟାଳୟରେ ଅତି ସୁନ୍ଦର ପଦାର୍ଥ ପ୍ରସ୍ତୁତ ହେଉଅଛି ଏବଂ ମିଷ୍ଟର ଏମ୍. ଏସ୍. ଦାସ, ସି. ଆଇ.ଇ ତାହାର ମାଲିକ ଅଟନ୍ତି । ତାହାଙ୍କ ଯତ୍ନରେ ଆଧୁନିକ ଧରଣର କଳ ଅଣାଯାଇ ଦେଶୀୟ ଶିଳ୍ପୀଙ୍କ ବଂଶାନୁଗତ ଶିକ୍ଷା ଓ କୌଶଳକୁ ସାହାଯ୍ୟ କରାଯାଇଅଛି । "

ଏହି କାରଖାନାରେ ସୁନା, ରୂପା, କାଠ, ଆଲ୍ୟୁମିନିୟମ, ଶିଙ୍ଗ ପ୍ରଭୃତି ନାନା ପ୍ରକାର କଳା କାରୁକାର୍ଯ୍ୟମାନ ହେଉଥିଲା ଏବଂ ଏଠାର ପଦାର୍ଥଗୁଡ଼ିକ ସୁଦୂର ବିଦେଶରେ ମଧ୍ୟ ଆଦୃତ ହେଉଥିଲା । ରାଜା, ମହାରାଜା, ଜମିଦାର ଓ ଉଚ୍ଚ ରାଜକର୍ମଚାରୀଗଣ ଏହି କାରଖାନା ପ୍ରସ୍ତୁତ ପଦାର୍ଥ ବ୍ୟବହାର କରୁଥିଲେ । ଏହାର କଳାକୁଶଳତା ଦେଖି ସମସ୍ତେ ମୁଗ୍ଧ ହେଉଥିଲେ ।

ତତ୍‌କାଳୀନ ବଙ୍ଗ ଗଭର୍ଣ୍ଣର ସାର୍‌ଜନ୍ ଉଡ୍‌ବର୍ଣ୍ଣ ନିଜେ ଏହି କଳାଭବନ ପରିଦର୍ଶନ କରି, ଏହାକୁ ସରକାରୀ ସାହାଯ୍ୟ ମିଳିବ ବୋଲି କାର୍ଯ୍ୟର ଜବାବ ଦେଇଥିଲେ ; ମାତ୍ର ଏହା କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ସେ କାର୍ଯ୍ୟରୁ ଅବସର ଗ୍ରହଣ କରି ଚାଲି ଯାଇଥିଲେ ।

ବଙ୍ଗର ଅନ୍ୟ ଜଣେ ଗଭର୍ଣ୍ଣରଙ୍କ ପତ୍ନୀ ଲେଡ଼ି ଇଲ୍‌ଯ୍ୟଟ ଏହି ସୂକ୍ଷ୍ମ-କଳା-କାର୍ଯ୍ୟାଳୟ ପରିଦର୍ଶନ କରି ମନ୍ତବ୍ୟ ଲେଖିଥିଲେ, " ଯଦିଚ ମୁଁ ଭାରତରେ ଏତେ ଦିନ ଥିଲି, ତଥାପି ଏପରି ନିପୁଣ କଳାକୁଶଳତାର ନିଦର୍ଶନ ଅନ୍ୟତ୍ର କେଉଁଠି ଦେଖି ନାହିଁ । କଳାକୁଶଳତାର ସୂକ୍ଷ୍ମତା ଅତି ସୁନ୍ଦର । " ଦେଶ ଓ ବିଦେଶର ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଉଚ୍ଚପଦସ୍ଥ ରାଜକର୍ମଚାରୀ ତଥା ଲୋକ ସାଧାରଣ ଏହି ଓଡ଼ିଶା ସୂକ୍ଷ୍ମ କଳା କାରଖାନାରେ ପ୍ରସ୍ତୁତ କଳାଦ୍ରବ୍ୟର ବିଶେଷ ପ୍ରଶଂସା କରିଥିଲେ । କିନ୍ତୁ କ୍ରମେ ମଧୁସୂଦନ ଚର୍ମଶିଳ୍ପ ପ୍ରତି ବିଶେଷ ଆକୃଷ୍ଟ ହୋଇ ପଡ଼ିବାରୁ ଏହି ସୁନା ରୂପା ତାରକସି କାମର କାରଖାନାଟିର ପତନ ହୋଇଥିଲା । ମାତ୍ର ମଧୁସୂଦନଙ୍କ ଓଡ଼ିଶା ସୂକ୍ଷ୍ମକଳାର ପରମ୍ପରା କଟକର ବଣିଆମାନଙ୍କୁ ଆଜିପର୍ଯ୍ୟନ୍ତ ବଞ୍ଚାଇ ରଖିଛନ୍ତି ଏବଂ ବର୍ତ୍ତମାନ ଏହି ଶିଳ୍ପ କଟକରେ ଜୀବିତ ଥିବା ମୂଳରେ ମଧୁସୂଦନଙ୍କ ଚେଷ୍ଟା ପ୍ରଥମ ଓ ପ୍ରଧାନ ବୋଲି ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛନ୍ତି ।

**ଉତ୍କଳ ଟ୍ୟାନେରୀ**—୧୯୦୫ ମସିହାରେ ମଧୁସୂଦନ ଓଡ଼ିଶାର ଅନ୍ୟ ଏକ ଶିଳ୍ପର ପ୍ରସାର ପାଇଁ ଉତ୍କଳ ଟ୍ୟାନେରୀ ସ୍ଥାପନ କରିଥିଲେ । ମଧୁସୂଦନ ଦେଖିଲେ ଯେ ଭଦ୍ର ସମାଜରେ ଯୋତା ଏକ ଅପରିହାର୍ଯ୍ୟ ପ୍ରୟୋଜନୀୟ ପଦାର୍ଥ । ମାତ୍ର ସ୍ୱଦେଶରେ ମୋଚିମାନଙ୍କ ଚମଡ଼ା କଷା ଓ ଯୋତା ତିଆରି ଅତି ନିମ୍ନ ସ୍ତରରେ ରହିଥିଲା ; ତେଣୁ ସେ ଏହି ସ୍ୱଦେଶୀ ଚର୍ମଶିଳ୍ପର ପୁନର୍ଗଠନ ପାଇଁ ତାଙ୍କ ଜୀବନର ବହୁ ସମୟ, ଅର୍ଥ ଓ ବୁଦ୍ଧି ଖର୍ଚ୍ଚ କରିଥିଲେ । ଏହି ଉତ୍କଳ ଟ୍ୟାନେରୀ ମଧୁସୂଦନଙ୍କ ଶିଳ୍ପପ୍ରତିଭାର ଶ୍ରେଷ୍ଠ ନିଦର୍ଶନ ଓ ଏହାହିଁ ତାଙ୍କ ଆର୍ଥନୀତିକ ବିପର୍ଯ୍ୟୟର ମୂଳ କାରଣ । ମଧୁସୂଦନ ଚିନ୍ତାଶୀଳ, ଭାବୁକ ଓ ଶିକ୍ଷାସଂଗଠନକାରୀ ଥିଲେ ମଧ୍ୟ, ବ୍ୟବସାୟ ଦିଗ ଦେଖିବା ପାଇଁ ତାଙ୍କର ଯଥେଷ୍ଟ ସମୟ ନ ଥିଲା ଏବଂ ସେହି କାରଣରୁ ଏହି ଶିଳ୍ପ ପ୍ରତିଷ୍ଠାନ ତାହାଙ୍କୁ ଆର୍ଥନୀତିକ ବିପର୍ଯ୍ୟୟ ଅବସ୍ଥାର ସମ୍ମୁଖୀନ କରିଥିଲା ।

ମଧୁସୂଦନ ସ୍ୱଦେଶୀ-ଶିଳ୍ପର ସଂଗଠନ ସ୍ୱପ୍ନ ଓଡ଼ିଶାରେ ପ୍ରଥମେ ଦେଖିଥିଲେ ଏବଂ ନିଜେ ମଧ୍ୟ ଏହି ସ୍ୱଦେଶୀ ଶିଳ୍ପର ସଂଗଠନ ପାଇଁ କାର୍ଯ୍ୟ କରିଥିଲେ । ଏପରି କି ଅଚ୍ଛୁଆଁ ମୋଚିମାନେ କିପରି ସେମାନଙ୍କ ଆର୍ଥନୀତିକ ସ୍ୱାଧୀନତା ଫେରି ପାଇବେ, ଏଥିପାଇଁ ସେ ଚର୍ମଶିଳ୍ପର ସଂଗଠନ ଆରମ୍ଭ କରିଥିଲେ ।

୧୯୦୬ ଓ ୧୯୦୭ ମସିହାରେ ଉତ୍କଳ ଟ୍ୟାନେରୀର କାର୍ଯ୍ୟ ଖୁବ୍ ପ୍ରସାର ଲାଭ କରିଥିଲା । ସେହି ବର୍ଷ କଲିକତା ପ୍ରଦର୍ଶନୀରେ ଟ୍ୟାନେରୀ ପ୍ରସ୍ତୁତ ଦ୍ରବ୍ୟ ସ୍ୱର୍ଣ୍ଣପଦକ ଲାଭ କରିଥିଲା । ୧୯୦୮ ମସିହାରେ ବଙ୍ଗଳାର ଶିଳ୍ପ ସମ୍ବନ୍ଧୀୟ ମନ୍ତବ୍ୟରେ ଉତ୍କଳ ଟ୍ୟାନେରୀ ସମ୍ପର୍କରେ ସୁମନ୍ତବ୍ୟ କଲିକତା ଗେଜେଟ୍‌ରେ ପ୍ରକାଶ ପାଇଥିଲା ।

୧୯୦୯ ମସିହାରେ ବଙ୍ଗର ତତ୍କାଳୀନ ଗଭର୍ଣ୍ଣମେଣ୍ଟର ସାର ଏଡ୍‌ୱାର୍ଡ଼ ବେକର୍ ଉତ୍କଳ ଟ୍ୟାନେରୀ ପରିଦର୍ଶନ କରିବାକୁ ଆସିଥିଲେ । କ୍ୟାପଟେନ୍ ଆଲ୍‌ଟେନ ସୈନ୍ୟମାନଙ୍କ ପାଇଁ ଏହି କାରଖାନାରୁ ଜୋତା ନେଇ ବଡ଼ ସନ୍ତୁଷ୍ଟ ହୋଇଥିଲେ ଏବଂ ପ୍ରଶଂସାପତ୍ର ଦେଇଥିଲେ ।

୧୯୧୦ ଜୁନ ୨ ତାରିଖରେ କଲିକତା "କାପିଟାଲ" ପତ୍ରିକାରେ ଉତ୍କଳ ଟ୍ୟାନେରୀ ପ୍ରସ୍ତୁତ ଚର୍ମଦ୍ରବ୍ୟର ଭୂୟସୀ ପ୍ରଶଂସା ପ୍ରକାଶ ପାଇଥିଲା ।

୧୯୧୧-୧୮ ମସିହା ପର୍ଯ୍ୟନ୍ତ ସରକାରୀ ଶାସନ ବିଭାଗୀୟ ବିବରଣୀରେ ଉତ୍କଳ ଟ୍ୟାନେରୀର ପ୍ରଶଂସା ପ୍ରକାଶ ପାଉଥିଲା । ସେହି ବିବରଣୀରେ ଲେଖା ଥିଲା, "ଉତ୍କଳ ଟ୍ୟାନେରୀର ବୁଟ ଜୋତା ଓ ଅନ୍ୟାନ୍ୟ ଚର୍ମଶିଳ୍ପ ଓ ଜୋତା ବଜାରରେ ତାର ସମ୍ମାନ ବଜାୟ ରଖି ପାରିଅଛି ।"

ଚମଡ଼ା କଟିବା ବ୍ୟବସାୟ କରିବାକୁ ଆମ ଦେଶରେ ଯେଉଁ ଶିଳ୍ପ-କୌଶଳ ଥିଲା, ମଧୁସୂଦନ ତାହାର ଉତ୍କର୍ଷର ଉନ୍ନତିସାଧନ କରିଥିଲେ । ସେତେବେଳେ ଭାରତରେ ଆଉ ଯେଉଁଠାରେ ଚମଡ଼ା କାରଖାନା ଖୋଲିଥିଲା, ସେଠାରେ ଇଉରୋପୀୟ ପଦ୍ଧତିରେ ଚମଡ଼ା କଟା ହେଉଥିଲା । କିନ୍ତୁ ମଧୁସୂଦନ ସେ ପନ୍ଥା ଗ୍ରହଣ କରି ନ ଥିଲେ । କଲିକତା ଟ୍ୟାନିଂ କମ୍ପାନୀମାନ କ୍ଷତିଗ୍ରସ୍ତ ହେଉଥିଲାବେଳେ ମଧୁସୂଦନଙ୍କ ପ୍ରତିଷ୍ଠିତ ଉତ୍କଳ ଟ୍ୟାନେରୀ ବରଂ ଉନ୍ନତି କରୁଥିଲା । ମଧୁସୂଦନ ଏହି ଚମଡ଼ା କଟା ଓ ଜୋତା ତିଆରି ସମ୍ପର୍କରେ ବିଶେଷଜ୍ଞ ନ ଥିଲେ ମଧ୍ୟ, ନିଜେ ବହୁ ଅନୁସନ୍ଧାନ ଏବଂ ଅନୁଶୀଳନ କରିଥିଲେ । ମଧୁସୂଦନ ଏହି କାରଖାନାର ଉନ୍ନତି ପାଇଁ ବିଶେଷ ଦୃଷ୍ଟି ଦେଇଥିଲେ । ୧୯୨୦ ମସିହା ଡିସେମ୍ବର ୧୨ ତାରିଖରେ ବିହାର ଓଡ଼ିଶା ଶିଳ୍ପବିଭାଗର ଡିରେକ୍ଟର "ଉତ୍କଳ ଟ୍ୟାନେରୀ" ସମ୍ବନ୍ଧରେ ଯେଉଁ ମତ ବ୍ୟକ୍ତ କରିଥିଲେ ତାହା ପ୍ରଣିଧାନଯୋଗ୍ୟ । "ଯେଉଁସବୁ ଅସୁବିଧା ଭିତରେ ଉତ୍କଳ ଟ୍ୟାନେରୀ କାମ କରୁଅଛି, ସେସବୁ ବିଚାର କଲେ ଟ୍ୟାନେରୀ ଯାହା କାମ କରିଛି, ତାହା ଅତି ଆଶାଜନକ । ଏହାର ମୂଳଧନର ଅଭାବ, ସବୁ ସମୟରେ ତତ୍ତ୍ୱ ନେବା ପାଇଁ ବିଶେଷଜ୍ଞଙ୍କର ଅଭାବ ଏବଂ ଦାୟିତ୍ୱପୂର୍ଣ୍ଣ ପରିଚାଳକ ଅଭାବ ।

ଏଠାରେ କଷା ହୋଇଥିବା ଚମଡ଼ା ବିଶେଷତଃ ଗୋଧି ଓ କୁମ୍ଭୀର ଛାଲ ଅତି ଉତ୍କୃଷ୍ଟ ଧରଣର ବୋଲି ଜଣା ପଡ଼ୁଅଛି ଏବଂ ବିଶେଷତଃ କୁମ୍ଭୀରଛାଲ ଅତି ସୁନ୍ଦର ଓ ଚିତ୍ତାକର୍ଷକ ଭାବରେ ପ୍ରସ୍ତୁତ ହୋଇଅଛି । ବୁଟ ଜୋତା ଅତି ଉତ୍ତମ ଭାବରେ ତିଆରି ହେଉଅଛି । ଛୋଟଛୋଟ ଚକଚକିଆ ଜିନିଷ ମଧ୍ୟ ତିଆରି ହେଉଅଛି । ଏଥିପାଇଁ ବିକ୍ରୟର ସ୍ଥାନ ସବୁଠି ପ୍ରାୟ ମିଳିବ । ମିଷ୍ଟର ଦାସ ମଧ୍ୟ ଭାରତୀୟ ସରକାରଙ୍କର ସୈନ୍ୟବିଭାଗ ପାଇଁ ବୁଟ ଜୋତା ଯୋଗାଉଥିଲେ । ଉପରେ ଯେଉଁସବୁ କାରଣ ଦିଆଗଲା, ସେଥିପାଇଁ ସେ ସବୁବେଳେ ସୈନ୍ୟବିଭାଗକୁ ଜୋତା ଯୋଗାଇ ପାରିଲେ ନାହିଁ । ମୁଁ ଅତି ବିଶ୍ୱସ୍ତସୂତ୍ରରୁ ଖବର ପାଇଛି ଯେ ସେହି ବୁଟ ଜୋତା ବଡ଼ ନିଖୁଣ ଥିଲା । ଏହାର ଦୋଷ କିଛି ନ ଥିଲା ।"

ମଧୁସୂଦନ ସବୁବେଳେ ଇଚ୍ଛା କରୁଥିଲେ ଉତ୍କଳ ଟ୍ୟାନେରୀରୁ ଯେଉଁ ଜୋତା ବା ଚମଡ଼ା ବାହାରିବ, ତାହା ଅତି ସୁନ୍ଦର ହେବ ଏବଂ ସେଥିରେ କୌଣସି ପ୍ରକାର ଦୋଷ ରହିବ ନାହିଁ । ସେ ବ୍ୟବସାୟୀ ହିସାବରେ ଜୋତା ବା ଚମଡ଼ା ତିଆରିକୁ ବିଚାର କରୁ ନଥିଲେ, ଓଡ଼ିଶାର ସମ୍ମାନ ଦୃଷ୍ଟିରୁ ଦେଖୁଥିଲେ । ସେ କହୁଥିଲେ "ଯଦି ଗୋଟିଏ ଖରାପ ଜୋତା ବା ଚମଡ଼ା ବିଦେଶରେ କାହାରି ହାତରେ ପଡ଼ିବ ସେ କହିବ ଓଡ଼ିଆମାନେ ଠକ । ମୁଁ ମୋ ଜାତି ପାଇଁ ଏପରି ବଦନାମ ଅର୍ଜନ କରିବାକୁ ଚାହେଁନା ।" ତେଣୁ ସେ ବେଳେ ବେଳେ କାରଖାନାକୁ ଆସି କୌଣସି ଖରାପ ଜୋତା ବା ଚମଡ଼ା ଦେଖିଲେ ସବୁ ଗୁଡ଼ିକ ପୋଡ଼ି ଦେଉଥିଲେ । ଅନ୍ୟ ଜଣେ ବ୍ୟବସାୟୀ ବ୍ୟବସାୟରେ ଲାଭ କରିବା ଦୃଷ୍ଟିରୁ ଦେଖନ୍ତା; ମାତ୍ର ସେ ବିଚାର କରୁଥିଲେ ଦେଶପ୍ରେମୀ, ଦେଶର ସମ୍ମାନରକ୍ଷକ ଦୃଷ୍ଟିରୁ । ଉତ୍କଳ ଟ୍ୟାନେରୀରେ କ୍ଷତି ହେବାର ଏହା ହେଲା ପ୍ରଧାନ କାରଣ । ଉତ୍କଳ ଟ୍ୟାନେରୀ ସମ୍ପର୍କରେ ସାର ଏଡ୍‌ବାର୍ଡ ଗେଟ, ତତ୍କାଳୀନ ଲାଟସାହେବ ମଧୁସୂଦନଙ୍କ ପାଖକୁ ଖଣ୍ଡିଏ ଚିଠିରେ ଲେଖିଥିଲେ । "ଓଡ଼ିଶାର ଶିଳ୍ପ—ଉନ୍ନତି କରିବା ପାଇଁ ଆପଣ ଯେପରି ଚେଷ୍ଟା କରୁଅଛନ୍ତି, ତହିଁରେ ମୁଁ ଖୁବ୍ ପ୍ରୀତ ହୋଇଅଛି । ବିଶେଷତଃ କଟକରେ ଆପଣ ଯେଉଁ ଟ୍ୟାନେରୀ କରିଅଛନ୍ତି—ଆପଣ ଜାଣନ୍ତି ମୁଁ ଅନେକ ଜିନିଷ ସେଠାରୁ ନିଜେ ମଗାଇଛି ଏବଂ ସେହିସବୁ ପଦାର୍ଥ ମୋତେ ଖୁବ୍ ସନ୍ତୁଷ୍ଟ କରିଅଛି ।"

ବିହାରର କୁଳବୃଦ୍ଧ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନ ଲେଖିଥିଲେ—"ଇଉରୋପ, ଆମେରିକା ଏବଂ ଜାପାନର ଲୋକେ କଷା ହେଉଥିବା ଚମଡ଼ା ବିଶେଷତଃ ଗୋଧି ଚମଡ଼ା ଦରକାର କରୁଛନ୍ତି । ଏହାର ଅର୍ଥ ଉତ୍କଳ ଟ୍ୟାନେରୀର ପ୍ରସ୍ତୁତ ଜିନିଷ ପାଇଁ ବିଦେଶରେ ମଧ୍ୟ କାଟତି ପାଇଁ ସ୍ଥାନ ଅଛି ।"

ଯେଉଁ ମାନ୍ୟଗଣ୍ୟ ବ୍ୟକ୍ତି, ଶିଳ୍ପୀ ବା ବ୍ୟବସାୟୀମାନେ ଏହି ଚମଡ଼ା କାରଖାନା ଦେଖିଥିଲେ କିମ୍ବା ଏଠାରେ ପ୍ରସ୍ତୁତ ଜିନିଷ ବ୍ୟବହାର କରିଥିଲେ, ସେମାନେ ସମସ୍ତେ ଉତ୍କଳ ଟ୍ୟାନେରୀର ପ୍ରଶଂସା କରୁଥିଲେ ।

କଲିକତା ରିସର୍ଚ୍ଚ ଡିପାର୍ଟମେଣ୍ଟର ପରିଚାଳକ ( Superintendent ) ମିଷ୍ଟର ବି. ଏମ୍. ଦାସ ଏହି ଉତ୍କଳ ଟ୍ୟାନେରୀ କାରଖାନା ଅନୁସନ୍ଧାନ କରି ଏକ ସୁବିସ୍ତୃତ ବିବରଣୀ ଦେଇଥିଲେ । ତାହା ମଧ୍ୟ ଏଠାରେ ସଂକ୍ଷେପରେ ଉଲ୍ଲେଖ କରାଗଲା ।

## ୧ । କାରଖାନାର ସ୍ଥାନ ନିରୂପଣ:—

(କ) କଟକ ଷ୍ଟେସନ ଓ ମହାନଦୀଘାଟରୁ ଅଳ୍ପ ଦୂରରେ କାରଖାନାଟି ଅବସ୍ଥିତ । ଏହା କଟକ ରେଲ ଷ୍ଟେସନରୁ ପାଞ୍ଚ ମିନିଟ୍‌ର ବାଟ । ଶିଳ୍ପ ପଦାର୍ଥର ଆଦାନ ପ୍ରଦାନ ପାଇଁ ଏହା ସୁବିଧାଜନକ ।

(ଖ) କାରଖାନାର ତିନି ଏକର ଜମି ଅଛି ଏବଂ କାରଖାନାକୁ ଲାଗି ଛବିଶ ଏକର ଜମି କାରଖାନା ନେଇଅଛି । ତହିଁରେ ବବୁରୀ, ସୁନାରୀ, ଡ଼ିବିଡ଼ିବି, କଣ୍ଟି ପ୍ରଭୃତି ଗଛ ଅଛି । ଏହିସବୁ ଗଛ ଚମଡ଼ା କଷା କାମରେ ବିଶେଷ ଲୋଡ଼ା ।

## ୨ । କାରଖାନା ପାଇଁ ଚମଡ଼ା ଆମଦାନୀ:—

(କ) ଉତ୍କଳର ଦେଶୀୟ ରାଜ୍ୟରେ ଯେଉଁ ପଶୁମାନେ ପ୍ରାକୃତିକ ମୃତ୍ୟୁରେ ମରନ୍ତି, ସେମାନଙ୍କ ଚମଡ଼ା ସୁବିଧାରେ ମହାନଦୀ ବାଟେ ଡଙ୍ଗାରେ ଟ୍ୟାନେରୀକୁ ଅଣା ଯାଏ ।

(ଖ) କଟକ ସହରର ଅନ୍ୟାନ୍ୟ ଚମଡ଼ା ମଧ୍ୟ ଏହି କମ୍ପାନୀ ଗ୍ରହଣ କରୁଅଛି ।

## (୩) କାରଖାନାର ବିଭିନ୍ନ ଚମଡ଼ା କାମ:—

(କ) ଚମଡ଼ା କଷିବା ( Tanning )

(୧) ପ୍ରତି ସପ୍ତାହରେ ୩୦୦ ଗୋରୁ ଚମଡ଼ା, ୨୦୦ ମଇଁଷି ଚମଡ଼ା କଷା ହୋଇ ପାରୁଅଛି ।

(୨) ପ୍ରତି ସପ୍ତାହରେ ୩୦୦ ବଡ଼ୁ ସାଇଡ଼୍‌ସ୍ କିମ୍ବା ୬୦୦ ମେଣ୍ଢାଚମ କଷା ହୋଇ ପାରୁଅଛି ।

(ଖ) ଚମଡ଼ା ଜିନିଷ ପ୍ରସ୍ତୁତୀକରଣ:-- ପ୍ରତି ସପ୍ତାହରେ ୫୦୦ ବୁଟ୍ ତିଆରି ହୋଇ ପାରୁଅଛି। ବ୍ୟାଗ, ସୁଟକେଶ୍, ଟଙ୍କା ମୁଣି, ଘୋଡ଼ାଜିନ ପ୍ରଭୃତି ମଧ୍ୟ ହେଉଅଛି।

୪। ବିଶେଷତ୍ୱ: (୧) ବୃକ୍ଷାଦି ରସରେ ଗୋରୁ ଚମଡ଼ା କଷା ହୋଇ (Vegetable tanned Cow hide), ରସେଟ୍ (Russat-leather)ରେ ସୈନ୍ୟମାନଙ୍କର ବୁଟ୍ ଜୋତା ହେଉଅଛି। ମଇଁଷି ଚମରେ ଜୋତାର ତଳ (Sole leather) ପ୍ରସ୍ତୁତ ହେଉଅଛି।

(୨) ମେଣ୍ଢା ଚମର କ୍ରୋମ ଟ୍ୟାନିଂ ପାଇଁ ଉତ୍କଳ ଟ୍ୟାନେରୀର ପ୍ରସିଦ୍ଧି ଅଛି।

(୩) ଗୋଧି, କୁମ୍ଭୀରଚମଡ଼ା କଷିବାରେ ଟ୍ୟାନେରୀରେ ଯଥେଷ୍ଟ ସୁବିଧା ଅଛି। ତାହା ବୃକ୍ଷାଦି ରସରେ ଓ କ୍ରୋମ ପ୍ରଣାଳୀରେ ହେଉଅଛି। ସେଗୁଡ଼ିକୁ ନାନା ପ୍ରକାର ସୁନ୍ଦର ରଙ୍ଗରେ ରଙ୍ଗ କରାଯାଇ ପାରୁଅଛି।

ସହଜରେ ଗୋଧିଚମ ମିଳେ ନାହିଁ। ତେଣୁ ମଧୁବାବୁ ପ୍ରଥମେ ଖଣ୍ଡେ ଖଣ୍ଡେ ଗୋଧିଚମଡ଼ାକୁ ଦୁଇଟଙ୍କା ଦାମ ଦେଉଥିଲେ। ପାଣ, କଣ୍ଡରା, ଶଅର ପ୍ରଭୃତି ଗୋଧି ମାରି ଲାଭବାନ୍ ହେଉଥିଲେ। ପ୍ରାୟ ଏହିପରି ଏକ ଲକ୍ଷ ଚମଡ଼ା ଟ୍ୟାନେରୀରେ କଷାଯାଇ ପାରିଥିଲା। ଏହି ଗୋଧିଚମଡ଼ା କାଟିବା ବିଷୟ ପରୀକ୍ଷା କରାଇବା ପାଇଁ ମଧୁସୂଦନ ବହୁ ଅର୍ଥ ବ୍ୟୟ କରିଥିଲେ। ଏହାର ପ୍ରସାର ଓ ପ୍ରଚୁର ପୃଥିବୀବ୍ୟାପୀ ହୋଇଥିଲା ଏବଂ ପୃଥିବୀର ସର୍ବତ୍ର ଉତ୍କଳ ଟ୍ୟାନେରୀର ପ୍ରଶଂସା ପ୍ରକାଶ ପାଇଥିଲା। ଜର୍ମାନୀ, ଅଷ୍ଟ୍ରିୟା ଓ ଭାରତର ବିଭିନ୍ନ ଅଞ୍ଚଳରୁ କର୍ମୀମାନେ ଆସି ଏହି କାରଖାନାରେ କାମ କରୁଥିଲେ। ମିଷ୍ଟର ବି. ଏମ୍. ଦାସ ମଧୁସୂଦନଙ୍କ କ୍ଷତି ଓ ଅନ୍ୟାନ୍ୟ ପରିଶ୍ରମ ବିଚାର କରି ମଧୁସୂଦନଙ୍କୁ ପଚାଶ ହଜାର ଟଙ୍କା ବ୍ୟବସାୟ ଖ୍ୟାତି (Good will of business) ବାବଦ ଦେବାପାଇଁ ସୁପାରିସ କରିଥିଲେ। ସେ ମଧୁସୂଦନଙ୍କ ବିଷୟରେ ଲେଖିଥିଲେ, "ସେ ତାଙ୍କ ଜୀବନର ସମସ୍ତ ସଞ୍ଚିତ ଧନ ଏଥିରେ ଖର୍ଚ୍ଚ କରିଅଛନ୍ତି। ଏହା ଏହି ଧରଣ ଶିଳ୍ପର ଏକ ଶିଳ୍ପ-ବିଦ୍ୟାଳୟରେ ପରିଣତ ହୋଇ ପାରିଅଛି। ଶିଳ୍ପ-ଶିକ୍ଷା ଦେବା ଦ୍ୱାରା ଏହା ସମାଜର ଏକ ଅତି ଶ୍ରେଷ୍ଠ-ସେବା କରୁଅଛି। ଏହାଦ୍ୱାରା ମଧୁସୂଦନଙ୍କର ଯଥେଷ୍ଟ ଖର୍ଚ୍ଚ ଓ କ୍ଷତି ହୋଇଅଛି। ମଧୁସୂଦନ ନିଜେ ନିଜେ ଶିଳ୍ପ-କମିଶନ (Industrial commission) ଆଗରେ କହିଥିଲେ ଯେ, ସେ ଏହି କାରଖାନାର ପରମାୟୁ ବା ଅବସ୍ଥିତିକାଳ ମଧ୍ୟରେ ଆଠ ଜଣ ମ୍ୟାନେଜର ବଦଳ କରିଅଛନ୍ତି ଓ ପ୍ରାୟ ତି ଲକ୍ଷ ଟଙ୍କା କ୍ଷତି କରିସାରି ଅଛନ୍ତି।"

ସେ ମହାଶୟ ମଧ୍ୟ କାରଖାନାର ସମସ୍ତର ଗୋଟିଏ ହିସାବ ଦେଇଥିଲେ।



ଉତ୍କଳ ଟାନେର

| | | |
|---|---|---|
| ୧ । | କୋଠା ପ୍ରଭୃତି | ଟ୪୭, ୬୫୯ ॥/ |
| ୨ । | ଆସବାବ ପତ୍ର | ଟ୨୯, ୧୭୭ ৶ |
| ୩ । | କଳକବଜା | ଟ୬୯, ୯୩୪ ୵ |
| ୪ । | ତିରିଶି ଏକର ଜମିର ଦାମ | ଟ୫୦, ୪୦୦ ୵ |
| ୫ । | ବ୍ୟବସାୟୃଖ୍ୟାତି | ଟ୫୦, ୦୦୮ ୵ |
| | | ଟ୨୪୭, ୨୬୯ ।/ |

ତେଣୁ ଏହିପରି ଗୋଟିଏ ବ୍ୟବସାୟ ରକ୍ଷା କରିବାକୁ ମଧୁସୂଦନ ୨ ମସିହାରେ ଗୋଟିଏ ସାଧାରଣ ଲିମିଟେଡ଼ କମ୍ପାନୀ କରି ତାହା ରେ ଟ୍ୟାନେରୀ ଚଳାଇବା ଭାର ଦେବାପାଇଁ ମନସ୍ଥ କରିଥିଲେ । ମଧୁସୂଦନ ସେତେବେଳକୁ ଏହି ଟ୍ୟାନେରୀ ଲାଗି ବିଶେଷଭାବରେ ସ୍ତ ହୋଇ ପଡ଼ିଥିଲେ । ମଧୁସୂଦନଙ୍କ ଉତ୍କଳ ଟ୍ୟାନେରୀ କମ୍ପାନୀର ଅଂଶ ମାନେ କିଣିବେ କି ନା ଏଥିପାଇଁ ପୁରୀ ଜଗନ୍ନାଥ ମନ୍ଦିର ମୁକ୍ତିମଣ୍ଡପସଭାର ଲେଡ଼ିବାକୁ ପଡ଼ିଥିଲା । ମୁକ୍ତିମଣ୍ଡପ ସଭା ସୌଭାଗ୍ୟକୁ ଅନୁମତି ଥିଲେ । ଏହି ଟ୍ୟାନେରୀ ପାଇଁ ମଧୁସୂଦନ ଯାହା କରଜ କରିଥିଲେ, ମଧ୍ୟରେ କେବଳ କକ୍ସ ଏଣ୍ଡ କୋ (Cox & Co Bankers in cutta) ଠାରୁ ଟ୧,୮୩୧୦୨।୵୬ କରଜ ଥିଲା । ୧୯୨୧ରେ ଗ୍ରହଣ କଲା ପରେ ମଧୁସୂଦନ ଉତ୍କଳ ଟ୍ୟାନେରୀ କମ୍ପାନୀ ସହିତ ଆଇନ ାୟୀ ବ୍ୟବସାୟ ସୂତ୍ରରେ ସଂପୃକ୍ତ ହୋଇ ରହି ପାରି ନ ଥିଲେ ।

୯୨୩ ରେ ଉତ୍କଳ ଟ୍ୟାନେରୀ ଜଏଣ୍ଟ ଷ୍ଟକ କମ୍ପାନୀ ଭାବରେ ରେଜେଷ୍ଟ୍ରୀ ଲା । ୮୦,୦୦୦ ଅଂଶରେ କମ୍ପାନୀ ବିଭକ୍ତ ହୋଇଥିଲା । ୧୯୨୭ ରେ ଭାଗ ବିକ୍ରୟଦ୍ୱାରା ଟ୧୧୩୯୪୯୯ ପାଇଥିଲେ । ତାହା କକ୍ସ ର କରଜ ବାବଦକୁ ଦିଆଯାଇଥିଲା । ତଥାପି କମ୍ପାନୀର ୫୯୧୪।୵ କରଜ ଥିଲା । କକ୍ସ ଏଣ୍ଡ କୋ କମ୍ପାନୀଟିକୁ ନିଲାମରେ ଇଲେ । ନିଲାମରେ ସୁବାରାଜା ଧରିଥିଲେ । ଯେଉଁଦିନ ଉତ୍କଳ ଟ୍ୟାନେରୀ ହୋଇଗଲା, ସେହିଦିନ ମଧୁସୂଦନ ଆଠଘଣ୍ଟା ପାଇଁ ବେହୋସ ହୋଇ ଥିଲେ ଏବଂ କହିଥିଲେ, "ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ" (Thy will done) । ଉତ୍କଳ ଟ୍ୟାନେରୀକୁ କେବଳ ବ୍ୟବସାୟ ଦୃଷ୍ଟିରୁ ମଧୁସୂଦନ କମ୍ପାନୀରେ ପରିଣତ କରିବାକୁ ଇଚ୍ଛା କରି ନ ଥିଲେ । ସେ ସେଠାରେ ଶିଳ୍ପୀମାନଙ୍କୁ ଚମଡ଼ାଶିଳ୍ପରେ ଶିକ୍ଷା ଦେବାକୁ ମଧ୍ୟ ଚେଷ୍ଟା କରୁଥିଲେ । ଆଶୁତୋଷ ମୁଖାର୍ଜୀ କମ୍ପାନୀର ପାଞ୍ଚଶ ମୂଳ ଅଂଶ (Foundation res) କିଣି, ଏହି ଶିକ୍ଷା ବିଷୟ ନେଇ ଲେଖିଥିଲେ, "ଚମଡ଼ା

ଶିଳ୍ପ ବ୍ୟବସାୟରେ ଶିକ୍ଷା ଦେବାପାଇଁ ଉତ୍କଳ ଟ୍ୟାନେରୀ ଯେଉଁ ଅନୁଷ୍ଠାନ କରିବାକୁ ଗୃହୀତ ଛନ୍ତି, ସେପରି ସୁବିଧା କୌଣସି କାରଖାନା ବାହାର ଲୋକଙ୍କୁ ଦିଏ ନାହିଁ। ମୁଁ ନିଃସନ୍ଦେହରେ କହି ପାରେ ଯେ, ଆପଣଙ୍କ କମ୍ପାନୀର ଏହି ଶିକ୍ଷାବିଭାଗ ଆମ ଦେଶର ଜାତୀୟ ଭାବକୁ ସ୍ପର୍ଶ କରି ପାରିବ।" ଉତ୍କଳ ଟ୍ୟାନେରୀ ମଧୁସୂଦନଙ୍କ ଆଜୀବନ ଶିଳ୍ପପ୍ରଚେଷ୍ଟାର ପ୍ରତିଷ୍ଠାନ ଥିଲା। ଏହାକୁ ବଞ୍ଚାଇ ରଖିବାକୁ ବନ୍ଧୁ ଲୋକେ ଚେଷ୍ଟା କରିଥିଲେ। କିନ୍ତୁ ଏହା ବଞ୍ଚି ପାରିଲା ନାହିଁ। ମାତ୍ର ଏହି କମ୍ପାନୀ ଭାଙ୍ଗିଯିବା ଏବଂ ଶିଳ୍ପ-ପ୍ରତିଷ୍ଠାନ ନଷ୍ଟ ହୋଇଗଲେ ମଧ୍ୟ ମଧୁସୂଦନଙ୍କର ଗୋଟିଏ ବକ୍ତୃତା ଏଠାରେ ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ। "ପ୍ରଥମ ଉଦ୍ଦେଶ୍ୟ ଶିଳ୍ପିମାନଙ୍କ ଅବସ୍ଥାର ଉନ୍ନତି, କାରଣ ତଦ୍ଦ୍ୱାରା ଜାତିର ଉନ୍ନତି ହୁଏ। ଏ ଉଦ୍ଦେଶ୍ୟ ସାଧନରେ ଲୋକସାନ ହେଲେ ମଧ୍ୟ ଶିଳ୍ପୀଶ୍ରେଣୀର ଶିକ୍ଷା ହେବ ଏବଂ ସମୟରେ ସେହି ବାଣିଜ୍ୟରେ ଲାଭ ହେବ। ଆପଣମାନେ ଜାଣିଥିବେ ଯେ, ଇଉରୋପରେ ଗୋଟିଏ କମ୍ପାନୀ ଫେଲ ହେଲେ ସେହି କମ୍ପାନୀର କଳ ଓ କବଜାମାନ ଅନ୍ୟ କେତେକ ଲୋକ କିଣିନେଇ ଉହିଁରେ ଆହୁରି ଧନ ସଂଯୋଗ କରି ପୁନର୍ବାର ସେହି କାର୍ଯ୍ୟ ଚଳାଇବାକୁ ଚେଷ୍ଟା କରନ୍ତି। ଆମେରିକାର ଯୁକ୍ତରାଜ୍ୟରେ ପ୍ରତିଦିନ ଶତ ଶତ କମ୍ପାନୀ ଫେଲ ହେଉଅଛି। ତହିଁର ଦୁଇଗୁଣ ସଂଖ୍ୟକ କମ୍ପାନୀ ପରବର୍ତ୍ତୀ ଦିନ ଗଠିତ ହେଉଅଛି। କମ୍ପାନୀ ଫେଲ ହେଲା ବୋଲି ଲୋକଙ୍କର ଭ୍ରୂକ୍ଷେପ ନାହିଁ। କାରଣ ସେମାନେ ବୁଝନ୍ତି, ତଦ୍ଦ୍ୱାରା ଜାତିର ଶିକ୍ଷା ହେଉଅଛି ଓ ଜାତିର ଅଭିଜ୍ଞତା ବୃଦ୍ଧି ପାଉଅଛି। ତେଣୁ କମ୍ପାନୀ ଫେଲ ହେବାରେ ଯେଉଁ ଧନ ଲୋକସାନ ହେଲା ତାହାକୁ ସେମାନେ ଲୋକସାନ ବୋଲି ଧରନ୍ତି ନାହିଁ, ଜାତିର ଶିକ୍ଷାରେ ବ୍ୟୟ କରାଗଲା ବୋଲି ମନେ କରନ୍ତି।

(ଉତ୍କଳ ସମ୍ମିଳନୀ ସଭାପତି ଅଭିଭାଷଣ, ୧୯୧୯)

ମଧୁସୂଦନ ଏହି ସବୁ ଶିଳ୍ପ-ସଂଗଠନରେ ଏପରି ଉନ୍ନତି ଏବଂ ଓଡ଼ିଶା ପାଇଁ ସୁଖ୍ୟାତି ଅର୍ଜନ କରି ମଧ୍ୟ ସଙ୍କଟାପନ୍ନ ଆର୍ଥିକ ଅବସ୍ଥାରେ ପଡ଼ିଲେ କାହିଁକି ?

୧। ଏହାର ପ୍ରଧାନ କାରଣ ମଧୁସୂଦନଙ୍କର ଏହି ଶିଳ୍ପଗୁଡ଼ିକର ବ୍ୟବସାୟ ଦିଗ ଦେଖିବାକୁ ସମୟ ନ ଥିଲା।

୨। ମଧୁସୂଦନ ଯଦିଚ ଶିଳ୍ପ ସମ୍ପର୍କରେ ଖୁବ୍ ଚିନ୍ତା ଓ ଗବେଷଣା କରୁଥିଲେ, ତାଙ୍କର ପ୍ରକୃତ ବାସ୍ତବ କ୍ଷେତ୍ରରେ ବ୍ୟବସାୟଜ୍ଞାନ (Practical knowledge of busines) ନ ଥିଲା।

୩। ତେଣୁ ମଧୁସୂଦନଙ୍କ ଆଦର୍ଶରେ ଉନ୍ନ୍ୟୁତାର ପ୍ରଶ୍ରୟରେ କର୍ମଚାରୀମାନେ ଅବାଧରେ ଅର୍ଥ ମନଇଚ୍ଛା ଖରଚ ଓ ଆତ୍ମସାତ୍ କରୁଥିଲେ। ପନ୍ଦର ବର୍ଷ ମଧ୍ୟରେ ଉତ୍କଳ ଟ୍ୟାନେରୀର ଆଠଜଣ ମ୍ୟାନେଜର ନିଯୁକ୍ତି ଏହାର ପ୍ରଧାନ ପ୍ରମାଣ।

ମଧୁସୂଦନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ, ସ୍ୱଦେଶ ଶିଳ୍ପ ଉନ୍ନତି ବ୍ୟତୀତ ଏ ଦେଶର ଆର୍ଥିକ ପରିସ୍ଥିତି ଉନ୍ନତ ହେବ ନାହିଁ। କାରଣ ମଧୁସୂଦନ ଜାଣିଥିଲେ ଯେ ଉତ୍କଳ ତଥା ଭାରତରେ କୃଷି ଏକ ପ୍ରଧାନ ବ୍ୟବସାୟ ହେଲେ ମଧ୍ୟ, ଏହା ମୋଟେ ଲାଭଜନକ ନ ଥିଲା। ତେଣୁ କୃଷିର ଉନ୍ନତି ବ୍ୟତୀତ ଶିଳ୍ପର ଉନ୍ନତି ଅର୍ଥନୀତିକ ଅବସ୍ଥାର ଉନ୍ନତି ପାଇଁ ଅତିଶୀଘ୍ର ଦରକାର ପଡୁଥିଲା। ସରକାର ବିଦେଶୀ; ତେଣୁ ଲୋକମାନଙ୍କୁ ଶିକ୍ଷିତ ନେତା ଓ କର୍ମୀମାନଙ୍କୁ କିମ୍ବା ଜାତୀୟ ସଂଗଠନମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାକୁ ପଡ଼ିବ। ଏହା ବ୍ୟତୀତ ଅନ୍ୟ ବାଟ ନ ଥିଲା।

ପୁଣି ଦେଶୀୟ ଶିଳ୍ପକୁ ଉନ୍ନତ ସ୍ତରକୁ ଆଣିବାକୁ ହେଲେ ଆଧୁନିକ ଉନ୍ନତ ଧରଣର କଳକବ୍ଜାର ସାହାଯ୍ୟ ନେବା ଉଚିତ। ସେ ସମୟର ତାଙ୍କ ବକ୍ତୃତା ଓ ଲେଖାବଳୀ ପଢିଲେ, ତାଙ୍କର ମନୋଭାବ ସମ୍ବନ୍ଧରେ ଜଣାପଡ଼ିଯାଏ। ମଧୁସୂଦନ କହିଥିଲେ—"ବର୍ତ୍ତମାନ ଉତ୍କଳର ଅବସ୍ଥା ଦୃଷ୍ଟେ ଏପରି ଯଦି କୌଣସି କଳ କାରଖାନା ସ୍ଥାପିତ ହୁଅନ୍ତା, ଯଦ୍ଦ୍ୱାରା ଦଶ, କୋଡ଼ିଏ ହଜାର ଓଡ଼ିଆପୁଅ ପୋଷା ହୋଇ ପାରନ୍ତେ। କାହିଁ ସେପରି ଉଦ୍ୟମ ତ କାହାରି ଦେଖୁ ନାହିଁ। ସେ ବାଟରେ ଚେଷ୍ଟା କରି ମୁଁ ସର୍ବସ୍ୱାନ୍ତ ହୋଇଅଛି।"

ତେଣୁ ଉତ୍କଳ ସମ୍ମିଳନୀ ଜରିଆରେ ସେ ଏହି ଶିଳ୍ପଉଦ୍ଧାରବାଣୀ ଜାତିକୁ ଶୁଣାଉଥିଲେ। ସେଥିପାଇଁ ପ୍ରଥମବର୍ଷ ସମ୍ପାଦକ ଥାଇ ସେ ଉତ୍କଳର ଶିଳ୍ପ ଓ କୃଷିଜାତ ଦ୍ରବ୍ୟର ଏକ ପ୍ରଦର୍ଶନୀ ବସାଇଥିଲେ। ତଦ୍ଦ୍ୱାରା ଉତ୍କଳର କେଉଁ ଅଞ୍ଚଳରେ କି କି ଉତ୍କୃଷ୍ଟ ଦ୍ରବ୍ୟ ମିଳେ, ସେଥିପ୍ରତି ଜାତିର ଦୃଷ୍ଟି ଆକର୍ଷଣ କରି ପାରିଥିଲେ। ତାହା ବ୍ୟତୀତ କୃଷି ସମ୍ବନ୍ଧୀୟ ନାନା ପୁସ୍ତିକା ସମ୍ମିଳନୀ ତରଫରୁ ପ୍ରକାଶିତ ହୋଇ ଜନସାଧାରଣରେ ବିତରଣ କରାଯାଇଥିଲା। ୧୯୦୩ ମସିହାରେ 'ଆଖୁଚାଷ' ଏକ ଲାଭଜନକ ଚାଷ ବୋଲି ଲୋକମାନଙ୍କର ଦୃଷ୍ଟି ସେଥିପ୍ରତି ଆକର୍ଷଣ କରାଯାଇଥିଲା। କପାଚାଷ, ଲୁଗାବୁଣା ପ୍ରଭୃତି ପ୍ରତି ସମ୍ମିଳନୀ ଆରମ୍ଭରୁ ମଧୁସୂଦନ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ। ଏପରି କି ଏହି ଶିଳ୍ପ-ଉନ୍ନତି କାର୍ଯ୍ୟପାଇଁ ଆଠଗଡ଼ର ତତ୍କାଳୀନ ରାଜା ୧୯୧୭ ମସିହାରେ

ସମ୍ମିଳନୀ ହାତରେ ଦଶ ହଜାର ଟଙ୍କା ଦେଇ ଗୋଟିଏ କମ୍ପାନୀ ହେଲେ ତାହାର ଅଂଶ କିଣିବେ ବୋଲି ସ୍ୱୀକୃତ ଜଣାଇଥିଲେ ।

ଏହି ସବୁ ସ୍ୱଦେଶ-ଶିଳ୍ପ-ସଂଗଠନ ପାଇଁ ମଧୁସୂଦନ ଯେଉଁ ସବୁ ଭାଷଣ ଉତ୍କଳ ସମ୍ମିଳନୀରେ ଦେଇଥିଲେ, ତାହା ଯେପରି ଚିତ୍ତାକର୍ଷକ, ସେପରି ମାର୍ମଗର୍ଭକ । ସେ ୧୯୦୪ ମସିହାରେ ସମ୍ମିଳନୀ ଅଧିବେଶନରେ କହିଥିଲେ, "ପ୍ରିୟ ଜନନୀ ଶଯ୍ୟାଗତ, ସନ୍ନିପାତବାଉଳା, ଜ୍ଞାନ ନାହିଁ । କବିରାଜୀ ପାପର ବିଷ । ଡାକ୍ତରୀ ଔଷଧ ଗୃହର ହାହାମୟ କ୍ରନ୍ଦନ, ଏହି ଅବସ୍ଥାରେ ଉତ୍କଳ ଜନନୀଙ୍କୁ ଗତବର୍ଷ ଦେଖିଥାଅ, ଯେତେବେଳେ ପ୍ରଥମ ଜ୍ଞାନ ହେଲେ ସନ୍ନିପାତ ରୋଗୀ କିସ କହେ । ଯେଉଁ ମାତାଙ୍କ ଜୀବନ ଆଶା ଛାଡ଼ିଥିଲ, ଲୁଗାପଟା ପକାଇ ଶରୀର ଉତ୍ତପ୍ତ କରୁଥିଲ, ସେହି ମାତା ଜ୍ଞାନ ପାଇ କହୁ ଅଛନ୍ତି— "ଏ କାହାର ଲୁଗା, ଏ ମୋର ଲୁଗା ନୁହେଁ । ଆରବର୍ଷ ସନ୍ନିପାତ ଅବସ୍ଥା, ଏବର୍ଷ ଜ୍ଞାନାବସ୍ଥା । ସମସ୍ତେ ମନେ କର, ସେହି ଅବସ୍ଥାରେ ମାତାଙ୍କ ନିକଟରେ ଉପସ୍ଥିତ ହୋଇ ବିଚାର କର, ପରଲୁଗା ରଖିବ କି ନିଜର ଲୁଗା ଆଣି ତାଙ୍କୁ ଦେବ । ଏଠାରେ ଜାତୀୟ ଜୀବନର ପ୍ରୟୋଜନ । ଜାତୀୟ ଜୀବନ ଯେବେ ଅନୁଭବ କରିଥାଅ, ତେବେ ତନ୍ତୀ, ବଢେଇ, ଶିଳ୍ପୀଙ୍କ ଉନ୍ନତି କରିବା ଅତି ସହଜ । ତନ୍ତୀର ଅବସ୍ଥାକୁ ଉନ୍ନତ କରିବା ଜାତୀୟ ଜୀବନର ଉନ୍ନତିପଥରେ ନିର୍ଭର କରୁଅଛି । ଉତ୍କଳ ଜନନୀ ଏହା ତୁମ୍ଭମାନଙ୍କୁ ମାଗୁଅଛନ୍ତି । ପ୍ରଥମେ ଘରେ ପିନ୍ଧିବା ଲୁଗା ଖଣ୍ଡିକ ଦେଶୀୟ ହେଉ ।"

ସ୍ୱଦେଶ ଶିଳ୍ପ ସଂଗଠନ ସମ୍ପର୍କରେ ମଧ୍ୟ "ସମସ୍ତ ବିବରଣ ସମ୍ମିଳନୀ ପକ୍ଷରୁ ଗ୍ରାମ୍ୟ ସମିତିକୁ ପ୍ରେରିତ ହେବ" ବୋଲି ନିର୍ଦ୍ଧାରିତ ହୋଇଥିଲା ।

ମଧୁସୂଦନଙ୍କ ଏହି ଦେଶୀୟ ଶିଳ୍ପରେ ସଂଗଠନସ୍ୱପ୍ନ ତାଙ୍କୁ ଅସ୍ଥିର କରିଥିଲା । ସେ ସମ୍ମିଳନୀରେ ଯେପରି ଏହି ସ୍ୱଦେଶ-ବାଣୀ ପ୍ରଚାର କରିଥିଲେ ସେହିପରି ନିଜେ କିପରି ବିଭିନ୍ନ ଶିଳ୍ପ ପ୍ରତିଷ୍ଠାନ ପ୍ରତିଷ୍ଠା କରିଥିଲେ, ତାହା ଜାଣି ସାରିଥାଇଁ । ସେତେବେଳେ ବଙ୍ଗର 'ସ୍ୱଦେଶୀ ଆନ୍ଦୋଳନ' କିମ୍ବା ମହାତ୍ମା ଗାନ୍ଧୀଙ୍କ ନାଁ ଭାରତରେ ଶୁଣାଯାଇ ନାହିଁ । ହୁଏତ ମହାତ୍ମା ଗାନ୍ଧୀ ସେତେବେଳେ ଦକ୍ଷିଣ ଆଫ୍ରିକାରେ ଟଲଷ୍ଟୟ ଆଦର୍ଶରେ "ରସ୍କିନ ଫାର୍ମ" ଖୋଲିଥିଲେ । ଏପରିକି ଦେଶୀ ଚାଉଳ, ତନ୍ତୀବୁଣା ଲୁଗା, ମୋଚି ଜୋତା ଓ ଅନ୍ୟାନ୍ୟ ହାତକାମର ସେ ଉନ୍ନତିସ୍ୱପ୍ନ ଦେଖିଥିଲେ । ମଧୁସୂଦନଙ୍କ ବହୁବର୍ଷ ପରେ ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ଗ୍ରାମୋଦ୍ୟୋଗ ସଂଘ ସ୍ଥାପିତ ହୋଇ ଏହି କାର୍ଯ୍ୟ ଭାରତରେ ପ୍ରଚାର ଏବଂ ପ୍ରସାର ପାଇଁ ଚେଷ୍ଟା ହେଲା ।

୧୯୦୫ ମସିହାରେ ଲୋକଙ୍କର ବିନା ଅର୍ଥବ୍ୟୟରେ ଲୁଣଗାରୁଣା ଶିକ୍ଷା ସମ୍ମିଳନୀ ତରଫରୁ କଟକରେ ବନ୍ଦୋବସ୍ତ କରାଯାଇଥିଲା । ୧୯୧୬ ଓ ୧୯୧୭ ମସିହାରେ ଲୁଣ ବ୍ୟବସାୟର ପୁନରୁଦ୍ଧାରପାଇଁ ମଧ୍ୟ ଚେଷ୍ଟା କରା ଯାଇଥିଲା ।

ଇଉରୋପୀୟ ଶିଳ୍ପତୁଲ୍ୟ ଉତ୍କଳର ଶିଳ୍ପକୁ ଉଚ୍ଚସ୍ତରକୁ ଉଠାଇବାକୁ ମଧୁସୂଦନଙ୍କର ଇଚ୍ଛା ଥିଲା । ଜଣକ ପାଖରେ ଶିଳ୍ପ-ଉନ୍ନତି ପାଇଁ ଧନ, ଜନ, ମନ ଓ ସଂଗଠନ କ୍ଷମତା ରହିବା ସମ୍ଭବପର ନୁହେଁ । ଦେଶର କଲ୍ୟାଣ ସାଧନ ନିମନ୍ତେ ଏହି ସମସ୍ତର ସମ୍ମିଳନ ଦରକାର । ତେଣୁ ସେ ୧୯୦୮ ମସିହାରେ ଏହି ଶିଳ୍ପ-ଉନ୍ନତି ସମ୍ପର୍କରେ ଏକ ଭାଷଣରେ କହିଥିଲେ, "ଲକ୍ଷ୍ମୀପୂଜା ନ କଲେ ଉନ୍ନତି ହେବ ନାହିଁ । ଜାତିର ଲକ୍ଷ୍ମୀମନ୍ଦିର ନ ହେଲେ ଜାତି ଉଠିବ ନାହିଁ । ତେଣୁ ଗୋଟିଏ ଜାତୀୟ ଲକ୍ଷ୍ମୀମନ୍ଦିର ଦରକାର । ଆମର ଧନ ଜମି ଅଛି ବୋଲି ଲୋକେ କହନ୍ତି ଓଡ଼ିଆ ଗରିବ । ମୁଁ କହେ କଦାଚ ନୁହେଁ । ବର୍ତ୍ତମାନ କଲିକତା, ନାଗପୁର ପ୍ରଭୃତି ସ୍ଥାନର କଳ-କାରଖାନାରେ ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଅଛନ୍ତି; ଏହାର ଅର୍ଥ-ଓଡ଼ିଆର ହାତର ମୂଲ୍ୟ ଅଛି । ସେହି ହାତର ମୂଲ୍ୟ ବିଦେଶୀମାନେ ଖାଇ ଯାଉଅଛନ୍ତି । ତେଣୁ ଦେଶର ସମବାୟ ନୀତି ଅନୁସାରେ ଆଧୁନିକ ଧରଣର କଳ କାରଖାନା ପ୍ରଚଳନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସେ ୧୯୧୩ ମସିହାର ସମ୍ମିଳନୀର ସଭାପତି ଅଭିଭାଷଣରେ କହିଥିଲେ, ବର୍ତ୍ତମାନ ଭାରତବର୍ଷରେ ଶିଳ୍ପର ଉନ୍ନତି ସମ୍ବନ୍ଧେ ଅନେକ ବକ୍ତୃତା ଓ ଅନେକ ଉଦ୍‌ଯୋଗ ଦେଖାଯାଏ । ସୁଶିକ୍ଷିତ ବ୍ୟକ୍ତିମାନେ ସ୍ୱୀକାର କରନ୍ତି ଯେ, ଶିଳ୍ପର ଉନ୍ନତି ନ ହେଲେ ଭାରତବର୍ଷର ଉନ୍ନତି ହେବା ଅସମ୍ଭବ । ଯେଉଁ ହାତ କୋଡ଼ି ଧରି ମାଟି ହାଣି ସାରାଦିନ ପରିଶ୍ରମ କରି ଦୁଇ ଅଣା ପଇସା ରୋଜଗାର କରୁଅଛି, ସେହି ହାତ ଶିଳ୍ପୀର ହାତ ହେଲେ ଦିନରେ ଦୁଇଟଙ୍କା ରୋଜଗାର କରି ପାରେ । ବର୍ତ୍ତମାନ ଶିଳ୍ପୋନ୍ନତି କ୍ଷେତ୍ରରେ ଇଉରୋପ ସହିତ ପ୍ରତିଯୋଗିତା ଅନିବାର୍ଯ୍ୟ । ଇଉରୋପରେ ତିନୋଟି ଶକ୍ତି ଏକତ୍ର ହେବା ଦ୍ୱାରା ଇଉରୋପର ଶିଳ୍ପର ଉନ୍ନତି ହୋଇଅଛି । ସେ ତିନିଗୋଟି ଶକ୍ତି ଧନ, ଜନ, ମନ—ଅର୍ଥାତ୍ ଅର୍ଥ, କାୟିକ ପରିଶ୍ରମ ଓ ବୁଦ୍ଧି । ଏହି ତିନୋଟି ଶକ୍ତି ଏକତ୍ର ହେବାଦ୍ୱାରା ଇଉରୋପୀୟ ଶିଳ୍ପର ଉନ୍ନତି ହୋଇଅଛି । "କୌଣସି ଏକ ବ୍ୟକ୍ତିଠାରେ ଏହି ତିନି ଶକ୍ତି ଯଥେଷ୍ଟ ପରିମାଣରେ ମିଳିବା ଅସମ୍ଭବ । ଏହି ହେତୁରୁ ତିନି ଶ୍ରେଣୀର ଲୋକ ଏକତ୍ର ହୋଇ ଇଉରୋପରେ ଶିଳ୍ପର ଉନ୍ନତି କରୁଅଛନ୍ତି । ଇଉରୋପରେ ଯେଉଁ ସୁବୃହତ୍ କାରଖାନାମାନ ଅଛି, ତାହା କୌଣସି ଏକ ବ୍ୟକ୍ତିର ସ୍ୱତ୍ୱ ନୁହେଁ । ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ ଯେ, ଶିଳ୍ପକ୍ଷେତ୍ରରେ ଆମ୍ଭମାନଙ୍କୁ

"ଇଉରୋପ ସହିତ ପ୍ରତିଯୋଗିତା କରିବାକୁ ହେବ ଏବଂ ଇଉରୋପ ନିର୍ମିତ ପଦାର୍ଥ ଅନୁକରଣରେ ଏଠାରେ ପଦାର୍ଥମାନ ପ୍ରସ୍ତୁତ କରିବାକୁ ହେବ । ଓଡ଼ିଶାରେ ଅର୍ଥ ନାହିଁ, ଏହା କୁହାଯାଇ ନ ପାରେ । କିନ୍ତୁ ବର୍ତ୍ତମାନ ଭୂସମ୍ପତ୍ତିରେ ଲୋକେ ଅର୍ଥବ୍ୟୟ କରିବାକୁ ପ୍ରସ୍ତୁତ । ଯେଉଁ ବ୍ୟକ୍ତି କାରଖାନା ଚଳାଇବ, ତାହାର ବୁଦ୍ଧି ବିବେକର ଅଭାବରେ କ୍ଷତି ହେବାର ଆଶଙ୍କା କରି ଶିଳ୍ପକାର୍ଯ୍ୟରେ ଅର୍ଥନ୍ୟସ୍ତ କରିବାକୁ ଲୋକେ ଅନିଚ୍ଛୁକ । ଅଥଚ ଦେଖାଯାଏ, ଶିଳ୍ପକାର୍ଯ୍ୟରେ ଯେପରି କ୍ଷତିର ଆଶଙ୍କା, ଭୂମିରେ ମଧ୍ୟ ସେହିପରି ଆଶଙ୍କା ଅଛି । ପ୍ରକୃତରେ ବୁଝିବାକୁ ଗଲେ ଶିଳ୍ପକାର୍ଯ୍ୟରେ ଯେ ପରିମାଣରେ କ୍ଷତିର ଆଶଙ୍କା ଅଛି, ଭୂମିରେ ତାହା ଅପେକ୍ଷା ଅଧିକ । କାରଣ ମନୁଷ୍ୟର ବିଗୃହ ଦୋଷରେ ଯେଉଁ କ୍ଷତି ହୁଏ, ତାହା ଦୂର ଥର ହେବ ନାହି । ଲୋକେ ଯେବେ ମାଲି ମକଦ୍ଦମାର ଅନିଶ୍ଚିତ ଫଳ ଲାଭ ଆଶାରେ ଏତେଦୂର କ୍ଷତିଗ୍ରସ୍ତ ହେବାକୁ ପ୍ରସ୍ତୁତ, ତେବେ ଶିଳ୍ପକାର୍ଯ୍ୟ କରିବାକୁ ଯାଇ କିଛି କ୍ଷତିଗ୍ରସ୍ତ ହେବାକୁ ଡରୁଛନ୍ତି କାହିଁକି ? ଏହାର କାରଣ ଆଉ କିଛି ନୁହେଁ । ଲୋକେ କେବଳ ଏ ବିଷୟ ବୁଝି ନାହାନ୍ତି ।

"ବର୍ତ୍ତମାନ ଯେ ବ୍ୟକ୍ତି ବିଶ୍ୱାସ କରେ କି ଶିଳ୍ପୋନ୍ନତିଦ୍ୱାରା ଓଡ଼ିଶାର ଉନ୍ନତି ହେବ, ସେ ଆପଣାର ପରିଶ୍ରମ, ବୁଦ୍ଧି ଓ ଧନକୁ ବଳିଦାନ ସ୍ୱରୂପ ସେ କାର୍ଯ୍ୟରେ ଅର୍ପଣ କରୁ । ଲାଭର ଆଶା ତ୍ୟାଗ କରୁ । ହୋଇ ପାରେ, ସେ ଦରିଦ୍ର ଅବସ୍ଥାରେ ପ୍ରାଣତ୍ୟାଗ କରିବ, କିନ୍ତୁ ଯେଉଁ ଉନ୍ନତିର ବୀଜ ସେ ବପନ କରିଯିବ, ତହିଁର ଫଳ ଉତ୍କଳ ସନ୍ତାନମାନେ ପଶ୍ଚାତ୍ ଆସ୍ୱାଦନ କରିବେ । ଯେଉଁ ଶିଳ୍ପୀର ହାତର ମୂଲ୍ୟ ଥରେ ବୃଦ୍ଧି ହେଲା, ସେ ହ୍ରାସ ପାଇବ ନାହିଁ, ବରଂ ସେ ପ୍ରକାର ହାତର ସଂଖ୍ୟା କ୍ରମଶଃ ବର୍ଦ୍ଧିତ ହେବ । ଜଣକର ମୃତ୍ୟୁରେ ଜାତିର ଜୀବନ ବୃଦ୍ଧି ହୁଏ । ଏହା ପ୍ରକୃତିର ନିୟମ ଅଟେ ।

ଓଡ଼ିଶାର ବର୍ତ୍ତମାନ ଅବସ୍ଥାରେ ଯଦି କେହି ବିଶ୍ୱାସ କରେ ଯେ, ଶିଳ୍ପଦ୍ୱାରା ଜାତିର ଉନ୍ନତି ହେବ, ସେ ଶିଳ୍ପକୁ ଆପଣାର ସନ୍ତାନସ୍ୱରୂପ ଜ୍ଞାନ କରି ଶୈଶବାବସ୍ଥାରେ ତାହାର ଲାଳନପାଳନଭାର ଗ୍ରହଣ କରୁ । ପଶ୍ଚାତ୍ ଓଡ଼ିଶାର ଶିଳ୍ପକାର୍ଯ୍ୟ ବୋଲି ଜଗତରେ ବିଖ୍ୟାତ ହେବ, ଓଡ଼ିଶାର ଶିଳ୍ପୀମାନଙ୍କ ଅବସ୍ଥାର ଉନ୍ନତି ହେବ । କିନ୍ତୁ ଦେଶର କୋଟି କୋଟି ଅର୍ଥ ବ୍ୟୟ କରି ରାଜାମାନେ ସମସ୍ତ ଭାରତବର୍ଷର ଉପକାରାର୍ଥ ଉତ୍କଳରେ ଜଗନ୍ନାଥ ମନ୍ଦିର ପ୍ରସ୍ତୁତ କରିଥିଲେ । ଆଶା କରାଯାଏ, ସେହି ଉତ୍କଳଭୂମିରେ ସେପ୍ରକାର ପରୋପକାରୀ ବ୍ୟକ୍ତିମାନେ ବର୍ତ୍ତମାନ ଅଛନ୍ତି ଓ ସେମାନେ ତାଙ୍କର ଜନ୍ମଭୂମି ପ୍ରତି କର୍ତ୍ତବ୍ୟ ସାଧନରେ ତ୍ରୁଟି କରିବେ ନାହିଁ ।"

ଏହି ବକ୍ତୃତାର ପ୍ରତ୍ୟେକ ପଂକ୍ତିରେ ମଧୁସୂଦନଙ୍କ ପ୍ରାଣର ଆବେଗ ଓ ଉଚ୍ଛ୍ୱାସ ଯେପରି ରୂପ ପାଇଅଛି, ତାହା ଅପେକ୍ଷା ଆଉ ଅଧିକ କଣ ସ୍ପଷ୍ଟଭାବରେ ପ୍ରକାଶ କରାଯାଇ ପାରେ ?

କୁଟୀରଶିଳ୍ପ ବା ଗ୍ରାମୋଦ୍ୟୋଗର ଉନ୍ନତି ଏବଂ କୃଷିର ବିକାଶ ସଙ୍ଗେ ସଙ୍ଗେ ଦେଶର ଆର୍ଥିକ ପରିସ୍ଥିତିର ଉନ୍ନତି ପାଇଁ ମଧୁସୂଦନ ବଡ଼ ଗମ୍ଭୀର ଭାବରେ ଭାବୁଥିଲେ । ତେଣୁ ବଡ଼ ବଡ଼ କାରଖାନାମାନ ବସାଇ ଦେଶର କଞ୍ଚା ମାଲକୁ ସେ ଦେଶରେ ପ୍ରସ୍ତୁତ ଦ୍ରବ୍ୟରେ ପରିଣତ କରିବାକୁ ଚାହୁଁଥିଲେ । ଆଖ ପାଖର ଅବସ୍ଥା ଓ ସୁବିଧାରେ ମିଳୁଥିବା କଞ୍ଚା ମାଲକୁ ଦେଖି କଳ ବସାଇବାରେ ବଡ଼ ଆଗ୍ରହୀ ଥିଲେ ।

ମଧୁସୂଦନ ଯେ ବୃଦ୍ଧାବସ୍ଥାରେ ଋଣଗ୍ରସ୍ତ ହୋଇ ଦେହତ୍ୟାଗ କଲେ ତାର ମୂଳରେ ତାଙ୍କର ଏହି ଶିଳ୍ପବିକାଶ ଲାଗି ନାନା ଯୋଜନାହିଁ ଦାୟୀ । ଏପରି କାମ ଜଣକର ନୁହେଁ, କିନ୍ତୁ ସେ ଅନ୍ୟମାନଙ୍କ ଠାରୁ ସାହାଯ୍ୟ ନ ପାଇ ନିଜେ ନିଜେ ସବୁ କାର୍ଯ୍ୟ ପ୍ରଥମେ କରି ଯାଉଥିଲେ । ମଧୁସୂଦନଙ୍କ ମୃତ୍ୟୁ ପରେ କଲିକତାର ଦୈନିକ "ଆଡଭାନ୍ସ" ପତ୍ରିକା ଏହି ଶିଳ୍ପ-ସଂଗଠନକୁ ଲକ୍ଷ୍ୟ କରି ଲେଖିଥିଲେ ।

"ସେ ସେମାନଙ୍କ ମଧ୍ୟରୁ ଜଣେ, ଯେ କି ବୁଝିଥିଲେ ଯେ ଭାରତର ଜନସାଧାରଣଙ୍କର ରାଷ୍ଟ୍ରନୈତିକ ସଂଗ୍ରାମ ସଙ୍ଗେ ଆର୍ଥିକ ଜାଗରଣ ଆଣିବାକୁ ହେବ ।

ସେ ଓଡ଼ିଶାରେ ନୂଆ ଶିଳ୍ପ ସଂଗଠନ କରିବାରେ ନେତୃତ୍ୱ ନେଇଥିଲେ । ଉତ୍କଳ ଟ୍ୟାନେରୀ ତାଙ୍କ ଦେଶର ଆର୍ଥିକ-ଉନ୍ନତି ବିଶ୍ୱାସର ଅତି ଶ୍ରେଷ୍ଠ ପ୍ରମାଣ ।"

ମଧୁସୂଦନ ଶିଳ୍ପ-ସଂଗଠନ ପାଇଁ ଏତେ ଚେଷ୍ଟା କରି ସ୍ଥାୟୀ ଶିଳ୍ପ-ପ୍ରତିଷ୍ଠାନ ଦେଶରେ ଛାଡ଼ି ନ ଗଲେହେଁ ତାଙ୍କର ପ୍ରେରଣା ଆଜି ମଧ୍ୟ ଉତ୍କଳ ତଥା ଭାରତରେ ଶିଳ୍ପ-ଜାଗରଣ ପାଇଁ କାର୍ଯ୍ୟ କରୁଅଛି । ମଧୁସୂଦନ ନିଜେ ଏ ବିଷୟରେ କହି ଯାଇ ଅଛନ୍ତି—

"ବୃକ୍ଷର ଫଳଟି ମାଟିରେ ପଡ଼ି ନଷ୍ଟ ହେଲେ ତହିଁରୁ ଏକ ବୃକ୍ଷ ଉତ୍ପନ୍ନ ହୁଏ ଏବଂ ତଦ୍ଦ୍ୱାରା ସେହି ଜାତୀୟ ବୃକ୍ଷର ସଂଖ୍ୟା ପୃଥିବୀରେ ବୃଦ୍ଧି ଯାଏ ।"

ମଧୁସୂଦନ ଉତ୍କଳର ଶିଳ୍ପୋନ୍ନତି ନିମିତ୍ତ ସର୍ବସ୍ୱାନ୍ତ ହୋଇଛନ୍ତି, ବୃକ୍ଷରୁ ଝଡ଼ି ପଡ଼ିଛନ୍ତି, ଭବିଷ୍ୟତ୍ ଜାତୀୟ ଶିଳ୍ପ-ବୃକ୍ଷ ସଂଖ୍ୟା ଅଭିବୃଦ୍ଧିରେ ସାହାଯ୍ୟ

କରିବା ପାଇଁ । ସେ ଶିଳ୍ପ ପାଇଁ ଭବିଷ୍ୟତ୍ ଜମିକୁ ଉର୍ବର କରି ଯାଇଅଛନ୍ତି, ତାଙ୍କର ଜୀବନବ୍ୟାପୀ ଚେଷ୍ଟା, ସାଧନା ଓ ଶକ୍ତିଦ୍ୱାରା । ଜାତିର ଶିଳ୍ପ-ସଂଗଠନ ଆଜି ଦ୍ରୁତ ଗତିରେ ଅଗ୍ରସର । ଫକୀରମୋହନ ତାଙ୍କ 'ଉତ୍କଳ ଭ୍ରମଣ'ରେ ଏ ସମ୍ପର୍କରେ ଥଟ୍ଟାଳି ଭାଷାରେ ଲେଖିଥିଲେ :—

"ତୁମ୍ଭେ ତ ଆଲୁଅ ପ୍ରାପ୍ତ ମୁହିଁ ଅନ୍ଧାରୁଆ,
କାନ୍ଥୁ ଭାଇ ଦୁଇ ଭଣାଜାଡରେ ଓଡ଼ିଆ ।
ଦେଖିଲୁ ଗୋଟିଏ କଥା, ବିଲାତରେ ବୁଲି
ଆପଣା ଦେଶର କଥା ଯାଇ ନାହିଁ ଭୁଲି ।
ସେଦିନ ନେଆଇ ମୋତେ ଏକ କପ୍ ଗୃ
ଦେଖାଇଲୁ କେତେ ରଙ୍ଗ ସାବାସ୍ ଭାଇ ବାଃ
ମନ ମାନିଗଲୁ ପଣ୍ ଦେଖି ସେ ଓସ୍ତାଗା
କଟକର କାରିଗର ଦ୍ରବ୍ୟ ନାନା ଜାତ
ରୁପା ତାରକସି କାମ, ଶିଙ୍ଗର ପାନିଆ
ଅବଶ୍ୟ କହିବ ଏହା ସବୁ ନୂଆ ନୂଆ ।"

ମଧୁସୂଦନ ଇଉରୋପୀୟ ଆଦର୍ଶରେ ସ୍ୱଦେଶୀ ଶିଳ୍ପର ସଂଗଠନ ଚାହୁଁଥିଲେ ମଧ୍ୟ ଏହାଙ୍କ ଆଦର୍ଶ ଓ ନୀତି ଉପରେ ଇଉରୋପୀୟ ଆଦର୍ଶରୁ ସ୍ୱତନ୍ତ୍ର ଓ ସ୍ୱାଧୀନ ଥିଲା, ତାହା ତାହାଙ୍କ ଲିଖିତ "ଶିଳ୍ପଜାଗରଣ" ଏବଂ "ଶିଳ୍ପବନ୍ଧନରୁ ମୁକ୍ତି" ନାମକ ଦୁଇଟି ଇଂରାଜୀ ଲେଖାରୁ ଏଠାରେ ତାଙ୍କ ସ୍ୱାଧୀନ ଚିନ୍ତାଧାରାର ସ୍ପଷ୍ଟ ରୂପ ଚିତ୍ରଣ କରି ଦିଆଯାଉ ଅଛି । ଏହି ଦୁଇଟି ପ୍ରବନ୍ଧ ତାହାଙ୍କ "ଓଡ଼ିଆ" ନାମକ ଇଂରାଜୀ ସପ୍ତାହିକ କାଗଜରେ ପ୍ରକାଶ ପାଇଥିଲା ।

"ଆଜିକାଲି ଶିଳ୍ପର ବିକାଶ ବା ଉନ୍ନତି କରିବା ପାଇଁ ନାନା ଅଡ଼େଇ ହୁରି ପଡ଼ିଛି । ଯୁଦ୍ଧ ବିଦେଶୀ ଦ୍ରବ୍ୟର ମୂଲ୍ୟ ବଢ଼ାଇ ଦେଇଅଛି । ଏହି ବିଦେଶୀ ଦ୍ରବ୍ୟ ସବୁ କ୍ରମେ ଦୈନନ୍ଦିନ ପ୍ରୟୋଜନୀୟ ପଦାର୍ଥରେ ପରିଣତ ହୋଇ ଯାଇଥିଲା । ସାଧାରଣ ଧୋତି ଏହାର ଉଦାହରଣ । ଆଜି କାଲି ଏ ଯେଉଁ ଦରବୃଦ୍ଧି ହୋଇଛି, ଏହା ଶିଳ୍ପ ଉନ୍ନତି ପାଇଁ ଆହୁରି ବେଶୀ ଦାବୀ ବଢ଼ାଇ ଦେଇଛି ।

"ଆମ୍ଭେମାନେ ବର୍ତ୍ତମାନ ବିଦେଶମାନଙ୍କରେ ଶିଳ୍ପର ଅବସ୍ଥା ଦେଖୁଥାଉଁ । ତେଣୁ ଆମ୍ଭମାନଙ୍କର ଭାବିବା ସ୍ୱାଭାବିକ ଯେ, ଅନ୍ୟ ଦେଶରେ ଅନ୍ୟ

"ଜାପାନମାନେ ଯାହା କରୁଛନ୍ତି, ଆମ୍ଭେମାନେ ମଧ୍ୟ ତାହା କରି ପାରିବା । ଅନ୍ୟ ଦେଶର ବର୍ତ୍ତମାନ ଯାହା ଅବସ୍ଥା, ତାହା ହିଁ ଆମ୍ଭମାନଙ୍କର ସବୁଠାରୁ ବଳି ନିକଟ ଲକ୍ଷ୍ୟ ହୋଇ ଯାଉଅଛି । ଅନେକ ସମୟରେ ଆମ୍ଭେମାନେ ଭୁଲିଯାଉଁ ଯେ ବର୍ତ୍ତମାନ ଅନେକ ଗୁଡ଼ିଏ ଅଦୃଶ୍ୟ ପ୍ରାପ୍ତ ଅବସ୍ଥାର ଶେଷ ଅବସ୍ଥା । ଶିଳ୍ପ ଉନ୍ନତି ପାଇଁ ଚେଷ୍ଟା ପ୍ରଶଂସନୀୟ । କିନ୍ତୁ ଏହି ପ୍ରବଳ ଇଚ୍ଛାର ଉପରେ ଆମ୍ଭେମାନେ ଏପରି ଏକ ଅବସ୍ଥାର ଆରମ୍ଭ କରିବାକୁ ଚାହୁଁଛୁ, ଯାହା ଦେଶର ବର୍ତ୍ତମାନ ସଂଗଠନ, ଦକ୍ଷତା ଏବଂ ପ୍ରାକୃତିକ ସମ୍ପଦର ବିନିଯୋଗ କ୍ଷମତାର ବାହାରେ ।

"ଶିଳ୍ପର ସଫଳତା ପାଇଁ ମୂଳଧନ ବା ପାଣ୍ଠି, ଶ୍ରମ ବା ମଜୁରୀ ଏବଂ ମାନସିକ ଶକ୍ତି ବା ବୁଦ୍ଧିର ସ୍ୱାସ୍ଥ୍ୟକର ବିନିଯୋଗ ଦରକାର । ଗୋଟିଏ ଅଞ୍ଚଳର ପ୍ରାକୃତିକ ସମ୍ପଦ ବା କଞ୍ଚା ମାଲକୁ ପ୍ରସ୍ତୁତ ଦ୍ରବ୍ୟ ବା ଅଳଙ୍କାରରେ ପରିଣତ କରିବା ପୂର୍ବରୁ, ସେହି କଞ୍ଚା ମାଲକୁ ପ୍ରଥମେ ଅକ୍ତିଆରକୁ ଆଣିବା ଉଚିତ । ପୁଣି ମଧୁସୂଦନ 'ଶିଳ୍ପ-ବନ୍ଧନରୁ-ମୁକ୍ତି' ପ୍ରବନ୍ଧରେ ଦର୍ଶାଇ ଅଛନ୍ତି, କିପରି ବିଦେଶୀ ଶିଳ୍ପ ସ୍ୱଦେଶୀ ଶିଳ୍ପକୁ ନଷ୍ଟ କରୁଅଛି ଏବଂ ଏଥିପାଇଁ କିପରି ଦେଶର ଶିକ୍ଷିତ ଜନସାଧାରଣ ଦାୟୀ । "ଯେଉଁ ଶିକ୍ଷିତ ଏବଂ ଅବସ୍ଥା-ସମ୍ପନ୍ନ ଶ୍ରେଣୀର ଲୋକ ତନ୍ତୀକୁଳକୁ ଉପାସରେ ମାରିଲେ, ସେମାନେ ସେମାନଙ୍କ ଦେଶଦ୍ରୋହୀ ଏବଂ ଅଯୋଗ୍ୟ ଆଚରଣ ସଂଶୋଧନ କରିବା ଉଚିତ । ବିଦେଶୀ ଉତ୍ପାଦନକାରୀ ଆମ ଘରକୁ ଆକ୍ରମଣ କରି ନାହିଁ, ବିଦେଶୀ ଲୁଗା ଆମଦାନୀ ପ୍ରାୟ କାର୍ଯ୍ୟତଃ ବନ୍ଦ ହୋଇ ଯାଇଛି । ଲୁଗା ଉତ୍ପାଦନ କରିବାକୁ କଳ ମିଳୁ ନାହିଁ । ଭାରତ ବର୍ତ୍ତମାନ ଏମିତି ଏକ ଅବସ୍ଥାରେ ଅଛି, ଯାହାକୁ ଶିଳ୍ପ-ଅବରୋଧ କୁହାଯାଇ ପାରେ । ଅବରୋଧ ଅବସ୍ଥାରେ ଅବରୁଦ୍ଧ ଲୋକେ ସେମାନଙ୍କ ନିଜ ଉପରେହିଁ ପୂରା ନିର୍ଭର କରନ୍ତି । ବାହାରୁ କୌଣସି ସାହାଯ୍ୟ ମିଳେ ନାହିଁ, ଜୀବନରକ୍ଷା ପାଇଁ ସଂଗ୍ରାମ ଭୀଷଣ ଆକାର ଧରେ, କିନ୍ତୁ ଜୟଲାଭ ପାଇଁ ସମସ୍ତ ଶକ୍ତି ଏବଂ ସକଳ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ । ଆମ୍ଭମାନଙ୍କ ବିଦେଶୀ ଢାଞ୍ଚାରେ ଜୀବନଧାରଣ ପ୍ରଣାଳୀ, ଆମ୍ଭମାନଙ୍କ ବିଦେଶୀ ଭାବଭଙ୍ଗୀ ଏବଂ ବିଦେଶୀ ପୋଷାକ ପିନ୍ଧିବା ସ୍ପୃହା ଆମ୍ଭମାନଙ୍କର ଏହି ଶିଳ୍ପ-ବନ୍ଧନରେ ଜଗୁଆଳ ସ୍ୱରୂପ କାର୍ଯ୍ୟ କରୁଅଛନ୍ତି । ଭାରତୀୟ ଦଣ୍ଡବିଧି ଆଇନ ଏହି ସୈନ୍ୟମାନଙ୍କ ଜୀବନକୁ ରକ୍ଷା କରି ପାରିବ ନାହିଁ । ତନ୍ତୀକୁଳର ସ୍ୱାର୍ଥଦୃଷ୍ଟିରୁ ଏହି ମାନଙ୍କୁ ମାରିଦେବାକୁ ହେବ । ଏହି ସବୁ ଭାବକୁ ମାରିଦିଅ, ତନ୍ତୀକୁଳ ପୂର୍ବଭଳି ବଳବାନ୍ ହେବେ । ଆମ୍ଭେମାନେ ଦେଖିବାକୁ ଚାହୁଁ ଯେ ଆମ୍ଭମାନଙ୍କ ଅବସ୍ଥାସମ୍ପନ୍ନ ଲୋକେ ମୋଟ ଲୁଗା—ଧୋତି ବ୍ୟବହାର କରନ୍ତୁ ।

"ଗର୍ଜନମୁଖର କମାଣମୁହଁକୁ ଯିବା ଅପେକ୍ଷା ଲୋକଙ୍କ ଅସମ୍ମାନ ବା ବକ୍ତୃତା ବିରୁଦ୍ଧରେ ଛିଡ଼ା ହେବାପାଇଁ ବେଶୀ ସାହସ ଦରକାର ।"

ମଧୁସୂଦନ ସ୍ୱଦେଶୀ ଶିଳ୍ପ ସଂଗଠନପାଇଁ କିପରି ବ୍ୟାକୁଳ ଥିଲେ ଏବଂ ଭାରତୀୟ ପରିସ୍ଥିତି କିପରି ନିରାଶାଜନକ ଥିଲା, ତାହା ସେ ଅନ୍ୟ ଏକ ପ୍ରବନ୍ଧରେ ଅତି ସ୍ପଷ୍ଟ ଭାବରେ ଚିତ୍ରଣ କରିଅଛନ୍ତି । ମଧୁସୂଦନ "ଯୁଦ୍ଧରୁ ବାଣିଜ୍ୟ ଏବଂ ବାଣିଜ୍ୟରୁ ଯୁଦ୍ଧ" ପ୍ରବନ୍ଧରେ ଲେଖି ଅଛନ୍ତି —

"ଆମ୍ଭେମାନେ ସ୍ୱରାଜ୍ୟ ( Home Rule ) ପାଇବାକୁ ଆକାଂକ୍ଷା ପ୍ରକାଶ କରୁଅଛୁଁ । କିନ୍ତୁ ଅନ୍ୟ ଜାତିମାନଙ୍କ ଉପରେ ଆମ୍ଭେମାନେ କେତେ ନିର୍ଭର କରୁଛୁଁ, ତାହା ଆମ୍ଭେମାନେ ଭାବୁ ନାହୁଁ । ଯେଉଁ ଜାତି ବା ଦେଶ ଅପର ଦେଶକୁ ଜିନିଷ ଉତ୍ପାଦନ ପାଇଁ କେବଳ କଞ୍ଚା ମାଲ ଯୋଗାଏ, ସେ ଦେଶ ଯେ ଶିଳ୍ପକ୍ଷେତ୍ରରେ ଅତି ନୀଚ ସ୍ତରରେ ଅଛି, ଏହା ବୁଝିବା ଉଚିତ । ଅନ୍ୟ ଦେଶରେ ପ୍ରସ୍ତୁତ ଲୁଗାଦ୍ୱାରା ଆମ୍ଭେମାନେ ଆମ୍ଭମାନଙ୍କ ଲଜ୍ଜା ନିବାରଣ କରୁଁ । ପ୍ରତ୍ୟହ ଯେଉଁସବୁ ସୌଖୀନ ଓ ବ୍ୟବହାର୍ଯ୍ୟ ପଦାର୍ଥ ଆମର ଦରକାର, ତାହା ମଧ୍ୟ ଅପର ଦେଶ ଆମ୍ଭମାନଙ୍କୁ ଯୋଗାଏ । ତଥାପି ଅମ୍ଭେମାନେ ସ୍ୱରାଜ ଚାହୁଁ; ଏପରି ସ୍ୱରାଜର ବ୍ୟାପ୍ତି ଏବଂ ଲକ୍ଷ୍ୟ କଣ ? ଏହା ସ୍ୱଦେଶୀ ବ୍ୟବସାୟୀକୁ ନିଜ ଅଧିକାରରେ ରଖି ପାରିବ ନାହିଁ । ଲୋକମାନଙ୍କର ବ୍ୟବସାୟାତ୍ମକ ସାହସିକତା ବୃଦ୍ଧି ନ ପାଇଲେ, ଦେଶରେ ବାଣିଜ୍ୟର ଅଭିବୃଦ୍ଧି ଅସମ୍ଭବ । ପୁଞ୍ଜିପତିମାନେ ସମସ୍ତ ଧନ ଜମିରେ ଖଟାଇବାକୁ ଉଦ୍ୟତ । ଜମିରୁ କେବଳ କୃଷିଜାତ ଦ୍ରବ୍ୟ ମିଳିପାରେ । କିନ୍ତୁ ଧୋତି, ଜୋତା, ଛତା କମ୍ୱା ଅଖା ଜମି ପ୍ରସ୍ତୁତ କରି ପାରିବ ନାହିଁ । ଯେତେଦିନ ଯାଏ ଧନପତି ବା ପୁଞ୍ଜିପତି ଏବଂ ଜମିଦାରମାନେ ଦେଶର ଆର୍ଥିକ ପରିସ୍ଥିତିର ପରିଚାଳକ ହୋଇଥିବେ, ସେତେଦିନ ପର୍ଯ୍ୟନ୍ତ ବାଣିଜ୍ୟ ଅଭିବୃଦ୍ଧିର ଆଶା ନାହିଁ । ବଡ଼ ଦୁଃଖର କଥା, ଯେଉଁମାନେ ଅର୍ଥନୀତିର ପ୍ରାଥମିକ ମୂଳନୀତି ନ ଜାଣନ୍ତି, ସେମାନଙ୍କ ହାତରେ ଟଙ୍କା ବା ପୁଞ୍ଜି । ସେମାନେ ଧନୀ, ସେମାନେ ଶିକ୍ଷାର ମୂଲ୍ୟ ବୁଝନ୍ତି ନାହିଁ ।" ଏଥିରୁ ସହଜରେ ପ୍ରମାଣିତ ହେବ, ମଧୁସୂଦନ କିପରି ସ୍ୱଦେଶିଶିଳ୍ପ ସଂଗଠନ ପାଇଁ ବ୍ୟଗ୍ର ଥିଲେ ।

ମଧୁସୂଦନ ତାହାଙ୍କ ପାରିପାର୍ଶ୍ୱିକ ଅବସ୍ଥା ଓ ଶିକ୍ଷିତମାନଙ୍କ ମନୋଭାବ ଲକ୍ଷ୍ୟ କରି ଶିଳ୍ପପ୍ରତି କିପରି ଦେଶରେ ଅନୁରାଗ ନାହିଁ, ତାହା ଦର୍ଶାଇ ଲେଖି-ଥିଲେ । "ଅଧୁନାତନ ପରିସ୍ଥିତିରେ ହାତ ଏବଂ ମସ୍ତିଷ୍କ ମଧ୍ୟରେ ପ୍ରକୃତ ସହଯୋଗ ନାହିଁ । କାରିଗର ବା ଶାରୀରିକ ପରିଶ୍ରମ କରୁଥିବା ଲୋକେ ଏକ ସ୍ୱତନ୍ତ୍ର

"ଶ୍ରେଣୀଭୁକ୍ତ ହୋଇଅଛନ୍ତି । ସମାଜ ବୁଦ୍ଧିଜୀବୀ ଏବଂ ମୂଲିଆ ଶ୍ରେଣୀରେ ବିଭକ୍ତ ହୋଇ ଯାଇଅଛି । ମାତ୍ର ମଣିଷ ସମାଜର ସ୍ଥାୟୀ ଅଗ୍ରଗତି ଏହି ଦୁଇ ଶ୍ରେଣୀର ମିଳନରେ ସମ୍ଭବପର ହେବ । କୃଷି ସହିତ ଶିଳ୍ପର ବିକାଶ ନ ହେଲେ ଦେଶ ସମୃଦ୍ଧ ହୋଇ ପାରିବ ନାହିଁ । କାରଖାନାରେ ବ୍ୟବହାର ହେବା ନିମନ୍ତେ କଞ୍ଚା ମାଲ କୃଷି ଯୋଗାଏ । କିନ୍ତୁ କୃଷି ସହିତ ଶିଳ୍ପର ଏହି ସଂଯୋଗହିଁ ସମାଜବିଜ୍ଞାନ ଗ୍ରନ୍ଥମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ଏହାକୁ "ପୂର୍ଣ୍ଣ ଶିକ୍ଷା" ବୁଝାଯାଏ । ଇଉରୋପରେ ଏହି ଶିକ୍ଷା ପାଇଁ ଚେଷ୍ଟା ହେଉଅଛି । ଏପରି ଶିକ୍ଷାରେ ବୁଦ୍ଧିଜୀବୀ ଓ ମଜୁରିଆ ମଧ୍ୟରେ ଯେ ପାର୍ଥକ୍ୟ ତାହା ଲୋପ ପାଇବ ।"

ମଧୁସୂଦନ ସ୍ୱଦେଶ ଶିଳ୍ପ ଓ ଶିଳ୍ପୀକୁଳଙ୍କ ଉନ୍ନତି ପାଇ କିପରି ବ୍ୟାକୁଳ, ତାହାର ଚିତ୍ର ସେ ନଭେ ୧୯୧୬ ରେ ହୋଇଥିବା ବିହାର ଛାତ୍ରସମ୍ମିଳନୀରେ ଦେଇଛନ୍ତି, "ବ୍ରିଟିଶ ଶାସନ ଆସିଲା ପରେ, ଆମ୍ଭେମାନେ ବିଦେଶୀ ଜିନିଷ ବ୍ୟବହାର ପାଇଁ ଏପରି ସ୍ପୃହା ପ୍ରକାଶ କଲୁଁ ଯେ ଏହି ଶିଳ୍ପିକୁଳ ବା କାରିଗରମାନେ ଅବହେଳିତ ହେଲେ । ଆମ୍ଭେମାନେ ସେମାନଙ୍କ ବର୍ତ୍ତମାନ ଦୁର୍ଦ୍ଦଶା ପାଇଁ ଦାୟୀ । ତେଣୁ ସେମାନଙ୍କ ଆର୍ଥିକ ଅବସ୍ଥା ଉନ୍ନତ କରିବା ଆମ୍ଭମାନଙ୍କ ପକ୍ଷରେ ଏକ ନ୍ୟାୟ । ଶିକ୍ଷିତ ସମାଜରେ ଏହି ସ୍ୱଦେଶୀ ଶିଳ୍ପୀ-କୁଳଙ୍କ ଅଭିବୃଦ୍ଧି ଦ୍ୱାରା କି ଆର୍ଥିକ ପରିଣତି ହେବ, ତାହା କେହି ଭାବୁ ନାହାନ୍ତି । ହୁଏ ତ ସାମାଜିକ ଗର୍ବ ଆମ୍ଭମାନଙ୍କୁ ଏ ବିଷୟରେ ଅନ୍ଧ କରି ରଖିଅଛି ।

କିନ୍ତୁ ଏହି କାରିଗରକୁଳଙ୍କ ସ୍ୱାର୍ଥରକ୍ଷା ଆମ୍ଭମାନଙ୍କ ଦେଶର ଅର୍ଥନୀତିକ ଅଗ୍ରଗତି ଦିଗରୁ ଅତି ଜରୁରୀ ଦରକାର । ଏହି କାମ ଅତିଶୀଘ୍ର ଆରମ୍ଭ ହେବା ଉଚିତ ।"

୧୯୧୬ ମସିହାରେ ବିହାର ଛାତ୍ରସମ୍ମିଳନୀରେ ମଧୁସୂଦନ ପୁଣି ଏହି ଶିଳ୍ପ-ସଂଗଠନ ବିଷୟରେ କହିଥିଲେ, "ଆଜକୁ ଅଠର ବର୍ଷ ହେବ ମୁଁ ସ୍ୱଦେଶ-ଶିଳ୍ପସଂଗଠନ କ୍ଷେତ୍ରରେ କର୍ମୀ । ସ୍ୱଦେଶୀ ଆନ୍ଦୋଳନର ସ୍ଥାୟୀ ସୃଷ୍ଟି ହେବା ପୂର୍ବରୁ ମୁଁ ଏହି କ୍ଷେତ୍ରରେ କାମ ଆରମ୍ଭ କରିଥିଲି । ମୁଁ ଜାଣେ, ମୁଁ ବିଫଳ ହୋଇଅଛି । ତଥାପି ମୁଁ ଏହି ସ୍ୱଦେଶ ଶିଳ୍ପ-ଉନ୍ନତି ପାଇଁ ପ୍ରଚେଷ୍ଟା ପରିତ୍ୟାଗ କରି ନାହିଁ । ଜାହାଜ କପ୍ତାନର ଉପଦେଶର ମୂଲ୍ୟ ହେଉଛି ସେ ଦେଖାଇ ଦେଇ ପାରନ୍ତି କେଉଁଠାରେ ପଥରଦ୍ୱାରା ତାହାଙ୍କ ଜାହାଜ ନଷ୍ଟ ହୋଇଥିଲା । ମୋର ଉପଦେଶକୁ ତାହାଠାରୁ ଅଧିକ ମୂଲ୍ୟ ଦେବା ଉଚିତ ବୋଲି ମୁଁ ଅନୁଭବ କରୁଅଛି । ଜାହାଜ ବୁଡ଼େଇଥିବା ଏହି ନାବିକର ଉପଦେଶ ଶୁଣ ।

"ଭାରତରେ ଶାରୀରିକ ଶ୍ରମ ପ୍ରତି ଯେଉଁ ତାଚ୍ଛଲ୍ୟ ଓ ଅବହେଳା ଦେଖାଯାଏ, ତାହା ଦୂର କର । ଶାରୀରିକ ପରିଶ୍ରମର ବି ମର୍ଯ୍ୟାଦା ଅଛି । ଆମ୍ଭମାନଙ୍କ ପୂର୍ବପୁରୁଷ ଆଦାମ ନିଶ୍ଚୟ ଜଣେ ମଜୁରିଆ ହୋଇଥିବ । ଯେଉଁ ହାତ ରୁଟି ବା ଭାତ ଖାଏ, ସେହି ହାତ କାହିଁକି ତାହା ଉତ୍ପାଦନ କରିବାକୁ ପରିଶ୍ରମ ନ କରିବ ?

ମଧୁସୂଦନ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ଥିଲାବେଳେ ବିହାର ଯୁବ ଅନୁଷ୍ଠାନ ସଭାରେ ୧୯୨୪ ମସିହାରେ "ଶ୍ରମମର୍ଯ୍ୟାଦା" ସମ୍ପର୍କରେ ଯେଉଁ ଅଭିଭାଷଣ ଦେଇଥିଲେ, ତହିଁରେ ସେ କହିଥିଲେ—" ପ୍ରଥମେ ମଣିଷକୁ ନିଜ ଜୀବନଧାରଣ ଏବଂ ସୁଖରେ ରହିବାପାଇଁ କାମ ଦେବା ଦରକାର । ତାହା ପରେ ନୀତି, ଧର୍ମ ବିଷୟ ତାକୁ କହି ପାର ! "

ଏହି ହେଲା ସ୍ୱଦେଶୀ ଶିଳ୍ପସଂଗଠନର ମୂଳ କାରଣ । ମଧୁସୂଦନ ସେଥିପାଇଁ ଉତ୍କଳ ତଥା ଭାରତର ଲୋକମାନଙ୍କ ଅର୍ଥନୀତିକ ପରିସ୍ଥିତିରେ ଅଗ୍ରଗତି ଆଣିବା ନିମିତ୍ତ ଯେପରି ସ୍ୱଦେଶୀ-ଶିଳ୍ପ ସଂଗଠନ ସପକ୍ଷରେ ପ୍ରଚାର ଜୀବନସାରା ଚଳାଇଥିଲେ, ସେହିପରି ନିଜେ ନାନା ଶିଳ୍ପ-ସଂଗଠନ ଆରମ୍ଭ କରି ଲୋକମାନଙ୍କୁ ଏହି କ୍ଷେତ୍ରରେ ଜୀବନ୍ତ-ଆଦର୍ଶ ମଧ୍ୟ ଦେଖାଇଥିଲେ । ଏହିଠାରେ ମଧୁସୂଦନଙ୍କର ବିଶେଷତ୍ୱ ।

# ଦଶମ ଅଧ୍ୟାୟ

## ବ୍ୟବସ୍ଥାପକ ଜୀବନ

ମଧୁସୂଦନ ପ୍ରାୟ ଆଜୀବନ ଜଣେ ବ୍ୟବସ୍ଥାପକ ଥିଲେ । ଉତ୍କଳରେ ମଧୁସୂଦନ ରାଷ୍ଟ୍ରନୀତି କ୍ଷେତ୍ରରେ ମୁକୁଟହୀନ ସମ୍ରାଟ୍ ବା ଶ୍ରେଷ୍ଠ ନେତା ଓ ଜାତୀୟ ବୀର ଥିଲେ । ତେଣୁ ଉତ୍କଳ ପକ୍ଷରୁ ସେ ବ୍ୟବସ୍ଥାପକ ସଭାରେ ସବୁ ସମୟରେ ପ୍ରତିନିଧିତ୍ୱ କରି ଆସିଥିଲେ । ସେତେବେଳେ ସରକାରଙ୍କ ସଙ୍ଗେ ସହଯୋଗ କରି କିମ୍ବା ସ୍ୱାଧୀନ ଭାବରେ ଜାତୀୟ କାର୍ଯ୍ୟ କରିବା ତାଙ୍କର ନୀତି ଥିଲା । ମଧୁସୂଦନ ଜଣେ ନରମପନ୍ଥୀ (Liberal) ଭାବରେ ଏହି ନୀତିହିଁ ଅବଲମ୍ବନ କରିଥିଲେ । ସରକାରଙ୍କର ତୀବ୍ର ସମାଲୋଚନା ଯେ ମଧୁସୂଦନ କରୁଥିଲେ, ଏହା ତାହାଙ୍କ ବ୍ୟବସ୍ଥାପକ ଗୃହରେ ପ୍ରଦତ୍ତ ବିବରଣୀରୁ ସ୍ପଷ୍ଟ ପ୍ରତୀୟମାନ । ମାତ୍ର ସେ ମହାତ୍ମା ଗାନ୍ଧୀଙ୍କ ଭଳି ଅସହଯୋଗ କିମ୍ବା ବିଦ୍ରୋହର ପଥ ବରଣ କରି ନ ଥିଲେ । ଯେତେବେଳେ ଦେଶରେ ସେହି ବିଦ୍ରୋହର ବାତାବରଣ ସୃଷ୍ଟି ହେଲା, ପଣ୍ଡିତ ଗୋପବନ୍ଧୁ ଓ ତାହାଙ୍କ ସହକର୍ମୀମାନେ ଉତ୍କଳର ଜାତୀୟ ଜୀବନକୁ ପ୍ରଭାବିତ କଲେ, ମଧୁସୂଦନ ସେତେବେଳେ ରାଷ୍ଟ୍ରନୀତିରୁ ଅପସରି ଗଲେ । ୧୮୯୬ ମସିହାରେ ପ୍ରଥମେ ସେ ବଙ୍ଗ ବ୍ୟବସ୍ଥାପକ ସଭାକୁ ସଭ୍ୟ ହୋଇ ଗଲେ । ୧୮୯୬, ୧୯୦୦, ୧୯୦୧—୨, ୧୯୦୮—୧୧ ମସିହାମାନଙ୍କରେ ସେ ବଙ୍ଗ ବ୍ୟବସ୍ଥାପକ ସଭାର ସଦସ୍ୟ ଥିଲେ । ସେତେବେଳେ ବ୍ୟବସ୍ଥାପକ ସଭାର କ୍ଷମତା ଖୁବ୍ ସୀମାବଦ୍ଧ ଥିଲା । ଏହା ଏକ ପ୍ରକାର ସରକାରଙ୍କ ପରାମର୍ଶଦାତା ସଭାଭଳି । ସରକାର ବ୍ୟବସ୍ଥା ସଭାର ମତାମତ ଗ୍ରହଣ କରିବାକୁ ବାଧ ନ ଥିଲେ କିମ୍ବା ବ୍ୟବସ୍ଥାପକସଭା ପାଖରେ ସରକାରଙ୍କର କୌଣସି ଦାୟିତ୍ୱ ନ ଥିଲା ।

**ବଙ୍ଗ ବ୍ୟବସ୍ଥାପକ ସଭାରେ କାର୍ଯ୍ୟ**—ବଙ୍ଗ ବ୍ୟବସ୍ଥାପକ ସଭାରେ ପ୍ରଦତ୍ତ ମଧୁସୂଦନଙ୍କ ବକ୍ତୃତାବଳୀ ପଢ଼ିଲେ ସହଜରେ ଜଣା ପଡ଼ିବ ଯେ, ମଧୁସୂଦନ ଦେଶର ବିଭିନ୍ନ ସମସ୍ୟା ଓ ତାହାର ସମାଧାନ ପାଇଁ କିପରି ଚିନ୍ତା କରୁଥିଲେ । ବିଶେଷତଃ ତାହାଙ୍କ ବଜେଟ ବକ୍ତୃତାଗୁଡ଼ିକ ବିଶେଷ ଉପାଦେୟ । ମଧୁସୂଦନ ସବୁବେଳେ ସଂଗଠନ ବିଭାଗରେ ବେଶୀ ଖର୍ଚ୍ଚ କରିବାକୁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ବଙ୍ଗ ବ୍ୟବସ୍ଥାପକ ସଭାରେ ଥିଲାବେଳେ ସେ ଯେଉଁ ସବୁ ଲୋକହିତକର କାର୍ଯ୍ୟ କରିଥିଲେ, ତହିଁରୁ କେତେଗୁଡ଼ିଏ ଏଠାରେ ବର୍ଣ୍ଣିତ ହେଲା ।

ଓଡ଼ିଶା ସେତେବେଳେ ସବୁ କ୍ଷେତ୍ରରେ ବିଶେଷ ଭାବରେ ଅବହେଳିତ ହୋଇ ରହୁଥିଲା । ଏହା ବଙ୍ଗଳାର ଲାଙ୍ଗୁଳରେ ଯୋଡ଼ା ହୋଇ ରହିଥିଲା, ତେଣୁ ଏହାର ସମସ୍ୟା ପ୍ରତି କେହି ବିଶେଷ ଦୃଷ୍ଟି ଦେଉ ନ ଥିଲେ । ପ୍ରଥମେ ସରକାରୀ ଚାକିରୀ ବଙ୍ଗର ଶିକ୍ଷିତ ସମ୍ପ୍ରଦାୟଙ୍କର ଏକଚାଟିଆ ଅଧିକାର ହୋଇ ରହିଥିଲା । ଓଡ଼ିଶାର ଶିକ୍ଷିତ ସମ୍ପ୍ରଦାୟ ଉଚ୍ଚ ଚାକିରୀ ପାଇଁ ଅଯୋଗ୍ୟ ବିବେଚିତ ହେଉଥିଲେ । ୧୮୯୬ ମସିହା ମାର୍ଚ୍ଚ ୨୮ ତାରିଖରେ ସେଥିପାଇଁ ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାରେ ଦାବୀ ଉପସ୍ଥାପିତ କଲେ ଯେ ଯେଉଁ ଓଡ଼ିଆ ଛାତ୍ରମାନେ ବି. ଏଲ୍. ପରୀକ୍ଷାରେ ରେଭେନ୍ସା କଲେଜରୁ ଉତ୍ତୀର୍ଣ୍ଣ ହେଉଛନ୍ତି, ସେମାନଙ୍କୁ ଓଡ଼ିଶାରେ ମୁନସଫ ହେବା ସୁବିଧା ଦେବା ଦରକାର । ଏ ବିଷୟରେ ସରକାର ମଧୁସୂଦନଙ୍କ ଦାବି ଗ୍ରହଣ କରିଥିଲେ ଏବଂ ଏହା ଫଳରେ ବିଚାର ବିଭାଗରେ ଓଡ଼ିଆ ପ୍ରଥମେ ଉଚ୍ଚ ସରକାରୀ ଚାକିରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲେ ।

ସେହି ବର୍ଷ ଅପ୍ରେଲ ୪ ତାରିଖରେ ମଧୁସୂଦନ ଦାବୀ କଲେ ଯେ ଓଡ଼ିଶାର ଲୁଣ ବିଭାଗ ମାନ୍ଦ୍ରାଜରୁ ବଙ୍ଗଳାକୁ ଆସିବା ଉଚିତ । ମାନ୍ଦ୍ରାଜରେ ଏହି ବିଭାଗ ରହିବାରୁ ଓଡ଼ିଶାର ଲୁଣ ବାଣିଜ୍ୟ ପ୍ରତି ଏହି ବିଭାଗ ବିଶେଷ ଦୃଷ୍ଟି ଦେଉ ନାହାନ୍ତି ଏବଂ ଏହାର ଫଳରେ ଓଡ଼ିଶାର ଲୁଣ ବାଣିଜ୍ୟର କ୍ଷତି ହେଉଅଛି ।

ଓଡ଼ିଶା ବ୍ରିଟିଶ ଶାସନାଧୀନରେ ଖଣ୍ଡ ବିଖଣ୍ଡ ହୋଇ ରହିଥିବାରୁ ଓଡ଼ିଶାରେ ଶିକ୍ଷାବିଭାଗର ବିଶେଷ କୌଣସି ଶିଳ୍ପ କିମ୍ବା କୃଷି ଅନୁଷ୍ଠାନ ନ ଥିଲା । କୃଷି କଲେଜ ସ୍ଥାପନ ବିଷୟ ବଙ୍ଗ ବ୍ୟବସ୍ଥାପକ ସଭାରେ ଉପସ୍ଥାପିତ ହେଲାବେଳେ ମଧୁସୂଦନ ଦାବୀ କଲେ ଯେ ଶିବପୁର ଅପେକ୍ଷା ଓଡ଼ିଶାରେ କୃଷି କଲେଜ ହେବା ବିଶେଷ ଯୁକ୍ତିଯୁକ୍ତ । ଓଡ଼ିଶା କୃଷିପ୍ରଧାନ ଦେଶ ହୋଇ ଥିବାରୁ ଓଡ଼ିଶାରେ କୃଷି କଲେଜ ହେଲେ ଛାତ୍ରମାନେ ତଥା ଦେଶବାସୀ କୃଷି ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି ଏବଂ ଶିକ୍ଷା ପାଇବାକୁ ଯଥେଷ୍ଟ ସୁବିଧା ଓ ସୁଯୋଗ ପାଇବେ । ଏ ସମ୍ପର୍କରେ ମଧୁସୂଦନଙ୍କର ଆପତ୍ତି ଓ ଦାବୀ ଥିଲା ଯେ ପ୍ରଦେଶର ପ୍ରାଥମିକ ବିଦ୍ୟାଳୟମାନଙ୍କରେ କୃଷି-ଶିକ୍ଷା ଦିଆଯିବା ଉଚିତ ।

ସେହି ବର୍ଷ ଅଗଷ୍ଟ ୧ ତାରିଖରେ ୧୮୯୪ ମସିହା କଟକ ମ୍ୟୁନିସିପାଲିଟି ଆଇନ ସଂଶୋଧନ ବିଲର ଖୁବ୍ ସମାଲୋଚନା କରିଥିଲେ; ମହମ୍ମଦୀୟ ଧର୍ମଯାଜୀ ବିଲ୍ ବିଷୟରେ ମଧ୍ୟ ତାହାଙ୍କ ମତ ପ୍ରକାଶ କରିଥିଲେ ।

ସେହି ବର୍ଷ ଜୁଲାଇ ମାସରେ ତାଙ୍କର ଓଡ଼ିଶାର କେତେକ ସ୍କୁଲ୍, କଲେଜ ସମ୍ପର୍କୀୟ ଆଲୋଚନାରୁ ସ୍ପଷ୍ଟ ଜଣାପଡ଼େ ଯେ, ସେତେବେଳେ

ଓଡ଼ିଶାରେ ଶିକ୍ଷା ବିଭାଗର ଅବସ୍ଥା କ'ଣ ଥିଲା ? ଜୁଲାଇ ୧୮ ତାରିଖରେ ସେ କଟକ ରେଭେନ୍‌ସା କଲେଜିଏଟ ସ୍କୁଲ ବିଷୟରେ ବହୁ ପ୍ରଶ୍ନ ବ୍ୟବସ୍ଥାପକ ସଭାରେ ପଚାରିଥିଲେ । ସେତେବେଳେ ଏହି ସ୍କୁଲ ଓ ରେଭେନ୍‌ସା କଲେଜ ବିଶ୍ୱ-ଭାରତୀ (University) ପରୀକ୍ଷାରେ ସୁଫଳ ଦେଖାଇ ପାରି ନ ଥିଲା ବୋଲି ତତ୍କାଳୀନ କମିଶନର ମିଷ୍ଟର ଏଚ୍. ଜି. କୁକ୍ ତାହାଙ୍କ ଶାସନ ମନ୍ତବ୍ୟରେ ଉପରୋକ୍ତ ଶିକ୍ଷାନୁଷ୍ଠାନ ସମ୍ପର୍କରେ ଅସନ୍ତୋଷ ମତ ପ୍ରକାଶ କରିଥିଲେ । ମଧୁସୂଦନ ବ୍ୟବସ୍ଥାପକ ସଭାରେ ନାନା ପ୍ରଶ୍ନ ଛଳରେ ଦେଖାଇ ଦେଇଥିଲେ ଯେ ସେହି ଅନୁଷ୍ଠାନମାନଙ୍କରେ କପରି ଶିକ୍ଷା ଓ ନିୟମ ପ୍ରତିପାଳିତ ହେଉଅଛି ।

ବଡ଼ାମ୍ବା ରାଜକୁମାର ଛୁଟି ନେଇ ବେଶୀଦିନ ଘରେ ରହିଯିବାରୁ ତାଙ୍କୁ ଦୈନିକ ଛଅଣା କରି ଜରିମାନା ହୋଇଥିଲା । କିନ୍ତୁ ଛୁଟି ପରେ କେହି ଘରେ ରହିଲେ, ତାହାକୁ ମାତ୍ର ଦୁଇଅଣା ଜୋରିମାନା ହେବା ନିୟମ ଥିଲା । ଏହା-ପରେ ସେହି ରାଜକୁମାରଙ୍କୁ ମଧ୍ୟ ଡ୍ରିଲ କ୍ଲାସରେ ୧୫ ଦିନ ଦୈନିକ ଡ୍ରିଲ କରିବାକୁ ପ୍ରିନ୍‌ସପାଲ ଆଦେଶ ଦେଇଥିଲେ । ତେଣୁ ତତ୍କାଳୀନ ସାହେବ ପ୍ରିନ୍‌ସିପାଲଙ୍କ ମନମୁଖୀ କାର୍ଯ୍ୟ ବିରୁଦ୍ଧରେ ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାରେ ତୀବ୍ର ପ୍ରତିବାଦ କରିଥିଲେ ।

ସରକାରଙ୍କ ଛୋଟିଆ କିରାଣୀ ଚାକରମାନଙ୍କ ଦରମା ବଢ଼ାଇବା ପାଇଁ ମଧ୍ୟ ସେ ଦାବୀ କରିଥିଲେ ।

୧୮୯୭ ମସିହାରେ ଛୋଟନାଗପୁର ପ୍ରଜାସଭା ଆଇନ ବଙ୍ଗ ବ୍ୟବସ୍ଥାପକ ସଭାରେ ଆଲୋଚିତ ହେଲାବେଳେ, ଏହି ବିଲର ଛାପା କୌଣସି କୌଣସି ସଭ୍ୟଙ୍କୁ ଆଗରୁ ମିଳି ନ ଥିଲା । ମିଷ୍ଟର ଗ୍ରୀମ୍‌ଲେ ସାହେବ ଏହି ବିଲ୍ ଛାପା କରିଥିଲେ । ମଧୁସୂଦନ ସଭାରେ ଏହି ବିଷୟ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ପ୍ରସଙ୍ଗ ମଧ୍ୟ ବ୍ୟବସ୍ଥାପକ ସଭାରେ ଆଲୋଚିତ ହୋଇଥିଲା । ମଧୁସୂଦନ ସେହି ସମୟରେ କହିଥିଲେ, "ବ୍ୟବସ୍ଥାପକ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁ ବିଷୟ ଜାଣିବା ଉଚିତ ।" ମଧୁସୂଦନ ସେହି ବର୍ଷ ଓଡ଼ିଶା ଉଭଜନ ଓ ଛୋଟନାଗପୁର ତରଫରୁ ବଙ୍ଗ ବ୍ୟବସ୍ଥାପକ ସଭାରେ ସ୍ଥାନ ପାଇଥିଲେ ।

୧୯୦୧ ମସିହାରେ ଓଡ଼ିଆମାନେ ବଙ୍ଗ ସରକାରୀ ବିଭାଗରେ କପରି ସରକାରୀ କାର୍ଯ୍ୟରେ ଅବହେଳିତ ହେଉଅଛନ୍ତି, ଏ ସମ୍ବନ୍ଧରେ ମଧୁସୂଦନ ବ୍ୟବସ୍ଥାପକ ସଭାରେ ପ୍ରଶ୍ନ ପଚାରିଥିଲେ । ସେହିଦିନ ସେ ଆହୁରି ଏକ ପ୍ରଶ

ରାସ୍ତା ଦେଖାଇ-ଦେଉଥିଲେ, ତତ୍କାଳୀନ ସରକାରୀ ଦଳ ଓଡ଼ିଶାରେ କପଟ ଶାସନତନ୍ତ୍ରରେ ଲୁଣ୍ଠାମଣା କରୁଥିଲା । ଓଡ଼ିଶା ଡିଭିଜନର ତତ୍କାଳୀନ କମିଶନର ରଘୁଡ଼, ଚଉଷଠିପଡ଼ା ଓ ବଲରାମପୁର ଜମିଦାରମାନଙ୍କୁ ବନ୍ଦୋବସ୍ତ ସମ୍ପର୍କୀୟ କାଗଜପତ୍ର ଦେଖିବାକୁ ଅନୁମତି ଦେଇ ନ ଥିଲେ । ସେମାନଙ୍କ ଉପରେ ଅଯଥା ଖଜଣା ବୃଦ୍ଧି କରାଯାଇଥିଲା । ସେମାନେ ଏହି ଆଦେଶ ବିରୁଦ୍ଧରେ ଭାରତ ସରକାରଙ୍କଠାରେ ଆପତ୍ତି କରିବାକୁ ଚେଷ୍ଟା କରୁଥିଲେ, ତେଣୁ କମିଶନର ମହୋଦୟ କାଗଜପତ୍ର ଦେଖାଇବାକୁ ଅନିଚ୍ଛୁକ ଥିଲେ । ମଧୁସୂଦନ ଏହି ଅନ୍ୟାୟର ତୀବ୍ର ପ୍ରତିବାଦ ବ୍ୟବସ୍ଥାପକ ସଭାରେ କରିଥିଲେ ଏବଂ ମଧୁସୂଦନଙ୍କ ସମାଲୋଚନା ଯୋଗୁଁ ଉପରୋକ୍ତ ଜମିଦାରମାନେ ବନ୍ଦୋବସ୍ତ ସଂକ୍ରାନ୍ତୀୟ କାଗଜପତ୍ର ଅବାଧରେ ଦେଖିବାକୁ ସୁବିଧା ପାଇଥିଲେ ।

୧୯୦୯ ମସିହାରେ ଓଡ଼ିଆମାନଙ୍କୁ ସବ-ଡେପୁଟି ଚାକିରୀ ଦେବାରେ ଯେଉଁ ପକ୍ଷପାତ ନୀତି ଅବଲମ୍ବିତ ହେଉଥିଲା, ତାହାର ଆଲୋଚନା ସେ ବ୍ୟବସ୍ଥାପକ ସଭାରେ କରିଥିଲେ ଏବଂ ପୁରୀ ଯାତ୍ରୀମାନଙ୍କୁ ରଥଯାତ୍ରା ସମୟରେ ମାଲଗାଡ଼ିରେ ନେଉଥିବାରୁ ଏହାର ତୀବ୍ର ପ୍ରତିବାଦ କରିଥିଲେ ମଧୁସୂଦନଙ୍କ ଦାବୀ ଅନୁସାରେ ସେହି ବର୍ଷ ପ୍ଲେଗ ସଂକ୍ରାମକ ରୋଗ ସମୟରେ ଖଡ଼୍ଗପୁରଠାରେ ଦୁଇଜଣ ଡାକ୍ତର ରହି ଯାତ୍ରୀମାନଙ୍କୁ ପରୀକ୍ଷା କରିବେ ବୋଲି ସ୍ଥିର ହୋଇଥିଲା । ରେଲରେ ଏହି ଡାକ୍ତର ପରୀକ୍ଷା ପ୍ରଥମେହିଁ ମଧୁସୂଦନଙ୍କ ପ୍ରତିବାଦ ଫଳରୁ ପ୍ରବର୍ତ୍ତିତ ହୋଇଥିଲା । ସେହି ବର୍ଷ ତଉଜି ଖଜଣା କିସ୍ତିରେ ଦାଖଲ ଦେଇ ନ ଥିବାରୁ କଟକ କଲେକ୍ଟର କୋଡ଼ିଏ ଟଙ୍କା ଲେଖାଏଁ ଅର୍ଥ ଦଣ୍ଡ ନେଉଥିଲେ । କିନ୍ତୁ ମଧୁସୂଦନ ଏହାର ପ୍ରତିବାଦ କରି ୧୮୪୧ ମସିହା ୧୨ ଆକ୍ଟ ବା ଆଇନର ୨ୟ ଧାରା ଅନୁସାରେ ଉପସ୍ଥାପିତ କରିଥିଲେ ଯେ ଜମିଦାରୀ ଖଜଣାର ବାକି ଉପରେ କୌଣସି ସୁଧ କିମ୍ବା ଅର୍ଥଦଣ୍ଡ ଦାବୀ କରାଯାଇ ନ ପାରେ ।

ସେ ରେଭେନ୍ସା କଲେଜରେ ଇତିହାସ ବିଭାଗ ସ୍ଥାପନ ପାଇଁ ଆନ୍ଦୋଳନ କରି ସଫଳ ହୋଇଥିଲେ ।

ଏହି ସମୟରେ କପଟ ନ୍ୟାୟ ଶାସନ ସାନ୍ତାଳ ପ୍ରଗଣାରେ ଚଳୁଥିଲା, ତାହାର ଏକ ନମୁନା ମଧୁସୂଦନଙ୍କ ବ୍ୟବସ୍ଥାପକ ସଭାର ସେହି ସମ୍ପର୍କୀୟ ପ୍ରଶ୍ନରୁ ସ୍ପଷ୍ଟ ସୂଚନା ମିଳେ ।

ସାନ୍ତାଳ ପ୍ରଗଣାର ଆସାମୀମାନେ ଓକିଲ ନିଯୁକ୍ତ କରିବା ସୁବିଧା ପାଉ ନ ଥିଲେ । ସେହି ସମ୍ପର୍କରେ ଦାବୀ କରି ମଧୁସୂଦନ କହିଥିଲେ,—

"ମୁଁ ଗୋଟିଏ ମୋକଦ୍ଦମାର ଘଟଣା ଶୁଣିଛି ! ଯେଉଁଠି ସାନ୍ତାଳ ପ୍ରଗଣାରେ ମୋକଦ୍ଦମା ବିଚାର କରିବାକୁ ମାଜିଷ୍ଟ୍ରେଟ ଏକ ଅଦ୍ଭୁତ ଆଇନଗତ ମୀମାଂସାରେ ପହଞ୍ଚି ଅଛନ୍ତି । ଗୋଟିଏ ଲୋକ ବିରୁଦ୍ଧରେ ମୋକଦ୍ଦମା ଚାଲିଥିଲା ବେଳେ ସେ ମରିଗଲା । ପୁଅକୁ ବାପର ଦୋଷ ପାଇଁ ଦୋଷୀ କରାଗଲା । ମାଜିଷ୍ଟ୍ରେଟ ବିଚାର କଲେ ଯେ ଯଦି ପୁଅ ବାପ ସମ୍ପତ୍ତିର ମାଲିକ ହେବ, ତେବେ ବାପ ଦୋଷ ପାଇଁ ପୁଅ କାହିଁକି ଦୋଷୀ ନ ହେବ ? ଏହା ପ୍ରାୟ ବର୍ବର କରୁଥିବା ବିଚାରପତିଙ୍କର ଅତ୍ୟନ୍ତ ବିଚାରଶୀଳ ମତ ?" ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲାବେଳେ ସାର୍ ସୁରେନ୍ଦ୍ରନାଥ, ଆଶୁତୋଷ ପ୍ରଭୃତି ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ମଧୁସୁଦନଙ୍କ ବାଗ୍ମିତା, ତଥ୍ୟପୂର୍ଣ୍ଣ ଆଲୋଚନାରେ ସମସ୍ତ ବ୍ୟବସ୍ଥାପକ ମୁଗ୍ଧ ହୋଇଥିଲେ । ସରକାର ମଧ୍ୟ ମଧୁସୂଦନଙ୍କ ସମାଲୋଚନା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ ।

'ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭା—୧୯୧୨ ମସିହାରେ ବିହାର ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲା । ତେଣୁ ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭା ଛାଡ଼ିଲେ । ୧୯୧୩ ରୁ ୧୯୨୩ ମସିହା ଯାଏ ମଧୁସୂଦନ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ଥିଲେ । ୧୯୧୩ ମସିହାରେ ତତ୍କାଳୀନ ଭାଇସରାୟଙ୍କ ଜୀବନ ନେବା ଲାଗି ଚେଷ୍ଟା କରାଯାଇଥିଲା । ସେହି ହିଂସାତ୍ମକ ରାଜନୈତିକ ହତ୍ୟାକାଣ୍ଡ ଚେଷ୍ଟାର ଘୋର ପ୍ରତିବାଦ କରିଥିଲେ । ସେଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ମଧୁସୂଦନ ରାଜନୈତିକ ହତ୍ୟା କିମ୍ବା ହିଂସାତ୍ମକ କାର୍ଯ୍ୟ ସମର୍ଥନ କରୁ ନ ଥିଲେ ।

ସେ ସେବର୍ଷ ବ୍ୟବସ୍ଥା ସଭାର ଦାୟିତ୍ୱ ସମ୍ପର୍କରେ କହିଥିଲେ ।

"ବ୍ୟବସ୍ଥା ସଭା ଯଥାର୍ଥରେ ଗୋଟିଏ ନେହି (anvil) ସଙ୍ଗେ ତୁଳନୀୟ । ଏଠାରେ ଆପଣମାନେ ଗୋଟିଏ ରକମ ଆଇନ ପ୍ରଣୟନ କରନ୍ତି, ରୂପ ଦିଅନ୍ତି । ଆପଣମାନେ ଭାବନ୍ତି ଯେ ଗୋଟିଏ ରକମ କାମ କରିବାକୁ ଏହା ଏକ ଦରକାରୀ ଯନ୍ତ୍ର ସ୍ୱରୂପ ହେବ । ଉଚ୍ଚ ବିଚାରାଳୟ ମତ ବ୍ୟକ୍ତ କରିବ ଯେ ଏହି ଆଇନ ସେହି କାମ ପାଇଁ ଦରକାରୀ କି ନା ? ତାପରେ ଏହାକୁ ପୁଣି ନୂଆ ରୂପ ଦେବାର କାମ ବ୍ୟବସ୍ଥାପକ ସଭା ହାତରେ । ତେଣୁ ପ୍ରକୃତରେ ବ୍ୟବସ୍ଥାପକ ସଭା ଓ ଉଚ୍ଚ-ବିଚାରାଳୟ (Highest Tribunal) ସହିତ ଏକ ସମ୍ପର୍କ ଅଛି । ଏହାକୁ ମୁଁ ଗୋଟିଏ ଉପମାରେ ପ୍ରକାଶ କରି ପାରେ । ଦେହ ଭିତରେ କେତେ ଯନ୍ତ୍ର ଅଛି, ଯାହା ରକ୍ତପରିଷ୍କାର କରେ ଏବଂ ସମସ୍ତ ବିଷାକ୍ତ ଓ ଦୂଷିତ ଜିନିଷ ରକ୍ତରୁ ଅଲଗା କରିଦିଏ ତାପରେ ପୁଣି ହୃତ୍‌ପିଣ୍ଡ ନିକଟକୁ ପଠାଇ ଦିଏ; ଯେଉଁଠି ପୁଣି ସେ ତାହାର କାମ କରି ପାରେ ।"

୧୯୧୪ ମସିହାରେ କଟକରେ ଇଞ୍ଜିନିୟରିଂ ସ୍କୁଲ ବସିବା ପାଇଁ ମଧୁସୂଦନ ଦାବୀ ଉପସ୍ଥାପନ କରିଥିଲେ । ଜିଲ୍ଲା ଏବଂ ଲୋକାଲବୋର୍ଡ଼ ମାନଙ୍କରେ ନିର୍ବାଚନପ୍ରଥା ଚଳିବା ପାଇଁ ମଧ୍ୟ ଅନୁକୂଳ ମତ ପ୍ରକାଶ କରିଥିଲେ । ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରେ ମଧୁସୂଦନ ତାଙ୍କର ଅନେକ ଶିଷ୍ୟମାନଙ୍କୁ ସଦସ୍ୟ-ରୂପେ ପାଇଥିଲେ । ପଣ୍ଡିତ ଗୋପବନ୍ଧୁ, ବ୍ରଜସୁନ୍ଦର ବାବୁ ପ୍ରଭୃତି ସେତେ-ବେଳେ ସଦସ୍ୟ ଥିଲେ । ମଧୁସୂଦନ ୧୯୧୩ ମସିହାରେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭା ତରଫରୁ ଇମ୍ପିରିୟାଲ ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ସଭ୍ୟ ହୋଇ ଯାଇଥିଲେ ।

ମଧୁସୂଦନ ବ୍ୟବସ୍ଥାପକ ଭାବରେ "ସାପୁଆ କେଳା" (Snake Charmer) ଥିଲେ ବୋଲି ସେ ସମୟରେ ଗୋଟିଏ ଖ୍ୟାତି ଅର୍ଜନ କରିଥିଲେ । ମଧୁସୂଦନ ସରକାରୀ କଳର ତୀବ୍ର ସମାଲୋଚକ ଥିଲେ ମଧ୍ୟ, ସେ ସରକାରଙ୍କୁ ଏପରି ମଙ୍ଗାଇ ନିଜ ମତକୁ ଆଣି ପାରୁଥିଲେ ଯେ ସେଥିପାଇଁ ତାହାଙ୍କୁ "ସାପୁଆ-କେଳା" (Snake-Charmer) କୁହାଯାଉଥିଲା । ମଧୁସୂଦନ ଯେପରି ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ ବିଶେଷ ଭାବରେ ସମସ୍ତ ଆଲୋଚନା ଓ ଆଇନ ପ୍ରଣୟନରେ ଭାଗ ନେଉଥିଲେ, ଦିଲ୍ଲୀରେ ମଧ୍ୟ ସେ ଉଚ୍ଚକେନ୍ଦ୍ର ବ୍ୟବସ୍ଥାପକ ସଭାରେ ସେହିପରି ଖୁବ୍ ପାରଦର୍ଶୀ ଓ ପ୍ରଭାବଶାଳୀ ବ୍ୟବସ୍ଥାପକ ରୂପେ କାର୍ଯ୍ୟ କରୁଥିଲେ । ତତ୍କାଳୀନ ବ୍ୟବସ୍ଥାପକ ସଭାର ବିବରଣୀ ଦେଖିଲେ ଏହାର ସ୍ପଷ୍ଟ ପ୍ରମାଣ ମିଳେ ।

ମଧୁସୂଦନ ଖବରକାଗଜର ସ୍ୱାଧୀନ ମତ ଉପରେ ଅଯଥା ହସ୍ତକ୍ଷେପ ବିରୁଦ୍ଧରେ ସରକାରୀ ନୀତିର ତୀବ୍ର ସମାଲୋଚନା କରିଥିଲେ । ଇମ୍ପିରିୟାଲ କାଉନ୍‌ସିଲରେ ୧୯୧୦ ମସିହାରେ ମୁଦ୍ରାଯନ୍ତ୍ର ଓ ସମ୍ବାଦପତ୍ର ବିଷୟକ ବ୍ୟବସ୍ଥାର ସଂଶୋଧନ ପାଇଁ ପ୍ରସ୍ତାବ ଆସିଲାବେଳେ ସେ ସମ୍ବାଦପତ୍ର ମାନଙ୍କର ସ୍ୱାଧୀନତା ସପକ୍ଷରେ ନିଜର ମତ ପ୍ରକାଶ କରିଥିଲେ । ସେହିପରି ଭାରତୀୟ ଦଣ୍ଡବିଧି ଆଇନ (Indian Penal Code) ଓ ଫୌଜଦାରୀ କାର୍ଯ୍ୟବିଧି ଆଇନ (Criminal Procedure Code) ସଂଶୋଧନ ବିଲମାନଙ୍କ ସମ୍ପର୍କରେ ସମାଜରେ କିପରି ନାରୀମାନେ ବେଶ୍ୟାବୃତ୍ତି କରୁଅଛନ୍ତି ଓ ନାରୀମାନଙ୍କୁ କିପରି ଦୁର୍ବୃତ୍ତମାନେ ଏହି ମନ୍ଦକାର୍ଯ୍ୟ ପାଇଁ ବ୍ୟବହାର କରୁଛନ୍ତି, ସେ ସମ୍ପର୍କରେ ସେ ଧର୍ମ ଓ ନୀତିର ପାର୍ଥକ୍ୟ ଦେଖାଇ ଏକ ଚମତ୍କାର ବକ୍ତୃତା ଦେଇଥିଲେ ।

ସେ କହିଥିଲେ, "ଏହି ବିଷୟ ଲାଗି ସାମାଜିକ ଓ ଆଇନଗତ ବାଧା ଅଛି । ନୀତି (Morality) ଶବ୍ଦର ସଂଜ୍ଞା ଆଜିଯାଏ ଦିଆଯାଇ ନାହିଁ ।

"ଏହାର ଏକ ସଂଜ୍ଞା ଦେବା ମଧ୍ୟ କଠିନ । ସବୁ ସମୟରେ ଓ ସବୁ ସମ୍ପ୍ରଦାୟର ଗ୍ରହଣଯୋଗ୍ୟ 'ନୀତି' ର ଏକ ସଂଜ୍ଞା ଦେବା କଠିନ । ଏ ଦେଶରେ 'ନୀତି' ଏବଂ 'ଧର୍ମ' ମଧ୍ୟରେ ଏକ ସୀମାରେଖା ଟାଣିବା କଠିନ । ହିନ୍ଦୁ ଧର୍ମପ୍ରାଣ । ସେ ଧର୍ମଭାବରେ ଅନୁପ୍ରାଣିତ ହୋଇ ଖାଏ, ପିଏ ଏବଂ ଗାଧୁଆଏ । ଏପରି କି ହିନ୍ଦୁ ଧର୍ମସ୍ୱପ୍ନ ଦେଖେ । ତେଣୁ ନୀତି ଓ ଧର୍ମ ମଧ୍ୟରେ ସୀମା ରେଖା ସରକାର ଠିକ୍ କରିଦେବା ଉଚିତ ।

"କିଛିଦିନ ତଳେ ମୁଁ କଲିକତାରେ ଦେଖିଥିଲି ଯେ, ଜଣେ ଇଉରୋପୀୟ ମହିଳା ଗୋଟିଏ ଆଶ୍ରମ ଖୋଲିଥିଲେ । ତହିଁରେ ବେଶ୍ୟାବୃତ୍ତିରୁ କ୍ଷାନ୍ତ କରାଯାଇ ନାରୀମାନଙ୍କୁ ଉଦ୍ଧାର କରାଯାଇଥିଲା । ସେଠାରେ ସେମାନଙ୍କୁ ଦରକାରୀ ଶିଳ୍ପଶିକ୍ଷା ଦିଆଯାଉଥିଲା । ତଦ୍ଦ୍ୱାରା ସେମାନେ ସେମାନଙ୍କ ଜୀବନ ନିର୍ବାହ ପାଇଁ ଉପାୟ ପାଇ ପରିଥିଲେ । ଏହିପରି ଆଶ୍ରମସ୍ଥାପନ ଦ୍ୱାରା ଏହି ସାମାଜିକ କଳଙ୍କରୁ ସମାଜକୁ ତ୍ରାଣ କରାଯାଇ-ପାରେ । କେବଳ ଭାରତ ନୁହେ, ସାରା ପୃଥିବୀର ବହୁଦେଶରେ ଏହି ସାମାଜିକ କଳଙ୍କ ଅଛି । ଏହି କଳଙ୍କ ଦୂର କରିବା ସର୍ବଥା ପ୍ରୟୋଜନ । କେବଳ ସେହି ବାଳିକାମାନଙ୍କୁ ରକ୍ଷା କରିବାକୁ ନୁହେଁ, ବରଂ ସେହିପରି ମନ୍ଦପ୍ରକୃତିର ନାରୀଙ୍କ କବଳରୁ ସମାଜକୁ ରକ୍ଷା କରିବା ମଧ୍ୟ ଦରକାର ।"

ମଧୁସୂଦନ ବ୍ୟବସ୍ଥାପକ ଭାବରେ ଯେଉଁ ବକ୍ତୃତା ଦେଇଥିଲେ, ତାହା ବଡ଼ ଚିତ୍ତାକର୍ଷକ ହେଉଥିଲା । ତାଙ୍କ ବକ୍ତୃତାରେ କଳ୍ପନା, ଚିନ୍ତା, ଭାବ ଏବଂ ସ୍ପନ୍ଦନ ଏପରି ଗୁନ୍ଥିହୋଇ ରହିଥିଲା ଯେ, ଏହା ମଧ୍ୟ ସାହିତ୍ୟରୂପେ ପଢାଯାଇ ପାରେ । ସେ ରାଷ୍ଟ୍ରନୀତି କିମ୍ବା ଅର୍ଥନୀତି ଭଳି ନୀରସ ବିଷୟକୁ ମଧ୍ୟ ସରସ କରି ପାରୁଥିଲେ । ମଧୁସୂଦନ ସେତେବେଳେ ବ୍ୟବସ୍ଥାପକ ଭାବରେ ମଧ୍ୟ ସରକାରଙ୍କର ନିର୍ମମ ସମାଲୋଚକ ଥିଲେ । ସେ ସର୍ବଦା ନିର୍ଭୀକ ଭାବରେ ସତ୍ୟର ପୂଜକ ଥିଲେ ଏବଂ ଲୋକମାନଙ୍କ ଯଥାର୍ଥ ଦାବୀ ପାଇଁ ବ୍ୟବସ୍ଥାପକ ସଭାରେ ଲଢ଼େଇ କରୁଥିଲେ । ମଧୁସୂଦନ କିପରି ବାସ୍ତବବାଦୀ ଥିଲେ, ତାହା ତାହାଙ୍କ ବକ୍ତୃତାବଳୀରୁ ଯଥେଷ୍ଟ ପ୍ରମାଣ ମିଳେ ।

ସେହି ସମୟରେ ସରକାର କୃଷିବିଭାଗ ଭଳି ଏକ ଦାୟିତ୍ୱପୂର୍ଣ୍ଣ ଗଠନମୂଳକ ବିଭାଗକୁ ଜିଲ୍ଲାବୋର୍ଡ ହାତକୁ ନେଇ, ତାହାଙ୍କ ଦାୟିତ୍ୱ ଏଡ଼ାଇ ନେବାକୁ ବସିଥିଲେ । ଏ ସମ୍ପର୍କରେ ମଧୁସୂଦନ କଣ କହିଥିଲେ, ତଳେ ବର୍ଣ୍ଣିତ ହେଉଅଛି:—

"ମୁଁ କୃଷି ବିଷୟରେ କିଛି କହିବାକୁ ଇଚ୍ଛା କରୁ ନ ଥିଲି, କାରଣ କୃଷି ବିଷୟରେ ମୋର ଅନୁଭୂତ ଓ ମତ ଅଛି । ମୁଁ କେତେ ହଜାର ଟଙ୍କା ଖର୍ଚ୍ଚ କରି ଏତକ ଶିଖିଅଛି । ଖାଲି ମୋତେ ଯେ ଉପଦେଶ ଦେବାକୁ ଚାହୁଁଛି, ମୁଁ ତାହା-ଗ୍ରହଣ କରିବାକୁ ନାରାଜ । ବିଶେଷତଃ ରେଭିନ୍ୟୁ ବୋର୍ଡର ସଭ୍ୟ କହୁ ଛନ୍ତି ଯେ ଏ କାମ ଜିଲ୍ଲାବୋର୍ଡ଼ କରିବ । ମୁଁ ଚାହେଁ ନା ଯେ ଜଣଙ୍କ ଇଚ୍ଛା ବିରୁଦ୍ଧରେ ତାକୁ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ବାଧ୍ୟ କରାଯିବ ।

"ମୁଁ ଏକ ସମୟରେ ଗୋଟିଏ ପରୀକ୍ଷା ଆରମ୍ଭ କରିଥିଲି । ଯେତେବେଳେ ସରକାର ବୃତ୍ତି ଦେଇ ପିଲାଙ୍କୁ କୃଷିବିଦ୍ୟା ପଢ଼ାଇବାକୁ ପଠାଉଥିଲେ ଏବଂ ଯେତେବେଳେ ସେମାନେ ଆସିଲେ, ସେଥିରୁ କେତେକ ଡେପୁଟି ମାଜିଷ୍ଟ୍ରେଟ ଏବଂ କେତେକ ସେସନ୍ସ ଜଜ୍ ହେଲେ । ସେମାନେ କୃଷି ବିଷୟରେ ଉତ୍ସାହ ଦେବାପାଇଁ ପଠାଯାଇଥିଲେ ଏବଂ କୃଷିକୁ ଏକ ଲାଭଜନକ ବ୍ୟବସାୟ କରିବେ ବୋଲି ଇଚ୍ଛା କରୁଥିଲେ । କିନ୍ତୁ ସେମାନେ ଲୋକଙ୍କୁ ଫାଶି ଦେବା ଏବଂ ଜେଲକୁ ପଠାଇବାରେ ନିଯୁକ୍ତ ହେଲେ । ମୋର କେତେକ ବନ୍ଧୁ ମନେ ରଖିଥିବେ ଯେ ମିଷ୍ଟର ଏମ୍. ସି. ସେନ ଏବଂ ଡକ୍ଟର ଡି. ଏଲ୍ ରାୟ ଭଲ କବି ହୋଇ ପାରିଥିଲେ । ପ୍ରଥମେ ମୁଁ ଦୁଇଶ ମାଣ ଜମି ନେଇ ପରୀକ୍ଷା ଆରମ୍ଭ କଲି । ତାପରେ ମୁଁ କୃଷିବିଭାଗରେ ଥିବା ମୋର ବନ୍ଧୁଙ୍କ ପାଖକୁ ଗଲି । ମୁଁ ତାଙ୍କର ଉପଦେଶ ଚାହିଁଲି । ସେ ଏହା ନ କରିବାକୁ ମୋତେ କହିଲେ । ଏହା କେବେ ଲାଭଜନକ ହେବ ନାହିଁ । ତାପରେ ମୁଁ କହିଲି, ମୁଁ ପରଖ କରିବାକୁ ଚାହେଁ, ମୋତେ ତମର ସହକାରୀ ମଧ୍ୟରୁ ଭଲ ଲୋକ ଦିଅ, ଯେ ମୋତେ ସାହାଯ୍ୟ କରିବ । ଏବଂ ମୁଁ କହିଲି ଯେ ତୁମରି ବାଲକୁ ମୁଁ କେବଳ ସମ୍ମାନ ଦେଖାଇବି । ଏଠାରେ ଶହେଶ ଏକର ଯାଏ ଜମି ଅଛି, ତୁମେ ଯେଉଁ ଜମି ଇଚ୍ଛାକରି ବାଛ । ତାପରେ ସେ ଏକ ଜମି ବାଛିଲେ ଏବଂ କହିଲେ ଯେ ଏହା ଆଖୁଚାଷ ପାଇଁ ଭଲ ଜମି । କିନ୍ତୁ ମୋର ମାଳୀ କହିଲାଯେ ସେ ଜମିରେ ଆଦୌ ଆଖୁ ବଞ୍ଚିବ ନାହିଁ । କିନ୍ତୁ ମୁଁ ତାଙ୍କୁ ମୋ ଜମିରେ ଫସଲ କରିବାକୁ ଅନୁମତି ଦେଲି ଏବଂ ସେ ପ୍ରାୟ ଦୁଇଶହ ମୋଠା ଯାଏ ଆଖୁ ଲଗାଇଲେ । କିନ୍ତୁ କେବଳ ତିନୋଟି ମୋଠା ଆଖୁ ବଞ୍ଚିଲା । ମୋର ଖର୍ଚ୍ଚ କେବଳ ଦୁଇହଜାର ଟଙ୍କାରୁ କିଛି ବେଶୀ ହୋଇଥିଲା । ଜମିରୁ ନଅ କିମ୍ବା ଏଗାର ଟଙ୍କା ମିଳିଥିଲା ।

"ମୁଁ ଗୋଟିଏ କଥା ବୁଝିପାରୁ ନାହିଁ । ସେଥିପାଇଁ ବୋଧହୁଏ ବ୍ରିଟିଶ ସରକାର ଭାରତୀୟ ଲୋକଙ୍କୁ କୃଷି ବା କୃଷିର ଉନ୍ନତି କରିବାକୁ ବାରମ୍ବାର କହୁଛନ୍ତି । କିନ୍ତୁ ପ୍ରକୃତରେ ଯାହା ଦରକାର ତା ଅପେକ୍ଷା ଭାରତ ବେଶୀ

"ଖାଦ୍ୟଶସ୍ୟ ଉତ୍ପନ୍ନ କରୁଅଛୁ । ଅନେକ ସମୟରେ ବିଶ୍ବାସଶୀଳ ଲୋକେ କହନ୍ତି, ଯେ ଇଉରୋପ ଏମିତି ବ୍ୟବସାୟ କରୁଛି, ଯାହାର ମଜୁରୀ ଖୁବ୍ ବେଶୀ । ତେଣୁ ଭାରତୀୟମାନଙ୍କୁ ଜାଣି ଜାଣି ଅଳ୍ପ ମଜୁରୀର କାମ ଦେଉଛି । ତମେ କଣ ଶିଳ୍ପ ବିଷୟରେ ସେହି ପରିମାଣରେ ଉତ୍ସାହ ସରକାରଙ୍କ ଠାରୁ ପାଉଛ ?

ଏହା ହୋଇପାରେ ଯେ ମୋ ବୋକାମିରୁ ମୁଁ ଏହି ଅର୍ଥନୀତିକ ନିୟମ ବୁଝି ପାରୁ ନାହିଁ, କିନ୍ତୁ ମୋତେ ଏହି ଅର୍ଥନୀତିକ ନିୟମକୁ ବୁଝିଲା ଭଳି ହେତୁ-ସମ୍ମତ ଅର୍ଥ ଯେ ବୁଝାଇ ଦେବେ, ତାହା ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । କୃଷି ବିଭାଗ ବର୍ତ୍ତମାନ ଯେପରି ଅଛି, ତାଙ୍କୁ ଜିଲ୍ଲାବୋର୍ଡ ଉପରେ ଲଦି ଦେବାକୁ କହିଲେ ମୁଁ କୌଣସି ଜିଲ୍ଲାବୋର୍ଡକୁ ଏହା ନେବାକୁ ପରାମର୍ଶ ଦେବି ନାହିଁ ।" ସର୍ବସାଧାରଣ ବେଶ୍ ଜାଣିଥିବେ ଯେ ବ୍ରିଟିଶ ସରକାର ଅମଳରେ କୃଷି ବିଭାଗ କିପରି ଉପକାରରେ ଲୋକମାନଙ୍କର ଆସୁଥିଲା । ତେଣୁ ମଧୁସୂଦନ ନିର୍ଭୀକ ଭାବରେ ସରକାରଙ୍କ କୃଷିନୀତିକୁ ସମାଲୋଚନା କରିବାକୁ ପଛଘୁଞ୍ଚା ଦେଇ ନ ଥିଲେ ।

ମଧୁସୂଦନ ଯାହା ନିଜେ ଠିକ୍ ବୋଲି ବୁଝିଥିଲେ ଏବଂ ସରକାରଙ୍କର ଯାହା ତ୍ରୁଟି ଯେଉଁଠାରେ ଦେଖୁଥିଲେ, ତାହା ସେ ମୁକ୍ତକଣ୍ଠରେ କହୁଥିଲେ । ସେ କାହାରିକୁ ଭୟ କରୁ ନ ଥିଲେ ।

୧୯୦୨ ମସିହାରେ ବେସରକାରୀ ବ୍ୟବସ୍ଥାପକମାନଙ୍କର ସ୍ଥାନ କେଉଁଠି; ଏ ସଂପର୍କରେ ଏକ ସୁନ୍ଦର ଅଭିଭାଷଣ ବଙ୍ଗ ବ୍ୟବସ୍ଥାପକ ସଭାରେ ସେ ଦେଇଥିଲେ ।

"ବ୍ୟବସ୍ଥାପକ ଜୀବନର ଦୁଇବର୍ଷ ମଧ୍ୟରେ ବେସରକାରୀ ବ୍ୟବସ୍ଥାପକଙ୍କୁ ମାତ୍ର ଦୁଇଦିନ ସମୟ ମିଳେ । ଯେତେବେଳେ ବେସରକାରୀ ସଭ୍ୟମାନେ ଅତି ଜରୁରୀ ଘଟଣା ବିଷୟରେ ମତ ଦେଇ ପାରନ୍ତି, ସେତେବେଳେ ଏହି ଦୁଇଦିନ ବେସରକାରୀ ବ୍ୟବସ୍ଥାପକମାନଙ୍କୁ ଗୋଟିଏ ଗୋ.ଲମାଳିଆ ବସ୍ତୁ ଭଳି ଜଣାପଡେ । ପୁଣି ବ୍ୟବସ୍ଥାପକମାନେ ଯେଉଁ ଲୋକଙ୍କର ପ୍ରତିନିଧି ସ୍ୱରୂପ ଆସିଛନ୍ତି, ସେମାନଙ୍କ ପ୍ରତି ଏହି ପ୍ରଥା କେଡ଼େ ନିରାଶ ଜନକ ।

"ମୁଁ ବିଶ୍ୱାସ କରୁଅଛି ଯେ ବେସରକାରୀ ବ୍ୟବସ୍ଥାପକମାନଙ୍କସ୍ଥାନ ଓ କର୍ମ ଯୋଗେ ଭୁଲ ଧାରଣା ସରକାରଙ୍କର ଥିବାରୁ ଏ ଗଣ୍ଡଗୋଳ ଅବସ୍ଥା ଉପୁଜିଅଛି । ଅନେକ ଏହି ବିଚରା ବ୍ୟବସ୍ଥାପକ ଓ ହାଉସ୍ ଅଫ୍ କମନସ୍ ସଭ୍ୟମାନଙ୍କ ମଧ୍ୟରେ ଗୋଟିଏ ଯୁକ୍ତିହୀନ ଉପମା ଯୋଡ଼ିବାକୁ ଚାହାନ୍ତି । ଅନ୍ୟମାନେ ଏମାନଙ୍କୁ ଅଚଳ ଜୀବନହୀନ ପ୍ରତିମୂର୍ତ୍ତି ସଙ୍ଗେ ତୁଳନା କରନ୍ତି ।

"ବୃଟୀଯ୍ବ୍ରେଣୀ ତାହାଙ୍କୁ ସରକାରଙ୍କ ବିରୁଦ୍ଧବାଦୀ ସମାଲୋଚକ ବା ଶତ୍ରୁ ବୋଲି ଭାବନ୍ତି । ତେଣୁ ସରକାରଙ୍କ ବିଶ୍ୱସ୍ତତା ଏହାଙ୍କ ଉପରେ ରହି ନ ପାରେ ।

"ମୁଁ ସର୍ବଦା ନିଜକୁ ଏଠାରେ ସରକାର ଏବଂ ଲୋକମାନଙ୍କ ମଧ୍ୟରେ ଜଣେ ବୁଝାଇବା ଲୋକ ( Interpreter ) ବା ମଧ୍ୟସ୍ଥ ବୋଲି ଭାବେ । ମଧ୍ୟସ୍ଥ ଭାବରେ ମୁଁ ସରକାରଙ୍କୁ ଲୋକସାଧାରଣଙ୍କର ଅଭାବ ଓ ଇଚ୍ଛା ଜଣାଇବି ଏବଂ ଦେଖିବି ଯେ ସରକାରଙ୍କ ଉଦ୍ଦେଶ୍ୟ ଯେପରି ଲୋକେ ଭୁଲ ନ ବୁଝନ୍ତି ।

"ଅନେକ ସମୟରେ ଏହି ବେସରକାରୀ ସଭ୍ୟମାନେ ହୁଏତ ଘଟଣାର ଅଜ୍ଞାତରୁ ଏପରି ନୀତି ପରିବର୍ତ୍ତନ କରିବାକୁ ଚାହାଁନ୍ତି, ଯାହାକୁ ସରକାର ଗ୍ରହଣ କରନ୍ତି ନାହିଁ । କୌଣସି ବେସରକାରୀ ସଭ୍ୟ ଦେଶର ସମସ୍ତ ସମ୍ବାଦ, ଘଟଣା, ହିସାବ ରଖି ପାରିବ ନାହିଁ; ଯାହାକୁ ସରକାର ଠିକ୍‌ରୂପେ ସଂଗ୍ରହ କରିବାକୁ ଦେଶର ସବୁଠାରୁ ବୁଦ୍ଧିଆ ଲୋକଙ୍କୁ ନିଯୁକ୍ତ କରୁଅଛନ୍ତି । ମୁଁ ଭାରତୀୟ ସିଭିଲ ସର୍ଭିସ କଥାହିଁ ଏଠାରେ କହୁଅଛି । ସରକାରଙ୍କ ଏହି ସମ୍ବାଦ ବେସରକାରୀ ବ୍ୟବସ୍ଥାପକମାନଙ୍କୁ ଜଣାଇ ଦିଆଯାଏ ନାହିଁ ଏବଂ ମୁଁ ଦୁଃଖର ସହିତ କହୁଛି ଯେ, ଅନେକ ସମୟରେ ଅତି ଦରକାରୀ ସମ୍ବାଦ ଜାଣିବାକୁ ଚାହିଁଲେ, ତାହା ଜଣାଇ ଦିଆଯିବ ନାହିଁ ବୋଲି ମନା କରି ଦିଆଯାଏ । କାରଣ ବ୍ୟବସ୍ଥାପକମାନଙ୍କର ଜାଣିବାର ଏଥିରେ ଅଧିକାର ନାହିଁ ।" ବଙ୍ଗର ଗଭର୍ଣ୍ଣର ମେମ୍ବର ବୋର୍ଡ଼ିଲ୍ୟନ (Beurdillon) ମଧୁସୂଦନଙ୍କୁ ବ୍ୟବସ୍ଥାପକ ଭାବରେ କିପରି ଦେଖୁଥିଲେ, ତାଙ୍କ ପ୍ରଦତ୍ତ ମନ୍ତବ୍ୟରୁ ବେଶ୍ ଜଣା ପଡୁଅଛି ।

"ସମ୍ମାନାସ୍ପଦ ସଭ୍ୟ ବଙ୍ଗ ବ୍ୟବସ୍ଥାପକ ସଭାର "କାଟୋ" (Carto) ଉପାଧି ପାଇ ଅଛନ୍ତି । ମନେ ଥିବ, ସେ ବଡ଼ ଦାର୍ଶନିକ ବିଷୟରେ ଅନେକ କହନ୍ତି ଯେ ଜଣିବା ପକ୍ଷରୁ ଦେବତାମାନେ ସୁଖ ପାଆନ୍ତି । କିନ୍ତୁ ଯେଉଁ ପକ୍ଷ ପରାଜିତ, ତାହାହିଁ "କାଟୋ" ଙ୍କର ପ୍ରିୟ ଥିଲା ।"

ମଧୁସୂଦନ ବଙ୍ଗ ବ୍ୟବସ୍ଥାପକ ସଭାରେ ସଭ୍ୟ ଥିଲାବେଳେ ୧୯୧୧ ମସିହାରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ବିଲ ଆସିଥିଲା । ତହିଁ ପୂର୍ବରୁ ମଧୁସୂଦନ ଓଡ଼ିଶାର ଗ୍ରାମେ ଗ୍ରାମେ ଗୋଟିଏ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ ତାହାର ନାମ ଥିଲା "ପ୍ରଜାପ୍ରତିନିଧି ସଭା ।" ଆଜି ଭାରତରେ 'କିଷାନ ସଭା', 'କୃଷକ ସଭା', 'ମୂଲିଆ ମଜଦୂର ସଭା' ଏପରି ନାନା ଅନୁଷ୍ଠାନ ଗଠିତ ହେଉଛି । କିନ୍ତୁ

ଆଜକୁ ତ୍ରିଶ ବର୍ଷ ତଳେ ମଧୁସୂଦନ ବୁଝିଥିଲେ କୃଷକର ଜମିରେ ଅଧିକାର ନ ପ୍ରବର୍ତ୍ତିବା ଯାଏ, ଜମିର ଉନ୍ନତି ନାହିଁ ଏବଂ ପ୍ରଜାର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ହେବ ନାହିଁ । ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ପ୍ରଣୀତ ହେବା ପୂର୍ବରୁ ଓଡ଼ିଶାରେ ବଙ୍ଗୀୟ ପ୍ରଜାସ୍ୱତ୍ୱ ଆଇନ ଚଳୁଥିଲା ଏବଂ କେତେଗୁଡ଼ିଏ ରେଗୁଲେଶନ ମଧ୍ୟ ପ୍ରଚଳିତ ହୋଇଥିଲା; ମାତ୍ର ବଙ୍ଗ ଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ଲର୍ଡ଼ କର୍ଣ୍ଣୱାଲିସଙ୍କ ଅମଳରୁ ପ୍ରଚଳିତ ହୋଇଥିଲା । ଓଡ଼ିଶାରେ ଘନ ଘନ ବନ୍ଦୋବସ୍ତ ହୁଏ; ସୁତରାଂ ଓଡ଼ିଶା ପ୍ରଜାର ଅବସ୍ଥା ବଙ୍ଗଦେଶର ପ୍ରଜାର ଅବସ୍ଥାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଆଜି ତ୍ରିଶ ବର୍ଷ ପରେ ଭାରତର ବିଭିନ୍ନ ପ୍ରଦେଶ (ଷ୍ଟେଟ)ରୁ ଜମିଦାରୀପ୍ରଥା ଉଠାଇ ଦେବାକୁ ଉଦ୍ୟମ ହେଲାବେଳେ କେତେ ଓଜର ଆପତ୍ତି ହେଉଅଛି; ଏଥିରୁ ସହଜରେ ଅନୁମାନ କରାଯାଇ ପାରେ ଯେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ପ୍ରଣୟନ କରି ଯଦି ସମ୍ପୂର୍ଣ୍ଣ ଭାବରେ ଜମିଦାରର ସ୍ୱତ୍ୱ ଲୋପ କରିବାକୁ ଉଦ୍ୟମ କରା ଯାଇଥାନ୍ତା ତେବେ କି ପ୍ରକାର ପରିସ୍ଥିତି ହୋଇଥାନ୍ତା । ୧୯୩୭ ମସିହାରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନରୁ ଦାଖଲଖାରଜ ସେଲାମି ପ୍ରଥା ଉଠାଇ ଦେବାକୁ ସରକାର ଚେଷ୍ଟା କଲାବେଳେ ଜମିଦାରଙ୍କ ପକ୍ଷରୁ କିପରି ଆପତ୍ତି ଓ ଆନ୍ଦୋଳନ ହୋଇ-ଥିଲା । ସୁତରାଂ ସେ ସମୟର ପରିସ୍ଥିତିକୁ ବିଚାର କରି ମଧୁସୂଦନ ବୁଝିଥିଲେ, ଶତକଡ଼ା ପଚିଶଟଙ୍କା ଜମିଦାର ନେଉନ୍ତୁ ପଛକେ, ଜମିରେ ପ୍ରଜାର ସ୍ଥାୟୀସ୍ୱତ୍ୱ ପ୍ରବର୍ତ୍ତୁ । ସେ ଜମିଦାରର ଅନୁମତି ପୂର୍ବରୁ ଗ୍ରହଣ ନ କରି ଜମି ହସ୍ତାନ୍ତର କରି ପାରୁ; ଜମିଦାର ତାକୁ ଜମିରୁ ବେଦଖଲ କରି ନ ପାରୁ; ଏହି ପରିସ୍ଥିତି ମଧ୍ୟରେ ସେ ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ଓ ଜମିଦାରୀ ପ୍ରଥା ଉଚ୍ଛେଦର ବୀଜ ବପନ କରିଥିଲେ । ମଧୁସୂଦନ ଓଡ଼ିଶାର ରୟତକୁଳଙ୍କ ପକ୍ଷରୁ ଜମିଦାରୀ ଉଚ୍ଛେଦ ସମ୍ପର୍କରେ ଯେଉଁ ଦାବୀ ଉପସ୍ଥାପନ କରିଥିଲେ, ସେହି ସ୍ମାରକପତ୍ରର କେତେକାଂଶ ଏଠାରେ ଉଲ୍ଲେଖ କରାଗଲା । କାରଣ ଏହି ସ୍ମାରକପତ୍ର ଜମିଦାରୀ ଉଚ୍ଛେଦ ସମ୍ପର୍କରେ ଏକ ଅତି ମୂଲ୍ୟବାନ ଦଲିଲ । ଜମିଦାରୀ ପ୍ରଥାର ଉଦ୍ଭବ ଏବଂ ପରିଣତି ସମ୍ପର୍କରେ ଏଥିରେ ବିଶଦଭାବରେ ଆଲୋଚନା କରାଯାଇଅଛି ।

ଜମିଦାରମାନେ ସେତେବେଳେ କିପରି ପ୍ରଜାକୁଳଙ୍କ ଉପରେ ଅତ୍ୟାଚାର କରୁଥିଲେ ଏବଂ ଭାରତରେ ଜମିଦାରୀ ପ୍ରଥା କିପରି ସୃଷ୍ଟି ହେଲା, ତାହାର ବିଶଦ ବିବରଣୀ ସେହି ସ୍ମାରକପତ୍ରରେ ଦିଆଯାଇଅଛି ।

୧। ଦାନ, ଦାନ, ଗୁହାରିଣା, ସ୍ୱତ୍ୱ ହସ୍ତାନ୍ତର ବେଳେ ଜମିଦାରମାନେ ବିକ୍ରୀ ଜମିର ଜରସମନ ଟଙ୍କା ଅନୁପାତରେ ଯେଉଁ 'ସେଲାମି' ନେଉଛନ୍ତି ତାହା ବନ୍ଦ ହେଉ ।

୨। ପାହି ଓ ଥାନି ଜମି ଉପରେ ଥିବା ଗଛ ଉପରେ ପ୍ରଜାର ସମ୍ପୂର୍ଣ୍ଣ ସ୍ୱତ୍ୱ ରହୁ।

୩। ଭୂଇଁନାଦାରମାନଙ୍କ ଦୁର୍ଦ୍ଦଶା ଦୂର କରାଯାଉ।

୪। ଧୂଳିଭାଗ ଜମିର ଖଜଣା ହିସାବ କରିବାରେ ଯେଉଁ ଅନ୍ୟାୟ କରାଯାଉଅଛି, ତାହା ଦୂର କରାଯାଉ।

୫। ରଯ଼ତମାନେ ପଡିଆ ଅନାବାଦୀ ଜମିକୁ ଚାଷ ଜମିରେ ପରିଣତ କରିବାରେ ଜମିଦାରମାନେ ଯେଉଁ ପରିମାଣରେ ଉଚ୍ଚ ଦରରେ ସଲାମୀ ଦାବୀ କରୁଛନ୍ତି, ତାହାର ପ୍ରତିକାର କରାଯାଉ।

୬। ଜମିଦାରମାନେ ପ୍ରଜାମାନଙ୍କଠାରୁ ଯେଉଁ ସବୁ ଅନ୍ୟାୟ କର ଆଦାୟ କରୁଛନ୍ତି, ତାହା ବନ୍ଦ କରାଯାଉ।

ଜମିଦାରୀ ପ୍ରଥା ସୃଷ୍ଟି ବିଷୟରେ ମଧୁସୂଦନ ଯେଉଁ ଇତିହାସ ଏହି ସ୍ମାରକପତ୍ରରେ ଦେଇଥିଲେ, ତାହା ଚିତ୍ତାକର୍ଷକ।

"ଭାରତ ଇତିହାସରେ ଅତୀତ ଯୁଗରେ ଶାସକ ଏବଂ ଲୋକଙ୍କ ମଧ୍ୟରେ ଜମିଦାର ଭଳି ଏକ ମଧ୍ୟ-ଶ୍ରେଣୀ ଥିବାର କୌଣସି ପ୍ରମାଣ ନାହିଁ। ଏହିପରି ଶ୍ରେଣୀ ଥିବାର ପ୍ରମାଣ ମଧ୍ୟ କୌଣସି ସଂସ୍କୃତ ସାହିତ୍ୟରେ ମିଳେ ନାହିଁ।

"ଛୋଟନାଗପୁରର "ମୁଣ୍ଡା", "ମାଣିକି"ଙ୍କ ଭଳି ସେତେବେଳେ ଖଜଣା ବା ଭୂମିକର ଗ୍ରାମର ମୁଣ୍ଡିଆଳ ବା ପଧାନ ଦ୍ୱାରା ସଂଗୃହୀତ ହେଉଥିଲା। ସେମାନେ ସେମାନଙ୍କ ଆଦାୟ ଉପରେ ଏକ ନିର୍ଦ୍ଧାରିତ ହାରରେ ଖର୍ଚ୍ଚ ପାଉଥିଲେ। ଏହି ଗାଁ ମୁଣ୍ଡିଆଳମାନଙ୍କର ଜମିରେ କୌଣସି ସ୍ୱତନ୍ତ୍ର ସ୍ୱତ୍ୱ ନ ଥିଲା ଏବଂ ସେମାନେ ସାଧାରଣ ପ୍ରଜାଙ୍କ ଭଳି ଗାଁରେ ଥିଲେ। 'ଜମିଦାର' ଶବ୍ଦଟି ପାର୍ସି ଭାଷାରୁ ସଂଗୃହୀତ। ଏଥିରୁ ସହଜରେ ଜଣା ପଡ଼େ ଯେ, ମୁସଲମାନ ରାଜତ୍ୱ ସମୟରେ ଏହି ପ୍ରଥା ପ୍ରଚଳିତ ହୋଇଥିଲା। ମୁସଲମାନ ବାଦସାହାମାନେ ଆଳସ୍ୟ ଏବଂ ସୌଖୀନପ୍ରିୟ ହେବାରୁ, ଖଜଣା ଆଦାୟ କରିବାର ସୁବିଧା ପାଇଁ ଏହିପରି ଗୋଟିଏ ଶ୍ରେଣୀ ସୃଷ୍ଟି କରି ରାଜସ୍ୱ ଆଦାୟ କରୁଥିଲେ। ଜମିଦାର ଶବ୍ଦର ଅର୍ଥ ଜମି-ରକ୍ଷକ। ଜମିଦାରମାନଙ୍କର କୌଣସି ମାଲିକାନା ସ୍ୱତ୍ୱ ନ ଥିଲା ଏବଂ ସେମାନଙ୍କ ଖଜଣା ଅସୁଲ କାର୍ଯ୍ୟ ପାଇଁ ସେମାନଙ୍କୁ "ଜାଗିର" ସ୍ୱରୂପ କେତେକ ଜମି ଦିଆଯାଉଥିଲା ଏବଂ ସେହି ଜମିର ଲାଭ ସେମାନେ ଭୋଗ ଦଖଲ କରୁଥିଲେ। ସେହିପରି ମଧ୍ୟ ସାମରିକ କାର୍ଯ୍ୟ ପାଇଁ ଜାଗିରଦାର ସୃଷ୍ଟି ହୋଇଥିଲା। ୧୭୫୩-୧୮୦୩ ମଧ୍ୟରେ ମରହଟ୍ଟା ଶାସନବେଳେ ଓଡ଼ିଶାରେ

"ଜମିଦାରମାନଙ୍କ ଅବସ୍ଥା ମଧ୍ୟ ସେହିପରି ଥିଲା । ଶାସକମାନେ ସେମାନଙ୍କ ସୁବିଧାନୁସାରେ ପୁରୁଣା ଜମିଦାରଙ୍କୁ ପଦଚ୍ୟୁତ କରୁଥିଲେ ଏବଂ ନୂଆ ଜମିଦାର ମଧ୍ୟ ନିଯୁକ୍ତ କରୁଥିଲେ । ରେଗୁଲେଶନମାନଙ୍କରେ ଏପରି କୌଣସି ପ୍ରମାଣ ନାହିଁ ଯେ ୧୭୯୩ ମସିହା ପୂର୍ବରୁ ବଙ୍ଗରେ ଏବଂ ୧୮୦୩ ପୂର୍ବରୁ ଓଡ଼ିଶାରେ ଜମିଦାରମାନଙ୍କର ଜମିଦାରୀରେ କୌଣସି ମାଲିକାନା ସ୍ୱତ୍ୱ ଥିଲା । ସେମାନେ କେବଳ ଖଜଣା ବା ଭୂରାଜସ୍ୱ ଅସୁଲକାରୀ ରୂପେ ଗଣ୍ୟ ହେଉଥିଲେ । ଚିରସ୍ଥାୟୀ ବନ୍ଦୋବସ୍ତ କେବଳ ସେମାନଙ୍କୁ ହଠାତ୍ ଜମିଦାରୀରେ ମାଲିକ ସ୍ୱତ୍ୱ ଦେଇ ଏକ ମଧ୍ୟ-ଶ୍ରେଣୀରେ ପରିଣତ କରିଦେଲା ।

"କିନ୍ତୁ ସେମାନଙ୍କୁ ଯେଉଁ ସ୍ୱତ୍ୱ ଦିଆ ଯାଇଥିଲା, ତାହା ଭୂମି ଉପରେ ସ୍ୱତ୍ୱ ନୁହେଁ । ବ୍ରିଟିଶ ସରକାର ଏବଂ ଜମିଦାରଙ୍କ ମଧ୍ୟରେ ଯେଉଁ କବୁଲିୟତ ହେଲା, ତହିଁରେ ସର୍ତ୍ତ ରହିଲା ଯେ, ସେମାନେ ବା ଜମିଦାରମାନେ ସୁରକ୍ଷାନୁକ୍ରମେ ଖଜଣା ଅସୁଲ କରିବେ; ମାତ୍ର ସେମାନେ ଲୋକମାନଙ୍କ ଉପରେ କୌଣସି ଅତ୍ୟାଚାର ଏବଂ ପରିଚାଳନାରେ ତ୍ରୁଟି କଲେ, ସେମାନଙ୍କ ଜମିଦାରୀ ସରକାରଙ୍କ ଖାସ ଦଖଲକୁ ଚାଲିଯିବ । ଏହି କାର୍ଯ୍ୟ ପାଇଁ ସରକାର ତାହାଙ୍କ ଜମିର ଉତ୍ପନ୍ନ ଏକଷଷ୍ଠାଂଶ ଭୂରାଜସ୍ୱରୁ କେତେକ ଅଂଶ ଜମିଦାରଙ୍କୁ ଦେଉଥିଲେ । ବାକି ପାଞ୍ଚଭାଗ ଉତ୍ପନ୍ନ ଶସ୍ୟ ଜମିର ମାଲିକ ବା ରୟତର । ରୟତର ଏହି ଭୋଗ ଦଖଲରେ କୌଣସି ବାଧା ନ ଥିଲା । ତେଣୁ ଜମିରେ ରୟତମାନଙ୍କର ଯେଉଁ ଦାବୀ, ସ୍ୱତ୍ୱ ଓ ସ୍ୱାଧୀନତା, ତାହା ବ୍ରିଟିଶମାନେ ମଧ୍ୟ ଅକ୍ଷୁର୍ଣ୍ଣ ରଖିଥିଲେ । ମାତ୍ର ୧୯୦୦ ମସିହା ବନ୍ଦୋବସ୍ତ ପରେ ଜମିଦାରମାନେ ସେମାନଙ୍କ ନୂଆ କ୍ଷମତାବଳରେ ରୟତମାନଙ୍କ ସ୍ୱତ୍ୱ ଏବଂ ସ୍ୱାଧୀନତାକୁ ନଷ୍ଟ କରିବାକୁ ଚେଷ୍ଟା କଲେ । ଏଥିମଧ୍ୟ ଦେଖାଯିବ ଯେ ବଙ୍ଗଳାରେ ଜମିଦାରୀ ପ୍ରଥାର ଉପକାରିତା ସମ୍ପର୍କରେ ସରକାରଙ୍କ ମନ ନ ମାନିବାରୁ ମାନ୍ଦ୍ରାଜ ଏବଂ ଅନ୍ୟାନ୍ୟ ପ୍ରଦେଶରେ ଜମିଦାରୀ ପ୍ରଥା ଚାଲୁ କଲେ ନାହିଁ ଏବଂ ସେଠାରେ ସବୁ ରୟତୱାରୀ ପ୍ରଥା ଚଳି ଆସୁଅଛି ।

"କେହି କେହି ଜମିଦାରୀ ପ୍ରଥାର ସମର୍ଥକ ଯୁକ୍ତି କରନ୍ତି ଯେ, ରୟତମାନଙ୍କର ଜମିରେ ସେପରି ବିଶେଷ କିଛି ସ୍ୱତ୍ୱ ଏବଂ ସ୍ୱାଧୀନତା ନ ଥିଲା । ଏହି ଯୁକ୍ତି ଭୁଲ; ତାହାର ପ୍ରମାଣ ଇତିହାସରେ ମଧ୍ୟ ରହିଅଛି ।

୧ । ସଂହିତାରେ ସ୍ପଷ୍ଟ ଲିଖିତ ହୋଇଅଛି ଯେ, ଯେପରି ବ୍ୟାଧର କାଣରେ ମୃତ ହରିଣ ବ୍ୟାଧର; ସେହିପରି ଯେଉଁ ଜମି ପ୍ରଜା ଜଙ୍ଗଲ କାଟି ଚାଷ ଯୋଗ୍ୟ କରେ, ସେ ଜମି ତାହାର ।

୨ । ରଯ୍ୟତର ଜମି ଉପରେ ଏପରି ସ୍ୱତ୍ୱ ଥିଲା ଯେ, ସ୍ୱତ୍ୱ-ଲୋପକାରୀଙ୍କୁ ମାରିଦେଲେ ବି ଦୋଷ ନାହିଁ । ମନୁ ଏହାଙ୍କୁ 'ଆତତାୟୀ' ସଙ୍ଗେ ତୁଳନା କରିଅଛନ୍ତି ।

୩ । ରଯ୍ୟତର ଏହି ଭୂସ୍ୱତ୍ୱ ଅଦଳ ବଦଳ ହୋଇ ପାରୁଥିଲା । ଭୂମି ମଧ୍ୟ ଦାନ ସୂତ୍ରରେ ଅନ୍ୟକୁ ଦିଆଯାଇ ପାରୁଥିଲା । ବୌଦ୍ଧଧର୍ମର ଲେଖକ ରିକ୍ ଡେଭିଡସ୍‌ଙ୍କ ମତରେ ଖ୍ରୀଷ୍ଟପୂର୍ବ ୧୦୦୦ ବର୍ଷରେ କୌଣସି ଜମିଦାରଶ୍ରେଣୀ ନ ଥିଲେ । ତେଣୁ ରଯ୍ୟତମାନେ ଅତି ପୁରାକାଳରୁ ସେମାନଙ୍କ ଜମି ଯେ ଅଦଳ ବଦଳ କରି ପାରୁଥିଲେ, ଏଥିରେ ସନ୍ଦେହ ନାହିଁ ।

୪ । ବର୍ତ୍ତମାନ ଜମିଦାରମାନେ ଯେପରି ଜମିରେ ପ୍ରଜାଙ୍କ ସ୍ୱତ୍ୱରେ ବାଧା ସୃଷ୍ଟି କରୁଛନ୍ତି, ପୂର୍ବକାଳରେ ସେପରି ବାଧା ସୃଷ୍ଟି କରୁଥିଲେ ଗ୍ରାମ, ସାହି ବସିବା ସେ ଯୁଗରେ ଅସମ୍ଭବ ହୋଇଥାନ୍ତା । ତାହା ହେଲେ ଓଡ଼ିଶା ଗୋଟିଏ କୌଣସି ସ୍ୱତ୍ୱହୀନ-ଦେଶରେ ପରିଣତ ହୋଇ ଯାଇଥାନ୍ତା ଏବଂ କୋଲ୍ହ, ସାନ୍ତାଳମାନଙ୍କ ଭଳି ଓଡ଼ିଶାରେ ଆର୍ଯ୍ୟ ବଂଶର ଲୋକେ ମଧ୍ୟ ଯାଯାବର ହୋଇ ରହିଥାନ୍ତେ । ଜମିଦାରଙ୍କ ଧନରେ ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳରେ ମାଟି ଶସ୍ୟ-କ୍ଷେତ୍ରରେ ପରିଣତ ହୋଇ ନାହିଁ । ଜମିରେ-ରଯ୍ୟତର ପ୍ରକୃତ ସ୍ୱତ୍ୱ ଏବଂ ଦଖଲ ରଯ୍ୟତଙ୍କୁ ଚାଷ ଜମି ବଢ଼ାଇବାରେ ସାହାଯ୍ୟ କରିଅଛି । ତେଣୁ ବଂଶାନୁକ୍ରମେ ଚାଷୀ ତାହାଙ୍କ ବାହୁବଳରେ ମାଟି ହାଣି ଜମିକୁ ଚାଷ ଉପଯୋଗୀ କରି ଅଛନ୍ତି ।

୫ । ଜମିଦାରମାନଙ୍କ ସୃଷ୍ଟି ମୁସଲମାନଙ୍କ ରାଜତ୍ୱରେ ହେଲେ ମଧ୍ୟ ଭାରତରେ ଯେପରି ବହୁ ପ୍ରଥା ପୁରୁଷାନୁକ୍ରମିକ ହୋଇଯାଏ, ସେହିପରି ଜମିଦାରୀ ପ୍ରଥା ପୁରୁଷାନୁକ୍ରମିକ ହୋଇ ଯାଇଥିଲା । ମାତ୍ର ଜମିଦାର-ମାନଙ୍କର ମୁସଲମାନ ରାଜତ୍ୱରେ ରଯ୍ୟତମାନଙ୍କ ସ୍ୱତ୍ୱ ଉଚ୍ଛେଦ କଲାଭଳି କୌଣସି କ୍ଷମତା ବା ସ୍ୱତ୍ୱ ନ ଥିଲା । ମାତ୍ର ରଯ୍ୟତକୁଳଙ୍କ ସରଳତା ଏବଂ ନିରକ୍ଷରତା ଯୋଗୁଁ ଏବଂ ଜମିଦାରଙ୍କ ଭୟରେ ସେମାନେ ସେମାନଙ୍କ ସ୍ୱତ୍ୱ କାଗଜପତ୍ରରେ ଲେଖାଇଲେ ନାହିଁ ।

୬ । ୧୭୯୩ରେ ବ୍ରିଟିଶ ସରକାର ଯେଉଁ "ମାଲିକାନା ସ୍ୱତ୍ୱ" ଜମିଦାରଙ୍କୁ ଦେଲେ, ସେହି ନୂଆ କ୍ଷମତାବଳରେ ସେମାନେ ରଯ୍ୟତମାନଙ୍କ ସ୍ୱତ୍ୱରେ ବାଧା ଦେବାକୁ ସାହସ କଲେ । ଜମିଦାରମାନଙ୍କ ସ୍ୱତ୍ୱ କେବଳ ଜମିରୁ ଖଜଣା ଅସୁଲ କରିବା ଏବଂ ମୁସଲମାନ ରାଜତ୍ୱ ସମୟରେ ଏହା

ପୁରୁଷାନୁକ୍ରମିକ ହୋଇ ଯାଇଥିଲା । ବ୍ରିଟିଶ ଅମଳରେ ଏହା ଏକ ରକ୍ଷିତ ବା ନ୍ୟସ୍ତସ୍ୱାର୍ଥରେ ପରିଣତ ହୋଇ ଯାଇଅଛି । ବର୍ତ୍ତମାନ ଜମିଦାରୀ ଉଚ୍ଛେଦ ହେଲା ବେଳେ ସେମାନଙ୍କୁ କ୍ଷତିପୂରଣ ଦେବା ଦରକାର ପଡ଼ିଲାଣି । ଜମିଦାର ଏବଂ ରୟତର ସ୍ୱତ୍ୱ ମଧ୍ୟରେ ଯେଉଁ ମୌଳିକ ପ୍ରଭେଦ ଅଛି, ତାହାକୁ ନ ବୁଝିଲେ ଜମିଦାରମାନେ ରୟତୀ ସ୍ୱତ୍ୱ ବିକ୍ରୀ ଖରିଦ ବେଳେ ଯେଉଁ ସେଲାମ, ଜମିର ଜରସମନ ଅନୁପାତରେ ଦାବୀ କରୁଛନ୍ତି, ତାହା ସହଜରେ ବୁଝା ପଡ଼ିବ ।"

ମଧୁସୂଦନଙ୍କ ଏହି ଚିନ୍ତାଧାରା ଉପରେ ପରେ ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ କାର୍ଯ୍ୟକାରୀ ହୋଇ ରୟତକୁଳଙ୍କ ଅଶେଷ ମଙ୍ଗଳ ସାଧନ କରିଅଛି, ତାହା ସମସ୍ତଙ୍କୁ ପ୍ରାୟ ବିଦିତ ଅଛି । ମଧୁସୂଦନ ଯେତେବେଳେ ପ୍ରଜା ପ୍ରତିନିଧି ସଭା ଜରିଆରେ ତାଙ୍କର ଏହି ପ୍ରସ୍ତାବ ଉତ୍‌ଥାପନ କରିଥିଲେ, ସେତେବେଳେ ମଧୁସୂଦନଙ୍କୁ ସେ କାଳର "ବିଦ୍ରୋହୀ" ଆଖ୍ୟା ମଧ୍ୟ ମିଳିଥିଲା । ଆଜି ମଧୁସୂଦନଙ୍କର ସେହି ବିଦ୍ରୋହାତ୍ମକ ନୀତି କ୍ରମେ ଭାରତରେ ବ୍ୟାପି ଯାଇଅଛି । ଜମିଦାରୀ ଉଚ୍ଛେଦ ଆଜି ଆଉ ଏକ ଦ୍ୱନ୍ଦ୍ୱମୂଳକ ସମସ୍ୟା ହୋଇ ରହି ନାହିଁ । ରୟତମାନେ ଆଜି ଆଉ ଜମି ହସ୍ତାନ୍ତର ବେଳେ ସଲାମି ଦେଉ ନାହାନ୍ତି । ରୟତଙ୍କ ଜମି ଉପରେ ଥିବା ଗଛ ଉପରେ ଜମିଦାର ଆଉ ମାଲିକ ନୁହନ୍ତି । ଆଜି ଚୁକ୍ତିନାଦାରଙ୍କ ସ୍ୱତ୍ୱ ବହୁ ପରିମାଣରେ ସୁରକ୍ଷିତ । ରୟତକୁଳଙ୍କ ଉପରେ ଜମିଦାର ଆଜି ସେପରି ଜୁଲମ କିମ୍ବା ବେଠି, ବେଗାରି କରିବାକୁ ସୁବିଧା ସୁଯୋଗ ପାଉ ନାହାନ୍ତି ।

ମଧୁସୂଦନ ଯେଉଁ ସ୍ମାରକପତ୍ର "ପ୍ରଜାପ୍ରତିନିଧି ସଭା" ତରଫରୁ ବଙ୍ଗ ଏବଂ ବିହାର-ଓଡ଼ିଶା ସରକାରଙ୍କଠାରେ ଦେଇଥିଲେ, ତହିଁରେ ସେ ସ୍ପଷ୍ଟ ଦାବୀ କରିଥିଲେ ।

୧ । ଜମିଦାରୀରୁ ଜମିଦାରମାନଙ୍କୁ ବିନା କ୍ଷତିପୂରଣରେ ବିତାଡ଼ିତ କରାଯାଉ । କାରଣ ସେମାନେ ବହୁବର୍ଷ ଧରି ଗରିବ ରୟତକୁଳଙ୍କ ପ୍ରତି ଅନ୍ୟାୟ ବ୍ୟବହାର ଓ ଅତ୍ୟାଚାର କରି ଆସିଅଛନ୍ତି ଏବଂ ରୟତମାନଙ୍କୁ ଜମିର ପ୍ରକୃତ ମାଲିକ ସ୍ୱତ୍ୱ ଦିଆଯାଉ ।

୨ । ଯଦି ଉପରଲିଖିତ ସର୍ତ୍ତ ବଡ଼ କଡ଼ା ଭଳି ଜଣାପଡ଼େ, ତେବେ ଜମିଦାରୀର ବିକ୍ରୀ ମୂଲ୍ୟ ନିର୍ଦ୍ଧାରଣ କରି ଦିଆଯାଉ ଏବଂ ରୟତମାନେ ତାହା ଦେଇ ଜମିଦାରୀ କିଣି ନିଅନ୍ତୁ ଏବଂ ରୟତମାନଙ୍କ ଭୂରାଜସ୍ୱ ବା ଖଜଣାରୁ କିଛି ଅଂଶ କମାଇ ଦିଆଯାଉ । ସାଧାରଣତଃ ଶତକଡ଼ା

ଯେତିକ ଟଙ୍କା ଜମିଦାରଙ୍କରେ ଜମିଦାରମାନେ ମାଲିକାନା ପାଉଥିଲେ, ତାହାର ଶତକଡ଼ା ୩୩ ଭାଗ ଖଜଣା ଋଷୀଙ୍କର କମାଇ ଦିଆଯାଉ । ମାଲିକାନାର ଅନ୍ୟ ଟଙ୍କାରେ ନିରକ୍ଷରତା ଦୂର କରିବାକୁ ଚେଷ୍ଟା କରାଯାଉ ।

ଏହା ବ୍ୟତୀତ ସ୍ମାରକପତ୍ରରେ ଆଉରି ଦାବୀ କରାଯାଇଥିଲା ଯେ—

୧ । ରୟତମାନଙ୍କଠାରୁ ରେଶମ, ଦାଖଲଖାରଜ ଫି ପ୍ରଭୃତି ଆଦାୟ ରଦ୍ଦ କରାଯାଉ ।

୨ । ରୟତର ଜମିରେ ଥିବା ଗଛ ଉପରେ ସମସ୍ତ ପ୍ରକାର ସ୍ୱତ୍ୱ ସାବ୍ୟସ୍ତ କରାଯାଉ ।

୩ । ଅନାବାଦୀ ଜମି ଆବାଦ ବେଳେ ପ୍ରଜାଙ୍କଠାରୁ କୌଣସି ସେଲାମି ନିଆ ନ ଯାଉ ।

୪ । ଏହା ବ୍ୟତୀତ ଗୋଚରଭୂମିର ସୁରକ୍ଷା ଏବଂ ଜମିଦାରଙ୍କ ଅନ୍ୟାୟ ଜୁଲମ ଏବଂ ଅତ୍ୟାଚାରରୁ ଋଷୀକୁଳକୁ ରକ୍ଷା କରିବାକୁ ଦାବୀ କରାଯାଇଥିଲା ।

ମଧୁସୂଦନଙ୍କ ଏହି ସ୍ମାରକପତ୍ର ଏକ ଅତି ମୂଲ୍ୟବାନ ଦଲିଲ ଏବଂ ପ୍ରକୃତ ଋଷୀ ବା ରୟତମାନଙ୍କ ସ୍ୱାଧୀନତାର ଏକ ମୌଳିକ ଦସ୍ତାବିଜ୍ । ମଧୁସୂଦନଙ୍କର ଏହି ଚିନ୍ତାଧାରା କିପରି କ୍ରମେ ଉତ୍କଳ ତଥା ଭାରତରେ କାର୍ଯ୍ୟକାରୀ ହେଉଅଛି, ତହିଁରୁ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଏବଂ ଚିନ୍ତାଧାରାର ଉତ୍କର୍ଷତା ସହଜରେ ପ୍ରମାଣିତ ହେଉଅଛି । ମଧୁସୂଦନ ଏଥିପାଇଁ ସବୁବେଳେ ଋଷୀକୁଳର ପ୍ରଧାନ ମିତ୍ରରୂପେ ଗଣ୍ୟ ହେବେ ।

# ଏକାଦଶ ଅଧ୍ୟାୟ

## ଜୀବନ-ମଧ୍ୟାହ୍ନ

ମନୁଷ୍ୟର ଜୀବନ-ଯାତ୍ରା ପଥରେ ଏପରି ଏକ ଅବସ୍ଥା ଆସେ, ସେ ଆଗ ପଛକୁ ଅନାଇ ତା ଜୀବନକୁ କଳନା କରି ପାରେ । ମନୁଷ୍ୟର ଜୀବନ ସଂସାରରେ ବଡ଼ ସୀମାବଦ୍ଧ । କର୍ମ ଅସୀମ । ଦେଶ, ଜାତି ଓ ସମାଜର ସମସ୍ୟା ବହୁତ । ଏହି ସବୁ ସମସ୍ୟା ସମାଧାନରେ ମଧୁସୂଦନ ତାହାଙ୍କ ଶକ୍ତି ଅନୁଯାୟୀ ନିଜକୁ ନିୟୋଜିତ କରିଥିଲେ । ଜାତୀୟ ଜୀବନର ସକଳ ବିଭାଗରେ ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ଉତ୍କଳର ଅର୍ଦ୍ଧଶତାବ୍ଦୀବ୍ୟାପୀ ଜାତୀୟ ଜୀବନକୁ ସେ ତାହାଙ୍କ ବଳିଷ୍ଠ ନେତୃତ୍ୱରେ ଅନୁପ୍ରାଣିତ କରିଥିଲେ ।

କଲିକତାର ଅସହାୟ ଓ ଅନ୍ଧକାରପୂର୍ଣ୍ଣ ଛାତ୍ରଜୀବନରୁ ମଧୁସୂଦନ ବହୁଦୂର ଆଗେଇ ଆସିଥିଲେ । କଲିକତାରେ ନିଜ ପ୍ରିୟପତ୍ନୀ—ସୌଦାମିନୀଙ୍କୁ ହରାଇ ମଧୁସୂଦନ ଆଉ ବିବାହ କରି ନ ଥିଲେ । ବ୍ୟକ୍ତିଗତ ସାଂସାରିକ ବନ୍ଧନ ଏଡ଼ାଇଲେ ମଧ୍ୟ ମଧୁସୂଦନ ନିଜେ ଜାତିର ନାନା ବନ୍ଧନରେ ବାନ୍ଧି ହୋଇ ପଡ଼ିଥିଲେ । ପ୍ରସିଦ୍ଧ ଓକିଲ ଭାବରେ ତାହାଙ୍କୁ ନିଜ ବ୍ୟବସାୟ ଲାଗି ବହୁ ପରିଶ୍ରମ କରିବାକୁ ପଡ଼ୁଥିଲା । ତହିଁ ସଙ୍ଗେ ସଙ୍ଗେ ସେ ଉତ୍କଳର ନାନା ମଙ୍ଗଳକର ଚିନ୍ତା ଓ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ବିଶେଷତଃ ଉତ୍କଳ ଟ୍ୟାନେରୀ ଭଳି ଶିଳ୍ପପ୍ରତିଷ୍ଠାନରେ ତାଙ୍କର ବହୁ ଶକ୍ତି, ସମୟ ଏବଂ ଅର୍ଥ ବ୍ୟୟିତ ହେଉଥିଲା । ଓକିଲାତି ଜୀବନର ପ୍ରଥମ ସମୟରେ ସେ "ବଲ୍ଲୀର ବାଗ" ଠାରେ ବାସ କରୁଥିଲେ । ତା ପରେ ସେ ମିଶନ ରୋଡ଼ରେ ତାଙ୍କର ସ୍ୱତନ୍ତ୍ର ବାସଭବନ ନିର୍ମାଣ କରି ରହିଥିଲେ । ମଧୁସୂଦନଙ୍କ ଅଜସ୍ର ଅର୍ଥ-ଉପାର୍ଜନ ଓ ସମ୍ମାନଲାଭ ତାଙ୍କ ପିତା ମାତା ମଧ୍ୟ ବଞ୍ଚି ଦେଖି ପାରିଥିଲେ । ମଧୁସୂଦନ ଖ୍ରୀଷ୍ଟିୟାନ ହୋଇଥିଲେ ମଧ୍ୟ ଗାଁକୁ ଗଲେ ତାଙ୍କ ମା ତାଙ୍କର ଖାଇବା ପିଇବା ତତ୍ତ୍ୱ ନେଉଥିଲେ । ମଧୁସୂଦନ ତାଙ୍କ ଗାଁର ବାହାରେ ଗୋଟିଏ କୋଠା ଘର ତୋଳି ସେଠାରେ ରହୁଥିଲେ । ଗାଁରେ ମଧୁସୂଦନ କୃଷିର ଉନ୍ନତି ପାଇଁ ନିଜେ କୋବି, ଆଳୁ, ପିଆଜ ପ୍ରଭୃତି ବିଭିନ୍ନ ଶୀତଦିନିଆ ଫସଲ ଚାଷ କରାଇ ଚାଷୀମାନଙ୍କ ଆଗରେ ଉନ୍ନତ କୃଷିର ଆଦର୍ଶ ଦେଖାଉଥିଲେ । ମଧୁସୂଦନ କେବଳ ବାକ୍ୟବୀର ନ ଥିଲେ, ଥିଲେ ଜଣେ ପ୍ରଧାନ କର୍ମବୀର ।

ମଧୁସୂଦନ ଗାଁରେ କୋଠା କରିବା ବ୍ୟତୀତ କଲିକତା ଏବଂ ପାଟଣାରେ ମଧ୍ୟ କୋଠା କିଣିଥିଲେ । ନିଜ ପରିବାରର ସମସ୍ତ ଋଣ ପରିଶୋଧ କରି

ଦେଇଥିଲେ । ନିଜ ସାନ ଭାଇ ଗୋପାଳବଲ୍ଲଭଙ୍କ ବିବାହ ଅତି ମହା ଆଡ଼ମ୍ବରରେ ସମ୍ପାଦନ କରାଇଥିଲେ । ମଧୁସୂଦନ ପଶୁ, ପକ୍ଷୀର ଅତି ପ୍ରିୟ ଥିଲେ । ତାଙ୍କ କଟକ କୋଠିରେ ଏକ ଛୋଟ ଚିଡ଼ିଆଖାନା ଖୋଲା ଯାଇଥିଲା । ତହିଁରେ ବାଘ, ଭାଲୁ, ହରିଣ ଓ ନାନା ଜାତିର ପକ୍ଷୀ, ନେଉଳ, କୁକୁର ରଖା ଯାଇଥିଲେ । କୁକୁର ଓ ଘୋଡ଼ା ପ୍ରତି ତାଙ୍କର ସନ୍ତକ ଥିଲା । ତାଙ୍କର ଗୋଟିଏ ପ୍ରିୟ ଆରବ୍ ଜାତୀୟ ଘୋଡ଼ା ଥିଲା । ସେତେବେଳେ ଘୋଡ଼ାଗାଡ଼ି ଖାନ୍‌ଦାନି ଭଦ୍ରବ୍ୟକ୍ତିଙ୍କ ଯାନବାହନ ଥିଲା । ଜଣେ ସାହେବ ଅଫିସର ଜରୁରୀ କାମରେ ଯିବା ପାଇଁ ମଧୁସୂଦନଙ୍କଠାରୁ ଏହି ଗାଡ଼ି ଓ ଘୋଡ଼ା ନେଇ ପୁରୀ ଯାଇଥିଲେ । ମଧୁସୂଦନ ଭୂଣ୍ଟିତଭାବରେ ଦେଇ ତାକିଦ୍ କରି ଦେଇଥିଲେ ଯେ, ଘୋଡ଼ା ଦେହରେ ଚାବୁକ ମାରିବେ ନାହିଁ; ତାହାହେଲେ ସେ ଘୋଡ଼ାକୁ ସମ୍ଭାଳି ହେବ ନାହିଁ । ପୁରୀରୁ ଫେରିବା ବେଳେ ସାହେବ ଚଞ୍ଚଳ କଟକ ମୁକାମରେ ପହଞ୍ଚିବେ ଭାବି ଘୋଡ଼ାକୁ ଏକ ଚାବୁକ୍ ଦେବାରେ ଘୋଡ଼ା ଏତେ ବେଗରେ ଦୌଡ଼ିଲା ଯେ ଘୋଡ଼ାଗାଡ଼ି ଆଗରେ ଯାଉଥିବା ଆଉ ଗୋଟିଏ ବାଉଁଶ ବୋଝାଇ ଗାଡ଼ିରେ ଧକ୍କା ବାଜିଲା । ସାହେବ ଗାଡ଼ି କମ୍ବା ଘୋଡ଼ା ଅଟକାଇ ପାରିଲେ ନାହିଁ । ମଧୁସୂଦନଙ୍କ ଏହି ପ୍ରିୟ ଘୋଡ଼ାଟି ଦେହରେ ବାଉଁଶ ଭୁଷି ହୋଇ ଯିବାରୁ, ସଙ୍ଗେ ସଙ୍ଗେ ସେଠାରେ ସେ ଘୋଡ଼ାର ମୃତ୍ୟୁ ଘଟିଲା । ମଧୁସୂଦନ ଏଥିପାଇଁ ବଡ଼ ଦୁଃଖିତ ହୋଇଥିଲେ ।

ମଧୁବାବୁ ବଡ଼ ସାମାଜିକ । ସେ ସମାଜର ସୁଖ, ଦୁଃଖରେ ସବୁବେଳେ ଭାଗିଦାର ହେଉଥିଲେ । ସମାଜ ପାଇଁ ସେ ସର୍ବଦା ଉନ୍ମୁକ୍ତ ଥିଲେ । ତେଣୁ ତାଙ୍କୁ କେନ୍ଦ୍ର କରି କଟକରେ ଏକ ସାମାଜିକ ବୃତ୍ତ ଗଢ଼ି ଉଠିଥିଲା । ସେ ବଡ଼ ଖେଳପ୍ରିୟ ଥିଲେ । ସେ ନିଜେ ଅନେକ ବିଦେଶୀ ଖେଳ ଖେଳୁଥିଲେ । ସେ ମଧ୍ୟ ସଙ୍ଗୀତପ୍ରିୟ ଥିଲେ । ତାଙ୍କ ଘରେ ଓକିଲ, ଯୁବକ ଓ ସହରର ଅନ୍ୟାନ୍ୟ ନାଗରିକ ରୁଣ୍ଡ ହେଉଥିଲେ । କଟକର ସାଧାରଣ କାରିଗର, ମୋଟ ଶ୍ରେଣୀୟ ଲୋକଙ୍କ ସହିତ ମଧ୍ୟ ତାଙ୍କର ସମ୍ପର୍କ ଥିଲା । ଉତ୍କଳର ରାଷ୍ଟ୍ରନୀତି ଓ ଆର୍ଥନୀତିକ ଜୀବନ ମଧୁସୂଦନଙ୍କୁ କେନ୍ଦ୍ର କରି ଗଢ଼ା ଯାଇଥିଲା । ମଧୁସୂଦନ ନିଜେ ଭଲ ଖାଇ ପାରୁ ନ ଥିଲେ ମଧ୍ୟ ଅନ୍ୟମାନଙ୍କୁ ଭୂରି ଭୋଜନ ଦେବାରେ ସେ ବିଶେଷ ଆନନ୍ଦ ଅନୁଭବ କରୁଥିଲେ । ମଧୁସୂଦନ ଯାହା ରୋଜଗାର କରୁଥିଲେ, ତାହାଠାରୁ ଢେର ବେଶୀ ତାଙ୍କର ଖର୍ଚ୍ଚ ହୋଇ ଯାଉଥିଲା । ଉତ୍କଳ ଟ୍ୟାନେରୀ ଭଳି ଶିଳ୍ପପ୍ରତିଷ୍ଠାନରେ ବହୁତ ଟଙ୍କା ତାଙ୍କର ଖର୍ଚ୍ଚ ହୋଇ ଯାଉଥିଲା । ମଧୁସୂଦନ ନିଜେ ବ୍ୟବସାୟ ଦିଗ ଦେଖିବାକୁ ସମୟ ପାଉ ନ ଥିଲେ; ତେଣୁ କ୍ରମେ ସେ ଋଣଗ୍ରସ୍ତ ହୋଇ ପଡ଼ୁଥିଲେ ।

ଛାତ୍ରସମାଜରେ ମଧ୍ୟ ସେ ଅତି ପ୍ରିୟ ଥିଲେ । ଛାତ୍ରମାନଙ୍କୁ ବେଳେ ବେଳେ ଘରକୁ ଡାକି ନାନା ଉପଦେଶ ଦେଉଥିଲେ, ବେଳେ ବେଳେ ଉପଦେଶ ଛଳରେ ଭର୍ତ୍ସନା ମଧ୍ୟ କରୁଥିଲେ, ବେଳେ ବେଳେ ଛାତ୍ରମାନଙ୍କୁ ଭୂରି ଭୋଜନ ଦେଇ ଆନନ୍ଦ ଅନୁଭବ କରୁଥିଲେ । ଏ ସମ୍ପର୍କରେ ଦିନକର ରହସ୍ୟମୟ ଘଟଣା ଏଠାରେ ଉଲ୍ଲେଖ କରାଯାଉଛି । କଟକ ରେଭେନ୍‌ସା କଲେଜର ସମସ୍ତ ଛାତ୍ରଙ୍କୁ ଦିନେ ତାଙ୍କ ଘରଠାରେ ଖାଇବାକୁ ନିମନ୍ତ୍ରଣ କରିଥିଲେ । ସେତେବେଳେ କଲେଜର ଛାତ୍ରସଂଖ୍ୟା ପ୍ରାୟ ଦୁଇ ଶହ । ଛାତ୍ରମାନଙ୍କ ମଧ୍ୟରୁ ପ୍ରଧାନ ପ୍ରଧାନ ପାଞ୍ଚ ସାତ ଜଣଙ୍କୁ ଡାକି ପଚାରିଲେ, "ତୁମେ କଣ ଖାଇବ ? ନିରାମିଷ ଖାଇବ, ନା ଆମିଷ ଖାଇବ; ମାଛ ଖାଇବ ନା ମାଂସ ଖାଇବ ?" ଏ ବିଷୟରେ ଛାତ୍ରମାନଙ୍କ ମଧ୍ୟରେ ମତଭେଦ ହେଲା; କିଏ କହିଲା, ମାଛ ଖାଇବା, କିଏ କହିଲା ମାଂସ ଖାଇବା, କିଏ କହିଲା ନିରାମିଷ ରସଗୋଲା, ସନ୍ଦେଶ, ରାବିଡ଼ି, ରସାବଳି ଖାଇବା । ମଧୁସୂଦନ ଏ ସବୁ ତର୍କ ବିତର୍କ ଶୁଣି କହିଲେ, "ତୁମେ ତ ନିଜର ଖାଇବା ବିଷୟରେ ଏକମତ ହୋଇ ପାରୁ ନାହଁ, ଆଉ ଏକତା ତୁମ ମଧ୍ୟରେ ଆଣିବ କିପରି ? ହଉ ମୁଁ ଦିନେ ମାଂସ, ଦିନେ ନିରାମିଷ ଖାଇବାକୁ ଦେବି ।" ଛାତ୍ରମାନେ ପ୍ରଥମ ଦିନ ମାଂସ ତରକାରି ଖାଇଲେ, ଦ୍ୱିତୀୟ ଦିନ ମିଷ୍ଟାନ୍ନରେ ନିରାମିଷ ଭୋଜନ କଲେ । ଖାଇଲା ବେଳେ ଜଣେ ଛାତ୍ର କହି ପକାଇଲା, "ଆଜ୍ଞା, ଏ ପୋଖରୀ ଆଡ଼ୁ ଭାରି ଶବ୍ଦ ଆସୁଛି ଯେପରି ମାଛଗୁଡ଼ାକ ପରସ୍ପର ମଧ୍ୟରେ ମତଭେଦ ହେବାରୁ ବାଡ଼ଆପିଟା ଆରମ୍ଭ କରିଛନ୍ତି ?" ମଧୁସୂଦନ ଏ କଥା ଶୁଣି କହିଲେ, "ତୁମ ଫନ୍ଦିଟା ମୁଁ ବୁଝି ପାରିଛି । ହଉ, କାଲିକି ମାଛମାନଙ୍କ ମଧ୍ୟରେ ଏକତା ସ୍ଥାପନ କରିବାକୁ ତୁମ୍ଭ-ମାନଙ୍କୁ ନିମନ୍ତ୍ରଣ କଲି । ତହିଁଆର ଦିନ ତୃତୀୟ ଦିବସରେ ମାଛ ଛାଅଣ ହେଲା, ପିଲାଏ ଖୁବ୍ ଆନନ୍ଦରେ ଖାଇଲେ ।"

ମଧୁସୂଦନ ପ୍ରଥମେ ୧୮୯୬ ମସିହାରେ ଇଂଲଣ୍ଡ ଯାଇଥିଲେ । ସେତେବେଳେ ସେ ଏକ କଠିନ ରୋଗଗ୍ରସ୍ତ ହୋଇ ଆରୋଗ୍ୟ ଲାଭ ପାଇଁ ଇଂଲଣ୍ଡ ଯାଇଥିଲେ । ତାଙ୍କର ପେଟ ଭିତରେ ଘା ହୋଇଥିଲା । ସେ ଏପରି ରୋଗରୁ ମୁକ୍ତିଲାଭ କରି ଯେ ବଞ୍ଚି ପାରିଥିଲେ, ତାହା ପ୍ରକୃତିର କରୁଣା ମାତ୍ର ! ସେ ଇଂଲଣ୍ଡରେ ରେଭେନ୍ସା କଲେଜର ସ୍ଥାପୟିତା, ଓଡ଼ିଶାର ପରମ ବନ୍ଧୁ ମିଷ୍ଟର ଟି. ଇ. ରେଭେନ୍‌ସା ଏବଂ ତତ୍କାଳୀନ ସେକ୍ରେଟେରୀ ଅଫ୍ ଷ୍ଟେଟ ଫର୍ ଇଣ୍ଡିଆ, ସାର ଜର୍ଜ ହାମିଲଟନଙ୍କ ସଙ୍ଗେ ସାକ୍ଷାତ କରିଥିଲେ । ୧୯୦୭ ମସିହାରେ ମଧୁସୂଦନ ପୁଣି ଇଂଲଣ୍ଡ ଯାଇଥିଲେ । ସେ ସେଠାରେ ଓଡ଼ିଆମାନଙ୍କ ଦୁଃଖ ଦୁର୍ଦ୍ଦଶା ଜଣାଇବା ପାଇଁ ପାର୍ଲିଆମେଣ୍ଟର ସଭ୍ୟମାନଙ୍କୁ "ଅଶାନ୍ତିମୟ ଭାରତ" (Dis centented India) ଶିରୋନାମା ଦେଇ ଏକ ପୁସ୍ତିକା ପ୍ରକାଶ

କରିଥିଲେ ଏବଂ ପାର୍ଲିଆମେଣ୍ଟର କେତେକ ସଭ୍ୟଙ୍କୁ ମଧ୍ୟ ଓଡ଼ିଶାର ପରିସ୍ଥିତି ସମ୍ପର୍କରେ ଏକ ବକ୍ତୃତା ଦେଇଥିଲେ । ସେ ଏହି ସ୍ମୃତିର ଉଦ୍‌ବୋଧନ କରିଥିଲେ ୧୯୩୬ ମହିଳା ନେତୃ-ସମ୍ମିଳନୀ ବକ୍ତୃତାରେ । ମଧୁସୂଦନ କହିଥିଲେ, "ମୋତେ ପାର୍ଲିଆମେଣ୍ଟ ଘରର ଗୋଟିଏ ପାଖ କୋଠରୀରେ ହାଉସ ଅଫ୍ କମନ୍‌ସର ୭୦ ଜଣ ସଭ୍ୟଙ୍କୁ ନେଇ ଗୋଟିଏ ସଭା କରାଇବାକୁ ପଡ଼ିଥିଲା ।" ସେ ଇଂଲଣ୍ଡରେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡାକି ମଧ୍ୟ ଉତ୍କଳ ସମସ୍ୟା ଆଲୋଚନା କରି ଓଡ଼ିଶା ସପକ୍ଷରେ ସେଠାରେ ଲୋକମତ ଗଠନ କରିବାକୁ ଚେଷ୍ଟା କରିଥିଲେ ।

ମଧୁସୂଦନ ପ୍ରଜା ବା କୃଷୀକୁଳଙ୍କ ମଙ୍ଗଳ ପାଇଁ ସର୍ବଦା ବ୍ୟାକୁଳ ଥିଲେ । ଇଂଲଣ୍ଡରେ ଥିଲାବେଳେ 'ଅସ୍ଥାୟୀ ବନ୍ଦୋବସ୍ତ' ପରିବର୍ତ୍ତରେ "ଚିରସ୍ଥାୟୀ ବନ୍ଦୋବସ୍ତ" ଉତ୍କଳରେ ଚଳାଇବା ପାଇଁ ସେଠାରେ ବହୁ ଚେଷ୍ଟା କରି ବିଫଳ ହୋଇଥିଲେ ।

ଇଂଲଣ୍ଡରେ ସେ ଯେତେବେଳେ ଉତ୍କଳବନ୍ଧୁ ରେଭେନ୍‌ସା ସାହେବଙ୍କୁ ଭେଟିଥିଲେ, ରେଭେନ୍‌ସା ସାହେବ ତାହାଙ୍କୁ ଓଡ଼ିଶା ଛବିର ପିକା ଦେଖାଇ ଥିଲେ । ରେଭେନ୍‌ସା ସାହେବ ଓଡ଼ିଶାକୁ ଖୁବ୍ ସୁଖ ପାଉଥିଲେ । ବିଲାତରୁ ରେଭେନ୍‌ସା ସାହେବ ଓଡ଼ିଶାରେ ବାଳିକା ବିଦ୍ୟାଳୟ ପାଇଁ ଏକ ହଜାର ଟଙ୍କା ଦେବେ ବୋଲି ମଧୁସୂଦନଙ୍କୁ ସ୍ୱୀକୃତି ଜଣାଇଥିଲେ । କଥା ପ୍ରସଙ୍ଗରେ ମିଷ୍ଟର ରେଭେନ୍‌ସା ମଧୁସୂଦନଙ୍କୁ ପଚାରିଥିଲେ—

"ଆପଣ ଖାଣ୍ଟି ଓଡ଼ିଆ ତ ?"

ମଧୁବାବୁ ଉତ୍ତର ଦେଇଥିଲେ, "ନିଶ୍ଚୟ ।"

ତହୁଁ ମିଷ୍ଟର ରେଭେନ୍‌ସା କହିଲେ, "କିନ୍ତୁ ମୋ ମନରେ ଗଭୀର ଦୁଃଖ ଯେ, ଓଡ଼ିଶାରେ ରହିବା ସମୟରେ ମୁଁ ଆପଣଙ୍କ ଭଳି ଜଣେ ଯୋଗ୍ୟ ଓଡ଼ିଆ ଦେଖିପାରି ନ ଥିଲି ।"

ତତ୍କାଳୀନ ସେକ୍ରେଟେରୀ ଅଫ୍ ଷ୍ଟେଟ ଫର ଇଣ୍ଡିଆ ମିଷ୍ଟର ମର୍ଲେଙ୍କ ସଙ୍ଗେ ତାଙ୍କର ଦେଖା ସାକ୍ଷାତ ଅତି କୌତୁକପୂର୍ଣ୍ଣ । ସେ ମଧୁସୂଦନଙ୍କୁ ସେକ୍ରେଟେରୀ ଅଫ୍ ଷ୍ଟେଟ ଭାବରେ ଦେଖା ଦେବାକୁ ରାଜି ହେଲେ ନାହିଁ; ମାତ୍ର ବ୍ୟକ୍ତିଗତ ଭାବରେ ଦେଖା ଦେଇଥିଲେ । ମଧୁସୂଦନ ମଧ୍ୟ ସେହିପରି ବ୍ୟକ୍ତିଗତ ଭାବରେ ସାକ୍ଷାତ କରିବାକୁ ଅନୁମତି ପାଇଥିଲେ । ମର୍ଲେଙ୍କ ସଙ୍ଗେ

ତାଙ୍କର ଦେଖା ସାକ୍ଷାତ ସମ୍ପର୍କରେ ମଧୁସୂଦନ ଏକ ଲେଖା ଲେଖି ଯାଇ ଅଛନ୍ତି ।

ମଧୁସୂଦନ ଇଂଲଣ୍ଡ ଯିବା ପୂର୍ବରୁ ତାଙ୍କର ଜଣେ ସାହେବ ବନ୍ଧୁ ଏବଂ ପାର୍ଲିଆମେଣ୍ଟର ସଭ୍ୟ ଜନ ସ୍ପାଇସର (Sir John spicer M. P.)ଙ୍କୁ ଲେଖିଥିଲେ ଯେ, ସେ କିପରି ମିଷ୍ଟର ମର୍ଲେଙ୍କ ସଙ୍ଗେ ସାକ୍ଷାତ କରି ପାରିବେ । ମଧୁସୂଦନ କେବଳ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା ସେଠାରେ ସରକାରଙ୍କ ଉଚ୍ଚ-ପଦସ୍ଥ ମନ୍ତ୍ରୀମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଇଂଲଣ୍ଡ ଯାଇଥିଲେ । ମଧୁସୂଦନ ସେଠାରେ ମିଷ୍ଟର ମର୍ଲେଙ୍କ ସଙ୍ଗରେ କିପରି କଥାବାର୍ତ୍ତା କରିଥିଲେ, ତାହା ତାଙ୍କ ନିଜ ଲିଖିତ ବିବରଣୀରୁ ସ୍ପଷ୍ଟ ସୂଚନା ମିଳେ ।

"ମୁଁ ମିଷ୍ଟର ମର୍ଲେଙ୍କୁ କହିଲି, ଯଦି ସେ ଭାରତରେ ଏକଛତ୍ର ଶାସନ (Despotic Government) ଚଳାଇବାକୁ ଚାହାନ୍ତି, ତାହାହେଲେ ସେହି ଧରଣର ଶିକ୍ଷା ଉଚ୍ଚ ଭାରତୀୟ ରାଜକର୍ମଚାରୀ (I. C, S) ମାନଙ୍କୁ ଦେବା ଉଚିତ । ତାହାହେଲେ ସେମାନଙ୍କର ଏକଛତ୍ର ଭାବରେ ଶାସନ ଚଳାଇବା ସହଜ ହେବ । ଇଂରେଜ ଯୁବକମାନେ ଇଂଲଣ୍ଡର ସ୍କୁଲ ଏବଂ ବିଶ୍ୱ-ବିଦ୍ୟାଳୟରେ ଶିକ୍ଷା ପାଇ ସ୍ୱାଧୀନ ଦେଶର ମନୁଷ୍ୟରୂପେ ଗଢ଼ାଯାଉ ଅଛନ୍ତି । ସେମାନେ ଏକଛତ୍ର ଶାସନକୁ ଘୃଣା କରିବାକୁ ଶିକ୍ଷା କରନ୍ତି । ସେମାନେ ଇଂଲଣ୍ଡରେ ଦେଖନ୍ତି ଯେ, ଅନୁଷ୍ଠାନମାନ ଲୋକଙ୍କ ଦ୍ୱାରା ସ୍ଥାପିତ ଏବଂ ରକ୍ଷିତ ହୋଇଅଛି । ସେମାନେ ସ୍ୱାଧୀନ ଲୋକଙ୍କ ଉପରେ ଶାସନ କରିବାକୁ ଶିକ୍ଷା ପାଆନ୍ତି । ମାତ୍ର ଏହି ଅଫିସରମାନେ ଯେତେବେଳେ ଭାରତର ବିଭିନ୍ନ ପ୍ରଦେଶରେ ଶାସନଭାର ଗ୍ରହଣ କରନ୍ତି, ସେମାନଙ୍କ ଉପଦେଶ ଦିଆଯାଏ, ଏହା ସ୍ୱାଧୀନ ଦେଶ ନୁହେଁ । ଏକଛତ୍ର ଶାସକ ଭଳି ଶାସନ ଚଳାଅ । ଅବାଧ କ୍ଷମତା ଚାଳନା ପାଇ ପ୍ରତ୍ୟେକ ଯୁବକ (ଅଫିସର)ଙ୍କୁ ଉପଦେଶ ଦିଆଯାଏ । ଏହି ଯୁବକ ଅଫିସର ଏକଛତ୍ର ଶାସକ ହେବାକୁ ଚେଷ୍ଟା କରନ୍ତି । ଏହି ଅଫିସରମାନେ ସେମାନଙ୍କ ଶାସନରେ ବିଫଳ ହୁଅନ୍ତି; କାରଣ ଏକଛତ୍ର ଶାସନ ଚଳାଇବାକୁ ସେମାନେ ଶିକ୍ଷା ପାଇ ନ ଥାନ୍ତି ।

"ଏକଛତ୍ର ଶାସକ ଏକ ବିଶିଷ୍ଟ ଦୃଷ୍ଟିକୋଣରୁ ମାନବଚରିତ୍ର ଅଧ୍ୟୟନ କରନ୍ତି । ଏକଛତ୍ର ଶାସକ ଜାଣେ, କେଉଁଠାରେ ଦୟା ଦେଖାଇବାକୁ ହେବ; ତାହାହେଲେ ଭବିଷ୍ୟତରେ ଲୋକମାନଙ୍କ ଉପରେ ଅତ୍ୟାଚାର ଚଳାଇ ପାରିବ । ଯଦି ରୁଷ୍‌ର ଜାର ଇଂଲଣ୍ଡରେ ଶାସକ ହୁଅନ୍ତି, ସେ ଅଠଚାଳିଶ ଘଣ୍ଟା ମଧ୍ୟରେ ଫାଶି କାଠରେ ଝୁଲିବେ । ଅପର ଭାବରେ ଯଦି ରାଣୀ ଭିକ୍ଟୋରିଆ ରୁଷ୍ ଦେଶ ଗାଦିରେ ବସନ୍ତି, ସେ ଅଠଚାଳିଶ ଘଣ୍ଟା ମଧ୍ୟରେ ରାଜଗାଦି ଛାଡ଼

ହେବେ ।” ମଧୁସୂଦନ ଲେଖିଅଛନ୍ତି, “ମୁଁ ମିଷ୍ଟର ମର୍ଲେଙ୍କୁ କହିଲି, ଯଦି ଭାରତରେ ଏକଛତ୍ର ଶାସନ ଚଳାଇବାକୁ ଚାହାଁ, ତେବେ ଅଫିସରମାନଙ୍କୁ ରୁସ୍ ଦେଶରେ ପ୍ରଚଳିତ ଶିକ୍ଷା ଦିଅ; ତାହାହେଲେ ସେମାନେ ଏକଛତ୍ର ଶାସନର କୌଶଳ ଜାଣି ପାରିବେ ।”

ମଧୁସୂଦନ ମିଷ୍ଟର ମର୍ଲେଙ୍କୁ ଜଣାଇଥିଲେ ଯେ, ଭାରତରେ ବ୍ରିଟିଶ ଶାସନ ଲୋକପ୍ରିୟ ହେଉ ନାହିଁ । ସେ ଆହୁରି କହୁଥିଲେ ଯେ ସେତେବେଳେ ଭାରତ ଜଣେ ଏକଛତ୍ର ଶାସକ ବା ଭାଇସରୟ ଦରକାର କରୁଥିଲା । ଏହା ମିଷ୍ଟର ମର୍ଲେଙ୍କୁ ବିସ୍ମିତ କରିଥିଲା । ମଧୁସୂଦନ ପ୍ରକୃତରେ ଜଣେ ଏକଛତ୍ର ଶାସନରେ ବିଶ୍ୱାସ କରୁଥିଲେ କି ନା ଏହା ମିଷ୍ଟର ମର୍ଲେ ପଚାରିଥିଲେ । ମଧୁସୂଦନ ‘ହିଁ’ ବୋଲି ଉତ୍ତର ଦେଇଥିଲେ । ସେ ଲର୍ଡ଼ କର୍ଜନଙ୍କ ଭଳି ଜଣେ ଏକଛତ୍ର ଶାସକର ଶାସନରେ ବିଶ୍ୱାସୀ ଥିଲେ । ମଧୁସୂଦନ ମଧ୍ୟ ଏହାର କାରଣ ମିଷ୍ଟର ମର୍ଲେଙ୍କୁ ବୁଝାଇ ଦେଇଥିଲେ ।

ସେ ଇଂଲଣ୍ଡରେ “ଭାରତୀୟ ଶିଳ୍ପ ଉପରେ ବ୍ରିଟିଶର ପ୍ରଭାବ” (British Influence on Indian Industry) ନାମକ ଏକ ପ୍ରବନ୍ଧ ପଢ଼ିଥିଲେ । ପ୍ରବନ୍ଧଟି ସାମ୍ବାଦିକମାନଙ୍କ ଦ୍ୱାରା ଖୁବ ପ୍ରଶଂସିତ ହୋଇ ଥିଲା ।

୧୯୦୭ ମସିହାରେ ଇଂଲଣ୍ଡରୁ ଫେରି ମଧୁସୂଦନଙ୍କୁ ଓଡ଼ିଶାରେ ଏକ ଭୀଷଣ ଦୁର୍ଭିକ୍ଷରେ କାର୍ଯ୍ୟ କରିବାକୁ ପଡ଼ିଥିଲା । ସେ ନିଜେ ଉତ୍କଳର ବିଭିନ୍ନ ଅଞ୍ଚଳ ବୁଲି ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ବିଚଳିତ ହୋଇ ଯାଇଥିଲେ ଏବଂ ତତ୍କାଳୀନ ସରକାରଙ୍କ ତୀକ୍ଷ୍ଣ ଦୃଷ୍ଟି ଏହି ସମସ୍ୟା ପ୍ରତି ଆକର୍ଷଣ କରିଥିଲେ । ଇଂଲଣ୍ଡର ଜଣେ ପ୍ରଖ୍ୟାତନାମା ଗ୍ରନ୍ଥଲେଖକ ମିଷ୍ଟର ନେଭିନ୍‌ସନ ତାଙ୍କ ପ୍ରସିଦ୍ଧ ପୁସ୍ତକ “ଭାରତରେ ନବ ଜାଗରଣ” (New Spirit in India) ବହିରେ ମଧୁସୂଦନଙ୍କ ଦୁର୍ଭିକ୍ଷ କାର୍ଯ୍ୟ ସମ୍ପର୍କରେ ଯାହା ବର୍ଣ୍ଣନା କରିଥିଲେ, ତାହା ନିମ୍ନରେ ଦିଆ ଯାଉଅଛି । ମଧୁସୂଦନଙ୍କ ମୃତ୍ୟୁ ପରେ ସେହି ବହିର ଲେଖକ ମିଷ୍ଟର ହାରି, ଡବ୍ଲୁ, ନେଭିନ୍‌ସନ ମଧୁସୂଦନଙ୍କ ସ୍ମୃତିକୁ ପୁନର୍ଜୀବିତ କରି ୧୯୩୪ ମସିହା ଫେବୃୟାରୀରେ ମନଚେଷ୍ଟର ଗାର୍ଡ଼ିୟାନ ପତ୍ରିକାରେ ଲେଖିଥିଲେ :—

“୧୯୦୭ ମସିହା ହେମନ୍ତ ଋତୁରେ ମୋତେ ସେ ତାଙ୍କ କଟକ ବାସଭବନକୁ ନିମନ୍ତ୍ରଣ କରିଥିଲେ । ତାଙ୍କର ଇଚ୍ଛା ଥିଲା ଯେ ଓଡ଼ିଶାର କ୍ଷୁଧା ପୀଡ଼ିତ ଲୋକମାନଙ୍କର ଭୀଷଣ ଅବସ୍ଥାର ବର୍ଣ୍ଣନା ଶୁଣି ମୁଁ କାଳେ କିଛି

"ସାହାଯ୍ୟ କରିପାରେ । ପାହ୍ନାଭ୍ରରେ ଘୋର ବର୍ଷା ହେବାରୁ ନଈରେ ପ୍ରବଳ ବନ୍ୟା ହୋଇଥିଲା । ଗାଁମାନଙ୍କରେ ଗୃହ ଘର ସବୁ ଓଲଟି ପଡ଼ିଥିଲା ଏବଂ ଲୋକମାନେ ନିରନ୍ନପ୍ରାୟ, ହାଡ଼ମାଳ କଙ୍କାଳରେ ପରିଣତ ହୋଇ ଯାଇଥିଲେ ।

"ବଙ୍ଗଳାର ଗଭର୍ଣ୍ଣର ସାର ଅଣ୍ଡ୍ରୁ ଫ୍ରେଜର ଅନ୍ୟ ବ୍ରିଟିଶ ଅଫିସରଙ୍କ ସହିତ କେତେକ ଗୃହଜଳ ଛନ୍ନ ଦେଉଥିଲେ । କିନ୍ତୁ ଭାରତୀୟମାନେ ମିଷ୍ଟର ଦାସଙ୍କୁ ଗୃହ ରୂହିଥିଲେ । କାରଣ ତାହାଙ୍କ ସମସ୍ତେ ଆଶ୍ଚର୍ଯ୍ୟ କ୍ଷମତାଶାଳୀ ଋଷି ବୋଲି ଭାବୁଥିଲେ । ବିଶେଷତଃ ଯେପରି ଘା ଶୁଖାଇବାରେ ତାଙ୍କର ଅଶେଷ କ୍ଷମତା ଥିଲା ।

"ମୁଁ ନିଜେ ଦେଖିଛି ଜଣେ ଅତି ବଡ଼ ଘାରେ ଘାଣ୍ଟି ହୋଇ ଅତି ଦୁଃଖରେ ତାଙ୍କ ପାଖକୁ ଦୌଡ଼ି ଆସିଥିଲା ଏବଂ ମିଷ୍ଟର ଦାସଙ୍କୁ କହିଲା ଯେ ପାହୁଲାଠାଏ ହେଲେ ସେ ତା' ଘାରେ ଛୁଆଁଇ ଦିଅନ୍ତୁ ଏବଂ ପରେ ସେ ଭଲ ହୋଇ ଯାଇଥିଲା । ଅନ୍ୟ ଜଣେ ଲୋକ ଗୋଟିଏ ପିତଳ କୁଣ୍ଡ ନେଇ ଆସିଥିଲା । ସେ ମିଷ୍ଟର ଦାସଙ୍କୁ ସେଥିରେ ତାଙ୍କ ଅଙ୍ଗୁଳି ବୁଡ଼ାଇବାକୁ କହିଲା । କାରଣ ତାର ସ୍ତ୍ରୀ ପ୍ରସବବେଦନାରୁ ରକ୍ଷା ପାଇ ପାରେ । ଯେଉଁକ୍ଷଣି ମଧୁସୂଦନ ତାଙ୍କ ହାତ ପାଣିରେ ବୁଡ଼ାଇଲେ, ଶିଶୁ ଅନାୟାସରେ ଜନ୍ମ ହେଲା ।" ଏହି ଘଟଣା ଦୁଇଟି ମଧ୍ୟ ତାହାଙ୍କ ବହିରେ ଲେଖିଥିଲେ ।

ମିଷ୍ଟର ବେଭନ୍‌ସନ ତାଙ୍କ "ଭାରତୀୟ ନବଜାଗରଣ" ପୁସ୍ତକରେ ଏ ସମ୍ପର୍କରେ ଆଉ ଯାହା ଲେଖି ଅଛନ୍ତି, ତାହାର ଅବିକଳ ଅନୁବାଦ ତଳେ ଦିଆଗଲା :—

"ଇଉରୋପୀୟ ଶିକ୍ଷାରେ ଉଚ୍ଚ ଶିକ୍ଷିତ, କଲିକତା ବିଶ୍ୱବିଦ୍ୟାଳୟର ଏକମାତ୍ର ଓଡ଼ିଆ ଗ୍ରାଜୁଏଟ, ଅସୀମ ଦୟା ଏବଂ ସେବା ସକାଶେ ସମଗ୍ର ଭାରତରେ ବିଖ୍ୟାତ ଏବଂ ଲୋକମାନଙ୍କ ଦାବି ଏବଂ ଅଧିକାର ପାଇଁ ବଡ଼ ଲଢ଼ୁଆ କଟକର ଅଧିବାସୀ ମିଷ୍ଟର ମଧୁସୂଦନ ଦାସଙ୍କ ସହିତ ମୁଁ ଭ୍ରମଣ କରୁଥିଲି । ମଧୁସୂଦନଙ୍କର ଖ୍ରୀଷ୍ଟିୟାନ ଧର୍ମ ଏବଂ ସାଧୁ ଖ୍ୟାତି ଥିଲେ ମଧ୍ୟ ବିଚ୍ଛିନ୍ନତାରେ ଗୁଡ଼ା ହୋଇଥିବା ଲଙ୍ଗଳା ଲୋକ ପ୍ରତି କୁକୁରର ବ୍ୟବହାର ଯେପରି ହୁଏ, ସେହିପରି ମଧୁସୂଦନଙ୍କ ପ୍ରତି ଅଫିସରଙ୍କ ବ୍ୟବହାର ଥିଲା । ଥରେ ରାତିରେ ଗୋଟିଏ ଡାକ ବଙ୍ଗଳାରେ ପହଞ୍ଚି ଆମ୍ଭେମାନେ ଦେଖିଲୁ ଯେ ଡାକବଙ୍ଗଳାର ଦୁଇ, ତିନୋଟି କୋଠରୀ ଜଣେ ବଙ୍ଗୀୟ ମାଜିଷ୍ଟ୍ରେଟ ଏବଂ ତାହାଙ୍କ ସହକର୍ମୀଙ୍କ ଦ୍ୱାରା ଅଧିକୃତ ହୋଇଅଛି ।

"ମିଷ୍ଟର ଦାସ ବୁଢ଼ା ରୋଗୀ ଥିବାରୁ ତାଙ୍କ ପାଇଁ ଗୋଟିଏ କୋଠରୀ ଛଡ଼ା ମୁଁ ଦ୍ଵାରା ଭଳ ଖୋଲା ଜାଗାରେ ଶୋଇଥିଲି । ଆମ୍ଭେମାନେ ଆମ୍ଭମାନଙ୍କ ନାମ ଡେପୁଟି ମାଜିଷ୍ଟ୍ରେଟଙ୍କ ନିକଟ ପଠାଇଥିଲୁଁ ଏବଂ ଆମ୍ଭମାନଙ୍କୁ ଭିତରକୁ ଯିବାକୁ ଆମନ୍ତ୍ରଣ ଆସିଲା । ଇଉରୋପୀୟ ସମ୍ମାନରୁ ତଳକୁ ଆସିବାକୁ ସେ ଆଦୌ ପ୍ରସ୍ତୁତ ନ ଥିଲେ । ସେ ତାଙ୍କ ଆରାମ ଚୌକିର ହାତ ଉପରେ ଗୋଡ଼ ରଖି କଥାବାର୍ତ୍ତା ଆରମ୍ଭ କଲେ । ମୋର ଅନୁମାନ ହେଉଅଛି, ହୁଏତ ଇଉରୋପୀୟ ଅଫିସରମାନେ ଦେଶୀ ଲୋକ (Natives)ଙ୍କ ସହିତ ଏହିପରି କଥାବାର୍ତ୍ତା କରନ୍ତି । ମୁଁ ତାଙ୍କର ଏହି ଭାବ ବଦଳାଇ ପାରିଲି ନାହିଁ ।

"ମିଷ୍ଟର ଦାସ ତାହାଙ୍କୁ ଜଣାଇଲେ ଯେ ବାହାରେ ତିନି ଚାରି ଜଣ ବିଧବା ଛିଡ଼ା ହୋଇ କାନ୍ଦୁଛନ୍ତି, କାରଣ ସେମାନଙ୍କ ସ୍ଵାମୀମାନେ ଦୁର୍ଭିକ୍ଷରେ ଅନାହାରରେ ମରି ଯାଇଥିଲେ । ସେମାନଙ୍କ ଆବେଦନ ଶୁଣିବାକୁ ସେ ସେହି ମାଜିଷ୍ଟ୍ରେଟଙ୍କୁ ଅନୁରୋଧ କରିଥିଲେ । ଏହି ଅଫିସର ତାଙ୍କ ଜମିଲା ଆସନରୁ ଉଠି ବାହାରକୁ ଯିବାକୁ ମନା କରିଥିଲେ । ସେ କହିଥିଲେ ଯେ ସେ ସେମାନଙ୍କ କାହାଣୀ ଶୁଣି ସାରିଛନ୍ତି ଏବଂ ସେ ନିଜେ ସ୍ଥିର କରି ସାରିଛନ୍ତି ଯେ ସେମାନଙ୍କ ସ୍ଵାମୀମାନେ ଅନାହାରରେ ମରି ନ ଥିଲେ । ସେମାନେ ଅନ୍ୟ କୌଣସି କାରଣରୁ ମରିଛନ୍ତି । ମିଷ୍ଟର ଦାସ ଆଉ କେତେଗୁଡ଼ିଏ ଘଟଣା କହିଲେ, ଅଫିସର ଉତ୍ତର ଦେଲେ, ସେ ପ୍ରାୟ ମନେ କରୁଛନ୍ତି ଯେ ସେ ସବୁ ପରୀକ୍ଷା କରି ସାରିଛନ୍ତି; କିନ୍ତୁ ସେ ଠିକ୍ ଭାବରେ ଜଣାଇ ପାରିଲେ ନାହିଁ । ଯାହାହେଉ ଅଫିସରମାନଙ୍କ ଅବହେଳା କିମ୍ବା ଦୁର୍ବ୍ୟବହାର ପ୍ରଭୃତି ଦୋଷାରୋପ ସବୁ ମିଛ । ତାହାଙ୍କୁ ଦେଖା କରିବାକୁ ସେ ସେଠାରେ ଉପସ୍ଥିତ ହୋଇ ନଥିଲେ । କିନ୍ତୁ ମିଷ୍ଟର ଦାସ ଗାଁର ସମସ୍ତ ଅଭାବ, ଅଭିଯୋଗ ବିଷୟରେ ମାଜିଷ୍ଟ୍ରେଟଙ୍କୁ ବାରମ୍ବାର ପ୍ରଶ୍ନ ପଚାରିଥିଲେ । ଶେଷରେ ଡେପୁଟି ମାଜିଷ୍ଟ୍ରେଟ ମଣିଷର ସହିବା ଶକ୍ତି ଅତିକ୍ରମ କରିଗଲେ, ସେ ବିରକ୍ତ ହୋଇଗଲେ ଏବଂ ଆଉ କିଛି କଥାବାର୍ତ୍ତା କରିବାକୁ ମନା କରି ଦେଲେ । ତାହାଙ୍କ ବୁଟ ଯୋଡ଼ାକୁ ନମସ୍କାର (Good night) ଜଣାଇ ଆମ୍ଭେମାନେ ସେହି କୋଠରୀ ପରିତ୍ୟାଗ କଲୁଁ ।

"ଆମ୍ଭେମାନେ ଫେରିବା ବେଳେ ଜାଣିଲୁଁ ଯେ ସେ ଗାଁର ଚୌକିଦାରକୁ ହୁକୁମ ଦେଇ ଯାଇଅଛନ୍ତି ଯେ ଯେପରି ଲୋକେ ଆମ୍ଭମାନଙ୍କୁ ଦେଖା ନ କରନ୍ତି । ଦେଖା କଲେ ଅଜଣା ଦଣ୍ଡର ଭୟ ମଧ୍ୟ ଦେଖାଯାଇଥିଲା । ଅମଲାତନ୍ତ୍ରରେ ପୋଲିସ ଏବଂ ଅଫିସରଙ୍କ ଦ୍ଵାରା ଏତେ ଭୟ ପ୍ରଚାର କରାଯାଇ ପାରିଥିଲା ଯେ ଆମ୍ଭେମାନେ ଫେରିଲା ବେଳେ ଖୁବ୍ କମ ଲୋକ ଆମ୍ଭମାନଙ୍କୁ ଦେଖା କରୁଥିଲେ । କିନ୍ତୁ ପୂର୍ବରୁ ଶହ ଶହ ଲୋକ ଆମ୍ଭମାନଙ୍କଠାରୁ କୌଣସି

ସାହାଯ୍ୟ ପାଇଁ ବା ହାକିମ ଦେଖିବା ପାଇଁ କିମ୍ବା ସେମାନଙ୍କ ପ୍ରିୟ ଜାତୀୟ ବୀରଙ୍କୁ ଦେଖା କରିବାକୁ ବାଟ ପାଖରେ ରୁଣ୍ଡ ହେଉଥିଲେ । ଯେଉଁ ଅଳ୍ପ ଲୋକେ ଉପରେ ଆସିଥିଲେ, ସେମାନେ ଆମ୍ଭମାନଙ୍କୁ ସତ ସତ କଥା କହୁଥିଲେ । ଆମ୍ଭେମାନେ ଏହି ଘଟଣାର ପ୍ରକୃତ କଥା ଜାଣି ପାରି ନ ଥାନ୍ତୁ, ଯଦିଚ ଆମ୍ଭେମାନେ ନ ଦେଖିଥାନ୍ତୁ ଯେ ଗାଁରେ ଜଣେ ଚୌକିଦାର ମାଜିଷ୍ଟ୍ରେଟଙ୍କର ଏ ହୁକୁମ ନେଇ ଘରକୁ ଘର ଯାଉ ନ ଥାନ୍ତା ! କିନ୍ତୁ ଏପରି ଦୁର୍ଦ୍ଦଶା ସମୟରେ ମିଷ୍ଟର ଦାସଙ୍କ ଭଳି ଲୋକର ସାହାଯ୍ୟ ନେବାକୁ ଅଫିସରମାନେ ଖୁସି ହୁଅନ୍ତେ; କାରଣ ଲୋକେ ତାହାଙ୍କ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରୁଥିଲେ । ମଧୁସୂଦନ ବୈଦେଶିକ ଧର୍ମ ଗ୍ରହଣ କରିଥିଲେ ମଧ୍ୟ ଲୋକମାନଙ୍କୁ ଆଉ କେହି ବେଶୀ ଭଲଭାବରେ ଜାଣି ନ ଥିଲେ !"

ମଧୁସୂଦନ ପ୍ରଥମେ ଦେଶସେବା କଲାବେଳେ ଏ ଦେଶର ପରିସ୍ଥିତି କ'ଣ ଥିଲା ଉପରଲିଖିତ ବୃତ୍ତାନ୍ତରୁ ସହଜରେ ପ୍ରତୀୟମାନ ହେବ । ଏହି ଦୁର୍ଭିକ୍ଷରେ ମଧୁସୂଦନ ଅକ୍ଳାନ୍ତ ପରିଶ୍ରମ କରିଥିଲେ ଏବଂ ସରକାରଙ୍କ ଶିଥିଳ ନୀତିର ତୀବ୍ର ସମାଲୋଚନା କରିଥିଲେ । ତତ୍‌କାଳୀନ କଲେକ୍ଟର ମିଷ୍ଟର ଗ୍ୟାରେଟ୍, କମିଶନର ମିଷ୍ଟର ଓଉଡ୍‌ଙ୍କ କାମରେ ସନ୍ତୁଷ୍ଟ ନ ହୋଇ ନିଜେ ସେ ବଙ୍ଗର ଗଭର୍ଣ୍ଣର ମିଷ୍ଟର ଆଣ୍ଡ୍ରୁ ଫ୍ରେଜରଙ୍କ ନିକଟ ଟେଲିଗ୍ରାଫ୍ କରି ତାଙ୍କୁ ଓଡ଼ିଶାକୁ ଅଣାଇଥିଲେ । ସେବର୍ଷ ବଡ଼ଦିନ ଉପହାର ସ୍ୱରୂପ ସେ ଏକ ଦୁର୍ଭିକ୍ଷ ଛବି ତାଙ୍କ ଇଉରୋପୀୟ ବନ୍ଧୁମାନଙ୍କୁ ଉପହାର ଦେଇଥିଲେ । ସରକାରୀ ଉଚ୍ଚପଦସ୍ଥ କର୍ମଚାରୀମାନେ ମଧ୍ୟ ଏହି ବିଚିତ୍ର ଉପହାର ପାଇଥିଲେ । ସେହି ଇଂରେଜ ଲେଖକ ମିଷ୍ଟର ନେଭିନସନ ତତ୍କାଳୀନ ଦୁର୍ଭିକ୍ଷର ଯେଉଁ ଚିତ୍ର ଦେଇଥିଲେ, ତାହା ତଳଲିଖିତ ଲେଖାରୁ ଅଧିକ ସ୍ପଷ୍ଟ ଜଣାଯିବ । ମୂଳ ଇଂରାଜୀର ଅନୁବାଦ ମାତ୍ର ଦିଆଗଲା ।

"ମୁଁ ଯେତେବେଳେ ଓଡ଼ିଶାରେ ପହଞ୍ଚିଲି, କଟକର ଏକ ବଟିଚ୍ଛୁରେ ପ୍ରଥମେ ବିପଦର ଚିତ୍ର ଦେଖିଲି । ପ୍ରାୟ ତିରିଶ, ଚାଳିଶଜଣ ନିର୍ଜୀବ କଙ୍କାଳ ମାତ୍ର ମୋଆଡ଼କୁ ଗୁରୁଣ୍ଡେଇ ଗୁରୁଣ୍ଡେଇ ଆସିଥିଲେ । ଏ ଚିତ୍ର ଦେଖି ପଥର ମଧ୍ୟ ତରଳି ଯାଇଥାନ୍ତା । ଗୋଟିଏ ନିର୍ଜୀବ କଙ୍କାଳ ମୂର୍ତ୍ତିର ବର୍ଣ୍ଣନା ଦରକାର ନାହିଁ । ଛାତିର ହାଡ଼ ପଦାକୁ ବାହାରି ପଡ଼ିଥାଏ, ମେରୁଦଣ୍ଡ କଣ୍ଟାଭଳି ଦୋହଲୁ ଥାଏ, ଗୋଡ଼ ଏବଂ ହାତ ସବୁ ଶୁଖିଲା କାଠିଭଳି, କାନ୍ଧ ହାଡ଼ ପାଖରେ ଗହୀରିଆ ଗାଡ଼, ଧଡ଼ଧଡ଼ିଆ ଚମଡ଼ାରେ କେତେ ଗିରା ପଡ଼ିଥାଏ । ଯେତେବେଳେ ଦଳେ ଏହି ନିର୍ଜୀବ କଙ୍କାଳ ତୁମ ଆଗରେ ସିଧା ଭୂମିରେ ପଡ଼ିଯାନ୍ତି, ସେମାନଙ୍କ ମୁଣ୍ଡ ଉପରେ ହାତ ଦୁଇଟି ଲମ୍ବିଥାଏ, ସେମାନଙ୍କ ମୁଣ୍ଡ

ଏବଂ ମୁଖ ଧୂଳିରେ ଲୋଟୁଥାଏ ଏବଂ ସେମାନେ ସେମାନଙ୍କ ହାତରେ ତୁମର ପାଦକୁ ଧରନ୍ତି ଏବଂ ସେମାନଙ୍କ ହାତ ମୁଣ୍ଡ ତୁମ ଜୋତା ଉପରେ ରଖନ୍ତି; ତୁମେ କଣ କରିବ ? ଯେତେବେଳେ ପନ୍ଦରଶହ ଏପରି ନର, ନାରୀ, ଶିଶୁ ତୁମର ସାକ୍ଷାତପାଇଁ ଅପେକ୍ଷା କରିଥାନ୍ତି ଏବଂ ସେମାନେ ତୁମମାନଙ୍କୁ କୌଣସି ଅକାର୍ଯ୍ୟ ଓ ନଗ୍ନଚିଆ ନିବେଦନ ନ୍ୟସ୍ତ କରିବେ । ***

"ମୁଁ ପରେ ଯାହା ଶୁଣିଲି ଏବଂ ଦେଖିଲି ମୋର ହିସାବ ଅନୁସାରେ ୩,୦୦,୦୦୦ (ତିନି ଲକ୍ଷ) ଲୋକଙ୍କ ମଧ୍ୟରେ ଶତକଡ଼ା ୫ ଜଣ ଏହିପରି କଙ୍କାଳରେ ପରିଣତ ହୋଇଅଛନ୍ତି ।

"ଏ ଲେଖା ହୁଏତ ଠିକ୍ ଧାରଣା ଜନ୍ମାଇ ପାରୁ ନାହିଁ । ତୁମେ ଯଦି ହିସାବ କରିବ, ଦେଖିବ ପ୍ରାୟ ୧୫୦୦୦ (ପନ୍ଦରହଜାର) ନିର୍ଜୀବ କଙ୍କାଳ ଖାଇବା ବିନା ମୃତ୍ୟୁର ନିକଟବର୍ତ୍ତୀ ହୋଇଅଛନ୍ତି ।

"ମୋ କଥା କହିଲେ ମୁଁ ହଜାର ସଂଖ୍ୟାରେ ଭାବିପାରୁ ନାହିଁ । ମୁଁ ବିଶ୍ୱାସ କରୁଛି ଯେ, ଅର୍ଥନୀତିଜ୍ଞ ଏବଂ ରାଜକର୍ମଚାରୀମାନେ ମୋପାଇଁ ଏ ହିସାବ କରିଦେବେ । କିନ୍ତୁ ସରକାରୀ ବିବୃତିରେ ଏମିତି ଗୋଟିଏ ବାକ୍ୟ ଥିଲା, ଯାହାର ଅର୍ଥ ମୋଭଳି ଲୋକଙ୍କୁ ମଧ୍ୟ ମିଛ ଜଣାପଡ଼ି ଯାଇଥିଲା । ତାହା ଏହି—"ଖାଇବା ବିନା ମୃତ୍ୟୁ ନାହିଁ ।"

ଏହାଠାରୁ ଆଉ କିଛି ବେଶୀ ସ୍ପଷ୍ଟତର ହୋଇ ନ ପାରେ ।

"ତଥାପି ମୁଁ ଯେତେବେଳେ ଗାଁ ଭିତରକୁ ଗଲି ଏବଂ ମଲା ମଣିଷଙ୍କ ହାଡ଼ଗଦା ଦେଖିଲି ଅର୍ଥନୀତିଜ୍ଞଙ୍କ ବହୁ କଥା ଭଳି ଏହି ସରକାରୀ ବିବୃତିର ଅର୍ଥ ମୋତେ ଜଣା ପଡ଼ିଗଲା । ସବୁଠାରେ ସରକାରୀ ଅଫିସରମାନେ କହିଲେ, ଯେ କୌଣସି ସାଧାରଣ ଏବଂ ଏଡ଼ାଇ ନ ପାରିବା ରୋଗ ଯଥା—କଲେରା, ପେଟବ୍ୟଥା ପ୍ରଭୃତିରେ ଲୋକେ ମରିଅଛନ୍ତି । ସରକାରୀ ଅଫିସରମାନଙ୍କ ମତ ଅନାହାର ମୃତ୍ୟୁ ସମ୍ବାଦର ବିରୁଦ୍ଧରେ ଏହା ମୃତ୍ୟୁ ଜଣାପଡ଼ିଗଲା ।"

ତେଣୁ ମଧୁସୂଦନ କିପରି କରାଳ ଦୁର୍ଭିକ୍ଷ ମଧ୍ୟରେ କାମ କରୁଥିଲେ ତାହା ଏଥିରୁ ସହଜରେ ପ୍ରତୀୟମାନ ହେଉଅଛି । ମଧୁସୂଦନ ୧୮୯୧ ଠାରୁ ୧୮୯୫ ଯାଏଁ କଟକ ଜିଲ୍ଲାବୋର୍ଡର ପ୍ରଥମ ବେସରକାରୀ ଭାଇସ୍ ଚେୟାରମ୍ୟାନ୍ ହୋଇଥିଲେ

ଏବଂ ତତ୍‌କାଳୀନ କଲେକ୍‌ଟର ମିଷ୍ଟର ଡି. ଷ୍ଟିଭେନ୍‌ସନ୍ ତାହାଙ୍କ ଉପରେ ଚେୟାରମ୍ୟାନ୍ କ୍ଷମତା ଅର୍ପଣ କରିଥିଲେ । ସେ ବଙ୍ଗ ବ୍ୟବସ୍ଥାପକ ସଭାକୁ ସଭ୍ୟ ହୋଇ ଯିବାରୁ ଏହି ସାଧାରଣ କାର୍ଯ୍ୟ ପରିତ୍ୟାଗ କରିଥିଲେ ।

୧୯୦୮ ମସିହାରେ ମଧୁସୂଦନ କଟକ ସହରରେ ବାଳିକାମାନଙ୍କ ଶିକ୍ଷା ପାଇଁ ଏକ ସ୍କୁଲ ସ୍ଥାପନ କରିଥିଲେ । ନାରୀଶିକ୍ଷାର ଉପାଦେୟତା ଓ ପ୍ରୟୋଜନୀୟତା ଏତେ ଗଭୀରଭାବରେ ସେ ଉପଲବ୍ଧି କରିଥିଲେ ଯେ ଏଥିପାଇଁ ସେ ଇଂଲଣ୍ଡକୁ ଜଣେ ଭାରତୀୟ ନାରୀଙ୍କୁ ପଠାଇ ସେଠାରୁ ଶିକ୍ଷା ପାଇ ଆସି ଏହି ସ୍କୁଲରେ କନ୍ୟାମାନଙ୍କ ଶିକ୍ଷା ଭାର ତାହାଙ୍କ ହାତରେ ଅର୍ପଣ କରିଥିଲେ । ୧୯୦୮ ରେ ଏହି ସ୍କୁଲ ପାଇଁ ମଧୁସୂଦନ ନିଜ ହାତରୁ ବହୁ ଅର୍ଥ ଦାନ କରିଥିଲେ । ୧୯୧୩ରେ ଏହି ସ୍କୁଲ ସରକାରୀ ବିଦ୍ୟାଳୟରେ ପରିଣତ ହୋଇଥିଲା ।

୧୯୦୪ ମସିହାରେ ଉତ୍କଳ ସମ୍ମିଳନୀ ସଙ୍ଗରେ ଯୁବକମାନଙ୍କୁ ସମ୍ମିଳନୀ ଆଦର୍ଶରେ ଅନୁପ୍ରାଣିତ କରିବା ସକାଶେ ଉତ୍କଳ ଯୁବକ ସମ୍ମିଳନୀ ମଧ୍ୟ ଆୟୋଜନ କରାଯାଇଥିଲା । ଏହି ଉତ୍କଳ ଯୁବକ ସମ୍ମିଳନୀ (Utkal young-man's association) ପାଇଁ ସମସ୍ତ ଅର୍ଥ ମଧ୍ୟ ମଧୁସୂଦନ ଦାନ କରିଥିଲେ । ଏହି ବର୍ଷ ମଧୁସୂଦନ ସି. ଆଇ. ଇ. ପଦବୀ ପାଇଥିଲେ । ମାତ୍ର ମଧୁସୂଦନ ଏହି ପଦବୀ ପାଇବା ସକାଶେ କେବେ ଚେଷ୍ଟା କରି ନ ଥିଲେ, ବରଂ ଏହି ପଦବୀ ଫେରାଇ ନେବାକୁ ସେ ସରକାରଙ୍କୁ ଅନୁରୋଧ କରିଥିଲେ । ଏହା ତାଙ୍କର ଖଣ୍ଡିଏ ଚିଠିରୁ ପ୍ରକାଶ । ମଧୁସୂଦନ ୧୯୨୧ ଜାନୁଆରୀରେ ମନ୍ତ୍ରୀ ଥିଲାବେଳେ ଯେଉଁ ଚିଠି ତତ୍କାଳୀନ ଗଭର୍ଣ୍ଣର (Sir Havillard Lemesurier)ଙ୍କ ପାଖକୁ ଲେଖିଥିଲେ, ତହିଁରେ ଏହି ବିଷୟ ବର୍ଣ୍ଣିତ ଅଛି । "ମୋତେ ଯେତେବେଳେ ସି. ଆଇ. ଇ. ପଦ ମିଳିଲା, ତାହା ପୂର୍ବରୁ ଲର୍ଡ଼ କର୍ଜନ ଏକ ଦୀର୍ଘ ବ୍ୟକ୍ତିଗତ ତାର ମୋ ପାଖକୁ ପ୍ରେରଣ କରିଥିଲେ । ମୁଁ ତତ୍କାଳୀନ ବଙ୍ଗଳାର ଚିଫ୍ ସେକ୍ରେଟେରୀଙ୍କ ସହ ଦେଖା କରି ଏହି ପଦବୀ ମୋତେ ସୁନ୍ଦର ଦିଶିବ ନାହିଁ; ତେଣୁ ଫେରସ୍ତ ନେବାକୁ ଅନୁରୋଧ କରିଥିଲି ।"*

---

*"When I received C.I.E. it was preceded by a long personal telegram from Lord Curzon. I saw the Bengal Chief Secretary of the time and begged to be relieved of an honour which would not sit kindly on me."

ମଧୁସୂଦନଙ୍କ ଦୀର୍ଘ ଜୀବନ ଏକ କର୍ମମୟ ଜୀବନ । ଉତ୍କଳର ଜାତୀୟ ଜୀବନ ସହିତ ଏହା ନାନା ଭାବରେ ଜଡ଼ିତ । ସେ ଅର୍ଥ ଉପାର୍ଜନ, ଯଶ ଅର୍ଜନ ସଙ୍ଗେ ସଙ୍ଗେ ଲୋକମାନଙ୍କ ମଙ୍ଗଳ ପାଇଁ ଦେଶସେବାରେ ନିଜକୁ ନିୟୋଜିତ କରି ନେଇଥିଲେ । ଉତ୍କଳର ସୁଖ ଦୁଃଖରେ ସେ ସମବେଦନା ପ୍ରକାଶ କରି ଦେଶର ସମସ୍ତ ଭାର ବହନ କରିଥିଲେ । ମଧୁସୂଦନ ଯେତେବେଳେ ଏହିପରି କର୍ମମୟ ଜୀବନଯାପନ କରୁଥିଲେ, ସେତେବେଳେ ଅନୁନ୍ନତ ଜାତୀୟ ଜୀବନ ଏବଂ ଲୋକମାନଙ୍କ ପ୍ରଗତି ପାଇଁ ଅବହେଳା ଓ ବୈଦେଶିକ ଶାସନ ପ୍ରତିକୂଳ ରୂପ ଭୁଲିଯିବା ଅନୁଚିତ । ମାତ୍ର ଏହାରି ମଧ୍ୟରେ ମଧୁସୂଦନ ଧ୍ରୁବତାରା ଭଳି ଜାତିକୁ ପଥ ଦେଖାଇବାକୁ ଉପସ୍ଥିତ ଥିଲେ । ମଧୁସୂଦନ ଇଂରାଜୀ ଭାଷାରେ ଥରେ କହିଥିଲେ; ଯାହାର ଓଡ଼ିଆ ଅନୁବାଦ ଏହିପରି ।

"ମୁଁ କେବଳ ଅସ୍ଥି—ଅସ୍ଥି ଗଦା ଚାରିଆଡ଼େ ଦେଖିଥିଲି ଏବଂ ଏହି ଅସ୍ଥି କଙ୍କାଳକୁ ଜୀବନ ଦେବାର ଭାର ମୁଁ ଗ୍ରହଣ କରିଥିଲି । ଏମାନଙ୍କ ଅସ୍ଥିରେ ମାଂସପେଶୀ ଦେଲି, ବାହୁରେ ଯୁଦ୍ଧ କରିବାକୁ ଗୋଳାବାରୁଦ ଦେଲି; କିନ୍ତୁ ମୁଁ କେବଳ ଉପରୁ ଭଗବାନଙ୍କ ବ୍ୟତୀତ କାହାଠାରୁ ହେଲେ ସାହାଯ୍ୟ ପାଇ ନାହିଁ ।" *

ମଧୁସୂଦନ କିପରି ସରକାରୀ ଓ ବେସରକାରୀ ପ୍ରତିବନ୍ଧକ ମଧ୍ୟରେ କାର୍ଯ୍ୟ କରିଥିଲେ, ତାହା ତାହାଙ୍କ ନିଜ ବକ୍ତୃତାରୁ ଏଠାରେ ଉଦ୍ଧୃତ କରି ଦିଆଯାଉଅଛି । ମଧୁସୂଦନ ୧୯୩୩ ଫେବ୍ରୁଆରୀ ୧୩ ତାରିଖରେ ହୋଇଥିବା କଟକର ନେତୃ ସମ୍ମିଳନୀରେ ଏହି ଅତୀତ ପରିସ୍ଥିତିର ବିଶ୍ଳେଷଣ ଓ ଆଲୋଚନା କରିଥିଲେ ।

"ମୋର ଦୀର୍ଘ ଆଶା ଆଜି ପୂରଣ ହେବା ମୁଁ ଦେଖୁଅଛି । ମୁଁ ଯେବେ ଆନ୍ଦୋଳନ ଆରମ୍ଭ କରିଥିଲି, ତାହାଠାରୁ ବହୁ ଦୀର୍ଘ କଠିନ ସମୟ ଓ ପରିସ୍ଥିତି ମଧ୍ୟ ଦେଇ ଆମ୍ଭେମାନେ ଗତି କରିଥାଇଁ । ମୋତେ ଏମିତି ଲୋକଙ୍କ ସହିତ ସଂଘର୍ଷ କରିବାକୁ ପଡ଼ିଥିଲା, ଯେ କି ଧନୀ, ବୁଦ୍ଧିମାନ୍ ଓ କ୍ଷମତାଶାଳୀ ଥିଲେ । ଉପରେ ଭଗବାନ ଓ ହୃଦୟରେ ବିବେକ ଘେନି ମୋତେ ଏକୁଟିଆ ଲଢ଼ିବାକୁ ପଡ଼ିଥିଲା । ମୋତେ ଦିନେ ଏମିତି ଜଣାପଡ଼ିଲା ଓଡ଼ିଶାର ପ୍ରଥମ ଗ୍ରାଜୁଏଟ

---

*" I found only heaps of dry bones bones, bones, nothing but bones, I undertook tremendous work to infuse life, to give muscels and arm my people with ammunation with help from none but the father above."

ମୁଣ୍ତରେ ଓଡ଼ିଆ ଜାତି ମିଳନ କରିବାକୁ ଚିନ୍ତା ଦେବାରେ ଭଗବାନଙ୍କର କିଛି ବିଶେଷ ଦାୟିତ୍ୱ ଅଛି । ମୁଁ ଏହା ଚିନ୍ତା କଲି ଏବଂ ଦେଖିଲି ଯେ, ଇତିହାସ ମୋ ପଛରେ ଏପରି ଅଛି, ଯାହା ପୃଥିବୀର ଯେ କୌଣସି ଜାତିର ସମ୍ମାନ ବଢ଼ାଇ ପାରେ । ମୁଁ ମୋ ଜାତିପାଇଁ କିଛିମାତ୍ର କରିଥିଲି । ମୁଁ ଏକାଥିଲି । ଏପରି କି ଓଡ଼ିଆ ରାଜାମାନେ ନିଜକୁ ଓଡ଼ିଆ କହିବାକୁ ଲଜ୍ଜାବୋଧ କରୁଥିଲେ । ଏବଂ ଓଡ଼ିଆ ସ୍କୁଲ ଛାତ୍ରମାନେ ନିଜକୁ ବଙ୍ଗାଳୀ ବୋଲି ଚିହ୍ନାଇ ଦେଉଥିଲେ ।

"ଜଣେ ବଡ଼ ଜଣାଶୁଣା ରାଜା, ଯାହାଙ୍କ ନାମ ସହିତ ଏହି ହଲର ନାମ ସଂଯୁକ୍ତ ( ଶ୍ରୀ ରାମଚନ୍ଦ୍ରଭଞ୍ଜ ) ବଙ୍ଗଳାରେ ବଙ୍ଗାଳୀ ବୋଲି ପରିଚିତ ହେଉଥିଲେ । ମନେ ରଖ, ମୁଁ ତାଙ୍କ ସହିତ ଦିନେ ରାତିରେ ଆଠଟାରୁ ଗୋଟାଏଯାଏ କଥାବାର୍ତ୍ତା କରିଥିଲି । ମୁଁ ତାଙ୍କୁ କହିଲି ରାଜା ଆପଣଙ୍କୁ ମୁଁ ଓଡ଼ିଆ କରିବାକୁ ପ୍ରତିଜ୍ଞାବଦ୍ଧ । ସେ ପ୍ରଥମ ଉତ୍କଳ ସମ୍ମିଳନୀର ସଭାପତି ହୋଇଥିଲେ । ଟ୍ରିବ୍ୟୁଟାରି ମହାଲର ସୁପରିଣ୍ଟେଣ୍ଡେଣ୍ଟ ଉତ୍କଳ ସମ୍ମିଳନୀରେ ଯେଉଁଠାରେ କି ଉତ୍କଳର ଲୋକେ ଏକତ୍ରିତ ହେବାକୁ ଚାହୁଁଥିଲେ ରାଜାମାନଙ୍କୁ ଯୋଗ ଦେବାକୁ ନିଷେଧ ଆଦେଶ ଦେଇଥିଲେ । ସେ କହିଲେ କେହି ମିଷ୍ଟର ଦାସଙ୍କ ସମ୍ମିଳନୀରେ ଯୋଗ ଦିଅ ନାହିଁ । ମୁଁ ଲର୍ଡ କର୍ଜନଙ୍କୁ ଖଣ୍ଡିଏ ଚିଠି ଲେଖିଥିଲି ।"

ମଧୁସୂଦନଙ୍କର ଲର୍ଡ କର୍ଜନଙ୍କ ସଙ୍ଗେ ଦେଖା ହୋଇଥିଲା । ସେ ଭାବିଥିଲେ ଯେ, ମଧୁସୂଦନ ଜଣେ ନିର୍ବୋଧ ଲୋକ । କିନ୍ତୁ ଶେଷରେ ସେ ଦେଖିଲେ ଯେ ମଧୁସୂଦନ ଜଣେ ଦେଶପ୍ରେମିକ ଓ ସେବକ । ଯେତେବେଳେ ମଧୁସୂଦନ ଓଡ଼ିଆ ଜାତିର ଦୁଃଖ ଦୁର୍ଦ୍ଦଶା ତାଙ୍କ ଆଗରେ ବର୍ଣ୍ଣନା କଲେ ତାହାଙ୍କ ଚକ୍ଷୁରୁ ଲୋତକଧାର ବହିଯାଉଥିଲା । ପୁଣି ଛାତ୍ରଜୀବନ କଥା ସ୍ମରଣ କରି ମଧୁସୂଦନ କହିଥିଲେ—"ବଙ୍ଗଳାରେ ମୁଁ ଏକମାତ୍ର ଓଡ଼ିଆ ଛାତ୍ର ଥିଲି ଏବଂ ମୋ ବିରୁଦ୍ଧରେ ସମସ୍ତ ବିଦ୍ରୂପ ବାଣ ପ୍ରୟୋଗ କରାଯାଇଥିଲା । ସେମାନେ ମୋତେ "ମଧୁ-ଉଡ଼େ" ବୋଲି ଡାକୁଥିଲେ ।"

ଏହି ବକ୍ତୃତାର ଅନ୍ୟ ଏକ ଅଂଶରୁ ସେହି ସମୟର ଓଡ଼ିଶାର ଶାସନ ଅବସ୍ଥା ଆହୁରି ସ୍ପଷ୍ଟ ହୋଇଉଠିବ । ମଧୁସୂଦନ କହିଥିଲେ— "ବଣିକ୍ ଜାତି ହିସାବରେ ଇଂରେଜମାନେ ଟଙ୍କା ଚାହୁଁଥିଲେ । କର୍ମଚାରୀମାନେ ଭାଷା କିମ୍ବା ଅନ୍ୟ କୌଣସି ବିଷୟ ତନ୍ନ ତନ୍ନ କରି ଦେଖୁ ନ ଥିଲେ । ବଙ୍ଗବାସୀମାନେ ଶାସନ ପରିଚାଳନା ଶିକ୍ଷା କରିଥିଲେ । ମୁସଲମାନ ରାଜତ୍ୱ ସମୟରୁ ସେମାନେ ଏହି ପରିଚାଳନାରେ ଅଭ୍ୟସ୍ତ ଥିଲେ । ତେଣୁ ବ୍ରିଟିଶମାନେ ଏକ ବିପଦଜନକ ଅବସ୍ଥା ସୃଷ୍ଟି କଲେ । ସେମାନେ ଏକ ମଧ୍ୟବର୍ତ୍ତୀ ଶାସକ ସମ୍ପ୍ରଦାୟ ଗଢ଼ିଥିଲେ । ଓଡ଼ିଆ ସ୍ୱାର୍ଥ ବଙ୍ଗାଳୀ ସ୍ୱାର୍ଥର

ବିରୁଦ୍ଧରେ ଥିଲା । କେତେବର୍ଷ ପରେ ଇଂରେଜମାନେ ନିଜ ଚକ୍ଷୁରେ ଓଡ଼ିଶାର ଅବସ୍ଥା ଦେଖିଲେ ଏବଂ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ ଯେ ପୂର୍ଣ୍ଣ ଉତ୍କାଯୁକ୍ତ ଛଡ଼ା ଏହା ଆଉ କିଛି ନୁହେଁ । ବଙ୍ଗାଳୀମାନେ ଆମକୁ ଗୃପି ରଖିବାପାଇଁ ଇଂରେଜମାନଙ୍କ ସହିତ ମିଶି ଯାଇଥିଲେ । ମୁଁ ପରିବର୍ତ୍ତନ ଗୃହୁଁ ଥିଲି । କିନ୍ତୁ ଏହା ପରିବର୍ତ୍ତିତ ହେଉ ନ ଥିଲା । କ୍ଷମତାଶାଳୀ ଓଡ଼ିଆମାନଙ୍କ ଆଗରେ ଏହି ମଧ୍ୟବର୍ତ୍ତୀ ଶାସକଦଳ କ୍ରମେ ଦୁର୍ବଳ ହୋଇ ପଡ଼ିଲେ । ଶାସନର ପରିବର୍ତ୍ତନ ସବୁବେଳେ ଆମ୍ଭମାନଙ୍କୁ ଅନ୍ଧକାରରେ ରଖିଅଛି ।" ଏହି ସମସ୍ତ ଅତୀତ ପରିସ୍ଥିତିରୁ ମଧୁସୂଦନଙ୍କ ସାଧନା ଓ ତାଙ୍କ କର୍ମଧାରାର ଗୁରୁତ୍ୱ ସହଜରେ ଉପଲବ୍ଧି କରିଯାଇ ପାରିବ ।

ଆଜି ମଧୁସୂଦନଙ୍କ ଜାତୀୟତା ଓ ଜାତୀୟ ଜୀବନର ମୂଳପତ୍ତନ ଉପରେ ଜାତି ବହୁଦୂର ଅଗ୍ରସର ହୋଇ ଯାଇଅଛି । ଆଜି ଉତ୍ସାହ, ଜାଗରଣର ଅଭାବ ନାହିଁ । ଆଜି ଜାତିର ଜାତୀୟ ସୌଧ ବାରବାଟୀର ନବତଳ ପ୍ରାସାଦ ଭଳି ଆକାଶ ଚୁମ୍ବନ କରି ସୁଦୃଢ଼ ଭୂମି ଓ ଭିତ୍ତିରେ ଦଣ୍ଡାୟମାନ । ସ୍ୱାଧୀନତାର ତିରଙ୍ଗା ପତାକା ଆଜି ଜାତୀୟ ଦୁର୍ଗର ଚୂଡ଼ାରେ ଫର ଫର ହୋଇ ଉଡ଼ୁଅଛି । କିନ୍ତୁ ଯେଉଁ ବୀର ଜାତିର ଜାତୀୟ ସୌଧର ଭିତ୍ତି ସ୍ଥାପୟିତା, ଯେଉଁମାନଙ୍କ ସାଧନା ଆଜି ଭୂମିତଳେ ଅର୍ଦ୍ଧ ଲୁକ୍କାୟିତ, ସେମାନଙ୍କ ମଧ୍ୟରେ ମଧୁସୂଦନ ଅଗ୍ରଣୀ । ମଧୁସୂଦନଙ୍କ ନାମ ସହିତ ନରସିଂହଚରଣ, ବିଚିତ୍ରାନନ୍ଦ, ଫକୀରମୋହନ, ଗୌରୀଶଙ୍କର, ବୈକୁଣ୍ଠନାଥ, ବ୍ରଜସୁନ୍ଦର, ଗୋପବନ୍ଧୁ ପ୍ରଭୃତିଙ୍କ ନାମ ମଧ୍ୟ ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ । ଶ୍ରୀ ରାମଚନ୍ଦ୍ର କମ୍ପା ସ୍ୱତନ୍ତ୍ରଦେବ ମଧ୍ୟ ଅଭେଦ୍ୟ ଅରଣ୍ୟ ଅଞ୍ଚଳରେ ଉତ୍କଳର ସଂସ୍କୃତି, ଜାତୀୟତାର ଅମୃତ ବାଣୀ ପହଞ୍ଚାଇ ପାରିଥିଲେ ଏବଂ ସମସ୍ତ ଛିନ୍ନବିଚ୍ଛିନ୍ନତା ମଧ୍ୟରେ ଅଖଣ୍ଡ ଉତ୍କଳର ଜାତୀୟଧ୍ୱଜା ଶିରଉପରେ ଉଡ଼ାଇ ରଖିଥିଲେ । ମଧୁସୂଦନଙ୍କ ମୃତ୍ୟୁ ପରେ ଉତ୍କଳର ସୁପରିଚିତ ସାହିତ୍ୟିକ ସଚ୍ଚିଦାନନ୍ଦ ରାଉତରାୟ ମଧୁସୂଦନଙ୍କ ବିଷୟରେ ଲେଖିବାକୁ ଯାଇ ଲେଖି ଅଛନ୍ତି—

"ଚତୁର୍ଦ୍ଦିଗ ସେତେବେଳେ ଅନ୍ଧକାର ପୂର୍ଣ୍ଣ । ସୁପ୍ତ ଜନତାର ଗଭୀର ବିଷ ନିଶ୍ୱାସରେ ଗଗନ ପବନ ପରିପୂର୍ଣ୍ଣ; ବନ୍ୟା, ଦୁର୍ଭିକ୍ଷ, ମହାମାରୀରେ ଓଡ଼ିଶାର ଜନପଦ ଶ୍ମଶାନରେ ପରିଣତ ହେବା ଉପରେ । କୁଡ଼ କୁଡ଼ ମଡ଼ା, ଲକ୍ଷ ଲକ୍ଷ ଚିତାଧୂମରେ ପୃଥିବୀ ପୂରି ଉଠିଛି, ସେତିକି ବେଳେ ଏହି ଶ୍ମଶାନ ଦେଶକୁ ସେ ଆସିଥିଲେ । ବିରାଟ ଜନସମୁଦ୍ରର ନିର୍ଜନ ବେଳା ଭୂମିରେ ବସି ସେ ପ୍ରଥମେ ଏହି ବିରାଟ ଗଣଶକ୍ତିର ଜାଗରଣ ସ୍ୱପ୍ନ ଦେଖିଥିଲେ । ଏହି ମୃତ ଜାତିର ଗଳିତ ଶବପିଣ୍ଡ ଉପରେ ବେଦୀ ରଚନା କରି ସେ ଓଡ଼ିଶାର ପ୍ରଥମ ଶ୍ମଶାନ

ପୂଜାରୀ ମହାଧ୍ୱଂସ ଭିତରେ ମହାପ୍ରଳୟ ଭିତରେ । ମଧୁସୂଦନ ମୃତସଞ୍ଜିବନୀ ମନ୍ତ୍ର—ଜାତୀୟ ଜୀବନର ଜାଗରଣ ଆହ୍ୱାନ ଓଡ଼ିଆର ପ୍ରାଣେ ପ୍ରାଣେ ଶୁଣାଇ ଥିଲେ । ସେ ଆସିଥିଲେ ସୃଷ୍ଟିର ମଧୁମୟ ବାଣୀ ବହନ କରି ମୁକ୍ତିର ଅନାସ୍ୱାଦିତ ମଧୁରସରେ ଜଗତକୁ ପୁଷ୍ଟ କରିବାଲାଗି ।"

ପଣ୍ଡିତ ଗୋଦାବରୀଶଙ୍କ ଭାଷାରେ

"ଉତ୍କଳ ବରେଣ୍ୟ ସୂନୁ ହେ ମଧୁସୂଦନ,
ତୁମ୍ଭ ଲଗି ଏକା ଆଜି ଏ ଉତ୍କଳ ଧନ୍ୟ !"

# ଦ୍ୱାଦଶ ଅଧ୍ୟାୟ

## ବକ୍ତା ଓ ବକ୍ତୃତା

ମଧୁସୂଦନ ସୁବକ୍ତା ଓ ସୁକଥକ ଥିଲେ । ଓ୍ୱଲ ଓ ଜାତୀୟ ବୀରର ବକ୍ତୃତା ଦେବା ଏକ ବିଶିଷ୍ଟ ଗୁଣ । ଯେ ଭଲ କଥା ଗପଦ କହିପାରେ ତାହା ଆଡ଼କୁ ଲୋକେ ଟଳିବା ସ୍ୱାଭାବିକ । ବଚନର କ୍ଷମତା ଅସୀମ । ଭଲ କଥା କାହାକୁ ସୁଖ ନ ଲାଗେ ? ପୁଣି ଅନ୍ୟର ମନରଞ୍ଜନ ହେଲା ଭଳି କଥା କହିବା କେତେ ଲୋକଙ୍କୁ ଆସେ ? ମଧୁସୂଦନ କିନ୍ତୁ ଏହି କଳାରେ ପାରଦର୍ଶୀ ଥିଲେ । ବିଶେଷତଃ ଉତ୍କଳ ତଥା ଭାରତରେ ଯେଉଁଠି ଅଶିକ୍ଷିତ ସଂଖ୍ୟା ଅତି ଅଧିକ ସେଠାରେ ଏହି 'କହିବା, ବୋଲିବା' ଶକ୍ତି ନେତୃତ୍ୱର ଏକ ଅତି ପ୍ରୟୋଜନୀୟ ଗୁଣ ।

ଜାତୀୟ ବୀର ଓ ନେତା ଭାବରେ ମଧୁସୂଦନ ଯେଉଁ ସ୍ୱପ୍ନ ଦେଖୁଥିଲେ, ଦେଶର ଉନ୍ନତି ପାଇଁ ତାଙ୍କ ହୃଦୟରେ ଯେଉଁ ଚିନ୍ତା ରୂପରେଖ ପଡ଼ିଥିଲା, ତାହାର ପ୍ରକାଶ ସେ ଚାହୁଁଥିଲେ । ଏହା ଅନେକ ସମୟରେ ତାହାଙ୍କ ବକ୍ତୃତାରେ ପ୍ରତିଫଳିତ ହୋଇଅଛି । ମଧୁସୂଦନ ବେଶୀ ଲେଖି ନାହାନ୍ତି । ବକ୍ତୃତା ଦେବା ତାଙ୍କର ପ୍ରିୟ କାର୍ଯ୍ୟ ଥିଲା ଏବଂ ବକ୍ତୃତା ଦେଲା ବେଳେ ମଧୁସୂଦନ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲେ । ତାଙ୍କ ବକ୍ତୃତାରେ କଳ୍ପନା, ସ୍ୱପ୍ନ ଯେପରି ରହୁଥିଲା, ଶ୍ରୋତାମାନଙ୍କ ପ୍ରାଣକୁ ସ୍ପର୍ଶ କଲାଭଳି ଭାଷା ଓ ଭାବ ମଧ୍ୟ ସେହିପରି ରହୁଥିଲା । ଲୋକଙ୍କୁ ଚଳାଇବାକୁ ହେଲେ ନେତା ଲୋକଙ୍କୁ ନିଜର ସ୍ୱପ୍ନ ବା ଭବିଷ୍ୟତରେ ଯୋଜିତ କରି ନ ପାରିଲେ, ତାଙ୍କ ନେତୃତ୍ୱର ମୂଲ୍ୟ ନାହିଁ ; ତେଣୁ ମଧୁସୂଦନ ବକ୍ତା ଭାବରେ କ'ଣ କହୁଥିଲେ, ଜାତିର ମଙ୍ଗଳ ପାଇଁ ତାଙ୍କର କି ପରିକଳ୍ପନା ଥିଲା, ତାହା ଆମ୍ଭମାନଙ୍କର ଆଲୋଚ୍ୟ ।

ମଧୁସୂଦନଙ୍କ ଦୀର୍ଘ ଜାତୀୟ ଜୀବନ ମଧ୍ୟରେ ସେ ଯେଉଁ ଅଜସ୍ର ବକ୍ତୃତା ଦେଇଥିବେ, ତାହା ସଂଗୃହୀତ ହୋଇ ପାରି ନାହିଁ । ଅତି ଅଳ୍ପ କେତୋଟି



ନିଖିଳ ଭାରତ ଖ୍ରୀଷ୍ଟିୟାନ ସମ୍ମିଳନୀରେ ମଧୁସୂଦନ

ଇଂରାଜି, ଓଡ଼ିଆ ବକ୍ତୃତା ଆମ୍ଭେମାନେ ଏପର୍ଯ୍ୟନ୍ତ ସଂଗ୍ରହ କରି ପାରିଅଛୁଁ । ଏହା ବ୍ୟତୀତ ବଙ୍ଗ, ବିହାର, ଓଡ଼ିଶା ଏବଂ ଦିଲ୍ଲୀ ପ୍ରଭୃତି ନାନା ବ୍ୟବସ୍ଥାପକ ସଭାରେ ସେ ଯେଉଁ ବକ୍ତୃତା ଦେଇଥିଲେ, ତାହା ଦେଖିବାକୁ ମିଳେ । ମଧୁସୂଦନଙ୍କ ଚିନ୍ତାଧାରା ସହିତ ସହଯୋଗ ସ୍ଥାପନ ନିମନ୍ତେ ଏହି ବକ୍ତୃତାଗୁଡ଼ିକ ପ୍ରୟୋଜନୀୟ ।

ମଧୁସୂଦନଙ୍କ ବକ୍ତୃତାକୁ ଦୁଇଭାଗରେ, ଅର୍ଥାତ୍ ଇଂରାଜି ବକ୍ତୃତା ଓ ଓଡ଼ିଆ ବକ୍ତୃତା ଭାବରେ ବିଭକ୍ତ କରାଯାଇ ପାରେ । ସେଥିମଧ୍ୟରୁ କେତେଗୁଡ଼ିଏ ସେ ବିଭିନ୍ନ ବ୍ୟବସ୍ଥାପକ ସଭାରେ ଦେଇଥିଲେ । ଅନ୍ୟଗୁଡ଼ିକ ଉତ୍କଳ ସମ୍ମିଳନୀ ପ୍ରଭୃତି ଜାତୀୟ ଅନୁଷ୍ଠାନମାନଙ୍କରେ ବା ବିଭିନ୍ନ ସଭା ସମିତିରେ ସଭାପତି ରୂପେ ଦେଇଥିଲେ ।

## ଓଡ଼ିଆ ବକ୍ତୃତା—

ମଧୁସୂଦନଙ୍କ ବକ୍ତୃତା 'ମଧୁସୂଦନଙ୍କ ଓଡ଼ିଆ ବକ୍ତୃତା ଓ ଗୀତ' ପରିଶିଷ୍ଟରେ ପ୍ରକାଶ ପାଇଅଛି । ଏଗୁଡ଼ିକ ଉତ୍କଳ ସମ୍ମିଳନୀରେ ପ୍ରଦତ୍ତ, ତେଣୁ ମଧୁସୂଦନଙ୍କ ଜାତୀୟ ଭାବଧାରା ଜାଣିବାକୁ ଏଗୁଡ଼ିକ ଅତି ପ୍ରୟୋଜନୀୟ । ମୋଟରେ ଚଉଦଟି ଓଡ଼ିଆ ବକ୍ତୃତା ମାତ୍ର ସଂଗୃହୀତ ହୋଇ ପାରିଅଛି । ଏହି ବକ୍ତୃତାଗୁଡ଼ିକ ୧୯୦୩ ମସିହାରୁ ୧୯୧୯ ମସିହାର ବିଭିନ୍ନ ସମୟରେ ପ୍ରଦତ୍ତ । ମଧୁସୂଦନ ପ୍ରାୟ ବକ୍ତୃତା ଆଗରୁ ଲେଖନ୍ତି ନାହିଁ । ଏପରିକି ସେ ୧୯୨୩ ମସିହାରେ ଯେଉଁ ସଭାପତି ଅଭିଭାଷଣ ଉତ୍କଳ ସମ୍ମିଳନୀରେ ସେ ଦେଇଥିଲେ, ତାହା ମଧ୍ୟ ସେ ତାହାଙ୍କ ସହକର୍ମୀଙ୍କୁ ଅଗରୁ ଡାକି ଦେଇଥିଲେ ।

ମଧୁସୂଦନଙ୍କ ଏହି ଭାଷଣଗୁଡ଼ିକ ଏକ ସ୍ୱତନ୍ତ୍ର ସାହିତ୍ୟ । ଏଗୁଡ଼ିକ ସରସ, ଭାବପୂର୍ଣ୍ଣ ଓ ସ୍ପନ୍ଦନମୟୀ । ଭାଷଣଗୁଡ଼ିକର ଭାଷା ଅତି ପ୍ରାଣସ୍ପର୍ଶୀ । ଏଗୁଡ଼ିକ ନାନା ବିଷୟରେ ପ୍ରଦତ୍ତ । "ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ? ଜାତି ଜାତି ମଧ୍ୟରେ ଭବ୍ୟ ହେବା ନିମନ୍ତେ ଜାତୀୟ ଜୀବନର ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଜୀବନ ପରିଲକ୍ଷିତ ହୁଏ, ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ, ତାହା କାଲି ଶ୍ମଶାନରେ ଶେଷ ହେବ । ଶରୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ ତାହା ଈଶ୍ୱରଙ୍କ ନିକଟରେ ପହୁଞ୍ଚିବ । ତଳେ ପାର୍ଥିବ ଜୀବନର ଆକର୍ଷଣ ଶକ୍ତି ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି ଏବମ୍ଭୂତ ପାର୍ଥିବ ଭାବଗୁଡ଼ିକ ମୋତେ ପ୍ରତିକ୍ଷଣ ତଳକୁ ଓଟାରୁଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣଶକ୍ତି ଅର୍ଥାତ ମୋର ପରିତ୍ରାଣ—ମୋର ଅନନ୍ତ ବିଶ୍ରାମ ସ୍ଥାନ ମୋତେ ସର୍ବଦା ଉପରକୁ ଟାଣୁଅଛି । ଚତୁଃପାର୍ଶ୍ୱରେ

ଅନ୍ୟାନ୍ୟ ଜାତି ଓ ସମାଜ ବିଦ୍ୟମାନ । ସେହି ଜାତି ଓ ସମାଜମାନଙ୍କ ସଙ୍ଗେ ଜୀବନ ମିଳାଇ ଆଳାପ କରିବା ଆମ୍ଭମାନଙ୍କର ଗୋଟିଏ ପ୍ରଧାନ କର୍ମ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ଭାଇ ଭାଇ ଜାତି ମଧ୍ୟରେ ସଦ୍ଭାବ ହେବ ।"

ଉପରଲିଖିତ ବକ୍ତୃତା ଅଂଶରୁ ବକ୍ତା ମଧୁସୂଦନଙ୍କ ପ୍ରାଣର ବାଣୀ ଆମ୍ଭେମାନେ ପାଉଁ । ଜାତୀୟ ଜୀବନ ବିକାଶ ନ ପାଇଲେ ବ୍ୟକ୍ତିଗତ କଳହ କିପରି ଜାତୀୟ ଏକତା ଓ ଦୃଢ଼ତାକୁ ନଷ୍ଟ କରିଦିଏ; ତାହାର ନମୁନା ଇତିହାସରେ ଅଜଣା ନୁହେଁ । ମଧୁସୂଦନଙ୍କ ଏହି ବାଣୀ ଆମ୍ଭମାନଙ୍କ ଜାତୀୟ ଜୀବନର ଏକ ମୌଳିକ ବାଣୀ ହୋଇ ରହିବା ଉଚିତ । ସେହି ଜାତୀୟ ଜୀବନ ସମ୍ପର୍କରେ ମଧୁସୂଦନ ଆହୁରି କହିଥିଲେ ।

"କେହି କେହି ଏପରି ବିଚାର କରନ୍ତି ଯେ, ଜାତୀୟ ସଦ୍ଭାବ ହେଲେ ବ୍ୟକ୍ତିଗତ ଅସଦ୍ଭାବ ରହିବ ନାହିଁ । ଏପରି ବିଚାର ଭ୍ରାନ୍ତିମୂଳକ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ସୁଦ୍ଧା ଜାତି ମଧ୍ୟରେ ବ୍ୟକ୍ତିଗତ ବିବାଦ ସମୂଳେ ଲୋପ ପାଇବା ଅସମ୍ଭବ । ଏପରି କେହି ମନେ କରିବେ ନାହିଁ ଯେ ଉତ୍କଳରେ ଜାତୀୟ ଜୀବନ ପ୍ରତିଷ୍ଠିତ ହୋଇ ତହିଁର ମୂଳଦୁଆ ଦୃଢ଼ ହେଲେ ଆମ ଦେଶରେ ବ୍ୟକ୍ତିଗତ ବିବାଦ ଆଦୌ ରହିବ ନାହିଁ ଓ ଅଦାଲତ ଗୁଡ଼ିକ ଉଠିଯିବ । ବ୍ୟକ୍ତିଗତ ଜୀବନରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ସଦ୍ଭାବରେ କିଛି ଅଭାବ ଘଟିବ ନାହିଁ ।"

ମଧୁସୂଦନଙ୍କ ବକ୍ତୃତାବଳୀ ସର୍ବଦା ଏକ ଉଚ୍ଚଭାବର ବାହକ । ଏହା ବଡ଼ ପ୍ରାଣସ୍ପର୍ଶୀ । ମଧୁସୂଦନ ବକ୍ତା ଭାବରେ ଶ୍ରୋତୃବର୍ଗଙ୍କ ପ୍ରାଣରେ କୌତୂହଳ, ଉନ୍ମାଦନା ଓ ସ୍ପନ୍ଦନ ସୃଷ୍ଟି କରୁଥିଲେ । ସେ ତାହାଙ୍କ କଳନା ଓ ଚିନ୍ତକର ଭଲ ବାସ୍ତବତାର ନିଖୁଣ ଓ ନିପୁଣ ଚିତ୍ର ଦେଇ ତାହାଙ୍କ ଶ୍ରୋତୃବର୍ଗଙ୍କ ଚିତ୍ତକୁ ଜୟ କରନ୍ତି । ତେଣୁ ଏହା ଲୋକମାନଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରେ । ମଧୁସୂଦନ ଦେଶର ଆର୍ଥିକ ପରିସ୍ଥିତି ସମ୍ପର୍କରେ କିପରି ବକ୍ତୃତା ଦେଇ, ଜୀବନ୍ତ ଚିତ୍ର ଆଣି ତାଙ୍କ ଶ୍ରୋତାମାନଙ୍କ ସମ୍ମୁଖରେ ରଖୁଥିଲେ, ତାହା ନିମ୍ନଲିଖିତ ଉଦାହରଣରୁ ସ୍ପଷ୍ଟ ହେବ ।

"ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ, ଓଡ଼ିଆ ଜାତିକୁ ଉଠାଇବା । ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ; ତେଣୁ ସେମାନଙ୍କର ଉନ୍ନତି ନ ହେଲେ ଦେଶର ଅଉ କି ଉନ୍ନତି ? ସେମାନେ ଭୂମିକର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଛନ୍ତି । ସେମାନେହିଁ ଉତ୍କଳ ମାତାଙ୍କର ପ୍ରଧାନ ସେବକ । ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ

କରନ୍ତି । ଆମ୍ଭମାନଙ୍କ ଦେଶର ରାଜା, ଜମିଦାରଗଣ ଶରୀରର ବକ୍ଷ ପରି । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ଶିରାପ୍ରଶିରାରୁ ବକ୍ଷକୁ ରକ୍ତ ଯାଏ । ବକ୍ଷ ରକ୍ତ ପରିଷ୍କାର କରି ଶରୀରର ନାନାସ୍ଥାନକୁ ପ୍ରେରଣ କଲେ ଅଙ୍ଗପ୍ରତ୍ୟଙ୍ଗ ସବଳ, ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗପ୍ରତ୍ୟଙ୍ଗ ପରି । ସେମାନଙ୍କ ଉପାର୍ଜିତ ଶକ୍ତି ରକ୍ତସ୍ୱରୂପ ଜମିଦାର ଖମାରରେ ପ୍ରବେଶ କରୁଅଛି । ଜମିଦାର ଯଦି ସେସବୁ ନିର୍ମଳ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି ସାଧନରେ ବ୍ୟୟ କରନ୍ତି, ସମାଜର ଶରୀର ସୁସ୍ଥ ଅବସ୍ଥାରେ ରହିବ ।" କିମ୍ବା ପୁଣି ସ୍ୱଦେଶୀ ବସ୍ତ୍ରଶିଳ୍ପ ଉଦ୍ଧାର ସମ୍ପର୍କରେ ମଧୁସୂଦନ କିପରି କହୁଥିଲେ ତଳଲିଖିତ ବକ୍ତୃତାଂଶରୁ ଜଣାପଡ଼ିବ ।

"ଉତ୍କଳ ଜନନୀ ମୃତ୍ୟୁଶଯ୍ୟାରେ ପଡ଼ିଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ ମନ୍ତ୍ରରେ କଣ ଫିଟିବ । ଯେବେ ଆପଣ କୌଣସି ରୋଗୀର ଚିକିତ୍ସା କରିଥାନ୍ତି, ତେବେ ମୁଁ ଚିହ୍ନ ଲେଖନ୍ତି—ପ୍ରିୟଜନନୀ ଶଯ୍ୟାଗତ, ସନ୍ନିପାତ, ବାଉଳା, ଜ୍ଞାନ ନାହିଁ । କବିରାଜ ପାପର ବିଷ । ଡାକ୍ତର ଔଷଧ ଗୃହର ହାହାମୟ କ୍ରନ୍ଦନ ; ଏପରି ଅବସ୍ଥାରେ ଉତ୍କଳ ଜନନୀଙ୍କୁ ଗତବର୍ଷ ଦେଖିଥିଲୁଁ । ଯେବେ ପ୍ରିୟ ଜନନୀଙ୍କୁ ଏପରି ଅବସ୍ଥାରେ ଦେଖିଥାଅ, ସେତେବେଳେ ପ୍ରଥମ ଜ୍ଞାନ ହେଲେ ସନ୍ନିପାତ ରୋଗୀ କିସ କହେ । ଯେଉଁ ମାତାଙ୍କ ଜୀବନ ଆଶା ଛାଡ଼ିଥିଲେ, ଲୁଗାପଟା ପକାଇ ଶରୀର ଉଷ୍ମ କରୁଥିଲେ, ସେହି ମାତା ଜ୍ଞାନ ପାଇ କହୁଅଛନ୍ତି, "ଏ କାହାର ଲୁଗା, ଏ ମୋର ନୁହେ ।" ଆରବର୍ଷ ସନ୍ନିପାତ ଅବସ୍ଥା, ଏବର୍ଷ ଜ୍ଞାନାବସ୍ଥା, ସମସ୍ତେ ମନେ କରି ସେହି ଅବସ୍ଥାରେ ମାତାଙ୍କ ନିକଟରେ ଉପସ୍ଥିତ ହୋଇ ବିଚାର କର ଯେ, ପର ଲୁଗା ରଖିବ କି ନିଜର ଲୁଗା ଆଣି ତାଙ୍କୁ ଦେବ । ଏଠାରେ ଜାତୀୟ ଜୀବନର ପ୍ରୟୋଜନ । ଏଠାରେ ଜାତୀୟ ଜୀବନ ଯେବେ ଅନୁଭବ କରିଥାଅ, ତେବେ ତନ୍ତୀ, ବଢ଼େଇ, ଶିଳ୍ପୀଙ୍କ ଉନ୍ନତି କରିବା ଅତି ସହଜ ।"

ମଧୁସୂଦନଙ୍କ ଏପରି ବକ୍ତୃତା କିପରି ମଣିଷକୁ ପ୍ରଭାବିତ କରିଥିବ, ତାହା ସହଜରେ ଅନୁମେୟ । ଦେଶମାତାଙ୍କୁ ଜୀବନ୍ତ ଭାବି ମଧୁସୂଦନ ଦେଶ ମିଶ୍ରଣ ସମ୍ପର୍କରେ କିପରି ବକ୍ତୃତା ଦେଉଥିଲେ, ଆଉ ଗୋଟିଏ ଉଦାହରଣ ତାହାଙ୍କ ବକ୍ତୃତା ସାହିତ୍ୟରୁ ତଳେ ଦିଆ ଯାଉଅଛି—

"ଉତ୍କଳ ଜନନୀର ତିନି ପୁତ୍ର ମଧ୍ୟରୁ ତାହାର ପୀଡ଼ା ସମୟରେ ଦୁଇପୁତ୍ର ମୃତ୍ୟୁଶଯ୍ୟା ପାଖରେ ଉପସ୍ଥିତ । ଅନ୍ୟ ଏକ ପୁତ୍ର (ଗଞ୍ଜାମବାସୀ) ଅନେକ ଦୂରରେ ଥିବାରୁ ଜନନୀ ତାହାକୁ ପାଖରେ ନ ଦେଖି ବିଶେଷ କଷ୍ଟ ବୋଧ କରୁଅଛି । ସେହି ଦୂରବର୍ତ୍ତୀ ପୁତ୍ର ମାତୃସେବା କରି ନ ପାରି ମଧ୍ୟ ବିଶେଷ ଦୁଃଖିତ । ମାତା ପୀଡ଼ିତ ହେଲେ ୬,୭ ବର୍ଷର ଶିଶୁ ମୁଖରେ ତତ୍କାଳ ଦୁଃଖ

ପ୍ରତିଭାତ ହୋଇଥାଏ । ବର୍ତ୍ତମାନ ଉତ୍କଳ ଜନନୀର ସେହି ଅବସ୍ଥା । ଜନନୀ ବିପଦଗ୍ରସ୍ତ, ପାଖରେ ଦୁଇପୁତ୍ର ମିଳିତ, ଅନ୍ୟ ଏକ ପୁତ୍ର ବହୁଦୂରରେ ଅଛି, ଆସି ପାରୁ ନାହିଁ । ମୃତ୍ୟୁଶଯ୍ୟାରେ ଏକ ପୁତ୍ରକୁ ନ ଦେଖି ଜନନୀ ମନରେ କିପରି ଦୁଃଖ ଜାତ ହୁଏ, ତାହା ସହଜରେ ଅନୁମେୟ । ଉତ୍କଳ ଜନନୀ ଯେ ସେଥି ନିମନ୍ତେ ବିଶେଷ ଦୁଃଖିତ, ସନ୍ଦେହ ନାହିଁ । ସେ ପୁତ୍ର ମାତା ପାଖକୁ ଆସି ସେବା ଶୁଶ୍ରୂଷା କରି ଜୀବନ ଚରିତାର୍ଥ କରିବା ନିମନ୍ତେ ବିଶେଷ ଚେଷ୍ଟା କରୁଅଛି । ତିନି ପୁତ୍ର ଏକତ୍ର ନ ହେଲେ ଶୁଶ୍ରୂଷା ସମ୍ପୂର୍ଣ୍ଣ ହେବ ନାହିଁ । ଜନନୀ ପାଖରେ ତିନିଜଣଙ୍କର ଯେ ଏକ ସମୟରେ ସମ୍ମିଳନ ହେବ, ଏପରି ଆଶା କରୁଁ ।"

ମଧୁସୂଦନଙ୍କ ବକ୍ତୃତା ସାହିତ୍ୟ ଏକ ମୌଳିକ ସାହିତ୍ୟ । ମଧୁସୂଦନ ଜାତୀୟ ଜୀବନ ସମ୍ପର୍କରେ ଆହୁରି କିପରି କହିଥିଲେ ତାହା ନିମ୍ନଲିଖିତ ଉଦ୍ଧୃତାଂଶରୁ ସ୍ପଷ୍ଟତର ହେବ ।

"ପ୍ରତ୍ୟେକ ବ୍ୟକ୍ତିର ଦୁଇଗୋଟି ଜୀବନ ଅଛି । ଗୋଟିଏ ହେଉଛି ବ୍ୟକ୍ତିଗତ, ଅନ୍ୟଟି ହେଉଛି ଜାତୀୟ ଜୀବନ । ମୋତେ ଯେବେ କୁବାକ୍ୟ ଦ୍ୱାରା କେହି ସମ୍ବୋଧନ କରେ, ତାହା ହେଲେ ତଦ୍ୱାରା ମୋର ବିରକ୍ତି ହେବ ଏବଂ ଅପରମାନଙ୍କ ମଧ୍ୟରୁ ସମସ୍ତଙ୍କ ମନରେ ବିରକ୍ତି ଜାତ ହେବ । ପ୍ରଥମ ଦୃଷ୍ଟାନ୍ତରେ ବ୍ୟକ୍ତିଗତ ଜୀବନରେ ଆଘାତ ଲାଗିଲା । ଏଥିରୁ ଆପଣମାନେ ବୁଝି ପାରିବେ ଯେ, ପ୍ରତ୍ୟେକ ବ୍ୟକ୍ତିର ଦୁଇଗୋଟି ଜୀବନ ଅଛି ଏବଂ ଯେଉଁ ପରିମାଣରେ ସେ ଏହି ଦୁଇ ଜୀବନର ପରିଚାଳନା କରିବ, ତଦନୁସାରେ ସେ ନିଜର ଉନ୍ନତିପଥରେ କିମ୍ବା ଜାତିର ଉନ୍ନତିପଥରେ ଅଗ୍ରସର ହେବ ।

ମାନବଜୀବନର ସର୍ବନିମ୍ନ ସୋପାନ ହେଉଛି, ସ୍ୱାର୍ଥପରତା । ତତ୍ପରେ ସହଚରମାନଙ୍କର ମଙ୍ଗଳସାଧନ, ତତ୍ପରେ ପାରିବାରିକ ଜୀବନ, ତତ୍ପରେ ଜାତୀୟ ଜୀବନ । ଜାତୀୟ ଜୀବନ ଉଦ୍ଭବ ହେବା ପୂର୍ବେ ଜାତୀୟ ଉନ୍ନତି ସାଧନ ସଙ୍କାଶେ କାର୍ଯ୍ୟ ଆରମ୍ଭ କଲେ ସେ କାର୍ଯ୍ୟ ସଫଳ ହେବାର ସମ୍ଭବ ନୁହେଁ ।"

ମଧୁସୂଦନଙ୍କ ଚିନ୍ତାଧାରା କିପରି ଉନ୍ନତ ଏବଂ ସର୍ବକାଳୋପଯୋଗୀ ତାହା ଉଦ୍ଧୃତାଂଶରୁ ଅତି ସ୍ପଷ୍ଟ ।

"ମାଳତୀଲତା ଆମ୍ବ ଗଛରେ ଉଠେ, ମୋଟା ହୁଏ । ଶେଷରେ ଆମ୍ବ ଗଛକୁ ମାରି ପକାଏ । ଆମ୍ବ କେବଳ କମ ଲୋକେ ଖାଉଥିଲେ । ମାଳତୀର

ସୁଗନ୍ଧ ପୁଷ୍ପ ସମସ୍ତ ଲୋକଙ୍କୁ ମୋହିତ କରୁଅଛି । ଜାତୀୟ ଜୀବନ ଯେତେବେଳେ ବ୍ୟକ୍ତିକୁ ମାଳତୀଲତା ପରି ବେଢ଼ି ଧରିବ, ସେତେବେଳେ ସେ ମରିବ; କିନ୍ତୁ ମାଳତୀର ସୁଗନ୍ଧ ଗୃହଅଙ୍ଗେ ମତ୍ତକିବ । ନିଜ ସକାଶେ ଜୀବନଧାରଣ କରିବା ମନୁଷ୍ୟଜୀବନର କଦାପି ଉଦ୍ଦେଶ୍ୟ ନୁହେଁ । ଈଶ୍ୱର ଏ ଉଦ୍ଦେଶ୍ୟରେ କାହାକୁ ସୃଷ୍ଟି କରି ନାହାନ୍ତି । ପଶୁ ଓ ମନୁଷ୍ୟର ପ୍ରଭେଦ କ'ଣ ? ପଶୁ ତାହାର ନିଜ ପାଇଁ ସବୁ କରେ । ବ୍ୟକ୍ତିଗତ ଜୀବନ ନ ମଲେ ଜାତୀୟ ଜୀବନ ହେବ ନାହିଁ । ମଞ୍ଜି ବା ଟାକୁଆ ପୋତିଲେ ଆଗେ ଟାକୁଆ ପଚିଲେ ପଛେ ଗଛ ଉଠିବ, ନ ପଚିବା ପର୍ଯ୍ୟନ୍ତ ଗଛ ଉଠିବ ନାହିଁ । ସେହିପରି ଯହିଁରୁ ଜାତୀୟ ଜୀବନ ଉଠିବ, ସେ ମରିବ, ସେ ପଚିବ । ଗୋଟିଏ ଟାକୁଆ ମଲେ ଲକ୍ଷେ ଆମ୍ବ ଫଳିବ । ଆମ୍ବର ଜାତି ରକ୍ଷା ହେଲା, କିନ୍ତୁ ପ୍ରଥମେ ଟାକୁଆ ମଲା ।"

ସ୍ତ୍ରୀ ଶିକ୍ଷା ସମ୍ପର୍କରେ ମଧୁସୂଦନ ବକ୍ତୃତା ଦେଇଥିଲେ—

"ମୁଁ ସେ ସମ୍ବନ୍ଧରେ ଏତିକି ମାତ୍ର କହିବାକୁ ଇଚ୍ଛା କରେ ଯେ, ସ୍ତ୍ରୀଜାତିର ଶିକ୍ଷାଭିନ୍ନ ଜାତିର ଉନ୍ନତି ସମ୍ଭବ ନୁହେଁ । ଇତିହାସ ଲିଖିତ ପରକାଳରେ ଆମ୍ଭମାନଙ୍କର ଗୌରବାନ୍ୱିତ ଅବସ୍ଥା ସ୍ମରଣ କରି ଆମ୍ଭେମାନେ ଆହ୍ଲାଦିତ କରିଥାଉଁ । କିନ୍ତୁ ସେତେବେଳେ ଜାତି ବୋଇଲେ ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ଅନ୍ତର୍ଗତ ବୋଲି ବୁଝାଉଥିଲା । ବର୍ତ୍ତମାନ ଜାତି ବୋଇଲେ କେବଳ ପୁରୁଷଙ୍କୁ ବୁଝାଏ । ଜାତିର କୌଣସି କାର୍ଯ୍ୟରେ ସ୍ତ୍ରୀମାନେ ଯୋଗ ଦିଅନ୍ତି ନାହିଁ କିମ୍ବା ସେରୂପ କାର୍ଯ୍ୟରେ ସେମାନେ ଆମ୍ଭମାନଙ୍କୁ ସାହାଯ୍ୟ କରିବା ଅମ୍ଭେମାନେ ଇଚ୍ଛା କରୁନାହୁଁ ।"

କିମ୍ବା "ଧନ ଓ ବିଦ୍ୟା ମନୁଷ୍ୟର ଜୀବନଯାତ୍ରାର ବହୁମୂଲ୍ୟ ଅସ୍ତ୍ରରୂପିଣୀ । ଏହି ଦୁଇ ଅସ୍ତ୍ରଦ୍ୱାରା ମନୁଷ୍ୟ ତାହାର ଉନ୍ନତିପଥରେ ସମସ୍ତ ବାଧା ବିଘ୍ନ ବିନାଶ କରି ଅଗ୍ରସର ହେଉଅଛି । ଯେଉଁ ଜାତି ଏ ପ୍ରକାର ଦୁଇ ଅସ୍ତ୍ରକୁ ସ୍ତ୍ରୀରୂପିଣୀ ଲକ୍ଷ୍ମୀ, ସରସ୍ୱତୀ ରୂପରେ ପୂଜା କରୁଅଛନ୍ତି, ସେମାନେ ଯେ ସ୍ତ୍ରୀଶିକ୍ଷାର ବିରୋଧୀ ହେବେ ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ । ବାଲ୍ମୀକି ଓ ବେଦବ୍ୟାସଙ୍କର କଳ୍ପନାଶକ୍ତିକୁ ଦୁଇଗୋଟି ସ୍ତ୍ରୀଚରିତ୍ର ଜାଗ୍ରତ ଓ ଚାଳିତ କରିଥିଲା । ସୀତା ନ ଥିଲେ ରାମାୟଣ ହୋଇ ନ ଥାନ୍ତା । ଇଂଲଣ୍ଡ ବର୍ତ୍ତମାନ ଯୁଗରେ ଯେଉଁ ଖ୍ୟାତିଲାଭ କରିଅଛି ଓ ଯେ ପ୍ରକାର ଇଂଲଣ୍ଡର ରାଜ୍ୟ ବିସ୍ତାର ହୋଇଅଛି, ତାହା ସେ ଦେଶର ଦୁଇଜଣ ରାଣୀ ଏଲିଜାବେଥ ଓ ଭିକ୍ଟୋରିଆଙ୍କ ଦ୍ୱାରା ହୋଇଅଛି ।

"କି ବୃଦ୍ଧା, କି ଯୁବତୀ, କି ବାଳିକା ସମସ୍ତ ନାରୀଜାତି ମାନବଜାତିର ମାତା । ଯେ ଦେଶର ତାହାର ସନ୍ତାନମାନେ ଜାତୀୟ କର୍ମକ୍ଷେତ୍ରରେ ବର୍ତ୍ତମାନ

ଠିଆ ହୋଇ ଅଛନ୍ତି । ଯେ ଯୁବତୀ ତାହାର ଶିଶୁ ସନ୍ତାନମାନେ ସେହି ସ୍ଥାନରେ ଉପସ୍ଥିତ ହେବା ପାଇଁ ପ୍ରସ୍ତୁତ ହେଉଅଛନ୍ତି । ଯେ ବାଳିକା• ସେ ଭବିଷ୍ୟତରେ ସନ୍ତାନର ମାତା ହେବା ଗତି ନଦୀସ୍ରୋତ ସ୍ୱରୂପ ।

"ନଦୀସ୍ରୋତ ଯେ ପ୍ରକାର ନଦୀର ଉତ୍ପତ୍ତି ସ୍ଥାନରୁ ଅଧିକ ଉଚ୍ଚ • ସ୍ଥାନକୁ ଉଠି ନ ପାରେ, ସେହି ପ୍ରକାର କୌଣସି ଜାତି ସେହି ଜାତିର ମାତାମାନଙ୍କୁ, ଅର୍ଥାତ୍ ନାରୀଜାତିକୁ ନୀଚ ଅବସ୍ଥାରେ ରଖି ଆପେ ଉନ୍ନତ ଅବସ୍ଥାକୁ ଉଠି ନ ପାରେ ।

"ଆମ ଦେଶରେ ଅନେକେ ସଞ୍ଚିତ ଧନକୁ ରକ୍ଷା କରିବା ନିମନ୍ତେ ସ୍ତ୍ରୀ-ମାନଙ୍କ ହସ୍ତରେ ଅର୍ପଣ କରନ୍ତି । ସେ ସଞ୍ଚିତ ଧନ ସ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରିବାର ଉଦ୍ଦେଶ୍ୟ ହେଉଅଛି ଏହି ଯେ, ସେମାନଙ୍କ ହାତରେ ଥିଲେ ସନ୍ତାନ-ମାନେ ନିର୍ବିଘ୍ନରେ ତାହା ପାଇ ପାରିବେ । କିନ୍ତୁ ଆଶା ବିଫଳ ହେବାର ମଧ୍ୟ ଆଶଙ୍କା ଅଛି । କିନ୍ତୁ ଆମ୍ଭେମାନେ ଯେଉଁ ଜ୍ଞାନ ଉପାର୍ଜ୍ଜନ କରୁଅଛୁଁ ସେହି ଜ୍ଞାନ ଆମ୍ଭମାନଙ୍କର ଗୃହସ୍ଥିତା ସ୍ତ୍ରୀ ଲୋକମାନେ ଲାଭ କରିଥିଲେ, ତାହା କେହି ଅପହରଣ କରି ପାରିବେ ନାହିଁ ଏବଂ ସେମାନଙ୍କଠାରୁ ତାଙ୍କର ସନ୍ତାନ ନିଶ୍ଚୟ ପାଇ ପାରିବେ ।

"ଶିଶୁ ମାତା ନିକଟରୁ ଅନେକ ବିଷୟ ଶିକ୍ଷା କରେ ଏବଂ ସେ ଅବସ୍ଥାରେ ଯାହା ଶିକ୍ଷା କରେ ତାହା ଜାତିର ମୂଳଧନ ସ୍ୱରୂପ ଜ୍ଞାନ କରାଯାଏ । ଇଉରୋପର ସଭ୍ୟ ଜାତିମାନଙ୍କ ମଧ୍ୟରେ ବାଳକ ବାଳିକାମାନେ ସାତ, ଆଠ ବର୍ଷରେ ଯେ ସବୁ କଥା ଜାଣନ୍ତି, ତାହା ଆମ ଏ ଦେଶରେ ବି. ଏ. କ୍ଲାସରେ ପଢ଼ୁଥିବା ଯୁବକମାନେ ଜାଣନ୍ତି ନାହିଁ । ଏହିଁର କାରଣ ଏହି ଯେ, ତାଙ୍କର ମାତାମାନେ ସୁଶିକ୍ଷିତା ଏବଂ ଶିଶୁକାଳରେ ସେ ସବୁ ବିଷୟ ମାତାଙ୍କର ଦୈନିକ କାର୍ଯ୍ୟ କଳାପରୁ ସେମାନେ ଶିକ୍ଷା କରିଅଛନ୍ତି ।

"କ୍ରମେ ଏ ପ୍ରକାର ସୁଶିକ୍ଷିତା ମାତାଙ୍କର ସଂଖ୍ୟା ବୃଦ୍ଧି ହେବାରୁ ଜାତିର ସମସ୍ତ ଲୋକେ ଏ ବିଷୟ ଜାଣନ୍ତି । ଏହି ହେତୁରୁ ଜାତିର ଜ୍ଞାନ ସମଷ୍ଟି ବୃଦ୍ଧି ହୋଇଅଛି । ସ୍ତ୍ରୀମାନଙ୍କର ଶିକ୍ଷା ନ ହେଲେ ଏହା କଦାପି ସମ୍ଭବ ନୁହେଁ ।

"ଅତଏବ ଜାତିର ଉନ୍ନତି କରିବାକୁ ହେଲେ ମୋ କ୍ଷୁଦ୍ର ବିବେଚନାରେ ସ୍ତ୍ରୀଶିକ୍ଷାରେ ସର୍ବାନ୍ତଃକରଣରେ ଉଦ୍‌ଯୋଗୀ ହେବା ଉଚିତ । ଆଉ ବର୍ତ୍ତମାନ ଶିକ୍ଷାରେ ଚରିତ୍ର ଗଠନ ହେଉ ନାହିଁ, ଏହାର କାରଣ ସ୍ତ୍ରୀଶିକ୍ଷାର ଅଭାବ ।"

ମଧୁସୂଦନଙ୍କ ଯେଉଁ ଓଡ଼ିଆ ବକ୍ତୃତା ଗୁଡ଼ିକ ସଂଗୃହୀତ ହୋଇ ପ୍ରକାଶିତ ହୋଇଅଛି, ତହିଁ ମଧ୍ୟରେ ଉତ୍କଳ ସମ୍ମିଳନୀର ସଭାପତି ଭାବରେ ଦେଇଥିବା ତାହାଙ୍କର ଗୋଟିଏ ବକ୍ତୃତା ଅଛି। ଅନ୍ୟଗୁଡ଼ିକ ଉକ୍ତ ସମ୍ମିଳନୀରେ ବିଭିନ୍ନ ପ୍ରସ୍ତାବ ସମ୍ପର୍କରେ କହିବାକୁ ଯାଇ ସେ ଯେଉଁ ଭାଷଣମାନ ଦେଇଥିଲେ; ତାହାହିଁ ସଂଗୃହୀତ ହୋଇଅଛି । ଏହି ବକ୍ତୃତାଗୁଡ଼ିକରୁ ମଧୁସୂଦନଙ୍କ ଚିନ୍ତାଧାରା ସମ୍ପର୍କରେ ବହୁ ତଥ୍ୟ ମିଳେ । (୧) ଜାତି ଓ ଜାତୀୟତା, (୨) ଶିଳ୍ପ ଓ ବ୍ୟବସାୟ, (୩) ଉତ୍କଳର ରାଜନୀତିକ ବିଚ୍ଛିନ୍ନତା ପ୍ରସଙ୍ଗରେ ମଧୁସୂଦନଙ୍କ ଚିନ୍ତାଧାରା ଏହିଁରେ ପ୍ରତିଫଳିତ। ଏହି ବକ୍ତୃତାଗୁଡ଼ିକ ସରସ, ସ୍ପନ୍ଦନମୟ ଓ ଭାବପୂର୍ଣ୍ଣ । ଭାଷା ଓ ଭାବର ସୁମିଳନରେ ଏଗୁଡ଼ିକ ମଧ୍ୟ ସାହିତ୍ୟ ପଦବାଚ୍ୟ। ଓଡ଼ିଆ ସାହିତ୍ୟରେ ବକ୍ତୃତା ସାହିତ୍ୟ ଭାବରେ ଏହାର ସ୍ଥାନ ଅତି ଉଚ୍ଚରେ । ଏହି ବକ୍ତୃତାଗୁଡ଼ିକ ୧୯୦୩ ମସିହାଠାରୁ ୧୯୧୯ ମସିହା ମଧ୍ୟରେ ନାନା ସମୟରେ ପ୍ରଦତ୍ତ। ମଧୁସୂଦନଙ୍କ ପରିପକ୍ୱ ବୟସରେ ଏହି ବକ୍ତୃତା ସବୁ ତାଙ୍କ ମୁଖନିସୃତ ହୋଇଥିବାରୁ ଏଗୁଡ଼ିକ ଉପାଦେୟ ଏବଂ ଶିକ୍ଷଣୀୟ। ସମୟର ବ୍ୟବଧାନ ଏହି ବକ୍ତୃତାଗୁଡ଼ିକର ମୂଲ୍ୟ ହ୍ରାସ କରି ପାରିବ ନାହିଁ। ମଧୁସୂଦନ ୧୯୧୩ ମସିହା ଉତ୍କଳ ସମ୍ମିଳନୀରେ ସଭାପତି ଭାବେ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ, ତାହା ମଧ୍ୟ ବଡ଼ ସାରଗର୍ଭକ । (୧) ସମ୍ମିଳନୀର ଅର୍ଥ କ'ଣ, (୨) ଦେଶାତ୍ମବୋଧର ତାତ୍ପର୍ଯ୍ୟ, (୩) ଜାତୀୟତା ଓ ଜାତୀୟ ବିଶେଷତ୍ୱ, (୪) ଜାତୀୟ ଓ ବ୍ୟକ୍ତିଗତ ଜୀବନ, (୫) ଶିକ୍ଷା ଓ ହାତର ମୂଲ୍ୟ, (୬) ବାଣିଜ୍ୟ ଓ ସ୍ୱଦେଶ ଶିଳ୍ପର ଉନ୍ନତି ଓ (୭) ସ୍ତ୍ରୀ ଶିକ୍ଷା ପ୍ରଭୃତି ନାନା ଦେଶହିତକର ବିଷୟରେ ମଧୁସୂଦନଙ୍କ ବକ୍ତୃତାଟି ପୂର୍ଣ୍ଣ।

ମଧୁସୂଦନଙ୍କ ଏହି ଓଡ଼ିଆ ବକ୍ତୃତା ବ୍ୟତୀତ ତାହାଙ୍କର ଅନେକଗୁଡ଼ିଏ ଇଂରାଜୀ ବକ୍ତୃତା ମଧ୍ୟ ସଂଗୃହୀତ ହୋଇ ପାରିଅଛି । ମଧୁସୂଦନ ବ୍ୟବସ୍ଥାପକ ଭାବରେ ଯେଉଁ ଭାଷଣମାନ ଦେଇଥିଲେ, ତାହା ବ୍ୟବସ୍ଥାପକ ସଭା ବିବରଣୀ ପୁସ୍ତକରେ ଦେଖିବାକୁ ମିଳେ। ଏ ସମ୍ପର୍କରେ ବ୍ୟବସ୍ଥାପକ ଜୀବନ ଅଧ୍ୟାୟରେ କିଞ୍ଚିତ୍ ଆଲୋଚନା ହୋଇଅଛି। ମଧୁସୂଦନ ଅତି ନୀରସ ଏବଂ ଆର୍ଥନୀତିକ କିମ୍ବା ରାଷ୍ଟ୍ରନୀତିକ ବିଷୟକୁ ମଧ୍ୟ ତାହାଙ୍କ ଚମତ୍କାର ଭାଷା ଓ ଭାବଦ୍ୱାରା ସରସ ଓ ସୁନ୍ଦର କରି ପାରୁଥିଲେ। ମଧୁସୂଦନ ପ୍ରକୃତରେ ଜଣେ କବି ବା ସାହିତ୍ୟିକ ଥିଲେ। ଏହା ତାଙ୍କ ଓଡ଼ିଆ ଏବଂ ଇଂରାଜୀ ବକ୍ତୃତାମାନ ପଢ଼ିଲେ ସହଜରେ ଜଣାପଡ଼ିଯାଏ। ବ୍ୟବସ୍ଥାପକ ଜୀବନ ବ୍ୟତୀତ ମଧୁସୂଦନ ଅନ୍ୟାନ୍ୟ ମଧ୍ୟ ଅନେକ ଉପାଦେୟ ଇଂରାଜୀ ବକ୍ତୃତାମାନ ଦେଇଥିଲେ। ତାହାଙ୍କ ଇଂରାଜୀ ବକ୍ତୃତା ମଧ୍ୟ ଓଡ଼ିଆ ବକ୍ତୃତାଭଳି ଅତି ଉପାଦେୟ। ତାଙ୍କର ବହୁ ବକ୍ତୃତା ମଧ୍ୟରୁ କେତେଗୁଡ଼ିଏ ପ୍ରଧାନ ପ୍ରଧାନ ବକ୍ତୃତା ଏଠାରେ ଆଲୋଚିତ ହେବ।

ମଧୁସୂଦନଙ୍କ ୧୯୧୨ ମସିହାରେ ବିହାର ଛାତ୍ରସମ୍ମିଳନୀ ବକ୍ତୃତା, ୧୯୧୪ ମସିହାରେ ନିଖିଳ ଭାରତୀୟ ଖ୍ରୀଷ୍ଟିୟାନ ସମ୍ମିଳନୀର ସଭାପତି ଅଭିଭାଷଣ, ୧୯୧୮ ମସିହା ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନରେ ସଭାପତି ଅଭିଭାଷଣ, ୧୯୨୧ରେ ସ୍ୱାୟତ୍ତ ଶାସନ ବିଲ୍ ସମ୍ପର୍କରେ ପ୍ରଦତ୍ତ ବକ୍ତୃତା, ୧୯୨୪ରେ ପାଟଣାରେ ପ୍ରଦତ୍ତ "ଶ୍ରମ ମର୍ଯ୍ୟାଦା" (Dignity of labour) ବକ୍ତୃତା ଓ ୧୯୩୩ ରେ କଟକରେ ପ୍ରଦତ୍ତ ନେତୃସମ୍ମିଳନୀର ବକ୍ତୃତା ପ୍ରଧାନ ଅଟେ ।

୧୯୧୨ ମସିହାରେ ବିହାର ଛାତ୍ରସମ୍ମିଳନୀର ସଭାପତି ଭାବରେ ମଧୁସୂଦନଙ୍କ ପ୍ରଦତ୍ତ ବକ୍ତୃତା ତାହାଙ୍କୁ ବିହାରରେ ସୁପରିଚିତ କରାଇ ପାରିଥିଲା ଏବଂ ଏହି ବକ୍ତୃତାଟି ଭାରତର ବିଭିନ୍ନ ଇଂରାଜୀ କାଗଜରେ ମଧ୍ୟ ପ୍ରଶଂସିତ ହୋଇଥିଲା । ଏହି ବକ୍ତୃତା ପାଇଁ ଯୁବକ ମହଲରେ ଏପରି ଦାବୀ ହୋଇଥିଲା ଯେ ୧୯୧୪ ମସିହାରେ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ ଏହାକୁ ଏକ ସ୍ୱତନ୍ତ୍ର ବହି ରୂପେ ପ୍ରକାଶ କରିଥିଲେ । ଏହି ବକ୍ତୃତାରେ ମଧୁସୂଦନ ଅନେକ ଗୁରୁତ୍ୱ ଉପାଦେୟ ବିଷୟର ଅବତାରଣା କରିଥିଲେ । (୧) ପ୍ରାଚ୍ୟ ଓ ପାଶ୍ଚାତ୍ୟ, (୨) ପ୍ରାଚ୍ୟ ଭୂମିରେ ପାଶ୍ଚାତ୍ୟ ସଭ୍ୟତା ରୋପଣ, (୩) ଶିଳ୍ପ ଉନ୍ନତି, (୪) କାରିଗରମାନଙ୍କର ଉନ୍ନତିବିଧାନ, (୫) ନାରୀଶିକ୍ଷା, (୬) ଆତ୍ମବଳିଦାନ, (୭) ଦେଶାତ୍ମବୋଧ, (୮) ରାଷ୍ଟ୍ରନୀତି, (୯) ମାନସିକ ଅଜୀର୍ଣ୍ଣତା ଓ (୧୦) ସମ୍ମାନ ଓ ସୁଖ ପ୍ରଭୃତି ବିଷୟରେ ମଧୁସୂଦନ ଅଭିଭାଷଣ ଦେଇଥିଲେ ।

ମଧୁସୂଦନ ପ୍ରାଚ୍ୟ ଆଦର୍ଶ ଓ ପାଶ୍ଚାତ୍ୟ ସଭ୍ୟତାର କିପରି ମଧୁର ମିଳନ ଚାହୁଁଥିଲେ, ତାହା ନିମ୍ନଲିଖିତ ବକ୍ତୃତାଂଶରୁ ସ୍ପଷ୍ଟ ହେବ । ମଧୁସୂଦନ ବିହାର ଛାତ୍ରସମ୍ମିଳନୀର ସଭାପତି ଭାବରେ "ପ୍ରାଚ୍ୟଭୂମିରେ ପାଶ୍ଚାତ୍ୟ ସଭ୍ୟତାରୋପଣ" ପ୍ରସଙ୍ଗରେ ଯାହା ଇଂରାଜୀରେ କହିଥିଲେ, ତାହାର ଓଡ଼ିଆ ଅନୁବାଦ ଦିଆଗଲା—

"ଆଗାମୀ ବଂଶଧରଭାବରେ ତୁମ୍ଭମାନଙ୍କ ସ୍ଥାନ କେଉଁଠି ? ତୁମ୍ଭେମାନେ ତୁମ୍ଭମାନଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ପୂର୍ଣ୍ଣ ଅନୁଭବ କରିବାକୁ ଚାହୁଁଥିଲ । ମନେ କର, ଦିନେ ସକାଳୁ ଉଠି ତୁମ୍ଭେମାନେ ଦେଖିଲ ଯେ ପୂର୍ବରେ ସୂର୍ଯ୍ୟ ଉଇଁବା ସଙ୍ଗେ ସଙ୍ଗେ ପଶ୍ଚିମରେ ମଧ୍ୟ ଏକ ସୂର୍ଯ୍ୟ ଉଇଁ ଅଛି । ପୂର୍ବଦିଗର ସୂର୍ଯ୍ୟକୁ ତୁମ୍ଭେମାନେ ଜାଣ, ଚିହ୍ନ । ଏହାର ଆକାଶରେ ଉଦୟ ଏବଂ ଗତି ପ୍ରତ୍ୟହ ତୁମ୍ଭମାନଙ୍କୁ ଆନନ୍ଦ ଏବଂ ପ୍ରଫୁଲ୍ଲତା ପ୍ରଦାନ କରେ । ଉଦୟୋନ୍ମୁଖ ସୂର୍ଯ୍ୟକୁ ତୁମ୍ଭେମାନେ ପୂଜା କର, କିନ୍ତୁ ପଶ୍ଚିମ ଦିଗର ଉଦୟୋନ୍ମୁଖ ସୂର୍ଯ୍ୟ ଏକ ଆଶ୍ଚର୍ଯ୍ୟ ଦୃଶ୍ୟ । ଯେଉଁ ଦିନର ଏହି ଦୁଇ ସମ୍ରାଟ ମଧ୍ୟରେ ଲଢ଼ା ହୁଏ ତାହାହେଲେ ମନେ

ମନେ ଭାବ, ତୁମ୍ଭମାନଙ୍କର ଅବସ୍ଥା କଣ ହେବ ? ତେଣୁ ଯେଉଁ ଭାରତୀୟମାନେ ପାଶ୍ଚାତ୍ୟ ସାହିତ୍ୟ ଏବଂ ବିଜ୍ଞାନ ପଢୁଛନ୍ତି, ସେମାନେ ସେମାନଙ୍କ ଜାତିତ୍ୱ ଏବଂ ଦାମ୍ଭିକତ୍ୱ ନିଶ୍ଚୟ ବର୍ଜନ କରିବେ ।” ଏ ସମ୍ପର୍କରେ ମଧୁସୂଦନ ପୁଣି କହିଥିଲେ—

“ବିଶୃଙ୍ଖଳା ଏବଂ ବିଭିନ୍ନତା ମଧ୍ୟରେ ଏକତ୍ୱ ବା ସମନ୍ୱୟ ଆଣିବାକୁ ହେବ । ଏହା ବିପରୀତ ଜଣାପଡୁଥିବ, ମାତ୍ର ପ୍ରକୃତି ବିଭିନ୍ନତା ମଧ୍ୟରେହିଁ ସମନ୍ୱୟ ଆଣେ । ପ୍ରକୃତିଦ୍ୱାରା ଏହି ସମସ୍ୟା ସମାଧାନ ପାଇଁ ଆମ୍ଭେମାନେ ପ୍ରକୃତିକୁ ଅନୁସରଣ କରିପାରୁଁ । ପ୍ରକୃତିରୁ ତୁମ୍ଭମାନଙ୍କର ଏହି ଦେଶରେ ଯେଉଁ ଶିକ୍ଷା ମୁଁ ପାଉଅଛି, ତାହା ତୁମ୍ଭମାନଙ୍କୁ ମୁଁ କହୁଅଛି । ତୁମ ପ୍ରଦେଶରେ ଭଲ ଆମ୍ବ ହୁଏ । ଆମ୍ବଗଛ ଗୁଟି କରିବା ପ୍ରଣାଳୀ ( grafting ) ତୁମ୍ଭମାନଙ୍କୁ ବେଶ୍ ଜଣା ଥିବ । ନିକୃଷ୍ଟ ଆମ୍ବ ଗଛର ଡାଳରେ ଭଲ ଆମ୍ବ ଗଛର ଡାଳକୁ ଜଉଡ଼ କରି ଏହି ଆମ୍ବଗୁଟି ପ୍ରସ୍ତୁତ କରାଯାଏ । ପ୍ରକୃତି ଦ୍ୱାରା ଏହି ଦୁଇ ବୃକ୍ଷର ସମ୍ପୂର୍ଣ୍ଣ ମିଳନ ସମ୍ଭବପର ହୁଏ ଏବଂ ଏହି ମିଳନ ଫଳରେ ସେହି ଗଛ ପ୍ରୟୋଜନୀୟ ସୁସ୍ୱାଦୁ ଫଳ ଫଳାଏ । ନିକୃଷ୍ଟ ଆମ୍ବ ଗୁଟିଗଛର କାର୍ଯ୍ୟ ଏ ସମ୍ପର୍କରେ କଅଣ ? ଏହି ନିକୃଷ୍ଟ ଆମ୍ବ ଗୁଟିଗଛ ସ୍ୱଦେଶୀ । ଡାଳ ଯାହା ଏହା ସଙ୍ଗେ ସଂଯୁକ୍ତ କରାଯାଏ, ତାହା ବିଦେଶୀ । ନିକୃଷ୍ଟ ଆମ୍ବ ଗୁଟିଗଛ ସ୍ୱଦେଶୀ ହୋଇଥିବାରୁ ଏହା ମାଟିରେ ଭଲ ବଢିପାରେ ଏବଂ ଏହା ସ୍ୱଦେଶ ମାଟିରୁ ଭଲ ସାର ସଂଗ୍ରହ କରି ବିଦେଶୀ ଡାଳକୁ ପୁଷ୍ଟ କରେ । କିଛି ସମୟରେ ଏହି ମିଳନର ଚିହ୍ନ ଲୋପ ପାଏ ଏବଂ ଗଛଟି ସମ୍ପୂର୍ଣ୍ଣ ଏହି ଭୂମିର ବୋଲି ପ୍ରତୀୟମାନ ହୁଏ । ପାଶ୍ଚାତ୍ୟ ସାହିତ୍ୟ ଏବଂ ସଭ୍ୟତା ଅଧ୍ୟୟନ ଓ ଗ୍ରହଣ ବିଷୟରେ ତୁମ୍ଭମାନଙ୍କୁ ଏହି ପ୍ରକୃତିର ଆଦର୍ଶ ଗ୍ରହଣ କରିବାକୁ ହେବ ।” (କାରଛାଳ)

ଶିଳ୍ପସଂଗଠନ ସଂପର୍କରେ କହିବାକୁ ଯାଇ ମଧୁସୂଦନ ଦର୍ଶାଇଥିଲେ ଯେ, “ହାତର ମୂଲ୍ୟ” ନ ବଢ଼ିଲେ ଜାତିର ଶିଳ୍ପ ସଙ୍ଗଠନ ସୁଦୂର ପରାହତ ।

“ପ୍ରତ୍ୟେକ ମଣିଷଙ୍କ ହାତର ଏକ ସ୍ୱତନ୍ତ୍ର ମୂଲ୍ୟ ଅଛି । ଲୋକଙ୍କ ହାତରେ ମୂଲ୍ୟ ବଢ଼ାଇଲେ, ଜାତିର ଜାତୀୟ ଧନ ବୃଦ୍ଧି ପାଏ । ଭାରତୀୟ ହାତର ମୂଲ୍ୟ ସହିତ ଇଂରେଜ ହାତର ମୂଲ୍ୟ ତୁଳନା କର ।”

ମଧୁସୂଦନ ଦର୍ଶାଇଥିଲେ ଯେ, ଭାରତୀୟମାନେ କେବଳ କଞ୍ଚା ମାଲ ପ୍ରସ୍ତୁତ କରି ଅଳ୍ପ ମଜୁରୀ ପାଇ ସନ୍ତୁଷ୍ଟ ହୁଅନ୍ତି; କିନ୍ତୁ ଇଂରେଜମାନେ ଏହି କଞ୍ଚା ମାଲକୁ ଶିଳ୍ପଦ୍ରବ୍ୟରେ ପରିଣତ କରି ବହୁ ଅର୍ଥ ଉପାର୍ଜନ କରନ୍ତି । ଶେଷରେ ମଧୁସୂଦନ କହିଥିଲେ—

"ଯେତେ ଦିନ ପର୍ଯ୍ୟନ୍ତ ଆମ୍ଭେମାନେ ଜାତିର ହାତର ମୂଲ୍ୟ ବଢ଼ାଇବା ପାଇଁ ଚେଷ୍ଟା ନ କରିବୁ, ଆମ୍ଭେମାନେ ଜାତୀୟ ଧନର ଅଭିବୃଦ୍ଧି ସାଧନ କରି ପାରିବୁ ନାହିଁ । କାରିଗରର ହାତର ମୂଲ୍ୟ ବଢ଼ିବ ନାହିଁ, ଯଦିଚ ସେମାନଙ୍କ ସାମାଜିକ ଅବସ୍ଥାର ଉନ୍ନତି ନ ହୁଏ । ଏହା ନ ହେବାଯାଏ ହାତକାମ ପ୍ରତି ଶିକ୍ଷିତ ଲୋକଙ୍କର ଯେଉଁ ଅପମାନସୂଚକ ଭାବ ଅଛି, ତାହା ଶିକ୍ଷିତ ଲୋକଙ୍କୁ ଏହି ହାତକାମଠାରୁ ଦୂରରେ ରଖିବ । କାରିଗରର ହାତକାମ ସମ୍ରାଟ ବା ରାଜା, ମହାରାଜାଙ୍କ ବୈଠକଖାନାରେ ସ୍ଥାନ ପାଉଅଛି, ମାତ୍ର କାରିଗର ନିଜେ ସେହି ସ୍ଥାନକୁ ଯିବାକୁ ଅନୁମତି ପାଉ ନାହିଁ ।"

ରାଷ୍ଟ୍ରନୀତି ଏବଂ ଛାତ୍ରମାନଙ୍କ ସମ୍ପର୍କରେ ମଧୁସୂଦନ ସେହି ଛାତ୍ର ସମ୍ମିଳନୀରେ କହିଥିଲେ—

"ମୃତ ଶରୀର ଉପରେ କାର୍ଯ୍ୟ କର । ଜୀବନ୍ତ ଶରୀର ସହିତ ସମ୍ପର୍କ ରଖ ନାହିଁ । ପୃଥିବୀର ଇତିହାସ ଦୃଷ୍ଟିରୁ ତୁମ୍ଭେମାନେ ବ୍ୟବଚ୍ଛେଦ ପାଇଁ ଯଥେଷ୍ଟ ସୁବିଧା ପାଇବ । ରାଷ୍ଟ୍ରନୀତିର ଆନ୍ଦୋଳନ ଜାତିର ସମ୍ମାନ ବଢ଼ାଏ କିମ୍ବା ଜାତିକୁ ଗଭୀର ଗର୍ତ୍ତରେ ପକାଏ । ଏହି ସମ୍ମାନର ସ୍ମାରକାବଳୀ କିମ୍ବା ଦୁର୍ଗୋଳର ଅଧ୍ୟୟନ କର । ଏହି ସମସ୍ତ ଶିକ୍ଷାରୁ ତୁମ୍ଭର ମତାମତ ଠିକ୍ କର । ଯେତେବେଳେ ଦେଶ ତୁମ୍ଭର ସେବା ଚାହିଁବ, ସେତେବେଳେ ତୁମ୍ଭ ଜୀବନ ବଟୃର ଯେ ସାରତ୍ୱର, ଶ୍ରେଷ୍ଠାଂଶ, ଏହା ପ୍ରତିପାଦିତ ହେବ । ଦାୟିତ୍ୱହୀନ ଉତ୍ସାହ ଦେଶାତ୍ମବୋଧର ଅତି ହୀନାଂଶ ।"

୧୯୧୮ ମସିହାରେ ନିଖିଳ ଭାରତ ଖ୍ରୀଷ୍ଟିୟାନ ସମ୍ମିଳନୀରେ ସେ ଏକ ଧର୍ମ-ଗୋଷ୍ଠୀର ସଭାପତି ହୋଇଥିଲେ ମଧ୍ୟ, ସେ ବକ୍ତୃତାରୁ କେତେକ ବିଷୟ ସାଧାରଣ ପାଠକପାଠିକାଙ୍କୁ ଚିତ୍ତାକର୍ଷକ ବୋଧ ହେବ । ଜାତିପ୍ରଥା ସମ୍ପର୍କରେ ମଧୁସୂଦନଙ୍କ ଚିନ୍ତାଧାରା ତହିଁରେ ପ୍ରତିଫଳିତ ହୋଇଅଛି । ଏକ ସଙ୍ଗଠନକୁ ଦୃଢ଼ କରିବାକୁ କ'ଣ ଦରକାର, ତାହା ମଧ୍ୟ ମଧୁସୂଦନ ସେହି ବକ୍ତୃତାରେ ଆଲୋଚନା କରିଥିଲେ ।

"ସହଯୋଗ ଏବଂ ଏକ ଲକ୍ଷ୍ୟ ସର୍ବଦା ଆଖି ଆଗରେ ରଖିବା ଉଚିତ । ଏହି ଏକ ଲକ୍ଷ୍ୟ ଲାଭ ପାଇଁ ସଂପୂର୍ଣ୍ଣ ସହଯୋଗ ଦରକାର । ଆତ୍ମତ୍ୟାଗ ବ୍ୟତୀତ ସହଯୋଗ ମିଳିବା ଅସମ୍ଭବ । ଘୋଡ଼ା ବସିଥିବା ଆରୋହୀ, ଘୋଡ଼ା ଚାଲି ସଙ୍ଗେ ସମତାଳ ରଖି ତାର ଦେହର ଗତିକୁ ସହଯୋଗ କରେ ବୋଲି ଆରୋହୀ ଘୋଡ଼ା ଉପରେ ବସି ସୁଖରେ ଗମନାଗମନ କରେ । ଯଦି ଆରୋହୀ କେବଳ ପଥର ଭଳି ଦେହକୁ ଟାଣ କରି ରଖିବ, ତେବେ ସେ ଘୋଡ଼ା ପିଠିରୁ

ତଳକୁ ଖସି ପଡ଼ିବ । ମଣିଷ ଏକ ପଶୁର ଗତି ସଙ୍ଗେ ତାଳ ରଖେ ଏବଂ ନିଜର ଆତ୍ମସମ୍ମାନ ଭୁଲେ ଏବଂ ପଶୁଠାରୁ ଯେ ମନୁଷ୍ୟ ଶ୍ରେଷ୍ଠ ଏହା ମଧ୍ୟ ପାସୋରି ପକାଏ । ଏହି ଦୁଇ ଭିନ୍ନ ପ୍ରକୃତି ଜୀବଙ୍କ ମଧ୍ୟରେ ସହଯୋଗ ହୁଏ ବୋଲି ମଣିଷର ଲକ୍ଷ୍ୟ ଲାଭ ହୁଏ ।

"ସହଯୋଗ ଲାଗି ଏହି ଆତ୍ମସମ୍ମାନବୋଧର ଗର୍ବ ଏକ ବଡ଼ ପ୍ରତିବନ୍ଧକ । ଭାରତରେ ମିଳିତ କାର୍ଯ୍ୟ ଲାଗି ଜାତିପ୍ରଥା ଏକ ପ୍ରତିବନ୍ଧକ ରୂପେ ଗଣ୍ୟ ହୁଏ । ଜାତିପ୍ରଥା ମୂଳରେ ମଣିଷର ଏହି ବଂଶାନୁଗତ ଶ୍ରେଷ୍ଠତ୍ୱର ଗର୍ବ ରହିଅଛି । ଧନ ଅର୍ଜନ, ବିଦ୍ୟାଲାଭ କିମ୍ବା ଅନ୍ୟ ସାମାଜିକ ଉଚ୍ଚାଧିକାର ଲାଭ ମଣିଷ ନିଜ ଚେଷ୍ଟାରେ କଲେ ମଧ୍ୟ, ଜାତିପ୍ରଥାର ଶ୍ରେଷ୍ଠତ୍ୱ ଏହାଠାରୁ ଆହୁରି ବଡ଼ ବୋଲି ଭାରତରେ ପ୍ରତୀୟମାନ ହୁଏ । ଜୀବନର ଅତି ବାଲ୍ୟକାଳରୁ ମଣିଷ ଏହି ଗୁଣ ହାସଲ କରେ ଏବଂ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଏହି ସମ୍ମାନବୋଧ ମଧ୍ୟ ବୃଦ୍ଧି ପାଏ । ବଂଶଗତ ସମ୍ମାନ ବା ଜନ୍ମଗତ ସମ୍ମାନ ଭାରତରେ ଏକ ବିଶିଷ୍ଟତା । ଜାତିର ଉନ୍ନତି ନିମନ୍ତେ ଯେଉଁ ସହଯୋଗ ଦରକାର, ତାହା ଦେବା ନିମନ୍ତେ ଭାରତରେ ଲକ୍ଷ ଲକ୍ଷ ଲୋକ ଏକ ଜନ୍ମଗତ ଅପାରଗତା ହାସଲ କରିଥାନ୍ତି, ସେମାନେ ଅଛୁଆଁ ଶ୍ରେଣୀ ବା ଜାତି । ଏମାନଙ୍କୁ ଦଳିତ (depressed) ଶ୍ରେଣୀ କହିବା ଭାରତରେ ସମୀଚୀନ ।"

୧୯୧୮ ମସିହା ସେପ୍ଟେମ୍ବର ୨୧ ତାରିଖରେ ଉତ୍କଳ ସମ୍ମିଳନୀର ସଭାପତି ଭାବରେ ମଧୁସୂଦନ ୧୯୧୭ ମସିହା ଅଗଷ୍ଟ ୨୦ ତାରିଖରେ ଭାରତୀୟ ଶାସନ-ବିଧାନ ବିଷୟରେ ବିଲାତି ସରକାରଙ୍କ ଘୋଷଣା ସମ୍ପର୍କରେ ଏକ ସୁଚିନ୍ତିତ ଏବଂ ବିଶ୍ଳେଷଣାତ୍ମକ ଅଭିଭାଷଣ ପ୍ରଦାନ କରିଥିଲେ । ଅବଶ୍ୟ ସେହି ଶାସନ ବିଧାନ ମୃତ; ତଥାପି ମଧୁସୂଦନଙ୍କ ବିଚାରଧାରା ଏବଂ ବିଶ୍ଳେଷଣରେ ବିଚକ୍ଷଣତା ତହିଁରେ ପ୍ରତିଫଳିତ ।

ମଧୁସୂଦନ କହିଥିଲେ, "ରାଷ୍ଟ୍ରନୈତିକ ଦଲିଲର ଐତିହାସିକ ପରିସ୍ଥିତି ଏହାର ପ୍ରକୃତ ଅର୍ଥବୋଧକ ।" (The historical settings of political documents are aids to their interpretation.) ତତ୍କାଳୀନ ଭାରତୀୟ ଶାସନ ସମ୍ପର୍କରେ ମଧୁସୂଦନ କହିଥିଲେ—

"ଆଧୁନିକ ଭାରତୀୟ ଶାସନ ଏକ ପିରାମିଡ୍ ସଙ୍ଗେ ତୁଳନା କରାଯାଇ ପାରେ ଏବଂ ଏହା ଶୀର୍ଷ ବିନ୍ଦୁ ଉପରେ ଭରା ଦେଇ ରହିଅଛି । ଏକ ବୈଦେଶିକ ଶକ୍ତି ଗୋଷ୍ଠୀ ଭାରତୀୟ ସାମ୍ରାଜ୍ୟର ଭାର ବହନ କରି ରହି ଅଛନ୍ତି । ଏହି ରାଜନୈତିକ ମାଧ୍ୟାକର୍ଷଣ ଶକ୍ତି କେଉଁପରି ରଖାଯିବ, ମାନ

ସାମ୍ରାଜ୍ୟଙ୍କର ବା ଗୃହ ଯେପରି ବେଶୀ ବ୍ୟାପକ ଅଂଶରେ ପଡ଼େ, ତାହାର ବ୍ୟବସ୍ଥା ମାତ୍ର କରାଯାଉଅଛି । ଏହି ସମସ୍ୟା ବଡ଼ ଜଟିଳ । ଯେଉଁମାନେ ଏହାର ସମାଧାନ ପାଇଁ ଚେଷ୍ଟା କରିବେ, ସେମାନେହିଁ ଏହାର ଗୁରୁତ୍ୱ ମାପି ପାରିବେ ।” ସେହି ଶାସନବିଧାନ ଅନୁସାରେ ମନ୍ତ୍ରୀଙ୍କ ସ୍ଥାନ କିପରି ଏବଂ ଏହା କିପରି “ପିସୋ” (Piso)ଙ୍କ ନ୍ୟାୟବିଚାର ତାହା ଅତି ସୁନ୍ଦରଭାବରେ ମଧୁସୂଦନ ସେହି ଅଭିଭାଷଣରେ ଦର୍ଶାଇଥିଲେ । ଜଣେ ଲୋକ ଏକ ମୃତ୍ୟୁ ଅପରାଧରେ ଫାଶୀ ପାଇଲା । ଏହି ଲୋକକୁ ଯେ ପ୍ରହରୀ ଫାଶୀ ଦେବାକୁ ନେଇଥିଲା, ସେ ଫାଶୀ ଦେବା ପୂର୍ବରୁ ଦେଖିଲା ଯେ, ଯେ ମରିଛି ବୋଲି କୁହାଯାଉଥିଲା, ସେ ବଞ୍ଚିଛି; ତେଣୁ ପ୍ରହରୀ ଦୋଷୀକୁ ନ ମାରି ପିସୋଙ୍କ ପାଖକୁ ପଠାଇ ଦେଲେ । ପିସୋ ପ୍ରହରୀ, ଦୋଷୀ ଏବଂ ମରିଥିବା ବ୍ୟକ୍ତି ତିନି ଜଣଙ୍କୁ ଫାଶୀ ହୁକୁମ ଦେଲେ । ପିସୋଙ୍କ ନ୍ୟାୟ ହେଲା ଯେ, ପ୍ରହରୀ ବିଚାରପତିଙ୍କ ହୁକୁମ ଅମାନ୍ୟ କଲା; ତେଣୁ ସେ ଫାଶୀ ପାଇବ । ଦୋଷୀକୁ ତ ଫାଶୀ ହୁକୁମ ହୋଇଛି । ତୃତୀୟ ବ୍ୟକ୍ତି ଯାହା ଯୋଗୁଁ ଏହି ଦୁଇଜଣ ବୃଥାରେ ଫାଶୀ ପାଇଲେ; ତେଣୁ ସେ ବି ଫାଶୀ ପାଇବ । ମଧୁସୂଦନ ଏହି ଦୃଷ୍ଟାନ୍ତ ସହିତ ତୁଳନା କରି ଉକ୍ତ ଶାସନ ବିଧାନର ଫଳ କ’ଣ ହେବ କହିଥିଲେ—

“ଲୋକେ ଦଣ୍ଡ ପାଇବେ, କାରଣ ସରକାରଙ୍କ ଏହି ଶାସନବିଧାନ ତାହା ଚାହେଁ । ମନ୍ତ୍ରୀ ଦଣ୍ଡ ପାଇବେ, କାରଣ ଯେଉଁ ଗଭର୍ଣ୍ଣର ତାଙ୍କୁ ନିଯୁକ୍ତ କରିଥିଲେ, ସେ ତାହାଙ୍କ ଇଚ୍ଛା ମୁତାବକ କାର୍ଯ୍ୟ କରି ପାରିଲେ ନାହିଁ । ଯେଉଁ ସବୁ ବିଷୟ ଲୋକପ୍ରତିନିଧିଙ୍କ ହାତକୁ ଆସିଥିଲା, ତାହା ପୁଣି ଫେରିଯିବ ସରକାରଙ୍କ ହାତକୁ । କାରଣ ଏହାଦ୍ୱାରା ଲୋକେ ଏବଂ ମନ୍ତ୍ରୀ ଦଣ୍ଡ ପାଇଲେ । ପୁଣି ସଭ୍ୟ ମନୋନୟନ ଏବଂ ମନ୍ତ୍ରୀ ନିଯୁକ୍ତି ସମ୍ପର୍କରେ ମଧୁସୂଦନ ଥଟ୍ଟା କରି କହିଥିଲେ, “ଏହି ଶାସନ ସଂସ୍କାରର ପ୍ରସ୍ତାବାନୁସାରେ ଅଫିସରମାନେ ଲୋକମାନଙ୍କର ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ପ୍ରକୃତ ଚାଳକ ହେବେ । ଏହାଦ୍ୱାରା ମାନେ ଅନ୍ଧକୁ ଅନ୍ଧ ଚଳାଇଲା ଭଳି ହେବ ।” କାରଣ ସ୍ପଷ୍ଟତଃ ମଧୁସୂଦନ ଦର୍ଶାଇଥିଲେ ଯେ, ଏହି ଅଫିସରମାନେ ହିଁ ଭାରତରେ ଏକ ବୈଦେଶିକ ଶାସନ ଚଳାଇ ଥିଲେ ଏବଂ ଏମାନେ ଲୋକଶାସନର ଧାର ଧାରନ୍ତି ନାହିଁ; ତେଣୁ ଏମାନେ ଲୋକଙ୍କୁ କିପରି ଲୋକଶାସନରେ ବାଟ ଦେଖାଇବେ ?

ଏହି ସମୟରେ ଓଡ଼ିଶାକୁ ଏକ ସବ୍ ପ୍ରଦେଶ (Sub-Province) କରିବା କଥା ସେହି ଘୋଷଣାରେ ପ୍ରକାଶ ପାଇଥିଲା ଏବଂ ଛୋଟନାଗପୁରକୁ ଓଡ଼ିଶା ସଙ୍ଗେ ରଖିବାକୁ ମଧ୍ୟ ସୁପାରିସ କରାଯାଇଥିଲା ।

୧୯୨୧ ମସିହାରେ ମଧୁସୂଦନ ମନ୍ତ୍ରୀ ହେବାପରେ ସ୍ୱାୟତ୍ତଶାସନ ବିଲ ଆଣି ଏହି ବିଭାଗ ଉପରେ ଲୋକମାନଙ୍କ ହାତକୁ ପୁରାପୁରି ଦେଇଥିଲେ ଏବଂ ଉପରେ ମ୍ୟୁନିସିପାଲିଟିରେ କମିଶନରକୁ ଫେରାଇ ଆଣିବା (Recall) ଅଧିକାର ଭୋଟରଙ୍କୁ ଦେଇଥିଲେ, ତାହା ଜଣାଶୁଣା । ଏହି ଦାୟିତ୍ୱ ଲୋକମାନଙ୍କୁ ଦେବା ପୂର୍ବରୁ ସେ ଜିଲ୍ଲାବୋର୍ଡ଼ ଏବଂ ମ୍ୟୁନିସିପାଲିଟି ପ୍ରଭୃତି ସ୍ୱାୟତ୍ତଶାସନ ବିଭାଗର ପ୍ରତିନିଧିମାନଙ୍କୁ ଏକ ସାରଗର୍ଭକ ଭାଷଣ ଦେଇଥିଲେ । ସେହି ଅଭିଭାଷଣରେ ମଧୁସୂଦନ ଅନେକଗୁଡ଼ିଏ ବିଷୟ ଅବତାରଣା କରିଥିଲେ । ସେହି ସମ୍ମିଳନୀର ବିଶେଷତ୍ୱ ଦର୍ଶାଇ ସେ ସ୍ୱାୟତ୍ତଶାସନକୁ ମଣିଷର ଦେହ ସଙ୍ଗେ ତୁଳନା କରିଥିଲେ । ଅତୀତ ଶାସନପ୍ରଣାଳୀର ସମାଲୋଚନା ମଧ୍ୟ ସେ କରିଥିଲେ । ତା ପରେ ସେ ସ୍ୱରାଜ, ନୂତନ ଦୃଷ୍ଟିକୋଣ, ଆମ ଆଗରେ କର୍ତ୍ତବ୍ୟ, ସହଯୋଗ ଏବଂ ଅସହଯୋଗ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ସମ୍ପର୍କ ସ୍ଥାପନ ପ୍ରଭୃତି ଅନେକ ଗୁଡ଼ିଏ ବିଷୟ ଅବତାରଣା କରିଥିଲେ । ତାଙ୍କର ଏହି ବକ୍ତୃତାଟି ବଡ଼ ପାଣ୍ଡିତ୍ୟପୂର୍ଣ୍ଣ । ଦେଶକାମ ଲାଗି କପରି ଆତ୍ମ-ଉତ୍ସର୍ଗ ଦରକାର ସେ ସମ୍ପର୍କରେ ମଧୁସୂଦନ କହିଥିଲେ—

"ଆମ୍ଭେମାନେ ଆତ୍ମ-ଉତ୍ସର୍ଗ ଭାବ ଦରକାର କରୁଁ । ଏହା ଭାରତୀୟ ରକ୍ତରେ ଅନ୍ତର୍ନିହିତ । ଧନୀ ଲୋକର ଧନଦାନ ଏକ ଆତ୍ମ-ତ୍ୟାଗ ନୁହେଁ । କୌଣସି ଅସୁବିଧା ନ ଭୋଗି, ମୁଁ କେତେ ଲକ୍ଷ ଟଙ୍କା ଦାନ କରିପାରେ । ତ୍ୟାଗର ଅର୍ଥ ଆତ୍ମ-ଉତ୍ସର୍ଗ । ନିଜର ଶକ୍ତି, ସମୟ, ପ୍ରେମ ଦେଶଲାଗି ତ୍ୟାଗ କରିବା ବା ଦେବାହିଁ ଆତ୍ମତ୍ୟାଗ ବା ଆତ୍ମୋତ୍ସର୍ଗ । ମା ପିଲାକୁ ପ୍ରେମ କରେ । କାରଣ ସେ ତାର ରକ୍ତ ଦେଇ ପିଲାର ଦେହ ଗଢ଼େ ଏବଂ ନିଜର ରକ୍ତ ଦେଇ ପିଲାର ଶୁଶ୍ରୂଷା କରେ ।"

ମଧୁସୂଦନ ସେହି ବକ୍ତୃତାରେ ସଭ୍ୟମାନଙ୍କୁ ଏକ ବ୍ୟକ୍ତିଗତ ଉପଦେଶ ଦେଇଥିଲେ । ସେ ନିଜକୁ ଏକ ଭଙ୍ଗା ଜାହାଜର ନାବିକ ସଙ୍ଗେ ତୁଳନା କରି କହିଥିଲେ—

"ମୋର ଉପଦେଶ ହେଉଛି ଯେ ଧର୍ମ ଉପରେ ପ୍ରତିଷ୍ଠିତ ଭାରତର ପ୍ରାଚୀନ ଅନୁଷ୍ଠାନଗୁଡ଼ିକର ପୁନର୍ଗଠନ କର । ବିଲାତର ସ୍ୱାୟତ୍ତ ଶାସନ ଧର୍ମ ସମ୍ବନ୍ଧୀୟ "ପାରିସ" (Parish) କୁ ବଢ଼ିଅଛି । ଭାରତୀୟ ଭଗବାନଙ୍କୁ ଭୟ କରନ୍ତି । ଭଗବାନଙ୍କୁ ଭୟ କରି ସେ ଗର୍ବ କରେ । ହିନ୍ଦୁ ଧର୍ମଭାବରେ ଖାଏ, ସ୍ନାନ କରେ, ସ୍ୱପ୍ନ ଦେଖେ । ଯଦି ସମସ୍ତ ଲୋକମାନଙ୍କ ସହଯୋଗ ଚାହୁଁ, ଭଗବାନଙ୍କ ନାମରେ ସେମାନଙ୍କୁ ନିବେଦନ କର । ତୁମ୍ଭମାନଙ୍କ ମନ୍ତ୍ରୀମାନେ ଜାଣନ୍ତୁ ଯେ ସେମାନେ ଏକ ଦାରିଦ୍ର୍ୟପୀଡ଼ିତ ଜନସାଧାରଣଙ୍କ ଚାକର ବା

ସେବକ । ଆମ ସମସ୍ତଙ୍କର ଜାଣି ରଖିବା ଉଚିତ ଯେ କୃଷିହିଁ ଆମକୁ ଖାଦ୍ୟ ଯୋଗାଉ ଅଛି ।"

ଏହି ଉପାଦେୟ ବକ୍ତୃତାରେ ମଧୁସୂଦନ ଅନ୍ୟତ୍ର "ସହଯୋଗ ଏବଂ ଅସହଯୋଗ" ସମ୍ପର୍କରେ ଯାହା କହିଥିଲେ, ତାହା ଇତିହାସ ଦୃଷ୍ଟିରୁ ଏଠାରେ ଦିଆଯାଉଅଛି । "ଆକାଶର ତାରାମାନେ ପରସ୍ପରର ସହଯୋଗ ଦ୍ୱାରା ସେମାନଙ୍କ ସ୍ୱ ସ୍ୱ ସ୍ଥାନରେ ରହିଅଛନ୍ତି । ସେମାନେ ମାଧ୍ୟାକର୍ଷଣ ନିୟମାନୁସାରେ ପରସ୍ପର ସହିତ ସହଯୋଗ କରନ୍ତି । ମୋର ଜୀବନ ମୋ ମା'ଙ୍କ ସହିତ ସହଯୋଗରୁ ଆରମ୍ଭ । ସହଯୋଗ ଯୋଗୁହିଁ ମଣିଷ ଆଜି ତା'ର ସ୍ଥାନ ପୃଥିବୀରେ ରଖି ପାରିଛି । ଏପରି କି ମଣିଷ ସହଯୋଗଦ୍ୱାରା ପ୍ରକୃତିକୁ ଦମନ କରିଛି । ମୋ ଜୀବନ ବର୍ତ୍ତମାନ ଏକ ପାର୍ଥିବ ଶରୀର ସହିତ ଅପାର୍ଥିବ ଆତ୍ମାର ସହଯୋଗ । ଏହି ଦୁଇ ମଧ୍ୟରେ ଅସହଯୋଗହିଁ ମୃତ୍ୟୁ । ପ୍ରକୃତି ଅସହଯୋଗ ଜାଣେ ନାହିଁ । ଏହି ଶବ୍ଦର ଅର୍ଥ ମୁଁ ଗତ ମାସ ୨୬ ତାରିଖ ଯାଏ ଜାଣି ନ ଥିଲି । ସେହି ତାରିଖରେ ଏକ ସ୍ଥାନୀୟ ଖବର କାଗଜରେ ଅସହଯୋଗର ଅର୍ଥ ମୁଁ ଦେଖିଲି । ଏହା ଲୋକଙ୍କୁ ଦିଆଯାଇଥିବା ମହାତ୍ମା ଗାନ୍ଧୀଙ୍କ ସନ୍ଦେଶରେ ମୁଁ ପାଇଲି ।

"ଅସହଯୋଗର ଅର୍ଥ ସରକାର ତାହାଙ୍କ ମତ ବଦଳାଇବେ କିମ୍ବା ଅସହଯୋଗ ଆନ୍ଦୋଳନକାରୀମାନେ ଜୋରିମାନା, ଜେଲ କିମ୍ବା ଫାସୀଖୁଣ୍ଟି ବରଣ କରିବେ ।" (Non Co-operation means either that the Government mend their views or that the no-co-operators suffer fine, imprisonment or gallow,)

ଏହି ସମ୍ପର୍କରେ ମଧୁସୂଦନ ଜାତୀୟ ଜୀବନ ସମ୍ପର୍କରେ ସୂଚାଇଥିଲେ—

"ବ୍ୟକ୍ତିଗତ ଜୀବନର ସମାଧି ଉପରେ ଜାତୀୟ ଜୀବନର ଅଭିବୃଦ୍ଧି ହୁଏ । ମହମବତୀକୁ ଆଲୁଅ ଦେବାକୁ ହେଲେ, ପୂର୍ବେ ଜଳିବାକୁ ପଡ଼େ । ଅଗଣିତ ନଦନଦୀ, ଯେଉଁମାନେ ସମୁଦ୍ରରେ ମିଶନ୍ତି ଏବଂ ସମୁଦ୍ରକୁ ସମୃଦ୍ଧ କରନ୍ତି, ପ୍ରତ୍ୟେକଙ୍କର ରଙ୍ଗ, ସ୍ୱାଦ ଏବଂ ଜଳର ରସାୟନିକ ଗୁଣ ଥାଏ, ମାତ୍ର ସେମାନେ ଯେତେବେଳେ ସମୁଦ୍ର ସଙ୍ଗମରେ ପଡ଼ନ୍ତି; ସେମାନେ ସେମାନଙ୍କ ବୈଶିଷ୍ଟ୍ୟ ଗୁଣ ବିଶାଳ ବାରିଧିରେ ବୁଡ଼ାଇ ଦିଅନ୍ତି । ଏହାହିଁ ପ୍ରାକୃତିକ ନିୟମ । ଏହି ପଥରେହିଁ ମଣିଷ ଗତି କରିବ ।"

ମଧୁସୂଦନଙ୍କ ବକ୍ତୃତା ସାହିତ୍ୟର ଭାଷା ଓ ଭାବ ଏତେ ଉପାଦେୟ ଏବଂ ଚିତ୍ତାକର୍ଷକ ଯେ କାହାକୁ ପରିତ୍ୟାଗ କରି କାହାକୁ ଉଦ୍ଧାର କରାଯିବ,

ତାହା ଏକ ମୁସ୍କିଲ ବ୍ୟାପାର । ମଧୁସୂଦନ ଓଡ଼ିଆ ଏବଂ ଇଂରାଜୀ ଉଭୟ ଭାଷାରେ ପ୍ରବୀଣ ଥିଲେ । ସେ ଜଣେ ଉଚ୍ଚ ଭାବୁକ ଏବଂ ଚିନ୍ତାଶୀଳ ବ୍ୟକ୍ତି ଥିଲେ । ତାହାଙ୍କ ସ୍ୱଚିନ୍ତା ଗୁଡ଼ିକହିଁ ସ୍ପଷ୍ଟଭାବରେ ତାହାଙ୍କ ବକ୍ତୃତା ସାହିତ୍ୟରେ ପ୍ରତିଫଳିତ ହୋଇ ରହିଅଛି । ଏହି ବକ୍ତୃତାଗୁଡ଼ିକ ସାହିତ୍ୟରେ ସ୍ଥାନ ପାଇ ଯୁଗ ଯୁଗ ଧରି ପାଠକ ପାଠିକାଙ୍କ ଚିତ୍ତକୁ ମୁଗ୍ଧ କରିବ ।

ମଧୁସୂଦନ ୧୯୨୪ ଫେବ୍ରୁଆରି ୧୭ ତାରିଖରେ ପାଟଣା ସହରରେ ବିହାର ଯୁବ ଅନୁଷ୍ଠାନ ହଲରେ ଶ୍ରମମର୍ଯ୍ୟାଦା (Dignity of labour) ସମ୍ପର୍କରେ ଏକ ଅତି ଉପଦେୟ ଓ ଚିନ୍ତାକର୍ଷକ ବକ୍ତୃତା ଦେଇଥିଲେ । ବକ୍ତୃତାଟି ପ୍ରଥମେ "ଏକ୍ସପ୍ରେସ" ନାମକ ଖବର କାଗଜରେ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇଥିଲା । ପରେ ଏହା ମଧ୍ୟ ସ୍ୱତନ୍ତ୍ର ପୁସ୍ତିକାରେ ପରିଣତ ହୋଇଥିଲା । ମଧୁସୂଦନ ଏହି ବକ୍ତୃତାରେ (୧) ଅସହଯୋଗ ଆନ୍ଦୋଳନ, (୨) ଲୋକଙ୍କ ମଧ୍ୟରେ ଅସହଯୋଗ ଆନ୍ଦୋଳନ, (୩) ବିଶ୍ୱବିଦ୍ୟାଳୟ ପଦବୀ (ଡ଼ିଗ୍ରୀ)ର ମୂଲ୍ୟ, (୪) ହାତ ଓ ଜମି, (୫) ହାତ ଓ ମସ୍ତିଷ୍କ, (୬) ଜମି ସହିତ ହାତର ସମ୍ପର୍କ, (୭) ଜମି ଓ ସରକାର, (୮) ଜମିହୀନ ଅସ୍ପୃଶ୍ୟ, (୯) ଭାରତରେ ଜମିଦାରୀ, (୧୦) ତିନୋଟି ପ୍ରଧାନ ଶକ୍ତି, (୧୧) ସଂଗଠନର ଅସୁବିଧା, (୧୧) ଜଏଣ୍ଟ ଷ୍ଟକ କମ୍ପାନୀ ଗଠନ, (୧୨) ବିଫଳତା, (୧୩) ଉତ୍କଳ ଟ୍ୟାନେରୀ, (୧୪) ତ୍ୟାଗ, (୧୫) ଗୋହତ୍ୟା ଦୂରୀକରଣ, (୧୬) ଇଂଲଣ୍ଡ ଏବଂ ଜର୍ମାନୀ ମଧ୍ୟରେ ଶିଳ୍ପ-ଯୁଦ୍ଧ, (୧୭) ଆର୍ଥିକ ଦାସତ୍ୱ, (୧୮) ଶିକ୍ଷା ଏବଂ ଚରିତ୍ର (୧୯) ଆର୍ଥିକ ମାଧ୍ୟାକର୍ଷଣ ପ୍ରଭୃତି ନାନା ବିଷୟରେ ଅଭିଭାଷଣ ଦେଇଥିଲେ । ମଧୁସୂଦନ ପ୍ରଚଳିତ ଶିକ୍ଷା ପଦ୍ଧତି ବିଷୟରେ କହିଥିଲେ—

"ପ୍ରତ୍ୟହ ଆମ୍ଭେମାନେ ଯୁବକମାନଙ୍କୁ ଦେଖୁ, ଯେଉଁମାନେ ବିଶ୍ୱବିଦ୍ୟାଳୟର ଡିଗ୍ରୀ ବା ଉପାଧିକୁ ଯତେଇ ବିକ୍ରି କରିବାକୁ ଚାହାନ୍ତି, ଯେଉଁ ବ୍ୟକ୍ତିଙ୍କର ଧନ ଥାଏ ମାତ୍ର ବିଦ୍ୟା ନ ଥାଏ, ସେହିପରି ଲୋକଙ୍କଠାରୁ ସେମାନେ ପ୍ରଶଂସାପତ୍ର ଚାହାଁନ୍ତି । ଦିଶରୁ ପ୍ରାୟ ନଅଟି ଘଟଣାରେ ଏହି ଧନୀ ଲୋକଙ୍କ ପ୍ରଶଂସାପତ୍ରହିଁ ବେଶୀ ଅଫିସରମାନଙ୍କ ନିକଟରେ ଗ୍ରହଣ ଯୋଗ୍ୟ ହୁଏ ।

"ବିଶ୍ୱବିଦ୍ୟାଳୟ ଡିଗ୍ରୀଠାରୁ ଏହି ପ୍ରଶଂସାପତ୍ର ବେଶୀ ମୂଲ୍ୟବାନ । ଏହାଦ୍ୱାରା କ'ଣ ପ୍ରମାଣିତ ହେଉଅଛି ? ଏହା ଦ୍ୱାରା ପ୍ରମାଣିତ ହେଉଅଛି ଯେ, ମାନସିକ ସଂସ୍କୃତି ଅପେକ୍ଷା ଟଙ୍କାର ମୂଲ୍ୟ ଅଧିକ । ମସ୍ତିଷ୍କର ଦାମ କମି ଯାଇଛି । ଏହା କାହିଁକି ହୋଇଛି ? କାରଣ ମସ୍ତିଷ୍କ ଟଙ୍କା ରୋଜଗାର କରି ପାରୁ ନାହିଁ । ଏହି ବିପଦ ଦେଖା ଦେଇଛି, କାରଣ ମାନସିକ ଶକ୍ତିର ପ୍ରୟୋଜନ ପଡ଼ୁଥିବା

ବ୍ୟବସାୟର ହ୍ରାସ ଯୋଗୁଁ । ମଣିଷ ସମାଜରେ ଯେଉଁ ମସ୍ତିଷ୍କ ଅତି ମୂଲ୍ୟବାନ ଏବଂ କ୍ଷମତାଶାଳୀ ଶକ୍ତି, ତାହା ବର୍ତ୍ତମାନ ବଜାରରେ ଏକ ବାଜେ ଜିନଷର ପରିଣତ ହୋଇଅଛି ।

"ଶ୍ରମଜୀବୀର ଧନ ହେଉଛି ତାହାର ହାତ । ଜମିଦାରର ଧନ ହେଉଛି ଜମି । ଜମିର ସଂସ୍କାର ହେଉଛି କୃଷି । ହାତର ସଂସ୍କାର ହେଉଛି ଶିଳ୍ପ । ମୁଁ ଜାଣେ ଅନେକ କୃଷିକୁ ଶିଳ୍ପ ବୋଲି କହନ୍ତି । କିନ୍ତୁ ଏମାନଙ୍କ ପ୍ରଧାନ ଗୁଣ ମଧ୍ୟରେ ଯେଉଁ ପାର୍ଥକ୍ୟ, ତାହା କୃଷକୁ ଶିଳ୍ପଶ୍ରେଣୀରେ ରଖିବା ଅସମ୍ଭବ । ଯେଉଁ ହାତକାମରେ ହାତର ମୂଲ୍ୟ ପ୍ରତି ସ୍ତରରେ ବଢ଼ିବାର ସୁଯୋଗ ଥାଏ, ତାହାକୁହିଁ ଶିଳ୍ପ କୁହାଯାଇ ପାରେ । ଜମିରେ କାମ କରୁଥିବା ହାତରେ ଏହା ସମ୍ଭବ ନୁହେଁ । ଯେଉଁ ମଣିଷ ହଳ ଚଳାଏ, ବିହନ ବୁଣେ, ଜମି କାଟେ, ସେ ତାହାର ଉତ୍କର୍ଷ ଯୋଗୁଁ ବେଶୀ ମଜୁରୀ ପାଇ ନ ପାରେ । କୃଷିକାର୍ଯ୍ୟରେ ବେଶୀ ମଜୁରୀ ମିଳିବା କୌଶଳ ହାସଲ କରିବାକୁ ସୁଯୋଗ ନାହିଁ । ବର୍ତ୍ତମାନ ଏକ ବଢ଼େଇକୁ ଦୃଷ୍ଟାନ୍ତ ସ୍ୱରୂପ ଧରନ୍ତୁ । ସେ ପ୍ରଥମ ପ୍ୟାକିଂ ବାକ୍ସରୁ କାମ ଆରମ୍ଭ କରିପାରେ । ହାତରେ ଉତ୍କର୍ଷ ସାଧନ କରି ସେ ସୁନ୍ଦର ବୈଠକୀ (Tantalus) କରି ପାରେ ।"

ଅନ୍ୟତ୍ର ବର୍ତ୍ତମାନ ଦୁନିଆରେ ବିଦେଶୀ ଶିଳ୍ପ କିପରି ଭାରତର ହାଟ, ବଜାରକୁ ମାଡ଼ି ବସିଅଛି, ସେ ସମ୍ପର୍କରେ ମଧୁସୂଦନ କହିଥିଲେ—

"ମୁଁ ଯେତେବେଳେ ଜର୍ମାନୀରେ ବଡ଼ ବଡ଼ କାରଖାନା ଦେଖିଲି, ସେଠାରେ ଜାଣିଲି ଯେ, କିପରି ଭାରତଠାରୁ ହଜାର ହଜାର ମାଇଲ ଦୂରରେ ବଡ଼ ବଡ଼ ଚକ ବୁଲି ଏଠାରେ ବାଣିଜ୍ୟର ସାମ୍ରାଜ୍ୟ ସ୍ଥାପନ କରିଅଛି । ଯେଉଁମାନେ ଜର୍ମାନୀ ଖେଳନା କିମ୍ବା ପିଆନୋ ବ୍ୟବହାର କରନ୍ତି; ଜର୍ମାନୀ ସେହି ଶିଳ୍ପଙ୍କଠାରୁ ସଂଭ୍ରାନ୍ତ ଶ୍ରେଣୀର ନାରୀଙ୍କ ଯାଏଁ, ସମସ୍ତଙ୍କ ଉପରେ ଅଦୃଶ୍ୟ ଭାବରେ ମାର୍କା ବସାଇଅଛି । ବାଣିଜ୍ୟ ସମ୍ରାଜ୍ୟ ଗଢ଼ିବା ପାଇଁ ଶତ୍ରୁଭୟରୁ ରକ୍ଷା କରିବାକୁ ପୁଲିସ, ଚଳନ୍ତି ମାଲ ନିୟମ କରିବାକୁ କିମ୍ବା ବାଙ୍କ ଟିକସ ଆଦାୟ କରିବାକୁ ଟିକସ ଦାରୋଗା ଦରକାର ନାହିଁ । କୌଣସି ଲୋକ ବିରୁଦ୍ଧରେ ପ୍ରତିଶୋଧ ନେବା ଦରକାର କରେ ନାହିଁ । ହଜାର ହଜାର ମାଇଲ ଦୂରରେ ଅବସ୍ଥିତ ବଡ଼ ବଡ଼ କାରଖାନାର ପରିଚାଳକମାନଙ୍କ ଦ୍ୱାରା ଭାରତୀୟ ଦୈନନ୍ଦିନ ଜୀବନ ନିୟନ୍ତ୍ରିତ ହେଉଅଛି ।"

ଏହି ବକ୍ତୃତାରେ ଅନ୍ୟତ୍ର ମଧୁସୂଦନ "ଆର୍ଥନୀତିକ ଦାସତ୍ୱ" ସମ୍ପର୍କରେ କହିଥିଲେ—

“ଯେଉଁ ଦେଶ କଞ୍ଚା ମାଲ ଯୋଗାଏ ଏବଂ ଯେଉଁ ଦେଶ ସେହି କଞ୍ଚା ମାଲରୁ ପ୍ରତିଦାନର ବ୍ୟବହାର୍ଯ୍ୟ ଜିନିଷ ପ୍ରସ୍ତୁତ କରେ, ସେହି ଦୁଇ ଦେଶର ସମ୍ବନ୍ଧ କ'ଣ ? କଞ୍ଚା ମାଲ ପ୍ରସ୍ତୁତକାରୀ, କୁଲି ବା ମୂଲିଆର ମଜୁରୀ ପାଆନ୍ତି, ମାତ୍ର ଜିନିଷ ପ୍ରସ୍ତୁତକାରୀ ଶିକ୍ଷାପ୍ରାପ୍ତ କାରିଗରର ମଜୁରୀ ପାଆନ୍ତି । ଏହି ଦାସତ୍ୱ ଜାହା ଉପରେ କେହି ବାଧ୍ୟ କରି ଲଦି ଦେଇ ନାହିଁ, ମଣିଷ ଆନନ୍ଦରେ ଏହା ଗ୍ରହଣ କରି ନେଇଛି । ଏହି ଆର୍ଥିକ ଜଗତରେ ଏହି ବନ୍ଧନକୁ ଭାଙ୍ଗିବାକୁ ଆମ୍ଭମାନଙ୍କର କ'ଣ ଶକ୍ତି ନାହିଁ ?” ମଧୁସୂଦନଙ୍କ ଏହି ବକ୍ତୃତାବଳୀରୁ ସହଜରେ ପ୍ରମାଣିତ ହେବ ଯେ, ମଧୁସୂଦନ କିପରି ଗଭୀରଭାବରେ ଦେଶର ବିଭିନ୍ନ ସମସ୍ୟା ଚିନ୍ତା କରୁଥିଲେ ଏବଂ ସମାଧାନର ମଧ୍ୟ ପଥ ପରିଷ୍କାର କରୁଥିଲେ ।

ମଧୁସୂଦନ ଦେହତ୍ୟାଗର ବର୍ଷକ ଦୂରରୁ ୧୯୩୩ ମସିହା ଫେବ୍ରୁୟାରୀ ୧୩ ତାରିଖରେ ଯେଉଁ ବକ୍ତୃତା ଦେଇଥିଲେ, ତହିଁରେ ମଧ୍ୟ ମଧୁସୂଦନଙ୍କ ହୃଦୟର ଭାବ ଅତି ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଅଛି । ମଧୁସୂଦନଙ୍କ ବକ୍ତୃତା-ବଳୀର ପ୍ରତି ଛତ୍ରରେ ଗୋଟିଏ ଶକ୍ତି ନିହିତ ଅଛି । ମଧୁସୂଦନ ଯେଉଁ ବାସ୍ତବ ଆର୍ଥନୀତିକ ସମସ୍ୟା ପ୍ରତି ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ, ସେହିପରି ଦେଶର ଇତିହାସ ଗୌରବମୟ ଅତୀତର ଉଦ୍‌ବୋଧନ ସେ ଦେଶବାସୀଙ୍କ ସମ୍ମୁଖରେ ଉତ୍‌ଥାପନ କରି ଦେଶର ପ୍ରାଣକୁ ଉଦ୍‌ବୁଦ୍ଧ କରୁଥିଲେ । ଯେତେ-ବେଳେ ଉତ୍କଳ ଛିନ୍ନଭିନ୍ନ ଥିଲା, ଯେତେବେଳେ ଦେଶ ଜଡ଼ତାରେ ସଢ଼ୁଥିଲା, ସେତେବେଳେ ମଧୁସୂଦନ ସ୍ୱର୍ଗର ଦୂତ ଭଳି ଆସି ଦେଶର ନେତୃତ୍ୱ ଗ୍ରହଣ କରିଥିଲେ ଏବଂ ବକ୍ତା ଭାବରେ ତାଙ୍କର ଉଚ୍ଚ ଚିନ୍ତା, କଳ୍ପନାମୟୀ ଭାଷା ଓ ନାନା ଭାବସମ୍ପଦଦ୍ୱାରା ଦେଶକୁ ଜାଗ୍ରତ କରାଇ ପାରିଥିଲେ । ମଧୁସୂଦନ ରାଷ୍ଟ୍ରନୀତିକ ଲକ୍ଷ୍ୟ ଲାଭ ପାଇଁ କହିଥିଲେ—

“ସ୍କଟଲଣ୍ଡର ବାସିନ୍ଦାମାନେ କହନ୍ତି, ଚେଷ୍ଟା କର, ଚେଷ୍ଟା କର; ପୁଣି ଚେଷ୍ଟା କର । ସ୍କଟଲଣ୍ଡର ଅଧିବାସୀମାନେ କେବଳ ତିନିଥର ଚେଷ୍ଟା କରିବାକୁ କହନ୍ତି; କିନ୍ତୁ ମୁଁ କହିବି ଭାଇମାନେ ! ‘‘ଯେତେ ଦିନ ଯାଏ ତୁମେ ଯାହା ଚାହଁ, ତାହା ନ ପାଇଛ, ପୁନଃ ପୁନଃ ଚେଷ୍ଟା କର ।”

ମଧୁସୂଦନ ନେତା ଓ ନେତୃତ୍ୱ ସମ୍ପର୍କରେ କହିଥିଲେ, “କୌଣସି ଜାତିର ମନ୍ଦ ପାଞ୍ଚ ନାହିଁ । ଯଦି ତୁମ୍ଭେମାନେ ଦେଶର ନେତା ହେବାକୁ ଚାହିଁ, ଭଗବାନ ତୁମ୍ଭର କଲ୍ୟାଣ ବିଧାନ କରିବେ । ତୁମ୍ଭେ ଆଗରେ ରହିବାକୁ ଚେଷ୍ଟା କର ନାହିଁ । ଯେତେବେଳେ ଯୁଦ୍ଧ ଲାଗିଥାଏ, କମାଣ ଗର୍ଜୁଥାଏ, ସେନାପତି ମାଇଲ ମାଇଲ ଦୂରରେ ରହନ୍ତି ଗଛକୁ ଦେଖ, ‘ଏହାର ଚେର ସବୁ ଲୁଚିଥାଏ।

ମଣିଷର ହୃଦୟକଥା ଧର, ଏହା ଅତି ପ୍ରୟୋଜନୀୟ ଅଙ୍ଗ । ତେଣୁ ଏହା ଲୁକ୍କାୟିତ । ତାହା ହୋଇ ନ ଥିଲେ ଏହା ନାକ ଅଗରେ ଅବସ୍ଥିତ ହୋଇଥାନ୍ତା । ଘଣ୍ଟାକୁ ଦେଖ । ଘଣ୍ଟାର ଡାଏଲ ଆଗରେ ମାତ୍ର ଲୁଭର (କଳ କବଜା) ଅଭ୍ୟନ୍ତରରେ । ସଂଗ୍ରାମ ଚଳାଅ ।"

ଉତ୍କଳର ଛିନ୍ନବିଛିନ୍ନ ଅବସ୍ଥା ବିଷୟରେ ମଧୁସୂଦନ କିପରି ପ୍ରାଣସ୍ପର୍ଶୀ ଭାଷାରେ କହିଥିଲେ, ତାହା ନିମ୍ନଲିଖିତ ବକ୍ତୃତାଂଶରୁ ପ୍ରତିପାଦିତ ହେବ—

"କେବେ ମା'ର ମୃତ୍ୟୁଶଯ୍ୟା ପାଖରେ ଯଦି ଥାଅ ଏବଂ ଚିନ୍ତାପୂର୍ଣ୍ଣ ଦୃଷ୍ଟିରେ ଦେଖୁଥାଅ, କିପରି ମରଣର ଶୀତଳ ହସ୍ତ କ୍ରମେ ଶରୀରର ପ୍ରତି ଅଙ୍ଗକୁ ଆକ୍ରମଣ କରୁଅଛି, କିପରି ରକ୍ତର ସଞ୍ଚାଳନ ପ୍ରଥମେ ଅଙ୍ଗୁଳିରେ ବନ୍ଦ ହୋଇ ଯାଉଅଛି; ପରେ ବାହୁରୁ ମଧ୍ୟ ବନ୍ଦ ହୋଇ ଯାଉଛି ଏବଂ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଥଣ୍ଡା ହୋଇ ଯାଉଛି । ଏହି ଚିତ୍ର କଳ୍ପନାରେ ଆଙ୍କ । ମୋତେ କୁହ ଓଡ଼ିଶା ମାତାଙ୍କୁ ଏପରି ମୃତ ବସ୍ଥାରେ ଦେଖି ତୁମ୍ଭ ମନରେ ସେହିପରି ଭାବ ଜାତ ହେଉଛି କି ନାହିଁ ? ଗୋଟିଏ ହାତ ଛଡ଼ାଇ ନିଆଯାଇ ଏକ ପ୍ରଦେଶ (ବିହାର) ରେ ଫୋପାଡ଼ି ଦିଆଯାଇଛି; ଅନ୍ୟଟି ଅନ୍ୟ ଏକ ପ୍ରଦେଶରେ ପଡ଼ିଅଛି; ଏହାହିଁ ସମ୍ପୂର୍ଣ୍ଣ ଛିନ୍ନବିଛିନ୍ନାବସ୍ଥା । ଜୀବନର ସ୍ପନ୍ଦନ ବନ୍ଦ ହୋଇ ଯାଇଅଛି । ଏପରି କି ଶବ ଦେହରେ ଶୀତଳ ହେଲେ ମଧ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଦେହର ଏକ ଅଂଶ ହୋଇଥାଏ, କିନ୍ତୁ ଦେଶ ପକ୍ଷରେ ତାହା ମଧ୍ୟ ନାହିଁ ।"

ମଧୁସୂଦନ ସେହି ନେତୃତ୍ୱ ସମ୍ମିଳନୀରେ ଯାହା କହିଥିଲେ, ତାହା ପ୍ରତ୍ୟେକ ଓଡ଼ିଆ—ଦେଶ ପ୍ରେମିକର ମନେ ରଖିବା ଉଚିତ ।

"ଆମର ପଡ଼ୋଶୀ ଜାତିମାନେ ଆମ୍ଭମାନଙ୍କୁ ମାରି ଦେବାକୁ ଚେଷ୍ଟା କରିଥିଲେ । ସେମାନେ କ'ଣ ସଫଳ ହୋଇଛନ୍ତି ? ତୁମ୍ଭମାନଙ୍କୁ କେହି ମାରି ପାରିବେ ନାହିଁ । ଓଡ଼ିଆ ଜାତି ମଧ୍ୟରେ ଯେଉଁ ଜୀବନୀ ଶକ୍ତି ଅଛି, ତାହାକୁ ମାରି ହେବ ନାହିଁ ।"

ମଧୁସୂଦନ ପୁଣି ସେହି ନେତୃ ସମ୍ମିଳନୀରେ କହିଥିଲେ,—

"ବ୍ୟକ୍ତିଗତ ଭାବ (Individuality) ବିକାଶ କର ନାହିଁ । ଆକାଶରୁ ଯେଉଁ ବର୍ଷାବିନ୍ଦୁ ପଡ଼େ, ତାହା ନଦୀରେ ମିଶିଯାଏ; ନଦୀ ନିକଟତମ ସମୁଦ୍ରକୁ ବହିଯାଏ । ଯେଉଁଠି ପାଣିରେ ଏହା ଜନ୍ମି, ପଶୁ, କିମ୍ବା ମଣିଷମାନଙ୍କର ଉପକାର ସାଧନ କରେ । ଏଠି ଗୋଟିଏ ଜାତି ଅଛନ୍ତି, ଯେ ଅପର ଜାତିର ମଙ୍ଗଳ-

ବଧାନ କରନ୍ତୁ । ସମୁଦ୍ର କହେ, "ତୁମ୍ଭର ବର୍ଣ୍ଣ-ସମ୍ମାନ ଜ୍ଞାନ ପରିତ୍ୟାଗ କର ।" ମଧୁସୂଦନଙ୍କ ବିଶାଳ ବକ୍ତୃତା ସାହିତ୍ୟରୁ ଆଉ ବିଶେଷ ଦୃଷ୍ଟାନ୍ତ ଦେବା ଅସମ୍ଭବ ।

ମଧୁସୂଦନ ନେତା ଭାବରେ ଜଣେ ଅସାଧାରଣ ବକ୍ତା ଥିଲେ । ତାଙ୍କର ଭାବ ଓ ଭାଷା ଉଭୟ ଉପରେ ଅତି ସୁନ୍ଦର ପ୍ରଭୁତ୍ୱ ଥିଲା । ତାଙ୍କର ବକ୍ତୃତାର ଭାଷା ଭାବର ଯେପରି କ୍ରନ୍ଦନ, ତାହା ଅନ୍ୟତ୍ର ବିରଳ । ମଧୁସୂଦନଙ୍କ ରାଷ୍ଟ୍ରନୀତି ଜନ୍ମ ଜାତୀୟ କାର୍ଯ୍ୟର ଗତି ଦେଶରେ ବଦଳି ଗଲେ ମଧ୍ୟ ମଧୁସୂଦନ ବକ୍ତୃତା ସାହିତ୍ୟରେ ଜଣେ ଅସାଧାରଣ ବାଗ୍ମୀ ଭାବରେ ଚିରଦିନ ଜାତିର ସ୍ମରଣୀୟ ହୋଇ ରହିବେ ।

# ତ୍ରୟୋଦଶ ଅଧ୍ୟାୟ

## କବି ଏବଂ କବିତା

ମଧୁସୂଦନ କେବଳ ଦେଶପ୍ରେମିକ, ମନସ୍ୱୀ, ଶିଳ୍ପୀ କିମ୍ବା ଜନନେତା ନ ଥିଲେ । ସେ ବି ଜଣେ ଉଚ୍ଚଦରର କବି ଥିଲେ । ସେ ଅତି ଅଳ୍ପ କେତୋଟି କବିତା ଲେଖିଅଛନ୍ତି, ମାତ୍ର ସେହି କେତୋଟି କବିତାରେ ଏପରି ଖ୍ୟାତି ଅର୍ଜନ କରିବା, ଅନ୍ୟ କବିଙ୍କ ପକ୍ଷରେ ସମ୍ଭବପର ହୋଇ ପାରି ନାହିଁ । ମଧୁସୂଦନଙ୍କ କବିତା ଏତେ ପ୍ରାଣସ୍ପର୍ଶୀ ହୋଇଛି କାହିଁକି ? ତାହାର କାରଣ ମଧୁସୂଦନ ଯାହା ଗଭୀରଭାବରେ ନିଜ ପ୍ରାଣରେ ଅନୁଭବ କରୁଥିଲେ; ତାହାର ଯଥାର୍ଥ ପ୍ରକାଶହିଁ ତାହାଙ୍କ କବିତାଗୁଡ଼ିକର ବିଶେଷତ୍ୱ ।

ମଧୁସୂଦନଙ୍କ ପ୍ରତିଭା ବହୁମୁଖୀ । ସେ ଜଣେ ଜୀବନବ୍ୟାପୀ ଉଚ୍ଚ ସାହିତ୍ୟବିନୋଦୀ ଥିଲେ । ସେ ପ୍ରାଚୀନ ଓ ନବୀନ ଉଭୟ ସାହିତ୍ୟକୁ ମନୋଯୋଗ ସହିତ ଅଧ୍ୟୟନ କରୁଥିଲେ । ଅନେକ ସମୟରେ ପ୍ରାଚୀନ ଓଡ଼ିଆ କବିମାନଙ୍କର ଦୀର୍ଘ କବିତାମାନ ତାଙ୍କର କଣ୍ଠସ୍ଥ ଥିଲା । ମଧୁସୂଦନ ଓଡ଼ିଆ ବ୍ୟତୀତ ବଙ୍ଗଳା ସାହିତ୍ୟର ମଧ୍ୟ ଜଣେ ନିଷ୍ଠାପର ପାଠକ ଥିଲେ । ନିଜେ ଇଂରାଜୀ ସାହିତ୍ୟରେ ଏମ୍.ଏ. ଉପାଧି ପାଇଥିଲେ । ଓଡ଼ିଆ, ଇଂରାଜୀ ଓ ବଙ୍ଗଳା ସାହିତ୍ୟ ତାଙ୍କ ସାହିତ୍ୟର ବିଳାସଭୂମି ଥିଲା ।

ମଧୁସୂଦନଙ୍କ ପ୍ରାଣର ସ୍ପନ୍ଦନ ଓ ପ୍ରାଚୁର୍ଯ୍ୟ ତାହାଙ୍କ ବକ୍ତୃତାବଳୀରୁ ପ୍ରକାଶ ପାଏ । ତାଙ୍କର କଳ୍ପନାଶକ୍ତି ଯଥେଷ୍ଟ ଥିଲା । ଏହି କବିଜନୋଚିତ କଳ୍ପନା ତାଙ୍କ ବକ୍ତୃତା ସାହିତ୍ୟରେ ରୂପ ଗ୍ରହଣ କରିଥିଲା । କିନ୍ତୁ ଏହା ବ୍ୟତୀତ ତାଙ୍କ ପ୍ରାଣରେ ଜାତୀୟତାର ଯେଉଁ ଦିବ୍ୟ ସ୍ପନ୍ଦନ ଝଙ୍କୃତ ହୋଇଥିଲା, ତାହାର ବହିଃପ୍ରକାଶ ତାହାଙ୍କ ଓଡ଼ିଆ କବିତାବଳୀରେ ଦେଖିବାକୁ ମିଳେ । ଏହି କବିତାର ମୋହନମନ୍ତ୍ରରେ ସେ ଓଡ଼ିଆ ଜାତୀୟତାର ମୂଳପତ୍ତନ ଉତ୍କଳରେ ତୋଳିଥିଲେ ।

ତାହାଙ୍କ "ଜାତୀୟ ଗୀତ" ଗୁଡ଼ିକ ଓଡ଼ିଶାରେ ଏକ ସମୟରେ ଏତେ ଲୋକପ୍ରିୟ ହୋଇଥିଲା ଯେ, ତାହାର ବହୁ ପଦ 'ସୁବଚନ' ବା ସୂକ୍ତି(Motto) ରେ ପରିଣତ ହୋଇ ଯାଇଅଛି । ଏହି "ଜାତୀୟ ଗୀତ"ର ସଂଖ୍ୟା ମାତ୍ର ଛଅଟି । ଏହି ଓଡ଼ିଆ ଗୀତଗୁଡ଼ିକ ମଧ୍ୟ ଉତ୍କଳ ସମ୍ମିଳନୀ ସମୟରେ ଲେଖା । ଏ ଗୀତଗୁଡ଼ିକ ୧୯୧୬ ମସିହାରେ 'ଜାତୀୟ ଗୀତ' ନାମରେ ପ୍ରକାଶ ପାଇଥିଲା । ଗୀତଗୁଡ଼ିକରେ କଳ୍ପନାଗୁରୁତ୍ୱ ନ ଥିଲେ ମଧ୍ୟ ସ୍ପନ୍ଦନ ଅଛି ।

ଏହା 'ଜାତୀୟ ଗୀତ' ଭାବରେ ଜାତିପ୍ରାଣକୁ ସଂପୂର୍ଣ୍ଣ ସ୍ପର୍ଶ କରି ପାରିଅଛି । ଯେତେବେଳେ ପ୍ରଥମେ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ ଏହି ଗୀତିଗୁଡ଼ିକ ଛାପିବାକୁ ମଧୁସୂଦନଙ୍କ ଅନୁମତି ଚାହିଁଥିଲେ, ମଧୁସୂଦନ କହିଥିଲେ, "ମୁଁ ମୋର ଭାବ ଜାତିକୁ ଦେଇଛି' ତାହା ଗୋଷ୍ଠରେ ମାଡ଼ିପାର କିମ୍ବା କଣ୍ଠରେ ଧାରଣ କରିପାର, ତାହା ଜାତିର, ମୋର କୌଣସି ଅଧିକାର ନାହିଁ । କର୍ମମୟ ଜୀବନର ଅବସରରେ ପୁଣି ଯେତେବେଳେ କବିଙ୍କ ଚିତ୍ତରେ ଓଡ଼ିଆ ଜାତୀୟତାର ପୂର୍ଣ୍ଣ ଚେତନା ଜାଗରିତ ହୋଇଥିଲା, ସେତିକିବେଳେ ଏହି ମୌଳିକ ଗୀତ କେତୋଟି ଲେଖା ଯାଇଥିଲା । ଏହାକୁ ଯେ କେହି ପଢିଲେ, ତାହାର ପ୍ରାଣରେ ଜାତୀୟ-ବହ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠିବ ।

"ଜାତି-ପ୍ରେମ-ବହ୍ନି ପ୍ରଜ୍ଜ୍ୱଳିତ କରି
ସ୍ୱାର୍ଥକୁ ଦିଅ ଆହୁତି,
ସ୍ୱାର୍ଗମେଧ ଯଜ୍ଞ ଗୃର ଅଙ୍ଗେ ନାଚ
ଛାତିକୁ ମିଶାଇ ଛାତି ।"

ମଧୁସୂଦନ (୧) 'ଜଣାଣ', (୨) 'ଉତ୍କଳ ସନ୍ତାନ', (୩) 'ଜନନୀର ଉକ୍ତି', (୪) 'ସନ୍ତାନର ଉକ୍ତି', (୫) 'ସମ୍ମିଳନୀ', (୬) 'ଜାତି ଇତିହାସ' ନାମକ ଛଅଟି ମାତ୍ର କବିତା ରଚନା କରି ଯାଇଅଛନ୍ତି । ଏବେ ଆଉ ଗୋଟିଏ ଅପ୍ରକାଶିତ ପ୍ରେମ କବିତା ମଧ୍ୟ ମିଳିଅଛି । ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ ଏଗୁଡ଼ିକ ସଂଗ୍ରହ କରି ପ୍ରକାଶ କଲାବେଳେ ଏହି ଜାତୀୟ ଗୀତର ମୁଖବନ୍ଧ ସ୍ୱରୂପ ଲେଖିଥିଲେ, "ବାଲ୍ମୀକିଙ୍କର ଶରବିଦ୍ଧ କ୍ରୌଞ୍ଚକୁ ଦେଖି ପ୍ରଥମେ ଉଚ୍ଚାରିତ ବାକ୍ୟ-ଗୁଡ଼ିକ ଛନ୍ଦୋବଦ୍ଧ ହୋଇ ଉଚ୍ଚାରିତ ହୋଇଥିଲା । ଆମ୍ଭମାନଙ୍କ ଜାତିର ନିଶ୍ଚେଷ୍ଟତା ଓ ମୁମୂର୍ଷୁ ଅବସ୍ଥା ଦେଖି ସ୍ୱଦେଶପ୍ରାଣ ବୃଦ୍ଧ ମଧୁସୂଦନଙ୍କର କେତେ ଗୁଡ଼ିଏ ବାକ୍ୟ ଛନ୍ଦୋବଦ୍ଧ ହୋଇ ସ୍ୱତଃ ଉଚ୍ଚାରିତ ହୋଇଅଛି ।" ପ୍ରକୃତରେ ଯେତେବେଳେ ମଧୁସୂଦନ ଗାଇଥିଲେ;

"ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଖୋଜିଲି
ନ ଦେଲେ ଉତ୍ତର କେହି ।"

ମଧୁସୂଦନ କିପରି ଜନନୀଠାରୁ ବଡ଼ ଜନ୍ମଭୂମି ସ୍ୱରୂପିଣୀ ମାତାଙ୍କୁ ଦେଶର ସନ୍ତାନ ଖୋଜୁଥିଲେ, ତାହା ତାହାଙ୍କ "ସନ୍ତାନର ଉକ୍ତି" ରେ ପ୍ରତିଫଳିତ ।

"ଖୋଜିଲି ଅରଣ୍ୟେ ଜନ ସମାଜରେ
ଖୋଜିଲି ବାରିଧି ତଟ,
ସର୍ବତ୍ର ଦେଖିଲି ମାତା ପଦଚିହ୍ନ
ନ ହେଲା ମାତାର ଭେଟ ।
ଭୁବନେଶ୍ୱରରେ ପଦଚିହ୍ନ ପରେ
ଲେଖା ଅଛି ରଜା ରାଣୀ,
ନୀଳାଚଳ ଧାମେ ପୂଜା ହେଉଅଛି
ହିନ୍ଦୁଜାତି ମଥାମଣି ।"
ଶୁଣିଅଛି ଶାସ୍ତ୍ରେ ସତ୍ତୀ ଅପମାନେ
ଧରି ହୃଏ ବଦାରଣ,
ଅପମାନ ହେତୁ ସୀତା ଦେବୀଙ୍କର
ମହୀ ହୃଦେ ବାସସ୍ଥାନ ।
ଅପମାନ ହେତୁ ଜନନୀ ମୋହର
ଉତ୍କଳ ଭୂମଧ୍ୟବାସୀ
ଉତ୍କଳର ମାଟି ପବିତ୍ର ହୋଇଛି
ସ୍ୱର୍ଗାଦପି ଗରୀୟସୀ ।
ଜନନୀର ଦେଖା କରିବାର ଇଚ୍ଛା
ଯଦି ହୋଇ ଥାଏ ମନେ
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ ।"

ଉତ୍କଳର ଜାତୀୟ ବୀରଙ୍କ ଏହାହିଁ ସ୍ୱଦେଶପ୍ରେମ । ଏହାହିଁ ମଧୁସୂଦନଙ୍କ ମାତୃଭୂମି ପ୍ରତି ଅକୃତ୍ରିମ ସ୍ନେହ ।

ମଧୁସୂଦନ ପ୍ରଥମେ 'ଜାଗରଣ' କବିତାରେ "ପରାର୍ଥେ ଜୀବନ" ଯାପନ କରିବେ ବୋଲି ତାଙ୍କର ଜୀବନ ଆଦର୍ଶ ଲିପିବଦ୍ଧ କରି ଅଛନ୍ତି ଏବଂ ଉତ୍କଳର ଦୁଃଖ, ଦୁର୍ଦ୍ଦଶା ଦେଖି ମଧ୍ୟ କବିତ୍ୱରେ ଜାତିସମ୍ମୁଖରେ ଆଶାର ବାର୍ତ୍ତା ରଖିଯାଇଅଛନ୍ତି,—

" ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ ମାତାର ସହାସ୍ୟ ବଦନ ।"

କିନ୍ତୁ ଲୋକମାନଙ୍କର "ଜାତିବ୍ୟଞ୍ଜନ" ର ଅଭାବରୁ ମଧୁସୂଦନଙ୍କ ଏହି "ଆଶା ତୁଟିଲା" ଏବଂ "ସ୍ୱପନ ଭାଙ୍ଗିଲା ।" "ଉତ୍କଳ ସନ୍ତାନ" ରେ ମଧୁସୂଦନ ଖେଦୋକ୍ତି ପ୍ରକାଶ କରିଅଛନ୍ତି । ଉତ୍କଳର ତତ୍କାଳୀନ ଅବସ୍ଥାରେ ବିଚଳିତ ହୋଇ ଏବଂ ଲୋକମାନଙ୍କ ମନୋଭାବ ଲକ୍ଷ୍ୟ କରି ସେ ଲେଖିଛନ୍ତି—

"ତୁ ମନେ ଭାବୁଛୁ ତୋଷାମୋଦ କରି
ବଢ଼ାଇବୁ ଜାତି ମାନ,
ତୋଷାମୋଦିଆର କୁକ୍କୁର ପ୍ରକୃତି
ଅଇଁଠା ପତ୍ରରେ ଧ୍ୟାନ।"

ପୁଣି ଜାତିର ଉନ୍ନତିର ବାଟ କଣ, ମଧୁସୂଦନ ସେହି ଅପଚର୍ଗିତରେ ଲେଖିଛନ୍ତି—

"ଜାତିର ଉନ୍ନତି ହେବ କି ରେ ଭାଇ
ସ୍ୱାର୍ଥକୁ ଜଗତେ ମଣି
ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ?"
ଜାତିର ଉନ୍ନତି ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,
ଶାଗୁଣା ଚିଲୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?"

କିମ୍ବା ମଧୁସୂଦନ ଆଉରି ହୃଦୟସ୍ପର୍ଶୀ ଭାଷାରେ ଲେଖିଛନ୍ତି—

"ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଠାଣେ କି ରେ ଗାଡ଼ି ଦାନାର ଢୋବଡ଼ା
ଘୋଡ଼ାମୁହେଁ ବନ୍ଧା ଥିଲେ ?"

ମଧୁସୂଦନ ତତ୍କାଳୀନ ଲୋକମାନଙ୍କ ମନୋଭାବ ଓ ତାର ପ୍ରତିକାର ପାଇଁ ଯେପରି ଉଦ୍‌ବୋଧନ ଏହି "ଉତ୍କଳ ସନ୍ତାନ" କବିତାରେ ଦେଇଅଛନ୍ତି, ସେହିପରି ମଧ୍ୟ ସେ ଅତି ସ୍ପଷ୍ଟ ଭାଷାରେ ସୂଚାଇ ଦେଇଅଛନ୍ତି ଯେ 'ଉତ୍କଳସନ୍ତାନ' ଅତୀତର ଗୌରବମୟ କାହାଣୀକୁ ସ୍ମରଣ କରୁ। ମଧୁସୂଦନ ଲେଖିଛନ୍ତି—

"ଉଠ ରେ ଉଠ ରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ
ପୂରବ ଗୌରବ ପୂରବ ସାହସ
ପଡ଼ିବ କି କେବେ ମନେ ?"
ତୋହର ଜନନୀ ବୀରପ୍ରସବିନୀ
ଧୂଳିରେ ପଡ଼ିଛି ଦେଖ,
ଜନସମାଜରେ ଏ ମହୀ ମଧ୍ୟରେ
କପରି ଦେଖାଉ ମୁଖ ?"

ମଧୁସୂଦନ, ଗୌରବମୟ ଉତ୍କଳ ଅତୀତର ଦୃଷ୍ଟାନ୍ତ ଦେଖାଇ ଉତ୍କଳ ସନ୍ତାନର ଜଡ଼ତା ଭାଙ୍ଗିବାକୁ ଚାହିଁଥିଲେ ।

"ତୋ ପୂର୍ବ ପୁରୁଷେ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ
ତାଙ୍କର ଔରସେ ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କ ସରି ?"

ପିତୃ, ପିତାମହମାନଙ୍କ ସମ୍ମାନକୁ ଉତ୍ତରୋତ୍ତର ବୃଦ୍ଧି କରିବା ଭାର ପୁତ୍ରକନ୍ୟାଙ୍କ ଉପରେ । ଦେଶ, ଜାତିର ଜୟ କେବଳ ଉତ୍ସର୍ଗ ଦେଶବାସୀଙ୍କ ଅଦମ୍ୟ ଚେଷ୍ଟା, ନିଷ୍ଠା ଓ ସାଧନାବଳରେ । ତେଣୁ "ଉତ୍କଳ ସନ୍ତାନ" କବିତାରେ ମଧୁସୂଦନ ସ୍ୱାର୍ଥତ୍ୟାଗ କରି ସନ୍ତାନଗଣ ଦେଶମାତୃକାର ଗୌରବ ବୃଦ୍ଧି ଓ ଗ୍ଲାନି ଦୂରୀକରଣ ସକାଶେ ବଦ୍ଧପରିକର ହେବାପାଇଁ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ପୁଣି ଏହି କବିତାର ଛନ୍ଦ ପ୍ରାଚୀନ ଗ୍ରାମ—କବିତା "ଗୋବିନ୍ଦଚନ୍ଦ୍ରର ଯୋଗୀଗୀତ" ବୃତ୍ତରେ ଲେଖା । ମଧୁସୂଦନ ତେଣୁ ଚାହିଁଥିଲେ ଯେପରି ଦେଶର ସର୍ବସାଧାରଣ ଏହି ଭାବର ସ୍ପନ୍ଦନରେ ସ୍ପନ୍ଦିତ ହୁଅନ୍ତୁ ।

'ଜନନୀର ଉକ୍ତି' କବିତାର ଅବତାରଣା ଆଉ ଏକ କଳ୍ପନାମୟ ପ୍ରଚ୍ଛଦ-ପଟରୁ ଆରମ୍ଭ ହୋଇଅଛି । ଉତ୍କଳ ଜନନୀ କହୁଛନ୍ତି ଯେ, ସେ "ମାତା ମାତା ରବ କହୁଦନ ହେଲା" ଦୂରରୁ ମାତ୍ର ଶୁଣୁଥିଲେ । ପବନ "ଦୂରରୁ ଶବଦ" ଆଣିଲେ ମଧ୍ୟ "ନିକଟରେ କେହି ନାହିଁ ।"

ଉତ୍କଳ ଜନନୀଙ୍କର କୋଳ ଯେ ସେ ଶତ ଶତ କର୍ମବୀର ଗର୍ଭରେ ଧରିଥିଲେ । ମାତ୍ର ସେମାନଙ୍କର ଆଜି ପରିଚୟ କାହିଁ ? ଆଜି କେବଳ "ବାକ୍ୟ ବୀରଙ୍କର ରବ" ଶୁଭୁଛି । କର୍ମବୀରମାନେ କୁଆଡ଼େ ଗଲେ ? ମା ମଧ୍ୟ ଅତୀତ ଇତିହାସର ଗୌରବମୟ ବାଣୀ କହୁଛନ୍ତି,

"ଇତିହାସ ତୁଣ୍ଡୀ ଜଗତେ ଘୋଷୁଛି
ମୋର ସୁତଙ୍କର ଯଶ,
ତାଙ୍କର ବଂଶଜ ଘୃଣିତେ ଓଡ଼ିଆ
ଏହି ଯା କପାଳ ଦୋଷ,
ନାହିଁ ମୋର ମାନ, ନାହିଁ ମୋର ଧନ
ବଦନେ ଲାଗିଛି ଧୂଳି,
ବୀରପ୍ରସବିନୀ ଶୋଣିତ ରହିଛି
ତୋ ଶିରରେ ଦେବ ଢାଳି ।"

ଏହାର ପ୍ରତ୍ୟୁତ୍ତର ଆମ୍ଭେମାନେ ପାଉଁ "ସନ୍ତାନର ଉକ୍ତି" କବିତାରେ । ଏହାର ପ୍ରଥମ କେତୋଟି ଶ୍ଳୋକ ପୂର୍ବରୁ ଉଦ୍ଧୃତ ହୋଇ ସାରିଅଛି । ମଧୁସୂଦନ ନିଜେ ଉତ୍କଳ ମାତାଙ୍କ ପ୍ରିୟ ଓ ଯୋଗ୍ୟ ସନ୍ତାନ । ସେ ମାଆଙ୍କୁ ଆତୁର ହୋଇ ଖୋଜୁଛନ୍ତି ! କିନ୍ତୁ ମାଆଙ୍କର ଭେଟ ମିଳୁ ନାହିଁ; କାରଣ ଉତ୍କଳ ମାତା ଯେ ଛିନ୍ନବିଚ୍ଛିନ୍ନା । ତାଙ୍କର ସତ୍ତା ନାହିଁ । କିନ୍ତୁ ସନ୍ତାନମାନେ ଏପରି ଦୁର୍ଦଶାଗ୍ରସ୍ତ ଜନନୀଙ୍କର କିପରି ଦେଖା ପାଇବେ ? ସେଥିପାଇଁ ମଧୁସୂଦନ କବି ଭବରେ ଏକ ଉପାୟ ବତାଇ ଦେଇ ଯାଇଅଛନ୍ତି ।

"କୋଟିଏ ସନ୍ତାନ    ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
"ତୃଷ୍ଣାରେ କାତର    ଗଗନକୁ ଚାହିଁ
ଯେସନେ ଡାକେ ଚାତକ ।"

କେବଳ ସେତିକି ନୁହେଁ, "ଜାତିପ୍ରେମ ବହ୍ନି" ପ୍ରଜ୍ୱଳିତ କରିବା ପାଇଁ ଏବଂ " ସ୍ୱାର୍ଥମେଧଯଜ୍ଞ"ରେ ସ୍ୱାର୍ଥକୁ ଆହୁତି ଦେଇ, ସମସ୍ତେ

"ଧନ, ମାନ, ଜ୍ଞାନ    ଯାହା ଉପାର୍ଜନ
କରିଅଛ ଧରାତଳେ
ହରଷିତ ମନେ    କରତବ୍ୟ ଜ୍ଞାନେ
ଆହୁତି ଦିଅ ଯଜ୍ଞସ୍ଥଳେ"

ତାହାହେଲେ ଉତ୍କଳମାତାଙ୍କୁ ସନ୍ତାନମାନେ ଦେଖିବେ । କିପରି ଦେଖିବେ,

"ଭୂମିକମ୍ପ ହେବ    ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା
ସେହି ତୋର ମାତା,    ସେହି ତୋର ଧାତା
କର ସେହି ପଦ ପୂଜା ।"

ମଧୁସୂଦନଙ୍କ ଜାତୀୟତାର ମୂଳଭିତ୍ତି ଜନ୍ମଭୂମିକୁ ଜନନୀ ରୂପରେ ପରିକଳ୍ପନା କରିବାରେ । ଜନ୍ମଭୂମି ଜନନୀଙ୍କ ଭଳି ଜୀବନ୍ତ । ସେ ସନ୍ତାନ-ମାନଙ୍କୁ ତାହାଙ୍କ ହୃଦୟକଥା କହନ୍ତି । ସନ୍ତାନମାନେ ମଧ୍ୟ ଜନନୀଙ୍କୁ ଖୋଜନ୍ତି । ଜନନୀ ଓ ସନ୍ତାନମାନଙ୍କର କିପରି ମିଳନ ସମ୍ଭବପର, ତାହାର ବାଟ ଜାତୀୟବାଦୀ କବି ନିଜଭାବରେ ସ୍ୱରୂପ ଦେଖାଇ ଯାଇ ଅଛନ୍ତି । ସେତେବେଳେ ମଧୁସୂଦନଙ୍କ ଜନନୀଙ୍କ ଏହି ପ୍ରକୃତ ପୂଜା ପାଇଁ "ଉତ୍କଳସମ୍ମିଳନୀ" ଗଢ଼ାଗଲେ । ମଧୁସୂଦନ ଭବିଷ୍ୟତ୍ ବାଣୀ ଦେଇଗଲେ:—

"ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।
ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ,
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇଦେ, ଭାଇ
ତେଜି ପଡ଼ି ସିନ୍ଧୁ ନୀରେ ।"

ଏହା ସଙ୍ଗେ ସଙ୍ଗେ ମଧୁସୂଦନ ଇତିହାସର ମୂଲ୍ୟ ଓ ମର୍ଯ୍ୟାଦା ସଂପର୍କରେ ମଧ୍ୟ ଜାତିକୁ ଚେତନା ଦେଇ ଯାଇଅଛନ୍ତି, ତାହାଙ୍କ "ଜାତି ଇତିହାସ" କବିତାରେ ଲେଖିଅଛନ୍ତି:—

"ଜାତି ଇତିହାସ ଜାତିର ନିର୍ଝର
ତହିଁ ବହେ ସଦା ଜାତି ପ୍ରାଣଧାର
ସେ ଧାରରୁ ନୀର ପିଉଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।
ଦିନ ଦିନ ଧରେ ଛୁଟିଛି ସେ ଧାର
ଅତୀତ କୀରତି ଗାଇ ନିରନ୍ତର
ଭାବୀ କୀରତିର ଉଦୟେ ନାଚୁଛି
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର ।
ଧାର ମଧ୍ୟେ ଭାଳେ ମୋହିନୀ ପ୍ରତିମା
ଦେଖ ଦେଖ ସେହି ଜନନୀ ତୋହର
କାନ ଡେରି ଶୁଣ ମାତା କହୁଛନ୍ତି
ଆସ ଆସ ବତ୍ସ, ନୀର ପାନ କର ।
ଏହି ନୀର ସେବି ବୀର ମୋ ସନ୍ତାନେ
ବୀରପ୍ରସବିନୀ କରି ଏହି ନୀର
ଛାଡ଼ରେ ଆଳସ୍ୟ ବଢ଼ାଅ ସାହସ
ଜାତି ନାଦଘୋଷ କର ଅଗ୍ରସର ।"

ଇତିହାସ ଜାତିର ଜାତୀୟ ନିର୍ଝର । ଇତିହାସ ପୃଷ୍ଠାରେହିଁ ଦେଶବାସୀ ଜାତିର ଗୌରବକାହାଣୀ ମଧ୍ୟରେ ଜନ୍ମଭୂମିର ପ୍ରକୃତ ପରିଚୟ ଲାଭ କରି ପାରିବେ । ଇତିହାସରୂପୀ ଜାତୀୟ ନିର୍ଝରର ଜଳ ପାନ କରି ଜାତି "ଅମୃତ ବୀର" ପାଲଟି ପାରେ । ଇତିହାସର ଏହି ଚଳନ୍ତ ପ୍ରବାହ ମଧ୍ୟରେ ଜାତି ତାର ନିଜ ସ୍ୱରୂପ ଦେଖି ପାରେ ।

ମଧୁସୂଦନଙ୍କ ଏହି କବିତାଗୁଡ଼ିକ ସଂଖ୍ୟାରେ ଅତି ଅଳ୍ପ ହେଲେ ମଧ୍ୟ, ଏହାର ପଟାନ୍ତର ଓଡ଼ିଆ ସାହିତ୍ୟରେ ଆଉ ନାହିଁ । ଭାଷା ସରଳ, କିନ୍ତୁ ଏହା ଭାବବାହୀ ଏବଂ ସ୍ପନ୍ଦନପୂର୍ଣ୍ଣ । ପଙ୍କ୍ତିଗୁଡ଼ିକ ପାଠକର ସୂକ୍ଷ୍ମ ପ୍ରାଣ-ତନ୍ତ୍ରୀରେ ଏକ ଗଭୀର ଆଘାତ ଲଗେ । କିନ୍ତୁ ଦୁଃଖର କଥା, ମଧୁସୂଦନ ସାହିତ୍ୟିକ ହେବାକୁ ଆସି ନ ଥିଲେ; ସେ ଆସିଥିଲେ ତାଙ୍କ ଅଦମ୍ୟ କର୍ମ ପ୍ରେରଣାରେ ଓଡ଼ିଆ ଜାତିକୁ ଏକ ଉନ୍ନତିର ଚରମ ଅବସ୍ଥାକୁ ନେଇ ଯିବାକୁ । ଏହି 'ଜାତୀୟଗୀତି' ଗୁଡ଼ିକ ଓଡ଼ିଆ ସାହିତ୍ୟର, ଓଡ଼ିଆ ଜାତିର କୋଠ ସମ୍ପତ୍ତି । ଏହି କବିତା ଗୁଡ଼ିକରେ ମଧୁସୂଦନ କୋଟି ପ୍ରାଣର ମୁଖପାତ୍ର ହୋଇ ଅନ୍ତରର ବେଦନା ଓ ଆକାଂକ୍ଷା ପ୍ରକାଶ କରି ଯାଇଅଛନ୍ତି ।

ମଧୁସୂଦନଙ୍କ ଲିଖିତ ଏକ ଅପ୍ରକାଶିତ କବିତା "ଏଭବେ ପାଇବ କାହିଁ" (ନାମ କରଣଟି ଲେଖକର) ମିଳିଅଛି । ଏହି କବିତାରେ ମଧୁସୂଦନଙ୍କ ଚରିତ୍ର, ଅନ୍ୟ ଏକ ବିଭବ ପ୍ରକଟିତ ! ପୃଥିବୀରେ ପ୍ରକୃତ ପ୍ରେମ କଣ ଓ କେଉଁଠି ମିଳିବ ? କବିଙ୍କ ପ୍ରେମ-ଦର୍ଶନ ଏହି କବିତା ପଂକ୍ତିମାନଙ୍କରେ ପ୍ରତିଫଳିତ । ଦୂରତା ବା ବ୍ୟବଧାନ ପ୍ରେମ କମାଏ ନାହିଁ । କାରଣ "ପ୍ରୀତିର ମିଳନ ଦୂରୁ ଆକର୍ଷଣ" ଅଟେ । ପୁଣି ଏହି "ପ୍ରେମର ମିଳନ ଦୁଧ ପାଣି ପରି," ଅତି ସଂକ୍ଷେପରେ କବି ମନୀଷୀ ହୃଦୟର ଏକ ଗଭୀର ଅନୁଭୂତିର ଏକ ସୁନ୍ଦର ଅଭିବ୍ୟକ୍ତି ଦେଇ ଯାଇଅଛନ୍ତି

# ଚତୁର୍ଦ୍ଦଶ ଅଧ୍ୟାୟ

## ସାମ୍ବାଦକ ଜୀବନ

୧୯୧୭ ମସିହା ଡିସେମ୍ବର ମାସରେ ପ୍ରଥମେ "ଓଡ଼ିଆ" ନାମକ ଏକ ଇଂରାଜି ସାପ୍ତାହିକ ପତ୍ରିକା ମଧୁସୂଦନଙ୍କ ସମ୍ପାଦକତ୍ୱରେ ପ୍ରକାଶିତ ହୋଇଥିଲା । ସେହି ସମୟରେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ଭାରତରେ । ସେତେବେଳେ ଓଡ଼ିଆ ଆନ୍ଦୋଳନକୁ ସାହାଯ୍ୟ କରିବା ପାଇଁ ଏହି ପତ୍ରିକାର ଜନ୍ମ । ଏହା ମଧ୍ୟ ଉତ୍କଳ ସମ୍ମିଳନୀର ମୁଖପତ୍ରରୂପେ ଗୃହୀତ ହୋଇଥିଲା ।

ମଧୁସୂଦନଙ୍କ ଚିନ୍ତାଧାରାର ପରିଚୟ ଲାଭ ପାଇଁ ତାଙ୍କ ବକ୍ତୃତାଗୁଡ଼ିକ ଯେପରି ଉପାଦେୟ, ତାଙ୍କ ସମ୍ବାଦ ପତ୍ର ପ୍ରକାଶିତ ପ୍ରବନ୍ଧାବଳୀ ଓ ଟୀକା ଟିପ୍‌ପଣୀ ମଧ୍ୟ ସେହିପରି ପ୍ରୟୋଜନୀୟ । ମଧୁସୂଦନଙ୍କ ଅନେକ ଲେଖା ମଧ୍ୟ ତତ୍କାଳୀନ "ଷ୍ଟାର ଅଫ ଉତ୍କଳ", ( Star of Utkal ) ପତ୍ରିକାରେ ପ୍ରକାଶିତ ହୋଇଥିଲା । ମଧୁସୂଦନଙ୍କ ବିଭିନ୍ନ ବିଷୟରେ ମତବାଦ ଜାଣିବାକୁ ଏହି ସମ୍ବାଦପତ୍ର ଲିଖିତ ଲେଖାବଳୀ ବହୁତ ସହାୟ କରେ । ମଧୁସୂଦନ ୧୯୧୯ ଜାନୁଆରୀ ତାରିଖରେ ଇଂରାଜି "ଓଡ଼ିଆ" ପତ୍ରିକାର ସମ୍ପାଦକତ୍ୱ ପରିତ୍ୟାଗ କରିଥିଲେ । ଏହି ଦୁଇ ବର୍ଷ ମଧ୍ୟରେ ମଧୁସୂଦନଙ୍କ ଲେଖନୀରୁ ଯେଉଁ ସବୁ ପ୍ରବନ୍ଧ ଏବଂ ଟୀକା, ଟିପ୍‌ପଣୀ ପ୍ରକାଶ ପାଇଅଛି, ତାହାର ସଂକ୍ଷିପ୍ତ ଆଲୋଚନା ଏହି ଅଧ୍ୟାୟରେ କରାଯାଉଅଛି । 'ଓଡ଼ିଆ'ରେ ମଧୁସୂଦନଙ୍କ ପ୍ରକାଶିତ ପ୍ରବନ୍ଧଗୁଡ଼ିକରୁ ନିମ୍ନଲିଖିତ ପ୍ରବନ୍ଧ ସବୁ ପ୍ରଧାନ:— (୧) ଶିଳ୍ପ—ବିକାଶ (Industrial development), (୨ ଶିଳ୍ପଜାଗରଣ (Industrial awakening), (୩) ଯୁଦ୍ଧହିଁ ବ୍ୟବସାୟ, ବ୍ୟବସାୟ ହିଁ ଯୁଦ୍ଧ (War is businss, and business is war), (୪) ଶିଳ୍ପ ବନ୍ଧନରୁ ମୁକ୍ତି (Freedom from Industrial captivity), (୫) ବୈଦେଶିକ ଭେଷଜ ଚିକିତ୍ସା (Foreign medical treatment), (୬) ଓଡ଼ିଆଙ୍କ ଜେରୁଜେଲମ (The Jeruesalm of Oriyas), (୭) ଓଡ଼ିଶା ପୁନରୁଦ୍ଧାର (Orissa Irredenta) ପ୍ରଭୃତି ପ୍ରଧାନ । ଏହା ବ୍ୟତୀତ ବହୁ ଟୀକା ଟିପ୍‌ପଣୀ ମଧ୍ୟ ଅଛି । ଏହି ସମସ୍ତ ପ୍ରବନ୍ଧ କିମ୍ବା ଟୀକା, ଟିପ୍‌ପଣୀ ଆଲୋଚନା କଲେ ସହଜରେ ଜଣାପଡ଼ିବ ଯେ ମଧୁସୂଦନଙ୍କ ମାନସିକ ବିଚକ୍ଷଣତାର ମୁଦ୍ରା ମଧ୍ୟ ଏହି ସବୁ ଲେଖାରେ ପ୍ରତିଫଳିତ । ସାମୟିକ ପ୍ରସଙ୍ଗ ମଧ୍ୟ ମଧୁସୂଦନଙ୍କ ଲେଖନୀ ସ୍ପର୍ଶରେ ଉଚ୍ଚ ସାହିତ୍ୟରେ ପରିଣତ ହୋଇ ଯାଇଅଛି । ମଧୁସୂଦନ ଯେ ଚିନ୍ତାଶୀଳ, ଏହାର ପ୍ରମାଣ ତାହାଙ୍କ ବକ୍ତୃତା, ଗୀତ, ସାମ୍ବାଦିକ ଲେଖାବଳୀ ସର୍ବତ୍ର ପ୍ରତିଭାତ ।

ମଧୁସୂଦନ ଓଡ଼ିଶା ସଭ୍ୟତାର ବିଶେଷତ୍ୱ ସମ୍ପର୍କରେ ଓଡ଼ିଶା ପୁନରୁଦ୍ଧାର (Orissa Irrecdenta) ପ୍ରବନ୍ଧରେ ଯାହା ଲେଖିଅଛନ୍ତି, ତାହା ପ୍ରଣିଧାନ ଯୋଗ୍ୟ:—"ଓଡ଼ିଶାର ଇତିହାସ ସ୍ୱତନ୍ତ୍ର ଓ ବିଶିଷ୍ଟ ସଭ୍ୟତା ବିକାଶର ଧାରା। ଅତୀତରେ ଏହି ଦେଶର ସାମାଜିକ ଏବଂ ରାଷ୍ଟ୍ରନୀତିକ ଅନୁଷ୍ଠାନ ସକଳର ବିଶେଷତ୍ୱର କାରଣ ଦେଶର ଭୌଗୋଳିକ ଅବସ୍ଥିତି, ସମୁଦ୍ର, ବିନ୍ଧ୍ୟ ପର୍ବତମାଳ, ପାହାଡ଼, ଜଙ୍ଗଲ ଓଡ଼ିଶା ସହିତ ଅନ୍ୟ ଅଞ୍ଚଳ ସହିତ ଗମନାଗମନ ପାଇଁ କଷ୍ଟସାଧ୍ୟ କରି ଦେଇଥିଲା; ତେଣୁ ଲୋକେ ସେମାନଙ୍କ ନିଜ ଶକ୍ତି ଉପରେ ହିଁ ନିର୍ଭର କରୁଥିଲେ। ତେଣୁ ସେମାନେ ଏପରି ଏକ ସଭ୍ୟତା ବିକାଶ କରିଥିଲେ, ଯାହାକୁ ସେମାନେ ସେମାନଙ୍କ ପୂର୍ଣ୍ଣ ନିଜସ୍ୱ ବୋଲି ଦାବୀ କରି ପାରନ୍ତି।

"ଓଡ଼ିଶାର ଶିଳ୍ପ ସ୍ଥାପତ୍ୟ ଏକ ସ୍ୱତନ୍ତ୍ର ଶୈଳୀର ସ୍ମାରକ। ଏହା ଉପରେ କୌଣସି ବୈଦେଶିକ ପ୍ରଭାବ ନାହିଁ। ଓଡ଼ିଶାର ଜଣେ ହିନ୍ଦୁ ରାଜାଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ତୋଳାଯାଇଥିଲା। ସେ ସମାଜ ଉପରେ ଜାତିପ୍ରଥାର କୁପ୍ରଭାବ ଦେଖି ପାରିଥିଲେ। କିନ୍ତୁ ଯେ କୌଣସି ନିରପେକ୍ଷ ଐତିହାସିକ ପଣ୍ଡିତ ଦେଖି ପାରିବେ ଯେ, ଯେଉଁମାନେ ଏହି ମନ୍ଦିର ତୋଳିଥିଲେ, ସେମାନେ ସାମାଜିକ ସଂସ୍କାର ବିଷୟରେ ଏକ ପ୍ରଗତିଶୀଳ ଆଦର୍ଶ ଗ୍ରହଣ କରିଥିଲେ। ଏହା ଭାରତର ଅନ୍ୟ ଅଞ୍ଚଳ ଆଦର୍ଶ ଠାରୁ ଶହ ଶହ ବର୍ଷ ଅଗ୍ରଗାମୀ ଆଦର୍ଶରୂପେ ଗୃହୀତ। ଯେଉଁ ବଡ଼ ସଂସ୍କାରକଙ୍କ ଧର୍ମଶିକ୍ଷାଦ୍ୱାରା ଜାତିଭେଦ ଲୋପ ପାଇବାର ଚେଷ୍ଟା କରା ଯାଇଥିଲା, ଏବଂ ମଣିଷ ମଧ୍ୟରେ ମହାଭ୍ରାତୃଭାବ ସ୍ଥାପନ ଉଦ୍ୟୋଗ କରାଯାଇଥିଲା, ସେ ଏହି ଦେଶର ଲୋକ ଚୈତନ୍ୟ। ଏକ ନୂଆ ଧର୍ମ ଏବଂ ସଂସ୍କାରକର ମୂଳକର୍ତ୍ତା ଜଣେ ଓଡ଼ିଆ ହେବା ଏକ ବିଶେଷ ଘଟଣା। ସାଧାରଣତଃ ଲୋକବିଶ୍ୱାସ ଯେ ସେ ବଙ୍ଗାଳୀ। ଚୈତନ୍ୟ ଦେବ ଜଗନ୍ନାଥ ମିଶ୍ରଙ୍କ ପୁଅ। ଏହାଙ୍କ ବଂଶଧର ମାନେ ଯାଜପୁର ବାସିନ୍ଦା। ଜଗନ୍ନାଥମନ୍ଦିର ଜାତିଭେଦପ୍ରଥାର ଭଗ୍ନଭିତ୍ତି ଉପରେ ଗଠିତ।

ଆମ୍ଭେମାନେ ଯେତେବେଳେ ଓଡ଼ିଶାର ରାଷ୍ଟ୍ରନୀତିକ ଅନୁଷ୍ଠାନ ବିଷୟ ଚିନ୍ତା କରୁଁ, ଆମ୍ଭେମାନେ ଓଡ଼ିଶାରେ ଯେଉଁ ସାମନ୍ତବାଦୀ ପ୍ରଥା ପାଉଁ, ତାହା ଭାରତର ଅନ୍ୟ ଅଞ୍ଚଳଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଓଡ଼ିଶାରେ ଗୃହୀକୁଳଙ୍କ ସେନା ବା "ପାଇକସେନା" ନାମକ ଏକ ସ୍ୱତନ୍ତ୍ର ପ୍ରଥା ବିକାଶଲାଭ କରିଥିଲା।

"ସାଧାରଣତଃ ଏହା ବିଶେଷ ଜଣା ନାହିଁ ଯେ, ଓଡ଼ିଶାର ରାଜା ହିନ୍ଦୁ ଆଇନ ସଂପର୍କରେ ଏକ ବିସ୍ତୃତ ବାଖ୍ୟା ଲେଖିଥିଲେ। ଏହା ସଂସ୍କୃତ

ଭାଷାରେ ଉଚ୍ଚ ଷ୍ଟାଇଲ୍‌ରେ ଲିଖିତ । × × × ଏକ ସ୍ୱତନ୍ତ୍ର ହିନ୍ଦୁ ଆଇନର ଟୀକା ଲେଖିବାର ପ୍ରୟୋଜନୀୟତାରୁ ପ୍ରମାଣିତ ହେଉଅଛି ଯେ, ଓଡ଼ିଶାର ସମାଜ ଜୀବନର ବୈଶିଷ୍ଟ୍ୟ । ଭାରତରେ ଅନ୍ୟ ଅଞ୍ଚଳରେ ପ୍ରଚଳିତ ହିନ୍ଦୁ ଆଇନ ଓଡ଼ିଶାରେ ପୂର୍ଣ୍ଣଭାବରେ ଓଡ଼ିଶାର ପ୍ରୟୋଜନୀୟତା ମେଣ୍ଟାଇ ପାରି ନ ଥିଲା । ବ୍ରିଟିଶ ଶାସନ ସମୟରେ ଓଡ଼ିଆ ଭାଷା ମଧ୍ୟ ଭୀଷଣ ପରୀକ୍ଷା ମଧ୍ୟ-ଦେଇ ଗତି କରିଅଛି । ବ୍ରିଟିଶ ଶାସନର ପ୍ରଥମ ଅବସ୍ଥାରେ ଓଡ଼ିଆ ଭାଷା ଉଠାଇ ଦେଇ ତାହା ବଦଳରେ ବଙ୍ଗଳା ଭାଷା ଆରୋପ କରିବାକୁ ମଧ୍ୟ ଚେଷ୍ଟା ହୋଇଥିଲା ।

"ଓଡ଼ିଆ ଭାଷା ତାହାର କ୍ଷମତା ହରାଇବା ଦୂରେ ଥାଉ, ଏହା ବର୍ତ୍ତମାନ ପାର୍ବତ୍ୟ ଅଞ୍ଚଳର ବାସିନ୍ଦାଙ୍କ ଦ୍ୱାରା ମଧ୍ୟ ମାତୃଭାଷା ରୂପେ ଗୃହୀତ ହେଉଅଛି । ମେଦିନୀପୁରର ଓଡ଼ିଆମାନେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ଶାସନ ଅଧୀନରେ ରହିଅଛନ୍ତି, ଯାହା କି ବଙ୍ଗାଳୀମାନଙ୍କ ଦ୍ୱାରା ପରିଚାଳିତ । ସେମାନେ ବାଧ୍ୟ ହୋଇ ବଙ୍ଗଳା ଲିପି ଗ୍ରହଣ କରି ଅଛନ୍ତି; ମାତ୍ର ସେମାନେ ଓଡ଼ିଆ ଭାଷା ରକ୍ଷା କରିଅଛନ୍ତି ।

"ଓଡ଼ିଆମାନଙ୍କୁ ଏକ ସ୍ୱତନ୍ତ୍ର ଗୋଷ୍ଠୀ (Race) ରୂପେ ଗ୍ରହଣ କରିବାକୁ ଓଡ଼ିଶାର ଅତୀତ ଇତିହାସରେ ଯଥେଷ୍ଟ ଉପାଦାନ ରହିଅଛି । ବର୍ତ୍ତମାନ ବି ଏକ ବଳିଷ୍ଠ ଜାତୀୟ ଚେତନା ହିଁ ପ୍ରବାହିତ । ଏହା ପ୍ରତ୍ୟହ ବୃଦ୍ଧି ପାଉଅଛି ।"

ମଧୁସୂଦନ ସେହିପରି "ଓଡ଼ିଆଙ୍କ ଜେରୁଜେଲମ" ପ୍ରବନ୍ଧରେ ଲେଖି ଅଛନ୍ତି—"ଜଡ଼ ଜାତି ପ୍ରତି ଜେରୁଜେଲମ ଯେପରି, କ୍ରୁଜେଡ଼ ବା ଧର୍ମଯୁଦ୍ଧ ସମୟରେ ଏହି ଧର୍ମ-ରାଜ୍ୟ ଇଂଲଣ୍ଡବାସୀଙ୍କ ଦୃଷ୍ଟିରେ ଯେପରି ଥିଲା, ଆଜି ମଧ୍ୟ ଜେରୁଜେଲମ ସମ୍ରାଟ ଏବଂ ଇଂରେଜ ଜାତି ପକ୍ଷରେ ଯେପରି, ଓଡ଼ିଆ ଚକ୍ଷୁରେ ଓଡ଼ିଶା ସେହିପରି; ଏହା ତାହାଠାରୁ ଅଧିକ । ଓଡ଼ିଶା ଦାରିଦ୍ର୍ୟ-ପ୍ରପୀଡ଼ିତ, ବନ୍ୟା ଓ ଦୁର୍ଭିକ୍ଷ ଦ୍ୱାରା ଲୋକସଂଖ୍ୟା ବିଧ୍ୱସ୍ତ, ସମସ୍ତ ଶାସନ ଅପରିଚାଳନାର ସୁକ୍ଷେତ୍ର ଏବଂ ଏହି ରାଜନୈତିକ ଛିନ୍ନବିଚ୍ଛିନ୍ନତା ଓ ଶାସନ ପରୀକ୍ଷାର ଭୂମିରେ ମଧ୍ୟ ଜଗନ୍ନାଥ ଓ ଅନ୍ୟାନ୍ୟ ମନ୍ଦିରର ଆକାଶଚୁମ୍ବୀ ଉଚ୍ଚ ଚୂଡ଼ା ହିଁ ଓଡ଼ିଆମାନଙ୍କର ଏକ ମାତ୍ର ଭରସା ଏବଂ ଆଶାର ସ୍ଥଳୀ । ନୈତିକ ସଂସ୍କୃତି ଗଠନ ପାଇଁ ଏହି ଜାତି ଯେଉଁ ତ୍ୟାଗ କରିଅଛି, ତହିଁରେହିଁ ଜାତି ସାନ୍ତ୍ୱନା ଏବଂ ଆଶା ଲାଭ କରେ । ଇଂରେଜ ଜାତି ଯେପରି ଧର୍ମଯୁଦ୍ଧରୁ ଉତ୍ସାହ ପାଏ, ସେପରି ଓଡ଼ିଆର ଅତୀତ ଇତିହାସ ସେହିପରି ଉତ୍ସାହପୂର୍ଣ୍ଣ ସ୍ମୃତି ସକଳରେ ପରିପୂର୍ଣ୍ଣ ।"

ମଧୁସୂଦନ କିପରି ସ୍ୱଦେଶୀ ଶିଳ୍ପ ସମ୍ପର୍କରେ ଗମ୍ଭୀରଭାବରେ ଚିନ୍ତା କରୁଥିଲେ, ତାହା ତାହାଙ୍କ ଶିଳ୍ପ ସମ୍ବନ୍ଧୀୟ ଲେଖାବଳୀରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । "ଶିଳ୍ପବନ୍ଧନରୁ ମୁକ୍ତି" ପ୍ରବନ୍ଧରେ ସେ ଲେଖିଥିଲେ—

"ଦେଶର ସମସ୍ତ ସମ୍ପଦକୁ ଶ୍ରେଷ୍ଠ ଉପାୟରେ ବିନିଯୋଗ କରିବା ଦ୍ୱାରାହିଁ ଦେଶର ସମୃଦ୍ଧି ନିର୍ଭର କରେ । ଯେଉଁ ଦେଶ ତାହାର କୃଷିଜାତ ଦ୍ରବ୍ୟକୁ ରପ୍ତାନି କରିଦିଏ ଏବଂ ନିଜର ପ୍ରୟୋଜନୀୟ କିମ୍ବା ସୌଖୀନ ଦ୍ରବ୍ୟ ବିଦେଶରୁ ଆମଦାନୀ କରେ, ସେ ଦେଶରେ ଏପରି ବିନିଯୋଗ ହେବା ଅସମ୍ଭବ । ଚାଷ, କାଠକାଟ, ଖଣିରେ କାମ କରିବା ପ୍ରଭୃତିରେ ମଣିଷର ଯେଉଁ ଶକ୍ତି ବ୍ୟୟ ହୁଏ, ତାହାର ମୂଲ୍ୟ ଜିନିଷ ଉତ୍ପାଦନ କିମ୍ବା ଅଳଙ୍କାର ପ୍ରଭୃତି ପ୍ରସ୍ତୁତ କରିବା ମୂଲ୍ୟଠାରୁ ଅପେକ୍ଷାକୃତ କମ୍ । ଉଭୟ କ୍ଷେତ୍ରରେ ଏକ ମନୁଷ୍ୟର ଶକ୍ତି ବ୍ୟବହୃତ ହେଲେ ମଧ୍ୟ ଏହି ଦୁଇ ଶକ୍ତିର ପାର୍ଥକ୍ୟ ବିଭିନ୍ନ ଢଗରେ ବ୍ୟୟିତ ହେବାରୁ ଉପୁଜେ । ଶିଳ୍ପକ୍ଷେତ୍ରରେ ମଣିଷର ଶକ୍ତି ସମ୍ଭ୍ରାନ୍ତ ଏବଂ ମଧ୍ୟବିତ୍ତ ଶ୍ରେଣୀଦ୍ୱାରା ନିୟନ୍ତ୍ରିତ ହୁଏ ।" ଏହି ପ୍ରବନ୍ଧରେ ମଧୁସୂଦନ ଅନ୍ୟତ୍ର ଭାରତୀୟ ଶିଳ୍ପର ଦୁରବସ୍ଥା ବର୍ଣ୍ଣନା କରି ଲେଖିଅଛନ୍ତି ଯେ, "ବିଦେଶୀ ଉତ୍ପାଦନକାରୀ ଆମ ଘରକୁ ଆକ୍ରମଣ କରି ନାହିଁ, ବିଦେଶୀ ଲୁଗା ଆମଦାନୀ ପ୍ରାୟ କାର୍ଯ୍ୟତଃ ବନ୍ଦ ହୋଇ ଯାଇଅଛି । ଲୁଗା ଉତ୍ପାଦନ କରିବାକୁ କଳ ମିଳୁ ନାହିଁ । ଭାରତ ବର୍ତ୍ତମାନ ଏମିତି ଏକ ଅବସ୍ଥାରେ ଅଛି, ଯାହାକୁ ଶିଳ୍ପ-ଅବରୋଧ କୁହାଯାଇ ପାରେ । ଅବରୋଧ ଅବସ୍ଥାରେ ଅବରୁଦ୍ଧ ଲୋକେ ସେମାନଙ୍କ ନିଜ ଉପରେହିଁ ପୂରା ନିର୍ଭର କରନ୍ତି । ବାହାରୁ କୌଣସି ସାହାଯ୍ୟ ମିଳେ ନାହିଁ; ଜୀବନରକ୍ଷା ପାଇଁ ସଂଗ୍ରାମ ଭୀଷଣ ଆକାର ଧରେ, କିନ୍ତୁ ଜୟଲାଭ ପାଇଁ ସମସ୍ତ ଶକ୍ତି ଏବଂ ସମ୍ବଳ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ । ଯେଉଁ ସୈନ୍ୟମାନେ ବର୍ତ୍ତମାନ ଆମ୍ଭମାନଙ୍କୁ ଶିଳ୍ପବନ୍ଧନରେ ରଖିଛନ୍ତି, ସେମାନେ ପ୍ରଥମେ ଆମ୍ଭମାନଙ୍କ ଦ୍ୱାରା ଅଣାଯାଇଥିଲେ ଏବଂ ଆମ୍ଭେମାନେହିଁ ସେମାନଙ୍କୁ ଖୋଇ ପେଇ ଆସ୍ଥାନ ଦେଇଥିଲୁ । ଆମ୍ଭମାନଙ୍କ ବିଦେଶୀ ଢାଞ୍ଚାରେ ଜୀବନ ଧାରଣ ପ୍ରଣାଳୀ, ଆମ୍ଭମାନଙ୍କ ବିଦେଶୀ ହାବଭାବ ଏବଂ ବିଦେଶୀ ପୋଷାକ ପିନ୍ଧିବା ସ୍ପୃହା ଆମ୍ଭମାନଙ୍କର ଏହି ଶିଳ୍ପବନ୍ଧନରେ ଜାଗୁଆଳି ସ୍ୱରୂପ କାର୍ଯ୍ୟ କରୁ ଅଛି । ଭାରତୀୟ ଦଣ୍ଡବିଧି ଆଇନ ଏହି ସୈନ୍ୟମାନଙ୍କ ଜୀବନକୁ ରକ୍ଷା କରି ପାରିବ ନାହିଁ । ତନ୍ତୀକୁଳଙ୍କ ସ୍ୱାର୍ଥବୁଦ୍ଧିରୁ ଏମାନଙ୍କୁ ମାରି ଦେବାକୁ ହେବ । ଏ ସବୁ ଭାବକୁ ମାରିଦିଅ, ତନ୍ତୀକୁଳ ପୂର୍ବଭଳି ବଳବାନ୍ ହେବେ । କିନ୍ତୁ ଆମ୍ଭମାନଙ୍କ ଚିନ୍ତାଧାରା ଆମ୍ଭମାନଙ୍କ ଦ୍ୱାରା ସୃଷ୍ଟ ହୁଏ ।

ଆମ୍ଭେମାନେ ଏହି ଭାବ ପ୍ରତି ଦାୟିତ୍ୱଜ୍ଞାନ ଦେଖାଉଛୁ ଏବଂ ସମାଜର କାଳେ ଆମ ପ୍ରତି ଅସମ୍ମାନ ବା ବିତୃଷ୍ଣା ଜାତ ହେବ, ସେଥିପାଇଁ ଆମ୍ଭେମାନେ ଭୟ କରୁଛୁଁ । ଏହା ଦ୍ୱାରା ହିଁ ଆମମାନଙ୍କ ପିନ୍ଧିବା ପୋଷାକ ବସ୍ତ୍ରରେ ଏକ ପରିବର୍ତ୍ତନ ଆସନ୍ତା । ଆମେମାନେ ସାହସ ବାନ୍ଧିବା ଉଚିତ । ଗର୍ଜନ-ମୁଖର କମାଣ ମୁହଁକୁ ଯିବା ଅପେକ୍ଷା ଲୋକଙ୍କ ଅସମ୍ମାନ ବା ବିତୃଷ୍ଣା ବିରୁଦ୍ଧରେ ଛିଡ଼ା ହେବାପାଇଁ ବେଶୀ ସାହସ ଦରକାର । ଯୁଦ୍ଧକ୍ଷେତ୍ରରେ ସହସ୍ର ସହସ୍ର ବନ୍ଧୁଙ୍କ ଉତ୍ସାହ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ମଧ୍ୟ ସାହସ ଆଣେ ଏବଂ ସ୍ପନ୍ଦନ ଯୋଗାଏ । କିନ୍ତୁ ସମାଜର ବିତୃଷ୍ଣା ବା ଅସମ୍ମାନ ଭାବ ଏକ ଅସହାୟ ସାଥୀହୀନ ବ୍ୟକ୍ତି ବିରୁଦ୍ଧରେ ଉଠେ । ଆମ୍ଭେମାନେ ଦେଖିବାକୁ ଚାହୁଁ ଯେ ଆମମାନଙ୍କ ଅବସ୍ଥାସମ୍ପନ୍ନ ଲୋକେ ମୋଚିଲୁଗା ବା ଧୋତି ବ୍ୟବହାର କରନ୍ତୁ । ଆଜିଯାଏ ବି ଏହା ଓଡ଼ିଶାର କେତେକାଂଶରେ ବ୍ୟବହୃତ ହେଉଅଛି ।”

ମଧୁସୂଦନଙ୍କ ଏହି ଚିନ୍ତାଧାରା ଉତ୍କଳ ତଥା ଭାରତରେ କିପରି କାର୍ଯ୍ୟ କରିଛି ଓ କରିବ, ତାହା ବିଶେଷ ଭାବରେ ଲକ୍ଷ୍ୟ କରିବା କଥା । ମଧୁସୂଦନ ‘ଶିଳ୍ପ—ଜାଗରଣ’ ପ୍ରବନ୍ଧରେ ଯେପରି ଭାବରେ କୃଷିକୁଳଙ୍କ ସ୍ୱାର୍ଥ ସଂରକ୍ଷଣପାଇଁ କିପରି କଲମ ଧରିଥିଲେ, ତାହା ତଳ ଲିଖିତ ଉଦ୍ଧୃତାଂଶରୁ ପ୍ରମାଣିତ ହେବ । “ଶିଳ୍ପର ସଫଳତା ପାଇଁ ମୂଳଧନ ବା ପାଣ୍ଠି, ଶ୍ରମ ବା ମଜୁରି ଏବଂ ମାନସିକ ଶକ୍ତି ବା ବୁଦ୍ଧିର ସାମଞ୍ଜସ୍ୟକର ବିନିଯୋଗ ଦରକାର । ଗୋଟାଏ ଅଞ୍ଚଳର ପ୍ରାକୃତିକ ସମ୍ପଦ ବା କଞ୍ଚାମାଲକୁ ପ୍ରସ୍ତୁତ ଦ୍ରବ୍ୟ ବା ଅଳଙ୍କାରରେ ପରିଣତ କରିବା ପୂର୍ବରୁ ସେହି କଞ୍ଚାମାଲକୁ ପ୍ରଥମେ ଅକ୍ତିଆରକୁ ଆଣିବା ଉଚିତ । ଶିଳ୍ପରେ ଯେଉଁ କଞ୍ଚାମାଲ ଖର୍ଚ୍ଚ ହୁଏ, ତାହା ସାଧାରଣତଃ ଖଣି କିମ୍ବା କୃଷି ଉତ୍ପନ୍ନ ଦ୍ରବ୍ୟ । ପ୍ରଥମେ ଆମ୍ଭମାନଙ୍କ ଦୃଷ୍ଟି କୃଷି ଉତ୍ପନ୍ନ ଦ୍ରବ୍ୟ ଉପରେ ପଡ଼ିବା ଚାହିଁ । ଓଡ଼ିଶା ଏକ କୃଷିଭୂଇଁ । ୧୮୬୬ ମସିହାର ଦୁର୍ଭିକ୍ଷ ଜାତିକୁ ଗୋଟିଏ ଶିକ୍ଷା ଦେଇଛି; ତାହା ଜାତି ଭୁଲିଯିବା ଅନୁଚିତ ।

“ଏ ଦେଶର ଅଧିକାଂଶ ଲୋକେ କୃଷିଜୀବୀ; ତେଣୁ କୌଣସି ଜାତୀୟ ଅନୁଷ୍ଠାନ ଯଦି ପ୍ରକୃତ ଜାତୀୟ ହେବାକୁ ଚାହେଁ, ତେବେ ପ୍ରଥମେ କୃଷିମାନଙ୍କ ଅବସ୍ଥାର ଉନ୍ନତି ପାଇଁ ଚେଷ୍ଟା କରିବା ଉଚିତ । ରାଷ୍ଟ୍ର ମଧ୍ୟ କୃଷିକୁଳଙ୍କ ଉନ୍ନତିବିଧାନର ମୂଲ୍ୟ ଦେଖୁଅଛି, ମାତ୍ର ଏ ଦେଶରେ ରାଷ୍ଟ୍ରର ଶକ୍ତି ଖର୍ଚ୍ଚ କରିବାରେ ଏକ ପ୍ରତିବନ୍ଧକ ଅଛି (ଏହା ୧୯୧୯ ମସିହାରେ ଦେଶର ରାଷ୍ଟ୍ରନୀତିକ ପରିସ୍ଥିତିରେ ଲିଖିତ) ।

"କୃଷୀ ନାନା ଭାବରେ ସାହାଯ୍ୟ ଚାହେଁ । କୃଷିର ଉନ୍ନତି ପାଇଁ ସେ ଆର୍ଥିକ ସାହାଯ୍ୟ ଚାହେଁ, ଭଲ ଫସଲର ଉନ୍ନତି ପାଇଁ ତାର କୃଷି ସମ୍ପର୍କୀୟ ଜ୍ଞାନ ଦରକାର, ପୁଣି କୃଷି ଉତ୍ପନ୍ନ ଦ୍ରବ୍ୟକୁ ଠିକ୍ ସମୟରେ ଏବଂ ଠିକ୍ ଜାଗାରେ ବିକିବା ପାଇଁ, ଯାହାଦ୍ୱାରା କି ସେ ଉଚିତ ମୂଲ୍ୟ ପାଇବ, ସେ ମଧ୍ୟ ଆର୍ଥିକ ସାହାଯ୍ୟ ଦରକାର କରେ । କୃଷିର ଏହି ଉପର ଲକ୍ଷିତ ଉନ୍ନତି ଆଣିବାପାଇଁ ବହୁତ ମୂଳଧନ ଦରକାର । ସହଯୋଗ ସମିତିର ବ୍ୟାଙ୍କ ସବୁ କୃଷୀକୁଳକୁ ଆର୍ଥିକ ସାହାଯ୍ୟ ଦେବାକୁ ଚେଷ୍ଟା କରୁ ଅଛନ୍ତି । ମହାଜନର ଅତ୍ୟଧିକ ସୁଧ ହାରରୁ ସେମାନଙ୍କୁ କେତେକ ପରିମାଣରେ ଏହା ରକ୍ଷା କରୁଅଛି । ସରକାର ଏହାଠାରୁ ଦୂରକୁ ଯାଇ ପାରୁ ନାହାନ୍ତି । କୃଷୀଙ୍କୁ ସାଧାରଣତଃ ଶତକଡ଼ା ପନ୍ଦର ଟଙ୍କା ସୁଧ ଦେବାକୁ ପଡ଼ୁଛି । ମୂଳଧନ ଦେବା ବାଲା ଏବଂ କଞ୍ଚା ମାଲ ଉତ୍ପାଦନକାରୀ ମଧ୍ୟରେ କୌଣସି ସମ୍ପର୍କ ରହୁ ନାହିଁ । ମୂଳଧନର ମାଲିକ ଯେଉଁ ସୁଧ ପାଏ ଏବଂ କୃଷୀ ଯେଉଁ ହାରରେ ସୁଧ ଦିଏ, ଏହା ମଧ୍ୟରେ ଢେର ପାର୍ଥକ୍ୟ ରହି ଯାଉଅଛି । ଏହି ପାର୍ଥକ୍ୟଟା ମଝିରେ ଅନ୍ୟ ଲୋକେ ପାଇ ଯାଆନ୍ତି । ଏହା ସାହସ ଏବଂ ବ୍ୟବସାୟ ଚଳାଇବା ପାଇଁ ଯେଉଁ ଦୂରଦୃଷ୍ଟି ଏବଂ କ୍ଷତି ସହିବାକୁ ପଡ଼େ, ସେହି ବାବଦରୁ ଯାଏ । ଶୂନ୍ୟରୁ ଖସି ପଡ଼ୁଥିବା ଗୋଟାଏ ପଦାର୍ଥର ଆଘାତ ଶକ୍ତି ଶୂନ୍ୟରୁ ଖସି ପଡ଼ୁଥିବା ପଦାର୍ଥର ଖସି ଆସୁଥିବା ସ୍ଥାନର ଦୂରତା ଉପରେ ନିର୍ଭର କରେ ।

"ମୂଳଧନର ଆରମ୍ଭ ସ୍ଥାନ ଏବଂ କୃଷୀ, ଯେ କି ବିକାଶ ବା ଉନ୍ନତି-ମୂଳକ କାର୍ଯ୍ୟରେ ଏହା ବ୍ୟୟ କରେ; ଏହି ଦୁହିଁଙ୍କ ଦୂରତାର ଅନୁମାନ ଉପରେ ମୂଳଧନର ଆଘାତ ଶକ୍ତି ନିର୍ଭର କରେ । ସୁଧ ମୂଳଧନର ଆଘାତ ଶକ୍ତି ବୋଲି ଧରିବାକୁ ହେବ । ସହଯୋଗ ବ୍ୟାଙ୍କ ପ୍ରଥାନୁସାରେ ଏହି ଦୂରତା କମାଇବାକୁ ହେବ । ବ୍ୟବସାୟ କ୍ଷତି ଏବଂ ସାହସର ମୂଲ୍ୟ ମଧ୍ୟ ହ୍ରାସ କରିବା ଦରକାର, ଯେପରି ମୂଳଧନର ଚାପ କୃଷୀ ଉପରେ ନ ପଡ଼େ ।

"ଗ୍ରାମ ସହଯୋଗ ସମିତି କିମ୍ବା ଖରିଦଦାର ଯେ କି କୃଷୀଙ୍କ ଠାରୁ କଞ୍ଚା ମାଲ କିଣି ସଞ୍ଚୟ କରନ୍ତି, ସେମାନେ ମଧ୍ୟସ୍ଥ ସ୍ୱରୂପ । ଏମାନେ ସେମାନଙ୍କ ରପ୍ତାନୀ ପାଇଁ ଯେଉଁ କ୍ଷତି ବା ସାହସ ଥାଏ, ତାହାର ମୂଲ୍ୟହିଁ ପାଆନ୍ତି । ଏହି ଆଚରିତ ପ୍ରଥା ଆମର ନ୍ୟାୟଜ୍ଞାନକୁ ମାରିଦିଏ ଏବଂ ଅତି ଅନ୍ୟାୟ କାର୍ଯ୍ୟକୁ ଆମ୍ଭେମାନେ ନ୍ୟାୟ ବୋଲି ଭୁଲରେ ଗ୍ରହଣ କରୁଁ । ଯଦି ବ୍ୟବସାୟ-ମୂଳକ ସାହସ ଏବଂ କ୍ଷତି ପାଇଁ କୌଣସି ମୂଲ୍ୟ ଥାଏ, ତେବେ କୃଷୀହିଁ ଏହି କ୍ଷତିପାଇଁ ବେଶୀ ମୂଲ୍ୟ ପାଇବା ଦରକାର । କାରଣ ଗ୍ରାମ ସହଯୋଗୀ ସମିତିଠାରୁ

କୃଷୀର କ୍ଷତି ଏବଂ ସାହସ ବେଶୀ । କୃଷୀ ପକ୍ଷରେ ତାର ଶ୍ରମ ଏବଂ ମୂଳଧନରୁ ଫଳ ପାଇବା ନିର୍ଭର କରେ ମେଘ, ନଈ, ନାଳର ଦୟା ଉପରେ । ପୁଣି ତାହା ସଙ୍ଗକୁ ବିଭିନ୍ନ କୀଟ ପତଙ୍ଗର ଅତ୍ୟାଚାର ମଧ୍ୟ ଯୋଡ଼ାଯିବା ଉଚିତ । ଏହିସବୁ କୃଷୀର ଅଧିକାର ବାହାରେ; କିନ୍ତୁ ଦେଶର ପ୍ରଚଳିତ ଆଇନ, ରୀତି ବା କୃଷୀ ମୁଣ୍ଡରେ ସମସ୍ତ କ୍ଷତି ଲଦିଦିଏ । କିନ୍ତୁ ତାହାର କ୍ଷତି ବଦଳରେ ପ୍ରତି ମୂଲ୍ୟ କାହିଁ ?"

ଉପର ଲିଖିତ ଚିନ୍ତାଧାରାରୁ ମଧୁସୂଦନଙ୍କ ଅର୍ଥନୀତି ସଂପର୍କରେ ବିଚକ୍ଷଣତା ପରିସ୍ଫୁଟ । ମଧୁସୂଦନ କେବଳ ଆଦର୍ଶବାଦୀ, କଳ୍ପନାବିଳାସୀ ରାଷ୍ଟ୍ରନୀତିଜ୍ଞ ନ ଥିଲେ । ସେ ଦେଶର ବିଭିନ୍ନ ସମସ୍ୟାକୁ ଗଭୀରଭାବରେ ପର୍ଯ୍ୟାଲୋଚନା କରି, ତାଙ୍କର ଦୃଢ଼ ମତ ପେଷଣ ଓ ପ୍ରକାଶ କରିଥିଲେ ।

"ଶିଳ୍ପ ବିକାଶ" ସମ୍ବନ୍ଧରେ ମଧୁସୂଦନ ଲେଖିଅଛନ୍ତି—"ବର୍ତ୍ତମାନ ହାତ ଓ ମସ୍ତିଷ୍କ ମଧ୍ୟରେ କୌଣସି ମିଳନ ନାହିଁ । ହାତକାମ କରୁଥିବା କାରିଗରମାନେ ଅନ୍ୟ ଏକ ଶ୍ରେଣୀ ଗଠନ କରିଅଛନ୍ତି । ସମାଜ ବୁଦ୍ଧିଜୀବୀ ଏବଂ ହାତକାମ କରୁଥିବା କାରିଗର ଶ୍ରେଣୀରେ ବିଭକ୍ତ ହୋଇଅଛି । ମଣିଷ ସମାଜର ପ୍ରକୃତ ଏବଂ ସ୍ଥାୟୀ ଉନ୍ନତି ଶିଳ୍ପକାର୍ଯ୍ୟ ସହିତ ଗଭୀର କୃଷିର ସଂଯୋଗ ହେଲେ ହେବ । କାରଖାନାରେ ବ୍ୟବହାର ପାଇଁ କଞ୍ଚା ମାଲ କୃଷକହିଁ ଯୋଗାଏ । ସମାଜବିଜ୍ଞାନର ଛାତ୍ରମାନଙ୍କର ଏହି ଶିଳ୍ପ ସହିତ କୃଷିର ମିଶ୍ରଣ ଦୃଷ୍ଟି ଆକର୍ଷଣ କରିଥିଲା । ଏହାକୁ ହିଁ "ପୂର୍ଣ୍ଣଶିକ୍ଷା" (Integral education) କୁହା ଯାଉଥିଲା ।"

"ଯୁବକହିଁ ବ୍ୟବସାୟୀ ଏବଂ ବ୍ୟବସାୟୀହିଁ ଯୁବକ" ପ୍ରବନ୍ଧରେ ମଧୁସୂଦନ ସ୍ୱଦେଶ ଶିଳ୍ପର ବିକାଶ ପାଇଁ ଲେଖି ଅଛନ୍ତି :—

"ଆମ୍ଭେମାନେ ସ୍ୱରାଜ (Home Rule) ପାଇଁ ଆକାଂକ୍ଷା ପୋଷଣ କରୁଁ । କିନ୍ତୁ ଆମ୍ଭେମାନେ କିପରି ଅନ୍ୟ ଜାତି ଉପରେ ନିର୍ଭର କରୁଅଛୁଁ, ତାହା ଆମ୍ଭେମାନେ ପରୀକ୍ଷା କରି ଦେଖୁ ନାହୁଁ । ଯେଉଁ ଜାତି ନିଜର ଶିଳ୍ପଜାତ ଦ୍ରବ୍ୟ ପାଇବା ପାଇଁ, ନିଜର ଉତ୍ପନ୍ନ କଞ୍ଚାମାଲକୁ ବିଦେଶକୁ ରପ୍ତାନି କରିଦିଏ, ସେ ଦେଶ ଶିଳ୍ପକ୍ଷେତ୍ରରେ ଶିଶୁମାନ । ଆମ୍ଭେମାନେ ଅନ୍ୟ ଜାତିଙ୍କଠାରୁ ଲୁଗା କିମ୍ବା ଜୋତା କିଣୁ । ଆମ୍ଭମାନଙ୍କର ପ୍ରତ୍ୟେକ ଯାହା ଧାରକାର ବା ଯେଉଁ ଅଳଙ୍କାର ଆମ୍ଭେମାନେ ବ୍ୟବହାର କରୁ-ତାହା ଆମ୍ଭମାନଙ୍କୁ ଅନ୍ୟ ଜାତି ଯୋଗାନ୍ତି; ତଥାପି ଆମ୍ଭେମାନେ "ସ୍ୱରାଜ" ଚାହୁଁ । ଏପରି 'ସ୍ୱରାଜର' ଅର୍ଥ କଣ ? ଏପରି ସ୍ୱରାଜର ବ୍ୟାପକତା କିମ୍ବା ଲକ୍ଷ୍ୟ କଣ ?

ଏହା କଣ ସ୍ୱଦେଶର ବ୍ୟବସାୟକୁ ଅଧୀନରେ ରଖିବ ନାହିଁ ? ଯଦି ଲୋକମାନେ ବ୍ୟବସାୟ ଦିଗରେ ସାହସ ନ ଦେଖାନ୍ତି; ତାହାର ବ୍ୟବସାୟ ଉନ୍ନତି ସମ୍ଭବ ହେବ ନାହିଁ । ଯେଉଁମାନଙ୍କର ମୂଳଧନ ଅଛି, ସେମାନେ କେବଳ ଜମିରେହିଁ ମୂଳଧନ ଖର୍ଚ୍ଚ କରିବାକୁ ଚାହାଁନ୍ତି । ଜମିରୁ କେବଳ ପ୍ରାକୃତିକ ପଦାର୍ଥ ମିଳେ । ମାତ୍ର ଧୋତି, ହଳେ ଜୋତା, ଅଖା କିମ୍ବା ଛତା ଜମି ଉତ୍ପନ୍ନ କରି ପାରିବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ପୁଞ୍ଜିପତି (Capitalist) ଏବଂ ଜମିଦାର (Landlord) ମାନେ ଅର୍ଥ-ଜଗତରେ ଶାସନ କରୁଥିବେ ସେତେଦିନ ପର୍ଯ୍ୟନ୍ତ ସ୍ୱଦେଶଶିଳ୍ପ ଉନ୍ନତିର କୌଣସି ଆଶା ନାହିଁ । ଦୁଃଖର କଥା; ଯେଉଁମାନେ ଅର୍ଥନୀତିର ମୌଳିକ ନୀତି ମଧ୍ୟ ପଢି ନାହାନ୍ତି, ସେମାନଙ୍କ ହାତରେହିଁ "ପୁଞ୍ଜି" ରହିଅଛି । ସେମାନେ ଧନୀ, ସେମାନେ ଶିକ୍ଷାର ମୂଲ୍ୟ ବୁଝନ୍ତି ନାହିଁ । ସେମାନେ ଦେଖନ୍ତି ଯେ ଶିକ୍ଷାର ଶେଷ ଲକ୍ଷ୍ୟ ହେଉଛି ଟଙ୍କା । ସେମାନଙ୍କର ଟଙ୍କା ଅଛି, ତେଣୁ ଶିକ୍ଷାର ପ୍ରୟୋଜନ କଣ ଅଛି ? ଏହାହିଁ ପୁଞ୍ଜିପତି ଏବଂ ସେମାନଙ୍କ ପିଲାମାନଙ୍କର ମତ ଗତି ।"

ଏହି ସବୁ ଲେଖାର କୌଣସି ଟିପ୍‌ପଣୀ ପ୍ରୟୋଜନ ନାହିଁ । ମଧୁସୂଦନ ପ୍ରଚଳିତ ଡାକ୍ତରୀ କିମ୍ବା କବିରାଜୀ ଚିକିତ୍ସାର ପାର୍ଥକ୍ୟ ଦେଖାଇ ଶେଷରେ ତାହାଙ୍କ ବୈଦେଶିକ ଭେଷଜ ଚିକିତ୍ସା ପ୍ରବନ୍ଧରେ ଲେଖି ଅଛନ୍ତି—

"ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଘିଅ ଖାଇବା ଅନୁଚିତ ବୋଲି ଘୋଷଣା କରାଯାଉଥିଲା । ଦହି—ଯାହା ବର୍ତ୍ତମାନ ଖୁବ୍ ଭଲ ଖାଦ୍ୟ ବୋଲି ସ୍ୱୀକୃତ ହେଉଛି, ତାହା ମଧ୍ୟ ଖାଦ୍ୟ ପଦାର୍ଥ ରୂପେ ଗଣ୍ୟ ନୁହେଁ ବୋଲି ଘୋଷଣା କରା ଯାଉଥିଲା । ଡାକ୍ତର ଚେଭର୍ସ (Chevers), ଯେ କି କଲିକତା ଡାକ୍ତରୀ କଲେଜର ପ୍ରିନ୍‌ସିପାଲ ଥିଲେ; ସେ ପ୍ରଥମେ ଦେହରେ ସୋରିଷତେଲ ଘଷିବାର ଉପକାରିତା ଜାଣି ପାରିଲେ । ଇଉରୋପୀୟ ଡାକ୍ତରମାନେ ପୋଟଳର ଖାଦ୍ୟଗୁଣ ଜାଣି ନ ଥିଲେ ।

"ଭଜା ଚୁଡ଼ା ଯାହା କି ଆମ ଦେଶରେ ରୋଗୀର ପଥ୍ୟରୂପେ ବହୁକାଳରୁ ଗୃହୀତ, ତାହାର ମୂଲ୍ୟ ଅତି ଅଳ୍ପ ଦିନ ହେଲା ଡାକ୍ତରମାନେ ଜାଣି ପାରି ଅଛନ୍ତି । ଇଂରେଜ ରସାୟନବିତ୍‌ମାନେ ମକରଧ୍ୱଜ ବିକ୍ରୀ କଲେଣି । ଏକ ଉଚ୍ଚ ଭାରତୀୟ କର୍ମଚାରୀ ଡାକ୍ତରୀ ଚିକିତ୍ସାରେ ବିଫଳ ହୋଇ ଏକ କବିରାଜ ଦ୍ୱାରା ଆରୋଗ୍ୟ ହୋଇ ପାରିଥିଲେ ।

"ଅନେକ ଉଦାହରଣ ଦିଆଯାଇ ପାରେ ଯେ ସ୍ୱଦେଶୀ ଚିକିତ୍ସାକୁ ବଞ୍ଚାଇ ରଖିବା ଉଚିତ । କବିରାଜୀ ଚିକିତ୍ସାରେ ସାହାଯ୍ୟ କରିବାକୁ ସରକାରଙ୍କ ମନ

ଜବରାଜଙ୍କର ଜାଣିବା ଦରକାର । ଶରୀର ଅଭ୍ୟନ୍ତରରେ ମଣିଷର ବଡ଼ଭଲ ଅଙ୍ଗ ପ୍ରତ୍ୟଙ୍ଗର କାର୍ଯ୍ୟ ଜବରାଜ ଜାଣି ନ ଥିବାରୁ, ତାହାର ଅସୁବିଧା ହୁଏ ।”

“ସ୍ୱଦେଶର ସମସ୍ତ ପ୍ରକାର ସଂସ୍କାରକୁ କୁସଂସ୍କାର କହି ଉଡ଼ାଇ ଦେଲେ ଚଳିବ ନାହିଁ । ମଧୁସୂଦନ ଲେଖି ଅଛନ୍ତି ଯେ ମ୍ୟାଲେରିଆ ଜ୍ୱରର ପ୍ରତିକାର-ରୂପେ ଯେତେବେଳେ “କୁଇନାଇନ୍” କୁ ଅବ୍ୟର୍ଥ ଔଷଧରୂପେ ଘୋଷଣା କରାଗଲା, ଏହା ଜଣେ ଡାକ୍ତରଙ୍କଦ୍ୱାରା ସ୍ଥିର ହୋଇ ଥିଲା ବୋଲି, ଦେଶ ସାରା, ସରକାର କେତେ ଟଙ୍କା ଖର୍ଚ୍ଚ କଲେ; ମାତ୍ର ବର୍ତ୍ତମାନ ଜଣା ପଡ଼ିଲାଣି ଯେ ମଶା କାମୁଡ଼ା ଦ୍ୱାରା ଏହି ଜ୍ୱର ହୁଏ ତେଣୁ କୁଇନାଇନ ଦ୍ୱାରା ନୁହେଁ ଗୋଟିଏ ମଶାରି ଦ୍ୱାରା ଏହି ରୋଗରୁ ରକ୍ଷା ମିଳେ ।” ମଧୁସୂଦନ ସାବାଦିକ ଭାବରେ ଯେଉଁ କେତୋଟି ପ୍ରବନ୍ଧ ଲେଖିଥିଲେ, ସେଗୁଡ଼ିକର ଉପାଦେୟତା, ଅତି ବେଶୀ । ଏହା ସମସ୍ତ ଇଂରାଜି ଭାଷାରେ ଲିଖିତ । ତାହାଙ୍କ ଟୀକା ଟିପ୍ପଣୀରେ ମଧ୍ୟ ମଧୁସୂଦନ ସେହିପରି ଉଚ୍ଚ ଭାବ ଓ ଭାଷା ଦେଖାଇ ଅଛନ୍ତି । ମଧୁସୂଦନ ସବୁବେଳେ ତାହାଙ୍କ ବକ୍ତବ୍ୟ ବିଷୟକୁ ଏକ ଉଚ୍ଚ, ସାଧାରଣ ଠାରୁ ଦିଗରୁ ଆଲୋଚନା କରୁଥିଲେ । ଏହାଦ୍ୱାରା ମଧୁସୂଦନ ତାହାଙ୍କ ଲେଖାର ମୂଲ୍ୟ ବୃଦ୍ଧି କରୁଥିଲେ ।

ଆଧୁନିକ ଶିକ୍ଷା ସମ୍ପର୍କରେ ମଧୁସୂଦନ ଲେଖିଥିଲେ:—

“ଆଧୁନିକ ଶିକ୍ଷା ଅପ୍ରୟୋଜନୀୟ ଫଳ ଫଳାଇଅଛି । ସରକାର ଭାବୁଛନ୍ତି ବର୍ତ୍ତମାନ ଯେ ବେଆଇନ ମନୋଭାବ ଦେଖା ଯାଉଛି, ତାହା ଆଧୁନିକ ଶିକ୍ଷାର ପରିଣାମ । ଏହାର ପ୍ରତିକାରସ୍ୱରୂପ ଛାତ୍ରମାନଙ୍କୁ ନାନା କଟକଣାରେ ରଖା ଯାଉଅଛି । ଛାତ୍ରମାନେ ସାଧାରଣ ସଭାରେ ଯୋଗ ଦେଉ ନାହାନ୍ତି ଏବଂ ସେମାନଙ୍କୁ ଖବର କାଗଜ ପଢ଼ିବାକୁ ମଧ୍ୟ ଦିଆଯାଉ ନାହିଁ । ଅନୁମାନ କରା ଯାଉଅଛି, ଏହି ସବୁ କଟକଣା ରାଜଭକ୍ତ ପ୍ରଜା ସୃଷ୍ଟି କରିବ । ଆଧୁନିକ ଶିକ୍ଷାପ୍ରଣାଳୀ ଏକ ସତ୍ୟ ଉପଲବ୍ଧି କରୁ ନାହିଁ ଯେ ପିଲାର ଏକ ଆତ୍ମା ଅଛି । ଶିକ୍ଷକମାନେ ସେମାନଙ୍କ କର୍ତ୍ତବ୍ୟ ବୋଲି ଭାବନ୍ତି ନାହିଁ ଯେ ପିଲାଙ୍କୁ ତାହା ଜୀବନର ଆଦର୍ଶ ବା ଉଦ୍ଦେଶ୍ୟ ପରିପୂରଣ କରିବା ପାଇଁ ସାହାଯ୍ୟ କରିବା ଉଚିତ । କେତେକ ଲୋକ ଆଧୁନିକ ଶିକ୍ଷାକୁ ଭଗବତ୍‌ଶୂନ୍ୟ ଶିକ୍ଷା ବୋଲି ଭାବନ୍ତି । ଆତ୍ମଶୂନ୍ୟ ଶିକ୍ଷାହିଁ ବେଶୀ ପ୍ରଯୁଜ୍ୟ ।”

ମଧୁସୂଦନ ୧୯୧୮ ମସିହା ଫେବୃୟାରୀ ୧୩ ତାରିଖରେ ଗୋଟିଏ ଟିପ୍ପଣୀ ଲେଖିଥିଲେ, ଯାହା ଆଧୁନିକ ରାଷ୍ଟ୍ରନୀତିକ ଆନ୍ଦୋଳନକାରୀଙ୍କୁ ମଧ୍ୟ ଆଶାର ବାଣୀ ଶୁଣାଇବ ।

“ଶାସକମାନେ ସମସ୍ତ ପ୍ରଗତିଶୀଳ ଆନ୍ଦୋଳନ, ଯାହା ଦ୍ୱାରା କି ସମାଜର ବିକାଶ ସାଧିତ ହୁଏ, ତାହାକୁ ପ୍ରତିରୋଧ କରନ୍ତି । ମଣିଷର କ୍ଷମତା ଲୋଭ ପ୍ରବୃତ୍ତିରୁ ଏହା ହୋଇଥାଏ । ପ୍ରଗତି ପ୍ରକୃତିର ନିୟମ । ଏହି ଅଗ୍ରଗତି ଲାଗି ପଦକ୍ଷେପ, ପ୍ରଚଳିତ ଅବସ୍ଥା ବା ସ୍ଥାଣୁତା ଭଙ୍ଗର ଗୋଟିଏ ଗୋଟିଏ ଚିହ୍ନ । ସରକାର ପ୍ରଚଳିତ ଅବସ୍ଥା ଏବଂ ସ୍ଥାଣୁତା ଉପରେ ଠିଆ । ତେଣୁ ଏହି ସ୍ଥାଣୁତାର ପରିବର୍ତ୍ତନ, ପ୍ରଚଳିତ ଜୀବନର ଅଦଳ ବଦଳ ଏବଂ ନୂଆ ଶକ୍ତିର ବିକାଶ ପ୍ରଚଳିତ ଅବସ୍ଥାର ଏକ ଶତ୍ରୁରୂପେ ପରିଗଣିତ ହୁଏ । ମନରେ ଆଶଙ୍କା ହୁଏ ଯେ, ପୁରୁଣା କଳ ଏହି ନୂଆ ଅବସ୍ଥାରେ କାର୍ଯ୍ୟକାରୀ ହେବାକୁ ଅପାରଗ ହେବ । ତେଣୁ କ୍ଷମତା ହରଣ ମନରେ ଆତଙ୍କ ଜାତ କରାଏ ।”

ମଧୁସୂଦନ ଏ ସମ୍ପର୍କରେ ଆହୁରି ସ୍ପଷ୍ଟଭାବରେ ଜଣାଇ ଦେଇଛନ୍ତି ଯେ “ପୃଥିବୀର ରାଷ୍ଟ୍ରନୀତିକ ଧାରାର ଇତିହାସରୁ ଏହା ସ୍ପଷ୍ଟ ଯେ ସରକାର ବଦଳିବାକୁ ବାଧ୍ୟ । ମଣିଷ ଭାଗ୍ୟର ଗତି ଶାସନ-କ୍ଷମତା ସହିତ ଏକ ସମନ୍ୱୟ ଦାବୀ କରେ । କିନ୍ତୁ ଶାସନରେ ଥିବା ଶାସକମାନଙ୍କ କ୍ଷମତା ଲୋଭ ଏହି ସମନ୍ୱୟତାରେ ବାଧା ଦିଏ ।

“ଶାସକମାନେ ଯାହା ପ୍ରଚଳିତ ଅବସ୍ଥା ଅଛି, ତାହାକୁ ରକ୍ଷା କରିବାରେ ସେମାନଙ୍କର ଲାଭ ବୋଲି ଜାଣନ୍ତି; ତେଣୁ ଯେ କୌଣସି ନୂଆ ଆନ୍ଦୋଳନର ବିରୋଧ କରନ୍ତି । କିନ୍ତୁ ପ୍ରକୃତି ଧୀରଭାବରେ ହେଲେ ମଧ୍ୟ ତାହାର କାର୍ଯ୍ୟ କରିଯାଏ । ଗ୍ରୀଷ୍ମପ୍ରଧାନ ଦେଶରେ ପ୍ରଚଣ୍ଡ ଉତ୍ତାପ ଗଛକୁ ମାରି ଦିଏ ଏବଂ ସୁନ୍ଦର ପ୍ରସ୍ଫୁଟିତ ଗୋଲାପ ଦେଖିବା ଆଶା ଲୋପ ପାଇଯାଏ । କିନ୍ତୁ ଯେଉଁ ସୂର୍ଯ୍ୟ ପତ୍ର ଶୁଖାଇଦିଏ, ଏହା ରସକୁ ଚେର ପାଖକୁ ନେଇଥାଏ ଏବଂ ସୁଋତୁ ଆସିଲେ, ଯେଉଁ ରସ ଚେରମୂଳରେ ଲୁଚି ରହିଥାଏ, ତାହା ପୁଣି କାଣ୍ଡରେ ପରିଣତ ହୁଏ ଏବଂ ସୁଗନ୍ଧ ସହିତ ସୃଷ୍ଟିକର୍ତ୍ତାଙ୍କ ବାର୍ତ୍ତା ପୁଣି ପ୍ରସ୍ଫୁଟିତ ଗୋଲାପ ରୂପରେ ମଣିଷ ପାଖରେ ପହଞ୍ଚେ ।”

ମଧୁସୂଦନ ନାରୀ ଶିକ୍ଷା ସମ୍ପର୍କରେ ଲେଖିଛନ୍ତି:—

“ଜାତି ପକ୍ଷରେ ନାରୀଶିକ୍ଷା ଅତି ଦରକାରୀ । ପ୍ରତ୍ୟେକ ବାଳିକା ଭବିଷ୍ୟତ ମାତା । ଆଜିକାଲିକାର ଝିଅ ଭବିଷ୍ୟତ ବଂଶଧରମାନଙ୍କର ମା ହେବେ । ନଦୀ ମୂଳ ଝରଣାଠାରୁ ଉଚ୍ଚକୁ ବଢ଼ି ନ ପାରେ, କିମ୍ବା ଏହାର ପାଣି ଝରଣା ପାଣିଠାରୁ ନିର୍ମଳତର ହୋଇ ନ ପାରେ । ଜାତି ତାହାର ସ୍ତ୍ରୀଙ୍କଠାରୁ ଉପରକୁ ଯାଇ ନ ପାରେ । କାରଣ ସେମାନେହିଁ ଝରଣା; ଯାହାକି ଜାତିର ରକ୍ତକୁ ପୁଷ୍ଟ କରେ । ଏହି ରକ୍ତହିଁ ଜାତି ହୃଦୟରେ ପ୍ରବାହିତ । ଜାତିର ସମସ୍ତ ସଦ୍‌ଗୁଣର ଆଧାର ହେଉଛନ୍ତି ନାରୀ ।

"ବିଶେଷତଃ ହିନ୍ଦୁ ନାରୀଙ୍କ ପକ୍ଷରେ ଏହା ଯଥାର୍ଥ ଅଟେ । ହିନ୍ଦୁ ନାରୀ-ମାନଙ୍କୁ ବୈଦେଶିକମାନେ ଏକ ଦୟାର ପାତ୍ରୀସ୍ୱରୂପ ଗ୍ରହଣ କରିଅଛନ୍ତି । ତାହାର ଘର ଏକ କାରାଗାର ସଙ୍ଗେ ତୁଳନା କରାଯାଇ ଅଛି ଏବଂ ନାରୀ ସେହି କାରାଗାର ମଧ୍ୟସ୍ଥ ଏକ ଦୟନୀୟ ପାତ୍ରୀରୂପେ ସଭ୍ୟ ଜଗତରେ ପରିଚିତା । ଜନାନା ଏକ କାରାଗାର ନୁହେଁ, ଏହା ଏକ ପୁଣ୍ୟପୀଠ; ଯେଉଁଠାରେ ଭାରତର ପ୍ରସିଦ୍ଧ ନାରୀମାନଙ୍କୁ ଜନ୍ମ ଦେଇଥିବା ସଦ୍‌ଗୁଣାବଳୀ ସଞ୍ଚିତ ହୋଇ ରହି ପାରିଅଛି । ଆମ ପୁରୁଷମାନେ, ବୈଦେଶିକ ପ୍ରଭାବରେ ପ୍ରଭାବିତ ହୋଇ ଅବନତି ଆଡ଼କୁ ଗତି କରୁଅଛୁଁ । ଆମ୍ଭେମାନେ ହିନ୍ଦୁ-ଅନ୍ତର ତେଜ ହରାଇ ଅଛୁଁ । ବୈଦେଶିକ ପ୍ରଭାବ ଏବଂ ପାଶ୍ଚାତ୍ୟ ଶିକ୍ଷା ଆମ୍ଭମାନଙ୍କୁ ବସ୍ତୁ-ତାନ୍ତ୍ରିକ କରି ଦେଇଅଛି । ଆମ୍ଭମାନଙ୍କ ଶିକ୍ଷିତ ସମ୍ପ୍ରଦାୟ ଆତ୍ମହୀନ କଳଗଡ଼ । ପୁରୁଷମାନଙ୍କ ମଧ୍ୟରେ ଥିବା ନୈତିକ ଗୁଣ ପରିବର୍ତ୍ତିରେ ସାମାଜିକ ପ୍ରଥା ତାହାର ସ୍ଥାନ ଗ୍ରହଣ କରିଅଛି । ଏହା ଏକ ବୈଦେଶିକ ସଂକ୍ରାମକ ରୋଗ । ଏକ ନୂଆ ଆଲୁଅ ଆମ୍ଭମାନଙ୍କୁ ଝଲସାଇ ଦେଲା ଏବଂ ଆମ୍ଭମାନଙ୍କୁ ସ୍ତମ୍ଭିତ କରି ଦେଲା । ଯେପରି ଉଜ୍ଜ୍ୱଳ ଆଲୁଅ ଦ୍ୱାରା ଲୋକମାନେ ଆକୃଷ୍ଟ ହୋଇ ଆସନ୍ତି; ସେହିପରି ଏହା ଆମ୍ଭମାନଙ୍କୁ ଆକର୍ଷଣ କଲା । ବର୍ତ୍ତମାନ ଆମ୍ଭେମାନେ ଆମ୍ଭମାନଙ୍କ ଭୁଲ କ୍ରମେ ବୁଝୁଅଛୁଁ ।

"କିନ୍ତୁ ଜନାନାମାନଙ୍କରେ ଆମ୍ଭମାନଙ୍କର ନାରୀମାନେ ଆମ୍ଭମାନଙ୍କ ପୂର୍ବ-ପୁରୁଷଙ୍କ ସଦ୍‌ଗୁଣ ରକ୍ଷା କରିଅଛନ୍ତି । ମନ୍ଦିରର କାନ୍ଥକୁ ଭୁଲରେ କାରାଗାର ବୁଝା ଯାଉଅଛି । ଏହା ବୈଦେଶିକ ସଂକ୍ରାମରୁ ନାରୀମାନଙ୍କୁ ରକ୍ଷା କରିଅଛି ।"

ମଧୁସୂଦନ ହିନ୍ଦୁ ନାରୀମାନଙ୍କ ଆଦର୍ଶ ବିଷୟରେ ଲେଖୁ ଲେଖୁ ଆହୁରି ପାଦେ ଅଗ୍ରସର ହୋଇ ଯାଇଅଛନ୍ତି, ସତୀପ୍ରଥା ଯେ ସେ ରଖିବାକୁ ଚାହୁଁ ଥିଲେ, ତାହା ନୁହେଁ, ମାତ୍ର ସେ ଦୃଷ୍ଟାନ୍ତ ସ୍ୱରୂପ ଦେଖାଇ ଦେଇଛନ୍ତି, କିପରି ଏହି ସତୀ-ଆଦର୍ଶ ସମାଜରୁ ମନ୍ଦ ଆଦର୍ଶ ଦୂର କରିପାରେ । ମଧୁସୂଦନ ଲେଖିଥିଲେ, "ଯଦି ସତୀପ୍ରଥା ଆଜି ଆଇନବଳରେ ବନ୍ଦ କରାଯାଇ ନ ଥାନ୍ତା, ତେବେ ଅଗ୍ନିରେ ଦଗ୍‌ଧ ସତୀ ଆତ୍ମା କର୍ତ୍ତବ୍ୟ ପ୍ରତି ଅବିଚଳିତ ସ୍ନେହ ଏବଂ ଆଦର୍ଶ ଲାଗି ସାହସ ବିଷୟରେ ଉତ୍କୃଷ୍ଟ ଆଦର୍ଶ ହୋଇ ପାରିଥାନ୍ତା । ଏହା ଗିର୍ଜାଘର କିମ୍ବା ଶିକ୍ଷାନୁଷ୍ଠାନର ବକ୍ତୃତା ଠାରୁ ଆହୁରି ବଡ଼ ଆଦର୍ଶ ଦେଖାଇ ପାରିଥାନ୍ତା । ଆତ୍ମଶୂନ୍ୟତା ଓ ଆତ୍ମତ୍ୟାଗ ହିନ୍ଦୁ ନାରୀ ଜୀବନର ପ୍ରଧାନ ଗୁଣ । ତାର ପ୍ରତିଦିନ ଜୀବନଯାପନ ପ୍ରଣାଳୀ ଧର୍ମଦ୍ୱାରା ପ୍ରଭାବିତ । ଶିଶୁଭଳି ସେ ତା ଠାରୁ ନିମ୍ନରେ ଥିବା ବ୍ୟକ୍ତିଙ୍କ ପଦ ଧୋଇ ଦେଇ ମଧ୍ୟ ଆନନ୍ଦ ଏବଂ ସମ୍ମାନବୋଧ କରେ । ଅନ୍ୟକୁ ଖୁଆଇବା ପାଇଁ, ସେ ଉପବାସ ରହେ । ସେ ଯଦିଓ ଗୃହର କର୍ତ୍ତ୍ରୀ, ସେ ବଂଶର ସବୁଠାରୁ ବେଶୀ ଅସୁବିଧା

ଭୋଗ କରେ । ଏହାକୁ ତାହାର ସୁଯୋଗ ବୋଲି ଗ୍ରହଣ କରେ । ଘରେ କୁଟୁମ୍ବର ବୃଦ୍ଧ କୁକୁର ନ ଖାଇବା ଯାଏ ସେ ଖାଏ ନାହିଁ । ଗୃହକର୍ତ୍ତ୍ରୀ ହେବାର ଏହା ଏକ ସୁଯୋଗ ବୋଲି ସେ ଗ୍ରହଣ କରେ । ଏହି ସମସ୍ତ ଅମୂଲ୍ୟ ସମ୍ପଦ ଆମ୍ଭେମାନେ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କ ଠାରୁ ପାଇଅଛୁଁ । ପୁରୁଷମାନେ ଏହାର ଉତ୍ତରାଧିକାରୀ ହୋଇ ପାରି ନାହାନ୍ତି । ଏହି ସବୁ ସମ୍ପତ୍ତି ଆମ୍ଭମାନଙ୍କ ନାରୀମାନଙ୍କ ପାଖରେ ଅଛି । ଆମ୍ଭମାନଙ୍କ ଅବହେଳା ଯୋଗୁଁ ଯଦି ଭବିଷ୍ୟତ୍ ବଂଶଧରମାନେ ଏହା ହରାଇ ବସନ୍ତି, ତେବେ ଦୁଃଖରେ ଆମ୍ଭେମାନେ ହିଁ ହତସନ୍ତ୍ର ହେବା ।”

ହିନ୍ଦୁ ନାରୀ ସମ୍ପର୍କରେ ମଧୁସୂଦନ ଏହି ଚିନ୍ତାଶୀଳ ଟିପ୍ପଣୀ ଦେଇ, ପୁଣି ସେମାନଙ୍କ ଶିକ୍ଷା ସମ୍ବନ୍ଧରେ କିପରି ଜାତିକୁ ଚେତନ କରାଇ ଦେଇଥିଲେ, ତାହା ନିମ୍ନ ଉଦ୍ଧୃତାଂଶରୁ ପ୍ରମାଣିତ ହେବ—

“ଆମ୍ଭମାନଙ୍କ ନାରୀମାନେ ନିଶ୍ଚୟ ଶିକ୍ଷିତା ହେବେ । କିନ୍ତୁ ସେମାନଙ୍କ ଶିକ୍ଷା ଏପରି ଦିଆଯିବ, ଯେପରି ଏହି ନାରୀମାନେ ସଭ୍ୟା ନାରୀ (Ladies)ରେ କେବଳ ପରିଣତ ନ ହୁଅନ୍ତି । ପାଶ୍ଚାତ୍ୟ-ସଂସ୍କୃତିରେ ଲାଳିତାପାଳିତା ଭଦ୍ରମହିଳାମାନଙ୍କୁ ଆମ୍ଭେମାନେ ସମ୍ମାନ ଦେଖାଉଁ । ସେମାନଙ୍କର ଏପରି ଅନେକ ଗୁଣ ଅଛି, ଯାହାଲାଗି ଆମ୍ଭେମାନେ ସମ୍ମାନ ଦେଖାଇବାକୁ ବାଧ୍ୟ; କିନ୍ତୁ ଏ ସମ୍ପର୍କରେ ଆମ୍ଭେମାନେ ପିଲାଙ୍କୁ ଅନୁକରଣ କରିବା ଉଚିତ । ପିଲା ତା ମାକୁ କହେ, “ମୁଁ ମିଠା ଖାଇବାକୁ ସୁଖ ପାଏ; କିନ୍ତୁ ନିଜେ ମିଠା ହେବାକୁ ଇଚ୍ଛା କରେ ନାହିଁ ।”

“ଆମ୍ଭମାନଙ୍କ ଝିଅମାନଙ୍କ ଶିକ୍ଷା ବୈଦେଶିକମାନଙ୍କ ହାତରେ ସମ୍ପୂର୍ଣ୍ଣ ଛାଡ଼ିଦେବା ଅନୁଚିତ । ପ୍ରାୟ ଏକ ଶତାବ୍ଦୀ ହେଲା ଆମ୍ଭମାନଙ୍କ ବାଳକମାନଙ୍କ ଶିକ୍ଷା ବୈଦେଶିକମାନଙ୍କ ଦ୍ବାରା ପରିଚାଳିତ । ଏହାର ଫଳ ଆମ ଶିକ୍ଷକମାନେ ମଧ୍ୟ ନିନ୍ଦା କରୁଅଛନ୍ତି ।”

ଏଥିରୁ ସହଜରେ ପ୍ରମାଣିତ ହେବ ଯେ, ମଧୁସୂଦନଙ୍କ ପ୍ରାଣ କିପରି ପ୍ରାଚ୍ୟ ଆଦର୍ଶରେ ଗଭୀରଭାବରେ ଅନୁପ୍ରାଣିତ ହୋଇ ପାରିଥିଲା ।

ଜାତି ଗଠନ ବିଷୟ ଲେଖୁଁ ଲେଖୁଁ ମଧୁସୂଦନ ବ୍ୟକ୍ତି ସହିତ ଜାତିର ବା ବ୍ୟଷ୍ଟି ସହିତ ସମଷ୍ଟି ବା ଗୋଷ୍ଠୀର କି ସମ୍ପର୍କ ରହିବ, ଏ ସମ୍ପର୍କରେ ଏକ ସୁଚିନ୍ତିତ ମନ୍ତବ୍ୟ ଦେଇ ଯାଇଅଛନ୍ତି । ମଧୁସୂଦନ ଲେଖିଅଛନ୍ତି, “ପ୍ରତ୍ୟେକ ଜାତିର ଏକ ଅତୀତ ଇତିହାସ ଏବଂ ଭବିଷ୍ୟତ୍ ଭାଗ୍ୟ ଅଛି । ଜାତି ମଧ୍ୟରେ ଗୋଟିଏ ଶିଶୁ ଜନ୍ମ ହେଲେ ଏହା ଅତୀତ ଏବଂ ଭବିଷ୍ୟତ୍ ମଧ୍ୟରେ ଜାତିର

ଏକ ସମ୍ପର୍କ। ଏପରି ଲକ୍ଷ ଲକ୍ଷ ସମ୍ପର୍କ ଅଛି। ସେହିମାନେହିଁ ଜାତିର ବର୍ତ୍ତମାନ ବଂଶଧର। ବର୍ତ୍ତମାନ ବଂଶଧରମାନେ ଜାତିର ଅତୀତ ଇତିହାସ ସହିତ ଭବିଷ୍ୟତରେ ପୃଥିବୀର ଅନ୍ୟ ଜାତି ସହିତ ସମ୍ପର୍କ ସ୍ଥାପନ କରନ୍ତି। ବର୍ତ୍ତମାନ ଜାତିର ବଂଶଧରମାନେ ଜାତୀୟ ସଂଗ୍ରାମ ଚଳାଇବାକୁ ଶ୍ରେଣୀବଦ୍ଧ ହୁଅନ୍ତି। ଜାତି ଆଗରେ ଯେଉଁ ସବୁ କାର୍ଯ୍ୟ କରିବାକୁ ଅଛି, ପ୍ରତ୍ୟେକ କିଛି କିଛି କାର୍ଯ୍ୟ କରିବାକୁ ଅଭିପ୍ରେତ। ଭବିଷ୍ୟତ ଲକ୍ଷ୍ୟର ଉଚ୍ଚ୍ବଳ୍ୟ ସ୍ପର୍ଶ କରିବାକୁ ହେବ। ସାଧାରଣ ଅଗ୍ରଗତି ଅବଶ୍ୟମ୍ଭାବୀ। କିନ୍ତୁ ଏହି ସାଧାରଣ ଅଗ୍ରଗତି ମଧ୍ୟରେ ବ୍ୟକ୍ତିକୁ ତାହାର ନିଜ କର୍ତ୍ତବ୍ୟ ଠିକ କରିବାକୁ ହେବ। ଜାତୀୟ ସଂଗ୍ରାମରେ ପ୍ରତ୍ୟେକଙ୍କୁ, ତାହାଙ୍କ ସାମାଜିକ ଶିକ୍ଷା ଏବଂ ବ୍ୟବସାୟ ଦୃଷ୍ଟିରୁ ନିଜର ସ୍ଥାନ ବାଛି ନେବାକୁ ହେବ। କାହାକୁ ଅନ୍ତର କରି ଦିଆ ଯାଇ ନ ପାରେ। ଏହା ଜାତିର ସଂହତିରେ ବ୍ୟାଘାତ ଘଟାଏ।"

ପୁଣି ଶିକ୍ଷିତ ସଂପ୍ରଦାୟ କିପରି ଦେଶର ଜନସାଧାରଣଙ୍କୁ ଅବହେଳା ଦୃଷ୍ଟିରେ ଦେଖୁଅଛନ୍ତି, ସେ ସଂପର୍କରେ ମଧୁସୂଦନଙ୍କ ଚିନ୍ତାଧାରା ମଧ୍ୟ ପ୍ରଣିଧାନ-ଯୋଗ୍ୟ :—"ଓଡ଼ିଆ ଜାତିର ଏକ ବଳିଷ୍ଠ ବିଭାଗରୂପେ ଜନସାଧାରଣଙ୍କୁ ଶିକ୍ଷିତ ସଂପ୍ରଦାୟ ଯେ ଦେଖୁ ନାହାନ୍ତି, ଏହା କହିବା ନିଷ୍ପ୍ରୟୋଜନ। ଜାଣତରେ ହେଉ କିମ୍ବା ଅଜାଣତରେ ହେଉ ଗର୍ବ ଏଥିପାଇଁ ଦାୟୀ। ପ୍ରଥମେ ଜାତିପ୍ରଥା ଦ୍ୱାରା ସମାଜକୁ ଭିନ୍ନ ଭିନ୍ନ ସଂପ୍ରଦାୟଙ୍କ ମଧ୍ୟରେ ବାଣ୍ଟି ଦିଆ ଯାଇଥିଲା। କ୍ରମେ ଏହି ଆଦର୍ଶ ଲୋକେ ଭୁଲିଗଲେ। ମଣିଷର ଗର୍ବ ବା ଅହଙ୍କାର; ପଡ଼ୋଶୀଙ୍କ ଉପରେ କ୍ଷମତା ବିସ୍ତାର ଇଚ୍ଛା, କ୍ରମେ ଜାତିପ୍ରଥାରୁ ଭେଦମୂଳକ ଶକ୍ତିକୁ ଆଗକୁ ଠେଲି ଆଣିଲା ଭାରତରେ ଏହି ଜାତିପ୍ରଥାର ଦୁର୍ଗୁଣ ଅନ୍ୟମାନେ ଜାଣିବା ପୂର୍ବରୁ ଆମ୍ଭମାନଙ୍କ ବଂଶଧରମାନେ ତାହା ଜାଣି ପାରିଥିଲେ। ଏହି ସମସ୍ୟାର ଏକ ଭଲ ସମାଧାନ ଓଡ଼ିଆ ଜାତି ଅତୀତରେ କରିଥିଲା। ଜଗନ୍ନାଥ ମନ୍ଦିର, ଏହାର ସମାଧାନ। ଏହା ଜାତିପ୍ରଥା ଧ୍ୱଂସ ଉପରେ ଦଣ୍ଡାୟମାନ। ଜାତିର ଗର୍ବକୁ ଚୂର୍ଣ୍ଣ କରିବାକୁ ମନ୍ଦିରର ପ୍ରତ୍ୟେକ ପ୍ରସ୍ତରଖଣ୍ଡ ଅଭିପ୍ରେତ। ଏହି ମନ୍ଦିରରେ ସେବାପୂଜା କରୁଥିବା ଲୋକେ ଶୂଦ୍ର, ଯଦିଚ ବର୍ତ୍ତମାନ ସେମାନେ ନିମ୍ନ ଶ୍ରେଣୀର ବ୍ରାହ୍ମଣ ବୋଲି ଦାବୀ କରୁଅଛନ୍ତି। ଜଗତର ନାଥ ସେଠାରେ ଅଛନ୍ତି। ତାହାଙ୍କ ସମ୍ମୁଖରେ ମଣିଷର ସମସ୍ତ ଧନ, ସମ୍ମାନ, ସାମାଜିକ ସ୍ଥାନ, ଶିକ୍ଷା ଯାହା କି ଜଗତ ଆଗରେ ବଡ଼ ଦେଖାଯାଏ; ଲୋପ ପାଏ। ଏହା ଲକ୍ଷିତ ଅଛି ଯେ, ଜଣେ ଇଉରୋପୀୟ ପ୍ରତିଭଙ୍କ ହାତରୁ ଜଣେ ବ୍ରାହ୍ମଣ ଏଠାରେ ଖାଇଥିଲେ। ଇଂଲଣ୍ଡରେ ପ୍ରତ୍ୟେକ ପିଲା ସ୍କୁଲରେ ଯେଉଁ ରଥ ବିଷୟ ପଢ଼ିଥିବେ ବା ଶୁଣିଥିବେ; ତାହା ସାମାଜିକ ସମ୍ମାନକୁ ଧୂଳିରେ ପରିଣତ କରେ। ପୁରୀର ରାଜା ରଥ ଝାଡ଼ୁ କରନ୍ତି। ଏହା ମେହେନ୍ତରର କାର୍ଯ୍ୟ; ମାତ୍ର ଏହି କାର୍ଯ୍ୟ ତାହାଙ୍କୁହିଁ ଦିଆ ଯାଇଅଛି।"

ମଧୁସୂଦନ ଅନ୍ୟ ଭାବରେ କାହାକୁ ଆମ୍ଭେମାନେ ଦେଶ-ପ୍ରେମିକ କହି ପାରିବା, ସେ ସମ୍ପର୍କରେ ଏକ ଚମତ୍କାର ବିଶ୍ଳେଷଣ ନିମ୍ନରେ ଦେଇଅଛନ୍ତି । "ଦେଶପ୍ରେମ ବିଷୟରେ ଲୋକେ ବହୁତ କଥା କହନ୍ତି । ଅନେକ ନିଜକୁ ଦେଶପ୍ରେମିକ ରୂପେ ମଧ୍ୟ ମନେ କରନ୍ତି । ହୁଏ ତ ବିନୟ ବୃଦ୍ଧିରୁ ପଦାରେ ଏହା ପ୍ରକାଶ କରନ୍ତି ନାହିଁ । "ମୁଁ ଦେଶ-ପ୍ରେମୀ" ଏହି ବାକ୍ୟଟିକୁ ଆମ୍ଭମାନଙ୍କ ଯୁବ-ପାଠକମାନେ ବୁଝିବାକୁ ଚେଷ୍ଟା କରନ୍ତୁ । ସେମାନେ ନିଜକୁ ନିଜେ ଏହି ପ୍ରଶ୍ନ ପଚାରନ୍ତୁ । ଯେଉଁମାନଙ୍କୁ ଦେଶ-ପ୍ରେମିକରୂପେ ଗଣୁ ନାହିଁ, ତାହାଙ୍କଠାରୁ ମୋର ପାର୍ଥକ୍ୟ କ'ଣ ? ଏହା କଣ କେବଳ ଏକ ମାନସିକ ଅବସ୍ଥା ନା ବାହାର କାର୍ଯ୍ୟ ସହିତ ଏହାର କିଛି ସଂପର୍କ ଅଛି ?

"ଦେଶ-ପ୍ରେମ ଏକ ସ୍ଥାୟୀ ସଂକଳ୍ପ ନା ଏହା କ୍ଷଣିକ ଅନୁଭୂତି ? ଯଦି ବର୍ଷକୁ ଏକ ଲକ୍ଷ ଟଙ୍କା ରୋଜଗାର ଥିବା ଜଣେ ମହାରାଜା ଗୋଟିଏ କଲେଜ ସ୍ଥାପନ ପାଇଁ ଏକ ଲକ୍ଷ ଟଙ୍କା ଦାନ କରନ୍ତି, ଯାହା କି ପିଲାଙ୍କ ଦରମାରେ ଚାଲିଯାଏ, ସେ ମହାରାଜା ନିଜକୁ ସେହି ଦାନ ସକାଶେ 'ଦେଶପ୍ରେମିକ' କହିବାକୁ ହକଦାର କି ନାହିଁ ? ଏକ ଦେଶପ୍ରେମାତ୍ମକ କାର୍ଯ୍ୟ ଓ ଦେଶପ୍ରେମିକ ମଧ୍ୟରେ ପାର୍ଥକ୍ୟ ନିର୍ଣ୍ଣୟ କରିବା ଉଚିତ ।

"ଆମ୍ଭେମାନେ ଅନେକ ସମୟରେ ନିଜ ଦେଶକୁ ସୁଖ ପାଇବା କଥା କହୁଁ, ଏହି ବାକ୍ୟର ପ୍ରକୃତ ତାତ୍ପର୍ଯ୍ୟ ବୁଝିବା ଉଚିତ । ଓଡ଼ିଶାର ପ୍ରାକୃତିକ ଦୃଶ୍ୟ ପାଇଁ କିମ୍ବା ଏଠାରେ ମୁଁ ମୋର ଜୀବନ ଯାପନ କରେ ବୋଲି; କିମ୍ବା ଏହାର ଜଳବାୟୁ ମୋତେ ଆନନ୍ଦ ଦିଏ ବୋଲି ଓଡ଼ିଶାକୁ ମୁଁ ସୁଖ ପାଇ ପାରେ । ଏହି ପ୍ରତ୍ୟେକ ଅବସ୍ଥାରେ ମୁଁ ନିଜକୁ ଦେଶପ୍ରେମିକ କହି ପାରିବି କି ? "ଜାତୀୟ ଚେତନ" ସଂପର୍କରେ ମଧୁସୂଦନ ଆଉ ଏକ ଉପାଦେୟ ଟିପ୍ପଣୀ "ଓଡ଼ିଆ" କାଗଜରେ ଲେଖିଥିଲେ; ତାହାର ଅନୁବାଦ ତଳେ ଦିଆ ଯାଉଅଛି ।

"ଆମ୍ଭେମାନେ ଜାତୀୟ ଚେତନ ବିଷୟ କହୁ । ଏହି ବାକ୍ୟର ଅର୍ଥ ବୁଝିବା ଉଚିତ । ଏହା ସାଧାରଣ ଭାଷାରେ ଏକ ମାନସିକ ଅବସ୍ଥା ବୁଝାଏ । ମନୁଷ୍ୟ ଅନେକ ସମୟରେ ବିଶ୍ୱାସ କରି ପାରେ ଯେ, ସେ ଏକ ଅନୁଭୂତ ଅନୁଭବ କରୁଅଛି । ଅନ୍ୟ ଅପେକ୍ଷା ନିଜଦ୍ୱାରା ମଣିଷ ଠକି ପାରେ । ତେଣୁ ନିଜକୁ ପରୀକ୍ଷା କରିବା ଦରକାର ।

"କ୍ଷୁଦ୍ର ସର୍ବନାମ—"ମୁଁ" ଆମ୍ଭମାନଙ୍କ ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ଆମ୍ଭମାନଙ୍କ 'ଚେତନକୁ' ଶାସନ କରେ । ମୁଁ ମୋର ଅବସ୍ଥା, ମୋର ସମ୍ମାନ

ଉନ୍ନତି କରିବି । ସବୁ ବିଷୟରେ 'ମୁଁ' ଉନ୍ନତି କରିବି, ଏହାହିଁ ଆତ୍ମଚେତନ । ଏହା 'ଜାତୀୟ ଚେତନ'ର ଠିକ ବିପରୀତ ଅବସ୍ଥା । ଆତ୍ମଚେତନର ଶୂନ୍ୟତାହିଁ ଜାତୀୟ ଚେତନ । ଅନ୍ୟ କଥାରେ ଜାତି ଲାଗି ନିଜକୁ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହେବା ହେଉଛି 'ଜାତୀୟ ଚେତନ ।'

ଜାତୀୟ ଚେତନର ଏକମାତ୍ର ପରୀକ୍ଷା ହେଉଛି ଜାତିର ଉନ୍ନତି ପାଇଁ ତ୍ୟାଗ ସ୍ୱୀକାର । ପୃଥିବୀବ୍ୟାପୀ ଯୁଦ୍ଧର ଶିକ୍ଷା ଆମ୍ଭମାନଙ୍କର ଭୁଲିଯିବା ଅନୁଚିତ ।"

ଜାତୀୟ ଚେତନ କିପରି ଗତ ଯୁଦ୍ଧରେ ପ୍ରକଟିତ ହୋଇଥିଲା, ତାହା ମଧୁସୂଦନ ବର୍ଣ୍ଣନା କରିଥିଲେ । "ଜାତି ପାଇଁ ଜୀବନ ଦାନ, ମୃତ୍ୟୁବକ୍ଷିକାରେ ନିଜକୁ ପକାଇବାଠାରୁ ସଭ୍ୟ ସମାଜରେ ଆଉରି ବହୁ ତ୍ୟାଗ ଦେଖା ଯାଇଅଛି । ତାହାର କାରଣ ସେହି ସଭ୍ୟ ସମାଜରେ ଜାତୀୟ ଚେତନ ପୂର୍ଣ୍ଣ ବିକଶିତ । ଏପରି କି ବ୍ୟକ୍ତିଗତ ସ୍ୱାଧୀନତାକୁ ବି ମଣିଷ ତ୍ୟାଗ କରି ଦେଇଥିଲା । ମଧୁସୂଦନ ଶେଷରେ ଲେଖିଅଛନ୍ତି ଏହି ପ୍ରକାର ଜାତୀୟ କାର୍ଯ୍ୟରୁହିଁ ଜାତୀୟ ଚେତନର ପ୍ରମାଣ ମିଳେ । ଏହା ଅତି ଶକ୍ତିଶାଳୀ ଭାବ । ଜାତିର ଇତିହାସରେ ଏହାର କାର୍ଯ୍ୟ ସୁସ୍ପଷ୍ଟ । ଜାତିର ବିଭିନ୍ନ ଜଟିଳ ଓ ସଙ୍କଟମୟ ପରିସ୍ଥିତିରେ ଯେଉଁ ଜାତି ଯେତେ ପରିମାଣରେ ଏହି ଜାତୀୟ ଚେତନ ଦେଖାଇ ପାରିଛି, ସେହି ଜାତି ସେତିକି ବଞ୍ଚିବାର ସୌଭାଗ୍ୟ ଅର୍ଜନ କରି ପାରିଅଛି । ମଧୁସୂଦନଙ୍କ ଟୀକା, ଟିପ୍ପଣୀ ଏହିପରି ନାନା ଭବରେ ଚିନ୍ତାଶୀଳ ଭାବଧାରାରେ ପରିପୂର୍ଣ୍ଣ ।" ଏଠାରେ ସମସ୍ତ ଉଦ୍ଧାର କରିବା ଅସମ୍ଭବ । ମଧୁସୂଦନ କେବଳ ସ୍ୱପ୍ନ ଦେଖୁ ନ ଥିଲେ; ସେ ଜାତିର ସମସ୍ତ ବାସ୍ତବତା ମଧ୍ୟରେ ଆଦର୍ଶ ବହୁିଡ଼ ଜାଳିବା ସଙ୍ଗେ ସଙ୍ଗେ, ନିଜେ ଜାତିର ଦୋଷ ଦେଖାଇ ଜାତିକୁ ପ୍ରକୃତପଥରେ ଅଗ୍ରସର ହେବାକୁ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ ।

ସାମ୍ବାଦିକ ମଧୁସୂଦନଙ୍କ ଲକ୍ଷ୍ୟ କଣ ଥିଲା ? ତାଙ୍କର ଲକ୍ଷ୍ୟ ନ ଥିଲା ଯେ ସମ୍ବାଦପତ୍ର ପରିଚାଳନା କରି ଅର୍ଥ ଉପାର୍ଜନ କରିବେ । ଦେଶ ଓ ଜାତିର ଅଭାବ, ଅସୁବିଧା ଦୂରୀକରଣ ଓ ଜାତିର ଆଦର୍ଶକୁ ଉଚ୍ଚରେ ରଖିବା ପାଇଁ ମଧୁସୂଦନ କଲମ ଧରିଥିଲେ । ଦୁଃଖର କଥା ସେ ବହୁ ସମୟ ପାଇଁ ଏହି କାର୍ଯ୍ୟ କରି ପାରି ନ ଥିଲେ । ହୁଏ ତ ମଧୁସୂଦନ ଜନନେତା ନ ହୋଇ ସାହିତ୍ୟିକ, ସାଂବାଦିକ ହୋଇଥିଲେ, ଜାତି ଆଉରି ବେଶୀ ସାହିତ୍ୟ, ଭାବ-ସମ୍ପଦ ତାଙ୍କ କଲମରୁ ପାଇ ପାରିଥାନ୍ତା !

ମଧୁସୂଦନ ନିଜେ ହାତରୁ ଟଙ୍କା ଖରଚ କରି "ଓଡ଼ିଆ" ପତ୍ରିକା ପ୍ରକାଶ କରିଥିଲେ ଏବଂ ଲାଭବାନ୍ ହେବା ଦୂରେ ଥାଉ, ବରଂ କ୍ଷତିଗ୍ରସ୍ତ

ହୋଇଥିଲେ । କିନ୍ତୁ ମଧୁସୂଦନଙ୍କ ଲେଖାବଳୀ ଜାତିର ଜାତୀୟ କୋଠ-ସମ୍ପତ୍ତିରେ ଚିରଦିନ ଅମର ହୋଇ ରହିବ ।

ମଧୁସୂଦନ ବକ୍ତା, ନେତା, ଲେଖକ ଓ ସାଂବାଦିକ ସବୁଠି ଜଣେ ଦାର୍ଶନିକ । ସର୍ବତ୍ର ତାଙ୍କର ଏହି ଦାର୍ଶନିକ ଚିନ୍ତାଧାରାର ଅଭିବ୍ୟକ୍ତିହିଁ ଆମ୍ଭେମାନେ ଦେଖୁଁ । ତାହାଙ୍କ ଭାବଧାରା ଯେପରି ଉଚ୍ଚ, ସେହିପରି ଗଭୀର । ଆଜି ଦେଶ, ଜାତିର ନାନା ପରିବର୍ତ୍ତନ ମଧ୍ୟରେ ମଧୁସୂଦନଙ୍କ ଚିନ୍ତାଧାରାର ଆଦର୍ଶ ପରିବର୍ତ୍ତିତ ହୋଇ ନାହିଁ ।

ମଧୁସୂଦନ ପୁଣି କିପରି ଆଧ୍ୟାତ୍ମିକ ଭାବଧାରାର ଲେଖକ ଥିଲେ, ତାହା ଅନ୍ୟ ଏକ ଟିପ୍ପଣୀରୁ ପ୍ରମାଣିତ ହୁଏ—"ପ୍ରତ୍ୟେକ ମନୁଷ୍ୟ ଏକ ଆତ୍ମାର ପ୍ରକାଶ । ଏହା ଏକ ସ୍ୱର୍ଗୀୟ ଲକ୍ଷ୍ୟ ଘେନି ଜଗତକୁ ଆସେ । ଲର୍ଡ ରେନାଲଡସ୍ ଏହାକୁ କହନ୍ତି "ସ୍ୱର୍ଗୀୟ ଜ୍ୟୋତିକଣା" । ଏହା ଏକ ସୁନ୍ଦର ଅଭିବ୍ୟକ୍ତି । ଯେତେବେଳେ ଆତ୍ମା ପୃଥିବୀପୃଷ୍ଠର କୌଣସି ଅଂଶରେ ଜନ୍ମ ଗ୍ରହଣ କରେ, ସେତେବେଳେ ଏହା ଜାତିପାଇଁ କିଛି ଋଣ ଘେନି ଜନ୍ମଗ୍ରହଣ କରେ, ଅର୍ଥାତ୍ ମନୁଷ୍ୟ ଜାତି ପାଇଁ କିଛି କାର୍ଯ୍ୟ ନ କଲେ, ତଦ୍ୱାରା ଏହି ଋଣ ପରିଶୋଧ ହୁଏ ନାହିଁ ।" ମଧୁସୂଦନ ତାହାଙ୍କ ସଂବାଦପତ୍ର ଲେଖାବଳୀ ସାହାଯ୍ୟରେ ସମାଜକୁ ଉନ୍ନତ ସ୍ତରକୁ ନେବାକୁ ଚେଷ୍ଟା କରିଥିଲେ । ନୈତିକ, ଆଧ୍ୟାତ୍ମିକ ଏବଂ ମାନସିକ ସକଳ କ୍ଷେତ୍ରରେ ମଧୁସୂଦନଙ୍କ ସୁଆଦର୍ଶ ଓ ନୀତି ଅତି ସ୍ପଷ୍ଟ । ଜାତି ଓ ଜୀବନରେ ନାନା ଅନ୍ଧକାର ରାତିରେ ଏହା ଦୂର ଦିଗ୍‌ବଳୟର ଧ୍ରୁବତାରା ଭଳି ବ୍ୟକ୍ତି ସହିତ ସମଷ୍ଟିକୁ ପଥ ପ୍ରଦର୍ଶନ କରିବ । ମଧୁସୂଦନ କ୍ଷଣିକ ମଧ୍ୟରେ ମଧ୍ୟ ଏକ ଅମୃତ ସତ୍ତାର ରୂପ ଦେଇ ସାହିତ୍ୟକୁ ଅମର କରିବା ସଙ୍ଗେ ସଙ୍ଗେ, ନିଜକୁ ମଧ୍ୟ ଆମର ପ୍ରିୟ ଓ ପ୍ରାଣର ନିକଟତମ ଅମୃତ ବୀରପୁତ୍ରରୂପେ ରଖି ଯାଇଅଛନ୍ତି ।

# ପଞ୍ଚଦଶ ଅଧ୍ୟାୟ

## ମନ୍ତ୍ରିତ୍ୱ ଓ ପରିଣତି

ମଧୁସୂଦନଙ୍କ ଦୀର୍ଘ ବ୍ୟବସ୍ଥାପକ ଜୀବନର ପରିଣତି ମନ୍ତ୍ରିତ୍ୱ । ଏହା ତାଙ୍କ ରାଷ୍ଟ୍ରନୀତିକ ଜୀବନର ଶୀର୍ଷ ସ୍ଥାନ । ଏହା ପରେ ତାଙ୍କ ରାଷ୍ଟ୍ରନୀତିକ ଜୀବନର ଅଧଃପତନ ଆରମ୍ଭ ହୋଇଥିଲା । କାରଣ ମନ୍ତ୍ରିତ୍ୱ ବେଳକୁ ମଧୁସୂଦନ ବୃଦ୍ଧ ହୋଇ ଯାଇଥିଲେ । ମନ୍ତ୍ରିତ୍ୱ ଗ୍ରହଣ କଲେ, ମଧୁସୂଦନ ନାନା ପାରିପାର୍ଶ୍ୱିକ ପ୍ରତିବନ୍ଧକ ମଧ୍ୟରେ । ମନ୍ତ୍ରୀ ଗାଦିରେ ମଧ୍ୟ ସେ ବହୁ ସମୟ ରହି ପାରି ନ ଥିଲେ । ତାହାପରେ ମନ୍ତ୍ରିତ୍ୱ ପରିତ୍ୟାଗ କରି ଭାରତରେ ଏକ ଅଭିନବ ଆଦର୍ଶ ରଖି ମଧୁସୂଦନ ବାହାରକୁ ଆସିଲେ ମଧ୍ୟ, ଅଉ କାର୍ଯ୍ୟ କରିବାକୁ ତାଙ୍କର ଶକ୍ତି କମ୍ବା ସମୟ ନ ଥିଲା । ଦେଶର ରାଷ୍ଟ୍ରନୀତିକ ପରିସ୍ଥିତି ମଧ୍ୟ ବହୁ ପରିବର୍ତ୍ତିତ ହୋଇ ଯାଇଥିଲା ।

ମଧୁସୂଦନଙ୍କ ମନ୍ତ୍ରିତ୍ୱ ଗ୍ରହଣ ଭାରତ ଇତିହାସର ଏକ ଜଟିଳ ସମୟ । ୧୯୨୧ ମସିହା ଭାରତ ଇତିହାସରେ ଏକ ସ୍ମରଣୀୟ ବର୍ଷ । ଅସହଯୋଗର ପ୍ରବଳ ସ୍ରୋତରେ ଦେଶ ପ୍ଲାବିତ, କେତେ ଛାତ୍ର, ଯୁବକ, ଓକିଲ ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଅସହଯୋଗ ନୀତିକୁ ବରଣ କରି ସାରିଥିଲେ । ସ୍ୱାଧୀନତା ଥିଲା ଭାରତର ପ୍ରଥମ ଓ ପ୍ରଧାନ ସମସ୍ୟା । ସେତେବେଳେ ମଧୁସୂଦନଙ୍କ ପ୍ରିୟ ଗୋପବନ୍ଧୁ ମଧ୍ୟ ସହଯୋଗ ପନ୍ଥା ପରିତ୍ୟାଗ କରି ସରକାରଙ୍କ ସହିତ ଅସହଯୋଗ ବରଣ କରିଥିଲେ । ଭାରତରେ ଏହି ପ୍ରବଳ ଜାତୀୟ ଆକାଂକ୍ଷା ସଂଗ୍ରାମରେ ପରିଣତ ହେଲବେଳେ, ବ୍ରିଟିଶ ସରକାରଙ୍କ ସହିତ ସହଯୋଗ କରି କୌଣସି ମନ୍ତ୍ରୀ ବେଶି ଦିନ ତାହାଙ୍କ ଜାତୀୟ ନୀତି ଓ ଆଦର୍ଶ ବଜାୟ ରଖି ଚଳି ପାରିବେ, ଏହା ଅସମ୍ଭବ । ଯେଉଁମାନେ ଆଦର୍ଶଶୂନ୍ୟ, ସେମାନଙ୍କ କଥା ପୃଥକ୍ । କିନ୍ତୁ ମଧୁସୂଦନ ଜୀବନସାରା ଗୋଟିଏ ଆଦର୍ଶ ପାଇଁ ଲଢ଼ି ଆସିଥିଲେ । ମଧୁସୂଦନ ଲୋକମଙ୍ଗଳ ସକାଶେ ଯାହା କରିବେ ବୋଲି ବିକାଶ ପନ୍ଥାରେ ପଥିକ ହୋଇଥିଲେ, ତାହା ସମ୍ଭବ ହୋଇ ପାରିଲା ନାହିଁ । କାରଣ ସେତେବେଳେ ଦ୍ୱୈତ ଶାସନ । ମନ୍ତ୍ରୀମାନଙ୍କ ଅବସ୍ଥାକୁ କଳନାରେ ମଧୁସୂଦନଙ୍କ ଏକ ଚିତ୍ର ଦେଇଥିଲେ । ମନ୍ତ୍ରୀ ଏକ ଗାଡ଼ିଚାଳକଙ୍କ ପାଖରେ ବସିବା ବ୍ୟକ୍ତି । ମାତ୍ର ଯେତେବେଳେ ଗାଡ଼ି ଖରାପ ହୋଇଯାଏ, ସେତେବେଳେ ଲୋକେ ତାକୁହିଁ ଦାୟୀ କରନ୍ତି । ସେତେବେଳେ ଏପରି ସୀମାବଦ୍ଧ ପରିସ୍ଥିତିରେ ମଧୁସୂଦନ ମନ୍ତ୍ରିତ୍ୱ ବା କାହିଁକି ଗ୍ରହଣ କଲେ, ସେ ବିଷୟରେ ମଧ୍ୟ ଅନେକଙ୍କ ମନରେ ପ୍ରଶ୍ନ ଉଠିବା ସ୍ୱାଭାବିକ ।

ମଧୁସୂଦନ ୧୯୨୧ ଯାଏ ଉତ୍କଳର ମୁକୁଟହୀନ ସମ୍ରାଟ ବା ଜନନେତା ଥିଲେ । ଜନସାଧାରଣଙ୍କର ତାଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଏବଂ ସମ୍ମାନ ଥିଲା । ଏହି ସମୟରେ ଜଣେ ଭାରତୀୟ ଲର୍ଡ ସିଂହ ବିହାର ଓଡ଼ିଶାର ଗଭର୍ଣ୍ଣର ହେଲେ । ସେ ମଧୁସୂଦନଙ୍କୁ ହଠାତ୍ କଲିକତା ଡକାଇ ପଠାଇଲେ । ମଧୁସୂଦନ ତାରସମ୍ବାଦ ପାଇ କଲିକତାରେ ତାଙ୍କୁ ଦେଖା କଲେ । ମଧୁସୂଦନଙ୍କୁ ବିହାର-ଓଡ଼ିଶାର ଜଣେ ମନ୍ତ୍ରୀ ରୂପେ ବରଣ କରିବେ ବୋଲି ସେ ମଧୁସୂଦନଙ୍କ ସମ୍ମୁଖରେ କଲିକତାରେ ପ୍ରକାଶ କଲେ । ମଧୁସୂଦନ ହଠାତ୍ "ହଁ" ଭରିଦେବା ଲୋକ ନୁହନ୍ତି । ସେ ଏ ବିଷୟ ଭାବି ପରେ ତାଙ୍କ ସୁଚିନ୍ତିତ ମତ ଜଣାଇବେ ବୋଲି ସମୟ ଲୋଡ଼ିଲେ । ସେ ଏ ବିଷୟ ତାଙ୍କ ପ୍ରିୟ ଶିଷ୍ୟ ସାର ଆଶୁତୋଷଙ୍କୁ ପଚାରିଲେ । ସାର୍ ଆଶୁତୋଷ ଅନୁକୂଳ ମତ ଦେଲେ । ତଥାପି ମଧୁସୂଦନ ବଡ଼ ସଙ୍କଟରେ ପଡ଼ିଲେ । ତାଙ୍କୁ "ସହଯୋଗ" "ଅସହଯୋଗ" ଦୁଇଟି ପନ୍ଥାରୁ ଗୋଟିଏ ବାଛି ବରଣ କରିବାକୁ ପଡ଼ିଲା । କାରଣ ମଧୁସୂଦନ ଯେପରି ଅବସ୍ଥାରେ ଥିଲେ, ସେ ସ୍ଥିର ହୋଇ ରହି ପାରି ନ ଥାନ୍ତେ ।

ସେ ହୁଏ ତ ମନେ ମନେ ସ୍ଥିର କଲେ ଯେ ମନ୍ତ୍ରିତ୍ୱ ଗ୍ରହଣ କରି କିଛି ଲୋକମଙ୍ଗଳ କାର୍ଯ୍ୟ କରିବେ । ମଧୁସୂଦନ ମନ୍ତ୍ରିତ୍ୱ ଗ୍ରହଣ କଲେ । ତେଣୁ ଓଡ଼ିଶାରେ ତାହାଙ୍କ ବିରୁଦ୍ଧରେ ଅସହଯୋଗୀ ଯୁବକମାନେ ଜନମତ ଗଠନ କଲେ । ସେତେବେଳେ ଉତ୍କଳରେ ଅନ୍ୟାନ୍ୟ ଶିକ୍ଷିତ ଯୁବକମାନଙ୍କ ନେତାମାନେ ପ୍ରାୟ ଅସହଯୋଗୀ । କିନ୍ତୁ ମଧୁସୂଦନ ଅତି ବାସ୍ତବବାଦୀ ଥିଲେ । ଭାରତରେ ବହୁ ଶ୍ରେଷ୍ଠ ଆଇନଜ୍ଞ ଓ ଦେଶସେବୀ ଅସହଯୋଗୀ ହେଲା ବେଳେ ସେ ଅସହଯୋଗୀ ନ ହେଲେ କାହିଁକି ? ଏହି ପ୍ରଶ୍ନଟିର ଉତ୍ତର ବଡ଼ ଚିତ୍ତାକର୍ଷକ ।

୧ । ଅସହଯୋଗ ପନ୍ଥାରେ ତାହାଙ୍କର ବିଶ୍ୱାସ ନ ଥିଲା । ସେ ଭାବୁଥିଲେ କଂଗ୍ରେସର ଆଦର୍ଶ ବଡ଼ ଉଚ୍ଚ । ଭାରତର ଜନସାଧାରଣ ସେହି ସମୟରେ ସେତେଦୂର ଯାଇ ପାରିବେ ବୋଲି ତାଙ୍କର ବିଶ୍ୱାସ ନ ଥିଲା । ତାଙ୍କର ସେ ସମୟର ଖଣ୍ଡିଏ ଚିଠିରୁ ତାଙ୍କ ମନୋଭାବ ପ୍ରକଟିତ ହୁଏ ।

"ଭାରତୀୟ ଜାତୀୟ କଂଗ୍ରେସ ଗୋଟିଏ ଉଡ଼ା ଜାହାଜ । ଭାରତର ପ୍ରଗତିଶୀଳ ସନ୍ତାନମାନେ ସାଧାରଣ ଲୋକଙ୍କ ସମତଳ ଭୂମିଠାରୁ ହଜାର ହଜାର ଫୁଟ ଉପରେ ଉଡ଼ି ଭାରତକୁ ପର୍ଯ୍ୟବେକ୍ଷଣ କରୁଅଛନ୍ତି ।"*

---

"The Indian National Congress is an aeroplane which sails thousands of feet above the plane where

୨ । ବ୍ୟବସ୍ଥାମୂଳକ କର୍ମପନ୍ଥାଦ୍ୱାରା ଦେଶର ଉନ୍ନତି ଓ ସ୍ୱାଧୀନତା ଲାଭ ହୋଇପାରେ, ସେ ବିଶ୍ୱାସ କରୁଥିଲେ । ତେଣୁ ସେ ବିଦ୍ରୋହମୂଳକ କାର୍ଯ୍ୟ ଛାଡ଼ି ସରକାରଙ୍କ ସହିତ ସହଯୋଗ କଲେ ।

ଗାନ୍ଧୀଙ୍କ ଅସହଯୋଗର ପ୍ରଥମ ଉତ୍ତାପ କେତେବେଳେ ସ୍ଥାୟୀ ହେଲା ଏବଂ ଗୟା କଂଗ୍ରେସରେ କିପରି ସ୍ୱରାଜ୍ୟ ଦଳର ଅଭ୍ୟୁଦୟ ହେଲା ଏବଂ କିପରି ଗାନ୍ଧୀଙ୍କ ଅସହଯୋଗ ପନ୍ଥା ଓ ସହଯୋଗ ପନ୍ଥାରେ ପାର୍ଥକ୍ୟ ହେଲା, ତାହା ଇତିହାସରେ ବହୁ ଦୂରକୁ ଯାଇ ନାହିଁ । କଂଗ୍ରେସ ଦଳ ମଧ୍ୟ ଅସହଯୋଗ ଚିରଦିନ ଅବଲମ୍ବନ କରି ରହି ପାରି ନ ଥିଲେ । ସହଯୋଗ କିମ୍ବା ଅସହଯୋଗ ଦ୍ୱାରା ଭାରତରେ ସ୍ୱାଧୀନତା ମିଳିଲା, ତାହା ମଧ୍ୟ ବହୁତର୍କ ବିତର୍କର ସମସ୍ୟା ।

ମଧୁସୂଦନ ହୁଏ ତ ବିକାଶବାଦୀ ଥିଲେ । 'ବିପ୍ଳବ' ଜାତି ଦେଶକୁ ପ୍ରସ୍ତୁତ କରାଇ ନ ପାରିବା ଠାରୁ ହୁଏ ତ ମଧୁସୂଦନ ବିକାଶ ପନ୍ଥାକୁ ପ୍ରଥମରୁ ଶ୍ରେୟ ଓ ଶ୍ରେଷ୍ଠତର ବୋଲି ଗ୍ରହଣ କରି ନେଇଥିଲେ । ବିପ୍ଳବରେ ସହଜରେ କିମ୍ବା ଅସୁବିଧାରେ ହେଉ ପଛକେ ଅଳ୍ପ ସମୟ ମଧ୍ୟରେ ଲକ୍ଷ୍ୟ ହାସଲ ସମ୍ଭବ-ପର । ଇତିହାସରେ ଏହାର ଦୃଷ୍ଟାନ୍ତ ବହୁତ । କିନ୍ତୁ ମଧୁସୂଦନ ହୁଏ ତ ଭାରତୀୟ ଲୋକଙ୍କ ମନସ୍ତତ୍ତ୍ୱ ବେଶୀ ଜାଣିଥିଲେ । ତେଣୁ ସେ ଏପରି ୧୯୨୧ ମସିହା ବିପ୍ଳବକୁ ବରଣ କରି ପାରି ନ ଥିଲେ । କେବଳ ସେତିକି ନୁହେଁ, ଗାନ୍ଧୀଙ୍କ କୌଣସି ବିପଦାତ୍ମକ ଅସହଯୋଗ ଦ୍ୱାରା ସ୍ୱାଧୀନତା ଇଂରେଜ ସରକାରଙ୍କ ହାତରୁ ଭାରତରେ ଆସି ପାରି ନାହିଁ । ଭାରତୀୟ ସ୍ୱାଧୀନତା ଏକ ଦାନ । ଗାନ୍ଧୀଜୀ ଅବଶ୍ୟ ପ୍ରବଳ ଲୋକମତ ଗଠନ କରିବାରେ ଯଶସ୍ୱୀ ହୋଇ ଅଛନ୍ତି । ମାତ୍ର ଏହାଙ୍କ ବିଦ୍ରୋହ ବାରମ୍ବାର ବୈଦେଶିକ ସରକାର ଦମନ କରିବାକୁ ସମର୍ଥ ହୋଇଥିଲେ । ଏହିଠାରେ ହିଁ ଗାନ୍ଧୀଙ୍କ ନେତୃତ୍ୱର ବ୍ୟର୍ଥତା । ମଧୁସୂଦନ ଏହି ବ୍ୟର୍ଥତାର ସୂଚନା ଆଗରୁ ପାଇଥିଲେ । ତେଣୁ ତାଙ୍କଭଳି ନେତାଙ୍କୁ ସେ ବିଷୟରେ ଗାନ୍ଧୀଙ୍କ ଉନ୍ମାଦନା ସ୍ପର୍ଶ କରି ନ ଥିଲା ।

ସେ ଯାହାହେଉ ମନ୍ତ୍ରୀ ହୋଇ ମଧୁସୂଦନ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରେ ରହିଲେ ମଧ୍ୟ ସେ ଜଣେ ସାଧାରଣ 'ଯୋ ହୁକୁମ' ମନ୍ତ୍ରୀ ହୋଇ ପାରିଲେ ନାହିଁ । ମଧୁସୂଦନଙ୍କ ନୀତି ଓ ଆଦର୍ଶ ସ୍ପଷ୍ଟ ଥିଲା । ଲୋକମଙ୍ଗଳ ତାଙ୍କର ଏକ ମାତ୍ର ଉଦ୍ଦେଶ୍ୟ ଥିଲା । ତାଙ୍କର ବିଶ୍ୱାସ ହୋଇଥିଲା ଯେ କଂଗ୍ରେସ ଯେ ଲୋକମାନଙ୍କ ଉପରେ ପ୍ରଭାବ ପକାଉଛି, ତାହାଁର କାରଣ

---

ordinary men live and breathe. From that height the most advanced suns of India survey India."

ବହୁ କଂଗ୍ରେସ ନେତାଙ୍କ ତ୍ୟାଗ । ତେଣୁ ଯଦି ସରକାରୀ ମନ୍ତ୍ରୀ କମ୍ବା ବ୍ୟବସ୍ଥାପକମାନେ କୌଣସି ପ୍ରଭାବ ଲୋକମାନଙ୍କ ଉପରେ ପକାଇବାକୁ ଚାହାନ୍ତି, ତେବେ ସେମାନେ ତ୍ୟାଗ କରିବା ଉଚିତ । ସରକାରଙ୍କ ମନ୍ତ୍ରୀମାନେ ସେହିପରି ଉଚ୍ଚ-ଆଦର୍ଶରେ ଅନୁପ୍ରାଣିତ ହୋଇ ତ୍ୟାଗମୟ ଜୀବନଯାପନ କରିବା ମଧୁସୂଦନଙ୍କ ସୁଚିନ୍ତିତ ମତ ଥିଲା । ସେତେବେଳେ ମନ୍ତ୍ରୀମାନେ ମାସିକ ପାଞ୍ଚ ହଜାର ଟଙ୍କା ବେତନ ପାଉଥିଲେ । କିନ୍ତୁ ମଧୁସୂଦନ କମିଷନଙ୍କେ ମତ ପାଇଁ ମନ୍ତ୍ରିତ୍ୱ ପରିତ୍ୟାଗ କରିଥିଲେ । ଏହା ଭାରତ ଇତିହାସରେ ପ୍ରଥମ ଦୃଷ୍ଟାନ୍ତ ।

କିନ୍ତୁ ମନ୍ତ୍ରୀ ଥିଲାବେଳେ ମଧୁସୂଦନଙ୍କ ବିଷୟରେ ନାନା ବିଷୟ ଶୁଣାଯାଏ । ମଧୁସୂଦନଙ୍କ ମନ୍ତ୍ରିତ୍ୱ ସମୟରେ ତାଙ୍କର ସବୁଠାରୁ ବଡ଼ କାମ ହେଉଛି ସ୍ୱାୟତ୍ତ ଶାସନ ଆଇନର ସଂଶୋଧନ । ଏହାଦ୍ୱାରା ଜିଲ୍ଲାବୋର୍ଡ, ଲୋକାଲବୋର୍ଡ ଓ ମ୍ୟୁନିସିପାଲିଟି ହାତକୁ ଯଥେଷ୍ଟ ଲୋକମଙ୍ଗଳକର କ୍ଷମତା ଆସିଥିଲା । ଏହି ଅନୁଷ୍ଠାନର ପ୍ରତିନିଧିମାନେ ଲୋକମଙ୍ଗଳ ପାଇଁ ବହୁ ସ୍ୱାଧୀନତା ଲାଭ କରିଥିଲେ । ଏହା ପୂର୍ବରୁ ଜିଲ୍ଲାବୋର୍ଡ, ମ୍ୟୁନିସିପାଲିଟି ପ୍ରାୟ ସରକାରୀ ଅନୁଷ୍ଠାନ ଥିଲା । ଏହା ସରକାରଙ୍କ ହାତପିତୁଳା ହୋଇ ରହିଥିଲା । ସେଥିରେ ଲୋକପ୍ରତିନିଧିମାନଙ୍କ କ୍ଷମତା ବଡ଼ ସୀମାବଦ୍ଧ ଥିଲା । ଜିଲ୍ଲା ମାଜିଷ୍ଟ୍ରେଟମାନେ ଏହି ଜନହିତକର ଅନୁଷ୍ଠାନଗୁଡ଼ିକର ସର୍ବେସର୍ବା ହେଉଥିଲେ । ମଧୁସୂଦନ ଯେଉଁ ସଂଶୋଧନ ବିଲ ଆଣି ଆଇନ ପ୍ରଣୟନ କଲେ, ତହିଁରେ ଏହି ଅନୁଷ୍ଠାନଗୁଡ଼ିକ ନିର୍ବାଚିତ ପ୍ରତିନିଧି-ମାନଙ୍କର ପ୍ରକୃତ ଅନୁଷ୍ଠାନରେ ପରିଣତ ହୋଇ ପାରିଥିଲା ।

ମନ୍ତ୍ରୀ ହେବା ସମୟରେ ଏହି ବିଲ୍ ପାଶ ହେବା ପୂର୍ବରୁ ସେ ଜିଲ୍ଲାବୋର୍ଡ, ମ୍ୟୁନିସିପାଲିଟି ପ୍ରତିନିଧିମାନଙ୍କର ଏକ ସମ୍ମିଳନୀରେ ଯେଉଁ ଦୀର୍ଘ ବକ୍ତୃତା ଦେଇଥିଲେ, ତାହା ତାଙ୍କର ଏକ ସ୍ମରଣୀୟ ବକ୍ତୃତା ।

"ଆମ୍ଭମାନଙ୍କର ଗାଁ, ଇଉନିୟନ, ଲୋକାଲବୋର୍ଡ, ଜିଲ୍ଲାବୋର୍ଡ, ମ୍ୟୁନିସିପାଲିଟି, ବ୍ୟବସ୍ଥାପକ ସଭା ଏବଂ ସ୍ୱାୟତ୍ତ ଶାସନ ବିଭାଗର ମନ୍ତ୍ରୀ ଅଛନ୍ତି । ଏହା ଗୋଟିଏ ଜୀବନ୍ତ ପ୍ରାଣୀ ଭଳି । ପ୍ରତ୍ୟେକ ସ୍ଥାନୀୟ ଅନୁଷ୍ଠାନ ଏହି ଜନ୍ତୁର ଗୋଟିଏ ଗୋଟିଏ ଅଙ୍ଗ ଭଳି । ଏହି ପ୍ରାଣୀ ସମ୍ମୁଖରେ ଯେଉଁ ଆଦର୍ଶ ରଖା ଯାଇଅଛି, ତାହାର ପରିପୂରଣ ପାଇଁ ପ୍ରତ୍ୟେକ ପ୍ରତ୍ୟେକଙ୍କର କାର୍ଯ୍ୟ କରିବା ଉଚିତ । ଏହାଦ୍ୱାରା ହିଁ କାର୍ଯ୍ୟ କରିବା ଭଲ ଅବସ୍ଥାରେ ଏହି ପ୍ରାଣୀ ରହି ପାରିବ । ଏହି ପ୍ରାଣୀକୁ ମୁଁ ମଣିଷର ଦେହସଙ୍ଗେ ତୁଳନା କରି ପାରେ । ମୁଁ ଏହାକୁ ସବୁଠାରୁ ଶ୍ରେଷ୍ଠ ଦୃଷ୍ଟାନ୍ତସ୍ୱରୂପ ମନେ କରୁଛି, କାରଣ ଆମ୍ଭେମାନେ

ପ୍ରତ୍ୟେକ ଆମ୍ଭମାନଙ୍କ ଦେହକୁ ଭଲରୂପେ ଜାଣୁ ଏବଂ ଆମ୍ଭେମାନେ ପୃଥିବୀରେ ସବୁଠାରୁ ବେଶୀ ନିଜ ଦେହକୁ ଭଲ ପାଉଁ ।

"ଦେହର ପ୍ରତ୍ୟେକ ଅଙ୍ଗର କାର୍ଯ୍ୟ ପ୍ରକୃତିଦ୍ୱାରା ସ୍ଥିରୀକୃତ । ପ୍ରତ୍ୟେକ ବିଭିନ୍ନ ଅଙ୍ଗର କାର୍ଯ୍ୟକ୍ଷମତା ଏକ ଶକ୍ତିଦ୍ୱାରା ସର୍ବଦା ସୁରକ୍ଷିତ । ମଣିଷ ରକ୍ତ ହେଉଛି ଏହି ଶକ୍ତି । ରକ୍ତ ଶରୀରର ସର୍ବାଙ୍ଗରେ ସଞ୍ଚାଳିତ ହୁଏ । ମୁଣ୍ଡଠାରୁ ସାନ ପାଦ ଆଙ୍ଗୁଳି ଯାଏ ସବୁଠି ରକ୍ତ ସଞ୍ଚାଳିତ ହୁଏ । ବ୍ୟବସ୍ଥାପକ ସଭା, ଡିଷ୍ଟ୍ରିକ୍ଟବୋର୍ଡ ଏବଂ ମ୍ୟୁନିସିପାଲିଟିକୁ କ୍ରମାନ୍ୱୟରେ ମଣିଷର ହୃଦୟ, ଧମନୀ ଓ ଶିରା ସଙ୍ଗେ ତୁଳନା କରାଯାଇ ପାରେ । ଦେହର ଅସଂଖ୍ୟ ସ୍ନାୟୁ ଯେ ଶକ୍ତିବାନ୍ ହୋଇ ରହନ୍ତି, ତାହା ହୃଦୟ, ଧମନୀ ଏବଂ ଶିରାସମୂହର ସହଯୋଗଦ୍ୱାରା ସମ୍ଭବପର ହୁଏ । ଦେହର ଅସଂଖ୍ୟ ସ୍ନାୟୁ ପ୍ରଦେଶରେ ବାସ କରୁଥିବା ଅସଂଖ୍ୟ ଲୋକଙ୍କ ସଙ୍ଗେ ତୁଳନୀୟ । ଆମ୍ଭମାନଙ୍କ କର୍ତ୍ତବ୍ୟ ହେଉଛି ରାଜନୀତିକ ଶରୀର ମଧ୍ୟରେ ଏହି ଅସଂଖ୍ୟ ସ୍ନାୟୁଙ୍କୁ ସୁସ୍ଥ ଅବସ୍ଥାରେ ରଖିବା । ଯେତେବେଳେ ଆମ୍ଭେମାନେ ସ୍ୱାୟତ୍ତଶାସନ ଆଇନର ଧାରାମାନ ପରୀକ୍ଷା କରିବା, ଆମ୍ଭେମାନେ ଦେଖିବା ଯେ ଏହାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଲୋକମାନଙ୍କ ସ୍ୱାସ୍ଥ୍ୟ ଠିକ୍ କରିବା । ସବୁ ଧାରାର ପରିଣତି ଏହିଆ । ବର୍ତ୍ତମାନ ସ୍ୱାୟତ୍ତଶାସନ ବିଭାଗ ଶାସନସଂସ୍କାର ଅନୁଯାୟୀ ଲୋକମାନଙ୍କ ହାତକୁ ଆସିଥିବା ବିଭାଗ ।"

ମଧୁସୂଦନଙ୍କ ଚେଷ୍ଟାରେ ଏହି ଟି ଆଇନରେ ପରିଣତ ହୋଇ ପାରିଥିଲା ।

ମଧୁସୂଦନ ମନ୍ତ୍ରୀ ଥିଲାବେଳେ ଏକ ସ୍ୱତନ୍ତ୍ର ପ୍ରଥା (Convention) ସୃଷ୍ଟି କରି ଯାଇଥିଲେ । ତାଙ୍କ ଅଫିସରେ କିରାଣିମାନେ ଯେତେବେଳେ ତାଙ୍କ ନିଜଲାଗି କୌଣସି ବ୍ୟକ୍ତିଗତ ଚିଠି ଟାଇପ୍ କରନ୍ତି, ମଧୁସୂଦନ ତାହାର ପଇସା ସ୍ୱତନ୍ତ୍ର ଭାବରେ କର୍ମଚାରୀମାନଙ୍କୁ ଦେଉଥିଲେ । ମଧୁସୂଦନ ନିଜର କୌଣସି ଭୁଲ ଥିଲେ, ତାହା ସ୍ୱୀକାର କରିବାକୁ କୁଣ୍ଠାବୋଧ କରୁ ନ ଥିଲେ । ଥରେ ଏକ ଆଇନର ଅର୍ଥ ମଧୁସୂଦନ ଯେପରି ବୁଝିଲେ, ତାଙ୍କ ସେକ୍ରେଟାରୀ ସେପରି ବୁଝିଲେ ନାହିଁ । ଆଇନର ପ୍ରକୃତ ତାତ୍ପର୍ଯ୍ୟ ଜାଣିବା ପାଇଁ ଗଭର୍ଣ୍ଣରଙ୍କ ଯାଏ କଥା ଗଲା । ମଧୁସୂଦନ ଯେପରି ଜାଣିଲେ ଯେ ତାହାଙ୍କ ଗୃହୀତ ଅର୍ଥ ଭୁଲ, ସେ ସଙ୍ଗେ ସଙ୍ଗେ ସେକ୍ରେଟେରୀଙ୍କୁ ଡକାଇ, ତାଙ୍କ ଭୁଲ ସ୍ୱୀକାର କରି, ସେକ୍ରେଟେରୀଙ୍କୁ ପ୍ରଶଂସା କରିଥିଲେ ।

ମଧୁସୂଦନ ଅଯଥା ସରକାରୀ ଖର୍ଚ୍ଚ କମାଇବାକୁ ଖୁବ୍ ଚେଷ୍ଟା କରୁଥିଲେ । ଏପରି କି କୌଣସି ଗସ୍ତରେ ଗଲେ, ଯଦି ତାହାଙ୍କ ସହିତ

ତାଙ୍କର କେହି ବନ୍ଧୁ ଯାଉଥିଲେ, ତାହାଙ୍କ ପାଇଁ ସେ ସ୍ୱତନ୍ତ୍ର ରେଳଟିକେଟ ନିଜ ହାତରୁ କାଟୁଥିଲେ । ଯଦିଚ ମନ୍ତ୍ରୀ ସେମାନଙ୍କ ସଙ୍ଗରେ ଅନ୍ୟମାନଙ୍କୁ ନେବାକୁ ଯଥେଷ୍ଟ ସୁବିଧା ଥିଲା, ମଧୁସୂଦନ ସରକାରୀ ଟଙ୍କା ନିଜ ବନ୍ଧୁବାନ୍ଧବଙ୍କ ପାଇଁ କେବେହେଲେ ଖର୍ଚ୍ଚ କରୁ ନ ଥିଲେ । ଥରେ ଗଭର୍ଣ୍ଣର ମନ୍ତ୍ରୀଙ୍କ ଅନୁପସ୍ଥିତିରେ ମଧୁସୂଦନଙ୍କ ସ୍ୱାୟତ୍ତଶାସନବିଭାଗୀୟ ଏକ ଇଞ୍ଜିନିୟରଙ୍କୁ କାର୍ଯ୍ୟରେ ମୁକ୍ତିଯୁକ୍ତ କରିଥିଲେ । ମଧୁସୂଦନ ଗସ୍ତରୁ ଫେରିବା ମାତ୍ରେ ଏହାର ତୀବ୍ର ପ୍ରତିବାଦ କରିଥିଲେ । ଶେଷରେ ଗଭର୍ଣ୍ଣର ତାହାଙ୍କ ହୁକୁମ ପ୍ରତ୍ୟାହାର କରି ନେଇଥିଲେ । ମଧୁସୂଦନଙ୍କ ମନ୍ତ୍ରିତ୍ୱ ଜୀବନ ସଂପର୍କରେ ନାନା କୌତୁକ ପୂର୍ଣ୍ଣ ଗପ ଶୁଣାଯାଏ । ମାତ୍ର ସେଗୁଡ଼ିକ ଏଠାରେ ଉଲ୍ଲେଖ କରାଯାଉ ନାହିଁ ।

ମନ୍ତ୍ରୀତ୍ୱରେ ମଧୁସୂଦନଙ୍କ ଭଳି ତେଜସ୍ୱୀ ଏବଂ ସ୍ୱାଧୀନଚେତା ଲୋକ ବେଶୀ ସମୟ ରହି ନ ପାରିବା ଆଶ୍ଚର୍ଯ୍ୟ ବିଷୟ ନୁହେ । ମାତ୍ର ସେ କପରି ମନ୍ତ୍ରିତ୍ୱ ପରିତ୍ୟାଗ କଲେ, ତାହା ତଳେ ଆଲୋଚନା କରାଯାଉଅଛି । ମଧୁସୂଦନ ଯେତେବେଳେ ମନ୍ତ୍ରୀତ୍ୱ ଛାଡ଼ିଲେ, ତାହାଙ୍କ ଆଦର୍ଶ ସାରା ଭାରତରେ ଚହଳ ପକାଇ ଦେଇଥିଲା । ତାଙ୍କର ମୂଳ ନୀତି ଥିଲା ଯେ ଜିଲ୍ଲାବୋର୍ଡ, ଲୋକାଲ ବୋର୍ଡ, ମ୍ୟୁନିସିପାଲିଟିରେ ଲୋକପ୍ରତିନିଧିମାନେ ବିନା ବେତନରେ କାର୍ଯ୍ୟ କରୁଥିବା ବେଳେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ବେତନ ନେବା ଅସଂଗତ ଓ ନୀତିଭ୍ରଷ୍ଟ କାର୍ଯ୍ୟ; ତେଣୁ ସେ ଦାବୀ କରୁଥିଲେ ଯେ ମନ୍ତ୍ରୀମାନେ ଅବୈତନିକ ଭାବରେ କାର୍ଯ୍ୟ କରିବା ଉଚିତ । ସେ ୧୯୨୨ ମସିହା ଫେବୃଆରୀ ୨୨ ତାରିଖରେ ତତ୍କାଳୀନ ବ୍ୟବସ୍ଥା ସଭାରେ ଏ ସଂପର୍କରେ କହିଥିଲେ ।

"ଏକ ସଂଗଠନରେ, ଯେଉଁଠାରେ ସମସ୍ତ କର୍ମୀ ବିନା ବେତନରେ କାର୍ଯ୍ୟ କରନ୍ତି; ତହିଁରେ ଜଣେ ବେତନ ପ୍ରାପ୍ତ ମନ୍ତ୍ରୀ ସଂଗଠନର ସାମଞ୍ଜସ୍ୟ ଏବଂ ଶୃଙ୍ଖଳା ଭଙ୍ଗ କରେ । ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରିତ୍ୱ ବିନା ବେତନଭୋଗୀ ହେବା ଉଚିତ । ଏହାକୁ ବିନା ବେତନରେ ପରିଣତ କରିବାକୁ ହେଲେ, ବର୍ତ୍ତମାନ ସରକାରୀ କଳର କେତେକ ପରିବର୍ତ୍ତନ ଓ ପରିବର୍ଦ୍ଧନ ଦରକାର ।"*

---

*"In an organisation in which all the workers are honorary, a salaried minister mars the symmentary and harmony of the organisation. The office of the minister of Local self Government ought to

୧୯୨୩ ମସିହା ଫେବ୍ରୁଆରୀ ୨୮ ତାରିଖରେ ମଧୁସୂଦନ ମନ୍ତ୍ରିତ୍ୱ ତ୍ୟାଗ ପୂର୍ବରୁ ଯେଉଁ ଚିଠି ତତ୍କାଳୀନ ଗଭର୍ଣ୍ଣରଙ୍କ ନିକଟକୁ ଦେଇଥିଲେ, ତାହା ସେତେବେଳକାର ବହୁ ଖବର କାଗଜରେ ପ୍ରକାଶିତ ହୋଇଥିଲା, ତାହା ଏଠାରେ ଉଦ୍ଧୃତ କରି ଦିଆଗଲା। ମଧୁସୂଦନଙ୍କ ଇଂରାଜି ପତ୍ରର ଓଡ଼ିଆ ଅନୁବାଦ ତଳେ ଦିଆଗଲା।

"ଶାସନ ସଂସ୍କାରର ସଫଳତା ସ୍ୱାୟତ୍ତଶାସନ- ବିଭାଗର ଶାସନ, ଚିକିତ୍ସା ଦାନ, ସ୍ୱାସ୍ଥ୍ୟ, ରାସ୍ତାଘାଟ ଏବଂ ଲୋକଶିକ୍ଷା ଦ୍ୱାରା ନିର୍ଦ୍ଧାରିତ ହେବ। ଏହି ସବୁ ବିଭାଗ ମ୍ୟୁନିସିପାଲିଟି ଏବଂ ଜିଲ୍ଲାବୋର୍ଡ ହାତକୁ ଦିଆଯାଇଅଛି। ଏହି ସବୁ ବିଭାଗର ପ୍ରାଧାନ୍ୟ ସହଜରେ ଉପଲବ୍ଧି କରି ହେବ; ଯଦି କ୍ଷଣକ ପାଇଁ ଏହି ପରୀକ୍ଷା ସମୟମଧ୍ୟରେ ଏହି ବିଭାଗକୁ ଉଠାଇ ଦିଆଯାଏ। ଏହି ନୂଆ ମୁନିସିପାଲିଟି ଆଇନ ମ୍ୟୁନିସିପାଲିଟି ଶାସନ ପାଇଁ ପୂର୍ଣ୍ଣ ଦାୟିତ୍ୱ ଦେଇଅଛି। ବର୍ତ୍ତମାନ ଯେଉଁ ସ୍ୱାୟତ୍ତଶାସନ ଆଇନ ବ୍ୟବସ୍ଥାପକ ସଭା ସମ୍ମୁଖରେ ଅଛି, ଏହା ଗ୍ରାମମାନଙ୍କରେ ଏହି ସବୁ ଶାସନ ପାଇଁ ଜିଲ୍ଲାବୋର୍ଡକୁ ଦାୟୀ କରିବ। ଯେଉଁସବୁ ବିଭାଗର ଶାସନଭାର ଲୋକମାନଙ୍କୁ ଦିଆଗଲା, ଲୋକମାନଙ୍କର ସେ ବିଷୟରେ ପୂର୍ଣ୍ଣ ଦାୟିତ୍ୱଜ୍ଞାନ ଅଛି ନାହିଁ। ଏହିସବୁ ସ୍ୱାୟତ୍ତଶାସନ ବିଭାଗର ସଭ୍ୟମାନେ ବିନାବେତନରେ କାର୍ଯ୍ୟ କରନ୍ତି। ବିନା ବେତନରେ କାମ କରିବା ଅର୍ଥ ଦେଶ ଏବଂ ସମ୍ରାଟଙ୍କ ପାଇଁ କରିବା ଜ୍ଞାନରେ ତ୍ୟାଗ କରିବା। ଏହି ସବୁ ସ୍ଥାନୀୟ ଅନୁଷ୍ଠାନ ଯେତେବେଳେ ନୂଆ ଆଇନ ଅନୁସାରେ କାର୍ଯ୍ୟ ଆରମ୍ଭ କରିବେ, ଏମାନେ ସ୍ୱାୟତ୍ତ ଶାସନ ବିଭାଗ ମନ୍ତ୍ରୀଙ୍କର ପରାମର୍ଶ ସବୁବେଳେ ଚାହିଁବେ। ଏହି ମନ୍ତ୍ରୀ ପ୍ରଦେଶବ୍ୟାପୀ ବେତନ ନ ନେଉଥିବା କର୍ମୀମାନଙ୍କ ଉପରେ ଯେ ଏକ ପ୍ରଭାବ ପକାଇ ପାରିବେ, ଏଥିପାଇଁ ସେ ନିଜେ ବେତନ ନ ନେଇ କାର୍ଯ୍ୟ କରିବା ପ୍ରୟୋଜନ। ହଜାର ହଜାର ବେତନହୀନ କର୍ମୀଙ୍କ ଉପରେ ଜଣେ ବେତନପ୍ରାପ୍ତ ହାକିମ ଏକ ଅସଂଗତ କଥା। ସେ ସେମାନଙ୍କଠାରୁ ସମ୍ମାନ ଦାବୀ କରି ନ ପାରେ, ତେଣୁ ସେ ଯେତେବେଳେ କୌଣସି ପରିକଳ୍ପନା ବା ଯୋଜନା ପାଇଁ ଲୋକମାନଙ୍କ ଦେଶାତ୍ମବୋଧ କିମ୍ବା ଦୟାଗୁଣ ଉଦ୍ରେକ କରିବାକୁ ଚାହିଁବେ, ତାହା କେବଳ ଲୋକହସାରେ ପରିଣତ ହେବ। ତେଣୁ ଶାସନସଂସ୍କାରକୁ ସଫଳ କରିବାକୁ-ହେଲେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ କୌଣସି ବେତନ ନ ନେବା ଦରକାର, କିନ୍ତୁ ସେ ବିନା ବେତନରେ କାର୍ଯ୍ୟ କରିବା ଉଚିତ।

---

be honorary. To convert this office into an honorary one, the present official machinary needs addition and adjustment."

"ଭାରତରେ ବ୍ୟକ୍ତିଗତ ପ୍ରଭାବ ଏକ ଅତି ବଡ଼ କଥା, ଯେତେବେଳେ ଆମ୍ଭମାନଙ୍କୁ ଲୋକମାନଙ୍କ ସକ୍ରିୟ ସହାନୁଭୂତି ଏବଂ ସହଯୋଗ ଗ୍ରହଣ କରିବାକୁ ହେବ; ବ୍ୟକ୍ତିଗତ ପ୍ରଭାବ, ବିନା ବେତନରେ କାର୍ଯ୍ୟ କଲେ ଲାଭ ହୋଇପାରେ । ଭାରତରେ ଗାନ୍ଧିଙ୍କ କାର୍ଯ୍ୟ, ତ୍ୟାଗର ମୂଲ୍ୟ ଯେ ବ୍ୟକ୍ତିଗତ ପ୍ରଭାବ, ଏହା ଉଦାହରଣ ଦେଖାଇ ଦେଇଅଛି ।

"ଶାସନସଂସ୍କାରର ଅସହଯୋଗ ଆନ୍ଦୋଳନ ଏକ ଅତି ବଡ଼ ପ୍ରତିବନ୍ଧକ । ଅସହଯୋଗ କାର୍ଯ୍ୟମାନେ ଦୁଷ୍ଟ ପରିପ୍ରବୃତ୍ତିର ଜାଲ ସବୁଆଡ଼େ ବିଛାଇ ଦେବାକୁ ସମର୍ଥ ହୋଇ ଅଛନ୍ତି । ଗାନ୍ଧୀ, ସି. ଆର. ଦାସ (ଚିତ୍ତରଞ୍ଜନ ଦାସ) ପ୍ରଭୃତି କେତେକ ବ୍ୟକ୍ତିଙ୍କ ବ୍ୟକ୍ତିଗତ ପ୍ରଭାବ ଏହି ତ୍ୟାଗ ଯୋଗୁଁ । ଆମ୍ଭମାନଙ୍କୁ ଏହି ବିପକ୍ଷ ଶକ୍ତି ସହିତ ଲଢ଼ିବାକୁ ପଡ଼ିବ । ବେତନ ପାଉଥିବା ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀଙ୍କର ଏହି ଲଢ଼େଇ ବା ସଂଘର୍ଷରେ କୌଣସି ସ୍ଥାନ ନାହିଁ । ଯେଉଁମାନେ ଦେଶାତ୍ମବୋଧରେ ଅନୁପ୍ରାଣିତ, ଆମ୍ଭମାନଙ୍କର ସେପରି ଲୋକ ଦରକାର । ଆମ୍ଭମାନଙ୍କ ସ୍ଥାନୀୟ ସ୍ୱାୟତ୍ତଶାସନ ବିଭାଗର ବେତନହୀନ କର୍ମୀମାନେ ଏକ ଅତି ମୂଲ୍ୟବାନ ପ୍ରତିକୂଳ ଶକ୍ତି; ମାତ୍ର ଏହି ସମସ୍ତ ସଂଗଠନରେ ଶୃଙ୍ଖଳା ବେତନପ୍ରାପ୍ତ ମନ୍ତ୍ରୀଙ୍କ ଦ୍ୱାରା ଭଗ୍ନ ହେଉଅଛି ।

"ବ୍ୟବସ୍ଥା ସଭାରେ, ଖବର କାଗଜରେ ଏବଂ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ବେତନ ବିରୁଦ୍ଧରେ ଯେଉଁ ବିରୁଦ୍ଧ ସମାଲୋଚନା ହେଉଛି, ତହିଁରୁ ପ୍ରମାଣିତ ହେଉଅଛି ଯେ ଲୋକେ ସ୍ୱାୟତ୍ତ ଶାସନରେ ଜଣେ ବେତନହୀନ-ମନ୍ତ୍ରୀ ଚାହାନ୍ତି ।

"ମୁଁ ବେତନ ନ ନେଇ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛି, ଯଦି ମୋତେ ଓକିଲାତି କରି ମୋର ଜୀବିକା ନିର୍ବାହ ପାଇଁ ଅର୍ଜନ କରିବାକୁ ଅନୁମତି ଦିଆଯାଏ । ମନ୍ତ୍ରୀ ଭାବରେ ମୋର କର୍ତ୍ତବ୍ୟ ସହିତ କୌଣସି ବ୍ୟବସାୟଗତ କାର୍ଯ୍ୟ ପ୍ରତିବନ୍ଧକ ହେବାକୁ ମୁଁ ଦେବି ନାହିଁ । ଯଦି ଜୀବନର ସାଧାରଣ ଦରକାର ପୂରଣ କରିବାକୁ ମୋର ବ୍ୟକ୍ତିଗତ ଉପାୟ ଥାନ୍ତା, ତେବେ ମୁଁ ଓକାଲତି କରିବାକୁ ଅନୁମତି ଚାହାନ୍ତି ନାହିଁ । ମୁଁ ପ୍ରାୟ ତିରିଶ ବର୍ଷ ହେବ ସାଧାରଣ ଜୀବନରେ ଅଛି । ମୁଁ ଓଡ଼ିଆ ଗୋଷ୍ଠୀ (Race)ର ପ୍ରଥମ ଗ୍ରାଜୁଏଟ ହୋଇଥିବାରୁ, ମୋର ସାଧାରଣ ଜୀବନର ଅର୍ଥ ମୁଁ ସମସ୍ତ ସାଧାରଣ ଆନ୍ଦୋଳନକୁ ଟଙ୍କା ଯୋଗାଉଥିଲି । ମୋର ବ୍ୟବସାୟ କାମ ପାଇଁ ଅତି ଅଳ୍ପ ସମୟ ମାତ୍ର ଦେଉଥିଲି, କାରଣ ସାଧାରଣ କାମରେ ମୋର ଅଧିକାଂଶ ସମୟ ବ୍ୟୟିତ ହେଉଥିଲା ।

"ମନ୍ତ୍ରୀ ହୋଇ ଓକାଲତି କରିବାରେ କୌଣସି ଅସଙ୍ଗତ ନାହିଁ । ଜଣେ ଜମିଦାର ଏକ୍‌ଜିକ୍ୟୁଟିଭ କାଉନ୍ସିଲରେ ସଭ୍ୟ ହେବା ନଜିର ରହିଅଛି ।

ଦରଭଙ୍ଗାର ମହାରାଜାଧିରାଜ ସ୍ୱଦେଶର ଏକ୍‌ଜିକ୍ୟୁଟିଭ କାଉନ୍ସିଲରେ ପ୍ରଥମ ଭାରତୀୟ ସଭ୍ୟ । ଅନ୍ୟଦିନ ଖବର କାଗଜରେ ଦେଖିଲି ଯେ ମହମ୍ମଦାବାଦର ରାଜା ଯୁକ୍ତପ୍ରଦେଶ ଏକଜିକ୍ୟୁଟିଭ୍ କାଉନ୍ସିଲର ବେତନହୀନ ସଭ୍ୟରୂପେ ନିଯୁକ୍ତ ହୋଇଅଛନ୍ତି । ଜଣେ ଜମିଦାରଙ୍କୁ ତାହାଙ୍କ ଜମିଦାରୀର ହାଲ ଦେଖିବାକୁ ହେବ; ସେ କଚେରୀରେ ପକ୍ଷ ହେବେ, ତାହାଙ୍କୁ କଚେରୀରେ ସାକ୍ଷ୍ୟ ଦେବାକୁ ପଡ଼ିବ । ଏହା ଯଦି କାଉନ୍ସିଲର ଜଣେ ମାନ୍ୟବର ସଭ୍ୟଙ୍କ ସମ୍ମାନର ହାନିକର ନ ହୁଏ; ମନ୍ତ୍ରୀଙ୍କର ଗୋଟିଏ ପକ୍ଷ ପାଇଁ ଓକିଲ ଭାବରେ କଚେରୀରେ ଉପସ୍ଥିତ ହେବା କୌଣସି ଗୁଣରେ ସମ୍ମାନହାନିକର ବୋଲି ଅନୁମିତ ନ ହେବା ଉଚିତ ।

"ଆଇନ ବ୍ୟବସାୟ ସର୍ବଦା ସମ୍ମାନଜନକ ବୋଲି ଗୃହୀତ ହୋଇ ଆସିଅଛି । ପ୍ରାଦେଶିକ ଏବଂ ଭାରତ ସରକାର ଓକାଲତି କରୁଥିବା ଓକିଲ-ମାନଙ୍କୁ ଏକ୍‌ଜିକ୍ୟୁଟିଭ କାଉନ୍ସିଲର ସଭ୍ୟରୂପେ ନେଇ ଅଛନ୍ତି । ଓକାଲତି କରୁଥିବା ଓକିଲମାନେ ପ୍ରାଦେଶିକ ଏବଂ ଭାରତ ସରକାରଙ୍କର ସଭ୍ୟ ହୋଇ ଅଛନ୍ତି ଏବଂ ସଭ୍ୟକାଳ ଶେଷରେ ପୁଣି ସେମାନଙ୍କ ବ୍ୟବସାୟକୁ ଫେରି ଆସି ଅଛନ୍ତି । ତେଣୁ ସମ୍ମାନହାନିକର ବୋଲି ମୋର ପ୍ରସ୍ତାବ ବିରୁଦ୍ଧରେ ଆପତ୍ତିର ଏହା ସଂପୂର୍ଣ୍ଣ ଉତ୍ତର ।

"ସ୍ୱାୟତ୍ତଶାସନ ବିଭାଗ ଲୋକଙ୍କୁ ଦିଆଯାଇଥିବା ଏକ ବିଭାଗ । ଏହି ଶାସନର ଦାୟିତ୍ୱ ଲୋକଙ୍କୁ ଦିଆଯାଇଅଛି । ମନ୍ତ୍ରୀ ବ୍ୟବସ୍ଥାପକ ସଭାର ଜଣେ ନିର୍ବାଚିତ ସଭ୍ୟ । ତାହାଙ୍କର ମନ୍ତ୍ରୀଭାବରେ ନିଯୁକ୍ତି ମାନ୍ୟବର ଗଭର୍ଣ୍ଣରଙ୍କ ସହିତ ଏକ ନୂତନ ସମ୍ପର୍କ ସ୍ଥାପନ କରେ । ମାତ୍ର ଏହା ଦ୍ୱାରା ଏହି ସମ୍ପର୍କ ମନ୍ତ୍ରୀଙ୍କ ଲୋକ କିମ୍ବା ବ୍ୟବସ୍ଥାପକ ସଭାର ଦାୟିତ୍ୱରୁ ଅବ୍ୟାହତି ଦିଏ ନାହିଁ । ବ୍ୟବସ୍ଥାପକ ସଭା ମଧ୍ୟ ଲୋକଙ୍କ ସ୍ୱାର୍ଥର ପ୍ରତିନିଧି । ଭାରତୀୟ ଶାସନ ବିଧାନର ୮୦ ଖ ( 80 B ) ଧାରା କହୁଅଛି ଯେ, ଜଣେ ମନ୍ତ୍ରୀ ସରକାରୀ କର୍ମଚାରୀ ରୂପେ ଗଣ୍ୟ ହେବେ ନାହିଁ । ଜଣେ ଲୋକ ମନ୍ତ୍ରୀ ହେଲେ ସେ ଚାକିରୀ କଲେ ବୋଲି ଗ୍ରହଣ କରାଯିବ ନାହିଁ । (Shall not be deemed to be an official and a person shall not be deemed to accept office on appointment as a minister. )

"ଭାରତୀୟ ଶାସନ ବିଧାନର ୧୨୪ ଦଫା ଅନୁସାରେ ଭାରତ ସରକାରଙ୍କ କୌଣସି କର୍ମଚାରୀ ଅସଦାଚାର (Mis demeanours) ପାଇଁ ଦଣ୍ଡିତ ହୋଇ

ପାରିବେ । ଏହାର ୬ନମ ଧାରା କୌଣସି ଉପହାର ଗ୍ରହଣ ମନା କରିଅଛି । କିନ୍ତୁ ବାରିଷ୍ଟରଙ୍କ ବିଆଯିବା ଫିସ୍ ଏହି ଧାରାରୁ ମୁକ୍ତ । ଏହି ବାରିଷ୍ଟର ଶବ୍ଦ ମଧ୍ୟ ଅନ୍ୟ ଉକିଲ ( ପରେ ଆଡ୍‌ଭୋକେଟ ) ଙ୍କୁ ବୁଝାଉଅଛି; ଯେଉଁମାନେ କି ହାଇକୋର୍ଟରେ ଓକାଲତି କରନ୍ତି ।

"ବ୍ୟବସ୍ଥାପକ ସଭାରୁ ମୁଁ ଅନୁପସ୍ଥିତ ହେବ ନାହିଁ ବୋଲି ମୁଁ ଦାୟିତ୍ୱ ନେବି । ମନ୍ତ୍ରୀ କାର୍ଯ୍ୟରେ ମୋର ବ୍ୟବସାୟ କାର୍ଯ୍ୟ କୌଣସି ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ ବୋଲି ମଧ୍ୟ ମୁଁ ଦାୟୀ ରହିବି । ମୋ ଓକାଲତି କେବଳ ମୋର ଜୀବନ ଧାରଣର ଗୋଟିଏ ଉପାୟ ମାତ୍ର; ଯଦି ମୋର ଜୀବନର ସାଧାରଣ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳି ଦିଏ, ତେବେ ଏହି ତ୍ୟାଗ ଖୁବ୍ ପୁରସ୍କୃତ ହେଲା ବୋଲି ମନେ କରିବି । କାରଣ ଏହା ଦ୍ୱାରା ଲୋକେ ସରକାରଙ୍କ ଘନିଷ୍ଠ ସମ୍ପର୍କରେ ଆସିବେ ଏବଂ ବ୍ୟବସାୟ କରୁଥିବା ଓକିଲ ଏବଂ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ ମଧ୍ୟରେ ଏକ ସହଯୋଗ ସ୍ଥାପିତ ହେବ । ବ୍ୟବସାୟ କରୁଥିବା ଓକିଲ ମନ୍ତ୍ରୀଭାବରେ ଏହି ଯୋଜନାର ସମନ୍ୱୟତା ଏବଂ ସମପ୍ରକୃତି ଆଣିବେ ।

"ସ୍ୱାୟତ୍ତଶାସନ ବିଭାଗ ମନ୍ତ୍ରୀଙ୍କର କର୍ତ୍ତବ୍ୟ ଆଇନ ଏବଂ ଭେଷଧଜ୍ଞାନ ଦରକାର କରେ । ସ୍ୱାୟତ୍ତଶାସନ ବିଭାଗ ସାଧାରଣତଃ ଓକିଲ ଦ୍ୱାରା ପରିଚାଳିତ । ତେଣୁ ମିଉନିସିପାଲିଟି ଆଇନର ଅର୍ଥ ଓ ତାତ୍ପର୍ଯ୍ୟ ନେଇ ବହୁ ନିର୍ଦ୍ଧାରଣ ମନ୍ତ୍ରୀଙ୍କ ପାଖକୁ ଆସେ । ଚଳିତ ବର୍ଷର ପ୍ରଥମ ଜାନୁଆରୀରେ ଏହି ନୂତନ ମ୍ୟୁନିସିପାଲିଟି ଆଇନ ପ୍ରଚଳନ ହେଲା । ପନ୍ଦର ତାରିଖ ପୂର୍ବରୁ ଗୋଟିଏ ମ୍ୟୁନିସିପାଲିଟି ଏକ ପ୍ରସ୍ତାବ ଗ୍ରହଣ କଲେ, ଯାହା ମ୍ୟୁନିସିପାଲିଟି ଆଇନର କେତେ ଧାରା ଦ୍ୱାରା କ୍ଷମତାପ୍ରାପ୍ତ ବୋଲି ଭାବିଥିଲେ । ଏହି ପ୍ରଶ୍ନ ନିର୍ଦ୍ଧାରଣ ପାଇଁ ମୋ ପାଖକୁ ଆସିଥିଲା । ମୁଁ ସ୍ମାରକପତ୍ର ପାଇଛି, ଯହିଁରେ ହାଲସ୍‌ବେରୀଙ୍କ "ଇଂଲଣ୍ଡ ଆଇନ" ବହିରୁ ଆଇନଗତ ପ୍ରଶ୍ନ ଉଠାଯାଇ ଅଛି । ମୋର ବର୍ତ୍ତମାନ କାର୍ଯ୍ୟ ସମାଧାନ କରିବାରେ ମୋର ବାଲ୍ୟ ଜୀବନର ଔଷଧ ଓ ଆଇନଜ୍ଞାନ ବିଶେଷ ସାହାଯ୍ୟରେ ଆସିଅଛି ।

"ସେକ୍ରେଟେରିଏଟରେ ହୁଏତ ଆଉ ଜଣେ କର୍ମଚାରୀ ନିଯୁକ୍ତ ପ୍ରୟୋଜନ ପଡ଼ିପାରେ, କିନ୍ତୁ ଯଦି ଆପଣ ମୋ ପ୍ରସ୍ତାବ ଗ୍ରହଣ କରିବାକୁ ରାଜି ହୁଅନ୍ତି, ତେବେ ଏସମ୍ପର୍କରେ ଆଲୋଚନା କରିବାକୁ ପଡ଼ିବ ।" ମଧୁସୂଦନଙ୍କ ଏହି ଉପର ଲିଖିତ ଚିଠି ପାଇ ବିହାର ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ମିଷ୍ଟର ଏଚ୍, ହୁଇଲର ଲେଖିଲେ ଯେ ସେ ମଧୁସୂଦନଙ୍କ ମନ୍ତ୍ରୀ ହୋଇ ଓକିଲାତି କରିବା ପ୍ରସ୍ତାବ ଗ୍ରହଣ କରି ପାରୁ ନାହାନ୍ତି । କାରଣ ମନ୍ତ୍ରୀ ହୋଇ ମନ୍ତ୍ରୀ ବା ସରକାରଙ୍କ ଅଧୀନ

କଚେରୀରେ କପରି ବ୍ୟବସାୟ କରି ପାରିବେ, ଏହି ପ୍ରଶ୍ନ ସେ ଉଠାଇଥିଲେ । ତାପରେ ଆସେମ୍ବ୍ଲିରେ ଅଳ୍ପ ବେତନ ଗ୍ରହଣ କରି କାର୍ଯ୍ୟ କରିବେ ବୋଲି ଏକ ପ୍ରସ୍ତାବ ଗୃହୀତ ହୋଇଗଲା । ଏହି ପ୍ରସ୍ତାବ ଗ୍ରହଣ ପରେ ମଧୁସୂଦନ ୧୯୨୪ ମସିହା ମାର୍ଚ୍ଚ ୮ ତାରିଖରେ ମନ୍ତ୍ରିତ୍ୱ ଇସ୍ତଫା ଦେଲେ । ସେ ଚିଠିରେ ମଧୁସୂଦନ ମାନ୍ୟବର ଗଭର୍ଣ୍ଣରଙ୍କୁ ଲେଖିଥିଲେ ଯେ,

"ମୁଁ କମ ଦରମା ଗ୍ରହଣ କରିବା ପ୍ରସ୍ତାବରେ ବାଧହୋଇ ରାଜି ହୋଇଥିଲି କାରଣ ମୁଁ ଦେଖିଲି ଯେ ମୋର ସାଥି ମନ୍ତ୍ରୀ ଏହି ପ୍ରସ୍ତାବ ଗ୍ରହଣ କରିବାକୁ ରାଜି ଥିଲେ । ସେ ଭାବିଥିଲେ ଯେ ମୁଁ ତାହାଙ୍କ ବାଟର ଗୋଟିଏ ପ୍ରତିବନ୍ଧକ । ତାହାଙ୍କ ଅବସ୍ଥାକୁ ଉନ୍ନତ କରିବାକୁ ମୁଁ ସେ ପ୍ରସ୍ତାବ ଗ୍ରହଣରେ ରାଜି ହୋଇଥିଲି । ବର୍ତ୍ତମାନ ମୋର ଭାଇଙ୍କ ସ୍ଥାନ ସ୍ଥିର ହୋଇଯିବାରୁ, ମୁଁ ସ୍ୱାୟତ୍ତ ଶାସନ ବିଭାଗ ମନ୍ତ୍ରିତ୍ୱ ଇସ୍ତଫା ଦେଉଛି । ମୁଁ ବର୍ତ୍ତମାନ ସୁଦ୍ଧା ବିଶ୍ୱାସ କରୁଛି ଯେ ଏହି ଅଫିସ ବିନା ବେତନ ଭୋଗୀ ହେବା ଉଚିତ । *

ମଧୁସୂଦନଙ୍କ ଏହି ବିନା-ବେତନରେ ଆଦର୍ଶ ଦେଶରେ ଗୃହୀତ ହୋଇ ପାରି ନ ଥିଲେ ମଧ୍ୟ, ମନ୍ତ୍ରୀମାନଙ୍କ ଦରମା ଖୁବ୍ କମି ଯାଇଅଛି ।

ମଧୁସୂଦନ ମନ୍ତ୍ରୀ ଥିଲାବେଳେ ୧୯୨୧ ମସିହାରେ ବିଲାତରୁ ପ୍ରିନ୍ସ ଅଫ ୱେଲସ୍ ଭାରତକୁ ଆସିଥିଲେ । ସେ ମଧ୍ୟ ପାଟଣାକୁ ଆସିଥିଲେ । ସେତେବେଳେ ମନ୍ତ୍ରୀମାନଙ୍କୁ ଭୋଜୀ ପ୍ରଭୃତିକୁ ନିମନ୍ତ୍ରଣ କରିବାରେ ବହୁ ତ୍ରୁଟି କରା ଯାଉଥିଲା । ସେ ସମ୍ପର୍କରେ ମଧୁସୂଦନ ଓ ତତ୍କାଳୀନ ଗଭର୍ଣ୍ଣରଙ୍କ ମଧ୍ୟରେ

---

* "I was obliged to acecpt the proposal of a reduced pay because I found that my brother minister was willing to accept the proposal and he felt that I was an impedement in his way. In order to improve his position, I agreed to acecpt the proposal. My brother's position being now secure, I beg to resign my Office as minister of local self government. I still believe that the Office ought to be honourary."

ଯେଉଁ ଭଳି ଆଦାନ ପ୍ରଦାନ ହୋଇଥିଲା, ତାହାଁରୁ କେତେକ ଧାଡ଼ି ତଳେ ଦିଆଗଲା । ତାହାଁରୁ ବେଶ୍ ପ୍ରତୀୟମାନ ହେବ ଯେ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ମନ୍ତ୍ରିତ୍ୱବେଳେ କ'ଣ ଥିଲା । ମଧୁସୂଦନ ମନ୍ତ୍ରୀଭାବରେ ପ୍ରିନ୍ସ୍ ଅଫ୍. ଓଏଲସ୍‌ଙ୍କୁ ଦେଖା କରିବାରେ ଓ ମଧ୍ୟାହ୍ନ ଭୋଜନ ଏବଂ ରାତ୍ରିଭୋଜନ ସମ୍ପର୍କରେ ପ୍ରଭେଦ ହେବାରେ ଏକ ଗୋଲମାଲ ଉପୁଜିଥିଲା । କାରଣ ମଧ୍ୟାହ୍ନଭୋଜନ ଓ ରାତ୍ରିଭୋଜନ ମଧ୍ୟରେ ସେ ସମୟରେ ଏକ ପାର୍ଥକ୍ୟ ପରିଲକ୍ଷିତ ହେଉଥିଲା । ସାଧାରଣତଃ ସେକ୍ରେଟେରୀ ପ୍ରଭୃତିଙ୍କୁ ମଧ୍ୟାହ୍ନ ଭୋଜନକୁ ଡକାଯାଏ । ମନ୍ତ୍ରୀମାନଙ୍କୁ ଏହି ମଧ୍ୟାହ୍ନଭୋଜନ ତାଲିକାରେ ରଖାଯାଇଥିଲା । ତେଣୁ ଅନ୍ୟ ମନ୍ତ୍ରୀମାନେ ଏ ବିଷୟରେ ବଡ଼ ବିରକ୍ତ ହୋଇଥିଲେ, ଏହି ଘଟଣା ଯୋଗୁଁ ମଧୁସୂଦନ ୧୯୨୧ ମସିହା ଫେବ୍ରୁୟାରୀ ୨ ତାରିଖରେ ଲେଖିଥିଲେ ।

"ବ୍ୟକ୍ତିଗତ ଭାବରେ ରାତ୍ରିଭୋଜନ କିମ୍ବା ଅନ୍ୟ କୌଣସି ନିମନ୍ତ୍ରଣକୁ ନିମନ୍ତ୍ରିତ ହେବା ନ ହେବାରେ ମୁଁ ବେଶୀ କିଛି ଆସ୍ଥା ରଖେ ନାହିଁ, ମୋର ପ୍ରିୟ ମାତାଙ୍କ ଦ୍ୱାରା ମୋତେ ଶିକ୍ଷା ଦିଆ ଯାଇଥିଲା ଯେ, ଉଚ୍ଚପଦସ୍ଥ ଲୋକମାନଙ୍କ ସଂସ୍ପର୍ଶରେ ଆସି ସମ୍ମାନଲାଭ କରିବାକୁ ଚେଷ୍ଟା କର ନାହିଁ । କାରଣ ଗୋଲାପ ଗଛପାଖରେ ଥିବା ଘାସ ଫୁଲର ମଧୁର ସୁବାସ କିମ୍ବା ରଙ୍ଗ ଗ୍ରହଣ କରି ପାରେ ନାହିଁ ।"*

ଏହି ଭଳିରେ ମଧ୍ୟ ମଧୁସୂଦନଙ୍କ ମନ୍ତ୍ରିତ୍ୱ ଗ୍ରହଣ ବିଷୟରେ କେତୋଟି ଧାଡ଼ି ଅଛି, ଯାହା ଐତିହାସିକଙ୍କ ଦୃଷ୍ଟିରେ ମୂଲ୍ୟବାନ୍ ।

"ମୁଁ ଏ ଯେଉଁ କାର୍ଯ୍ୟରେ (ମନ୍ତ୍ରିତ୍ୱ) ଅଛି, ତାହା ମୁଁ ନିଜେ ଖୋଜି ନ ଥିଲି । ଦେଶର ଜଣେ ବରିଷ୍ଠ ବ୍ୟକ୍ତି ଗଭର୍ଣ୍ଣର ହେବା ପୂର୍ବରୁ

---

*"Personally I do not put any value to the invitation to dinners or other functions. From an early age I was taught by my dear mother not to seek honour by means of association with men of higher Statious of life. The grass arround the rose plant does not acquire either the sweet scent or the colour of the flower."

ମୋତେ ଯେପରି ଶକ୍ତିଶାଳୀ ନିବେଦନ କଲେ, ତାହାଦ୍ୱାରାହିଁ ମୁଁ ଏହା ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲି । ବିହାରର ବଡ଼ ବଡ଼ ଜମିଦାରମାନେ ମୋର ଜଣେ ବନ୍ଧୁ ପାଇଁ ଏହି ସ୍ଥାନ ଛାଡ଼ିଦେବାକୁ ମୋତେ ଅନୁରୋଧ କରିଥିଲେ । ମୁଁ ମୋର ଉପାୟରେ ତାହାଙ୍କୁ ସାହାଯ୍ୟ କରିଥିଲି ।"*

ମଧୁସୂଦନ ଜାତି ପାଇଁ ଅର୍ଥକୁ ସବୁବେଳେ ଏପରି ପଦାଘାତ କରି ଆସିଅଛନ୍ତି, ତାହାହିଁ ତାଙ୍କର ଜୀବନର ବିଶେଷତ୍ୱ । ମଧୁସୂଦନଙ୍କ ଭାଷାରେ କହିଲେ, "I have always looked upon gold as a handful of dust which a man might throw from his hands and still be a man—a being with a Divine spark." ଅର୍ଥାତ୍ ମୁଁ ସବୁବେଳେ ସୁନାକୁ ମୁଠାଏ ଧୂଳି ବୋଲି ଜ୍ଞାନ କରିଅଛି, ଯାହାକୁ ମନୁଷ୍ୟ ତା ହାତରୁ ସହଜରେ ଫୋପାଡ଼ି ଦେଇ ପାରେ; ତଥାପି ସେ ସ୍ୱର୍ଗୀୟ ଜ୍ୟୋତି ଯୋଗ ଏକ ମନୁଷ୍ୟ......"

ମଧୁସୂଦନଙ୍କ ମନ୍ତ୍ରିତ୍ୱ ପଦତ୍ୟାଗ ଏହାର ପ୍ରକୃଷ୍ଟ ପ୍ରମାଣ ।

---

*"I did not seek the office I am in now. I accepted it as it was accompanied by an eloquent and forcible appeal by an illustrious Countryman of mine just before he started to take charge of this office as governor. I had actually been requested by big land lords of Bihar to have the way for a friend of mine and I had in my humble way helped him."



LATE MR. MADHUSUDAN DAS C. I. E (Grand Old Man)

କୁଳବୃଦ୍ଧ
ମଧୁସୂଦନ

# ଷୋଡ଼ଶ ଅଧ୍ୟାୟ

## କୁଳବୃଦ୍ଧ

ମଧୁସୂଦନ ମନ୍ତ୍ରିତ୍ୱ ତ୍ୟାଗ କଲାବେଳକୁ ତାହାଙ୍କ ବୟସ ୭୫ ବର୍ଷ । ଉତ୍କଳ ଟ୍ୟାନେରୀକୁ କମ୍ପାନୀ କରିବାକୁ ଚେଷ୍ଟା କରି ସେ ବିଫଳ ହେଲେ । ଏଣେ ସ୍ତ୍ରୀ୍ମାନଙ୍କ ନେତୃତ୍ୱ ହରାଇଲେ । ତେଣେ ଋଣ ପରିଶୋଧ କରି ନ ପାରି ଦେବାଳିଆ ହେଲେ । ଏହି କେତୋଟି ବାକ୍ୟରେ କୁଳବୃଦ୍ଧଙ୍କ ଜୀବନୀ ବର୍ଣ୍ଣନା କରାଯାଇ ପାରେ ।

ମଧୁସୂଦନ ଉତ୍କଳ ଟ୍ୟାନେରୀକୁ କୌଣସି ଇଂରେଜ କମ୍ପାନୀକୁ ବିକି ଦେଇଥିଲେ ଲାଭବାନ୍ ହୋଇଥାଆନ୍ତେ, କିନ୍ତୁ ମଧୁସୂଦନଙ୍କ ପ୍ରାଣ ଅନ୍ୟ ଉପାଦାନରେ ଗଢ଼ା ହୋଇଥିଲା । ସେ ଜୀବନସାରା ଅଜସ୍ର ଧନ ଅର୍ଜନ କରି ଥିଲେ ମଧ୍ୟ ଫକୀର ହୋଇ ମରିବା ଭାଗ୍ୟ ତାଙ୍କର । ସାଧାରଣ ଜୀବନ ଓ ସ୍ୱଦେଶ ଶିଳ୍ପ ସଂଗଠନରେ ସେ ସବୁ ଟଙ୍କା ଖର୍ଚ୍ଚ କରି ଦେଇଥିଲେ । ସେ ଦେଶକାମ ଲାଗି କାହାଠାରୁ ଭିକ୍ଷା ମାଗି ନ ଥିଲେ । ସଞ୍ଚୟ ପ୍ରବୃତ୍ତି ନ ଥିଲା, ମାତ୍ର ସେ ମିତବ୍ୟୟୀ ନ ଥିଲେ । ତାଙ୍କର ସଞ୍ଚିତ ଧନ ଅନ୍ୟମାନେ ନେଇ ଧନୀ ହୋଇ ଗଲେ । ସେ ଅମିର ମିଜାଜର ଲୋକ ଥିଲେ । ଖର୍ଚ୍ଚ ପ୍ରତି ତାଙ୍କର ଖାତିର ନ ଥିଲା; ତେଣୁ ଋଣର ମାତ୍ରା ଅତି ବେଶୀ ବଢ଼ିଯାଇଥିଲା । ଉତ୍କଳ ଟ୍ୟାନେରୀ ନିଲାମ ହୋଇଗଲା । ମଧୁସୂଦନ ୧୯୨୭ ମସିହା ମାର୍ଚ୍ଚ ୨୧ ତାରିଖରେ ଦେବାଳିଆ ବା ଦୁଆଳିଆ ( In solvent ) ହେବାପାଇଁ ଦରଖାସ୍ତ କଲେ । ଏହି ମକଦ୍ଦମା ୧୯୨୭ ମସିହା ଅଗଷ୍ଟ ୪ ତାରିଖରେ ବିଚାର ହୋଇ ମଧୁସୂଦନଙ୍କ ଦୁଆଳିଆ ଦରଖାସ୍ତରେ ମଞ୍ଜୁର ଦିଆଗଲା । ସେତେବେଳେ ତାଙ୍କ ଋଣର ପରିମାଣ ୧୮୦୦୦୦ ଟଙ୍କା ଏବଂ ତାଙ୍କ ସମ୍ପତ୍ତିର ମୂଲ୍ୟ ୧୯୬୭୪ ଟଙ୍କା ମାତ୍ର ବୋଲି ସ୍ଥିର ହୋଇଥିଲା । ମଧୁସୂଦନଙ୍କ କଟକ କୋଠି, ଆସବାବପତ୍ର ଓ ତାଙ୍କ ପ୍ରିୟ ଗ୍ରନ୍ଥାଗାରଟି ନିଲାମ ହୋଇଗଲା । ମଧୁସୂଦନ ଦାଣ୍ଡର ଭିକାରୀ ହେଲେ । ଦେଶପ୍ରେମ ଓ ଦେଶସେବାର ଏହାଠାରୁ ବଳି ଆଉ କି ପୁରସ୍କାର ମିଳି ପାରେ ? ୧୯୩୨ ମସିହାର ଜାନୁଆରୀ ପହିଲା ତାରିଖରେ ମଧୁସୂଦନ ଦୁଆଳିଆରୁ ଛାଡ଼ ପାଇଲେ ।

ଦୁଆଳିଆ ହେଲାପରେ ମଧ୍ୟ ମଧୁସୂଦନ ହାଇକୋର୍ଟରେ ଓକାଲତି କରିବା ସକାଶେ ଏକ ବିଶେଷ ସୁବିଧା ପାଇଥିଲେ । କୁଳବୃଦ୍ଧ ମୃତ୍ୟୁପର୍ଯ୍ୟନ୍ତ ନିଜେ ନିଜର ସମସ୍ତ ଖର୍ଚ୍ଚ ରୋଜଗାର କରୁଥିଲେ । ସେ କାହାର ଆଶ୍ରୟ ଖୋଜି ନ ଥିଲେ ।

ବୃଦ୍ଧ ହୋଇଥିଲେ ମଧ୍ୟ ତାଙ୍କ କର୍ମତତ୍ପରତା ଊଣାପଡ଼ି ନ ଥିଲା । ମଧୁସୂଦନ ରାଷ୍ଟ୍ରନୀତିକ କାର୍ଯ୍ୟରୁ ବିଦାୟ ନେଇଥିଲେ ମଧ୍ୟ ତାଙ୍କୁ କୃତଜ୍ଞ ଭାବରେ ସମସ୍ତେ ଯଥେଷ୍ଟ ସମ୍ମାନ ଓ ଭକ୍ତି ଦେଖାଉଥିଲେ । ମଧୁସୂଦନ ଦୁଆଳିଆ ହେଲେ ମଧ୍ୟ ତାହାଙ୍କ ଦାନ ବନ୍ଦ ହୋଇ ନ ଥିଲା । ବହୁ କଲେଜ ଛାତ୍ର ତାହାଙ୍କ ଠାରୁ ସାହାଯ୍ୟ ପାଉଥିଲେ । ତାଙ୍କ ପାଖରୁ ସାହାଯ୍ୟ ପାଇଁ ଲୋକେ ଆସିଲେ ପାଖରେ ଥିବା ଲୋକେ ବିରକ୍ତ ହେଉଥିଲେ । କିନ୍ତୁ ସେ କହୁଥିଲେ "ଚିରକାଳ ତ ମୋଠାରୁ ସେମାନେ ଏହା ଦାବୀ କରି ଆସିଅଛନ୍ତି ।" ଦେଶର ନାନା ବିପଦବେଳେ ମଧ୍ୟ ମଧୁସୂଦନ ମୁକ୍ତହସ୍ତରେ ସାହାଯ୍ୟ ଦେଉଥିଲେ । ମଧୁସୂଦନଙ୍କର ଭ୍ରମଣ ଏକମାତ୍ର ବ୍ୟାୟାମ ଥିଲା । ସେ ସାଧାରଣ ସଭାରେ ଯୋଗ ଦେଲେ, ପଛରେ ଲୁଚିକରି ବସି ସବୁ ଶୁଣୁଥିଲେ ।

୧୯୨୫ ମସିହାରେ ଗାନ୍ଧୀ ମଧୁସୂଦନଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ମଧୁସୂଦନ ଚମଡ଼ା ବ୍ୟବସାୟ ପାଇଁ ଯେ ଏତେ ଭାବିଛନ୍ତି ଓ ପରଖ କରିଛନ୍ତି, ତାହା ଜାଣି ଗାନ୍ଧୀଜୀ ବିସ୍ମିତ ହୋଇ ଯାଇଥିଲେ । ଗାନ୍ଧୀଜୀ ଯେଉଁସବୁ ସଂଗଠନ-ମୂଳକ କାର୍ଯ୍ୟ ପରେ ଆରମ୍ଭ କରିଥିଲେ ମଧୁସୂଦନ ତାହା ୧୯୦୩ ମସିହାରୁ ଉତ୍କଳ ସମ୍ମିଳନୀ ଜରିଆରେ ପ୍ରଚୁର ଆରମ୍ଭ କରିଥିଲେ । ଗାନ୍ଧିଜୀ ଓଡ଼ିଶାରୁ ଫେରି ମଧୁସୂଦନ ଓ ତାହାଙ୍କ ଚମଡ଼ା ଶିଳ୍ପ ସମ୍ପର୍କରେ 'ଇୟଂ ଇଣ୍ଡିଆ' ପତ୍ରିକାରେ ଲେଖିଥିଲେ ।

ମଧୁସୂଦନଙ୍କର ସତ୍ୟବାଦୀ ସ୍କୁଲ ସହିତ ଗଭୀର ସମ୍ପର୍କ ଥିଲା । ସେ ପଣ୍ଡିତ ଗୋପବନ୍ଧୁଙ୍କୁ ଅତି ଆପଣାର ଲୋକଭଳି ଦେଖୁଥିଲେ ଓ ତାହାଙ୍କୁ ଅତି ସ୍ନେହ କରୁଥିଲେ । ସତ୍ୟବାଦୀ ଅନୁଷ୍ଠାନ ଥିଲାବେଳେ ଏହି ଅନୁଷ୍ଠାନକୁ ବିଶେଷ ସାହାଯ୍ୟ ଦେଉଥିଲେ ଓ ସହାନୁଭୂତି ଦେଖାଉଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ସଙ୍ଗେ ମଧୁସୂଦନଙ୍କର କିପରି ସମ୍ପର୍କ ଥିଲା, ତାହା ମଧୁସୂଦନଙ୍କ ନିଜ ଚିଠିରୁ ପ୍ରମାଣିତ ହେବ । ଏହି ଚିଠିଟି ମଧ୍ୟ "ସମାଜ" ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ଚିଠିରେ ସେ ଲେଖିଥିଲେ ।

"ମୁଁ ତୁମ୍ଭର ସ୍ୱାସ୍ଥ୍ୟପାଇଁ ବଡ଼ ଚିନ୍ତିତ । ମୁଁ କ୍ରମେ ହତାଶ ହୋଇ ଗଲିଣି ଏବଂ ଯେ କୌଣସି ଦିନ ମୋର ମୃତ୍ୟୁ ହୋଇପାରେ । ମୋର ମୃତ୍ୟୁ-ଶଯ୍ୟାରେ ଯାହା ସହିତ ମୁଁ ପ୍ରାର୍ଥନା କରିବାକୁ ଚାହେଁ, ତୁମ୍ଭେହିଁ ସେହି ଏକମାତ୍ର ବ୍ୟକ୍ତି । ତୁମ୍ଭ ସ୍ୱାସ୍ଥ୍ୟର ଯତ୍ନ ନିଅ । ସତ୍ୟବାଦୀ ସ୍କୁଲ ବିବରଣୀରେ ମଧୁସୂଦନଙ୍କ ବିଷୟରେ ଯାହା ଉଲ୍ଲେଖ ଅଛି, ତାହା ମଧ୍ୟ ଏଠାରେ ଉଦ୍ଧୃତ କରି ଦିଆ ଯାଉଅଛି । †

---

†"I am anxious for your health. I have grown desperate and may pass away any day, you are the

"ଆମ୍ଭେମାନେ ଆମ୍ଭମାନଙ୍କ କୁଳବୃଦ୍ଧ ମାନ୍ୟବର ମିଷ୍ଟର ଏମ୍. ଏସ୍. ଦାସ, ସି. ଅଇ. ଇ. ଙ୍କୁ ଆମ୍ଭମାନଙ୍କ ମଧ୍ୟରୁ ଜଣେ ବୋଲି ଗଣନା କରୁଁ; କାରଣ ସେ ଆମ୍ଭମାନଙ୍କ ସମସ୍ତ ପ୍ରଚେଷ୍ଟାରେ ତୀକ୍ଷ୍ଣ ଏବଂ ବିଶ୍ୱସ୍ତ ସହାନୁଭୂତି ପ୍ରକାଶ କରନ୍ତି । ତାହାଙ୍କ ବୃଦ୍ଧାବସ୍ଥା ଏବଂ ଅନ୍ୟାନ୍ୟ ଜରୁରୀ କାମ ସତ୍ତ୍ୱେ ସେ ଆମ୍ଭମାନଙ୍କ ଡାକରା କେବେ ବିଫଳ କରି ନାହାନ୍ତି । ଆମ୍ଭେମାନେ ଯେତେବେଳେ ସତ୍ୟବାଦୀରେ ତାହାଙ୍କ ଉପସ୍ଥିତି ଚାହୁଁଛୁ, ସେ ଆସିଛନ୍ତି ।" †

୧୯୨୦ ମସିହାରେ କଟକ କାଣ୍ଟନମେଣ୍ଟ୍ ରୋଡ଼ ପାଖରେ ଗୋଟିଏ ଗୋମାଂସଦୋକାନ ବସିବା ଯୋଗାଡ଼ ହେଉଥିଲା । ମଧୁସୂଦନ ହିନ୍ଦୁ ଜନସାଧାରଣଙ୍କ ତରଫରୁ ଏହା ବିରୁଦ୍ଧରେ ତୀବ୍ର ପ୍ରତିବାଦ କରିଥିଲେ ଏବଂ ଏଥିପାଇଁ ସରକାରଙ୍କୁ ମଧ୍ୟ ଗୋଟିଏ ସ୍ମାରକପତ୍ର ଦିଆଯାଇଥିଲା । ମଧୁସୂଦନ ଏହି ପ୍ରଚେଷ୍ଟାରେ ଜୟୀ ହୋଇଥିଲେ । ମଧୁସୂଦନ ତାହାଙ୍କ ବୃଦ୍ଧ ବୟସରେ ନାରୀମାନଙ୍କ ପାଇଁ ଆଉ ଏକ ସୁଯୋଗ ଏବଂ ସୁବିଧାପାଇଁ ଦାୟୀ । ପୂର୍ବେ ନାରୀମାନେ ଓକାଲତି କରିବାପାଇଁ ଅନୁମତି ପାଉ ନ ଥିଲେ ୧୮୭୯ ମସିହା ଲିଗାଲ ପ୍ରାକ୍ଟିସନର୍ସ ଆକ୍ଟର ଅଠର ଦଫାରେ ପୁରୁଷମାନେ କେବଳ ଓକିଲ ହେବାର ଅଧିକାର ପାଇ ପାରିଥିଲେ; ତେଣୁ ନାରୀମାନେ ଏହି ବ୍ୟବସାୟ ସୁବିଧାରୁ ବଞ୍ଚିତ ହୋଇଥିଲେ ।

ଶ୍ରୀମତୀ ସୁଧାଂଶୁବାଳା ହାଜରା ନାମକ ଜଣେ ବଙ୍ଗୀୟ ମହିଳା ମଧୁସୂଦନଙ୍କ ପ୍ରଯତ୍ନରେ କଲିକତା ବିଶ୍ୱବିଦ୍ୟାଳୟରୁ ଓକାଲତି ପାଶ୍ କରିଥିଲେ । ଏହି ମହିଳା ମଧୁସୂଦନଙ୍କର ଓକାଲତି ଖାନାରେ ଓକାଲତି ପଢି ପରୀକ୍ଷା ଦେଇ-

---

only person with whom I should like to pray in my death-bed. Take care of your health."

† We Count upon our grand old man the Honble Mr. M. S. Das, C. I. E. as one among us for the keen and sincere interest he always takes in our humble endeavour. Inspite of his old age and many pressing engagements he has never failed to respond to our call to come to Satyabadi whenever we needed his presence."

ଥିଲେ । ସେ କୌଣସି ଆଇନ ଶ୍ରେଣୀରେ ଯୋଗଦେଇ ନ ଥିଲେ । ଏହା ଏକ ବିଶେଷତ୍ୱ । ମାତ୍ର ସାର ଆଶୁତୋଷ ସୁଧାଂଶୁବାଳା ନାରୀ ବୋଲି ଏହି ସୁବିଧା ମଞ୍ଜୁର କରିଥିଲେ । କିନ୍ତୁ ବି. ଏଲ. ପାଶ କରି ମଧ୍ୟ ଏହି ମହିଳାଙ୍କୁ ଓକିଲାତି କରିବାକୁ ଅନୁମତି ମିଳି ନଥିଲା ।

ପ୍ରଥମେ ପାଟଣା ହାଇକୋର୍ଟରେ ଓକିଲ ହେବାକୁ ସୁଧାଂଶୁବାଳା ଦରଖାସ୍ତ କଲେ । କିନ୍ତୁ ଏହି ମହିଳାଙ୍କ ଆବେଦନପତ୍ର ଖାରଜ ହୋଇଗଲା । ପ୍ରିଭି କାଉନ୍‌ସିଲରେ ମଧ୍ୟ ଏହି ରାୟ ବିରୁଦ୍ଧରେ ଅପିଲ ହୋଇଥିଲା ଏବଂ ତତ୍କାଳୀନ ଭାଇସ ରୟ ଲର୍ଡ଼ ରିଡିଂଙ୍କ ନିକଟରେ ମଧ୍ୟ ସୁଧାଂଶୁବାଳା ଏକ ସ୍ମାରକପତ୍ର ଦାଖଲ କରିଥିଲେ । ପରେ ସାର୍ ହରିସିଂହ ଗୌରଙ୍କ ପ୍ରଯତ୍ନରେ ଏବଂ ମଧୁସୂଦନଙ୍କ ଚେଷ୍ଟାରେ ୧୯୨୨ ମସିହା ଅଗଷ୍ଟ ୪୦ ତାରିଖରେ କେନ୍ଦ୍ର ଆସେମ୍ବ୍ଲିରେ ୧୮୭୯ ମସିହା ଲିଗାଲ ପ୍ରାକ୍‌ଟିସନରସ୍ ଆକ୍‌ଟର ୪୦ର ଦଫା ସଂଶୋଧିତ ହୋଇଥିଲା ଏବଂ ନାରୀମାନେ ଓକାଲତିପାଇଁ ଅନୁମତି ପାଇଥିଲେ । ମଧୁସୂଦନ ଡକ୍‌ଟର ଗୌରଙ୍କ ପାଖକୁ ଏ ସମ୍ପର୍କରେ ଏକ ବ୍ୟକ୍ତିଗତ ଚିଠି ଲେଖି ଏହି ଆଇନ ସଂଶୋଧନ ପାଇଁ ଅନୁରୋଧ କରିଥିଲେ । ଏହାର ଚେଷ୍ଟାରେ ସୁଧାଂଶୁବାଳା ଓକିଲ ହେଲେ । କିନ୍ତୁ ସମସ୍ତ ନାରୀମାନଙ୍କ ସକାଶେ ଏକ ସୁବର୍ଣ୍ଣ ସୁଯୋଗ ମଧ୍ୟ ମିଳିଲା । ସେହିଦିନଠାରୁ ନାରୀମାନେ ଅବାଧରେ ଓକିଲ ବ୍ୟବସାୟରେ ଯୋଗ ଦେଇ ପାରୁଅଛନ୍ତି ।

ମଧୁସୂଦନ ବୃଦ୍ଧାବସ୍ଥାରେ ବେଶୀ କିଛି ଖାଇ ପାରୁ ନ ଥିଲେ । ଦିନଭର ମୋଟ ଗୃଉଳ ଏବଂ କେତେଖଣ୍ଡ ଅମୃତଭଣ୍ଡା ସିଝା ମାତ୍ର ତାଙ୍କର ଆହାର ଥିଲା । ସକାଳେ ଓ ସନ୍ଧ୍ୟାରେ ଗୁ ଏବଂ ବିସ୍କୁଟ ଖାଉଥିଲେ । ତାଙ୍କର ଗୁଡ଼ାଖୁ ଟାଣିବା ଅମଳ ଥିଲା । ହୁକା ତେଣୁ ତାଙ୍କ ବୈଠକଖାନାରେ ସର୍ବଦା ଦେଖିବାକୁ ମିଳୁଥିଲା । ହାଡ଼ିବନ୍ଧୁ (ହାଡ଼ିଆ) ନାମକ ଜଣେ ତାଙ୍କର ବିଶ୍ୱସ୍ତ ଭୃତ୍ୟ ଥିଲା । ସେ ମଧୁସୂଦନଙ୍କ ପାଖରେ ପ୍ରାୟ ତ୍ରିଶ ବର୍ଷରୁ ଅଧିକକାଳ କାମ କରିଥିଲା । ସେହି ବୃଦ୍ଧ ମୃତ୍ୟୁ ପର୍ଯ୍ୟନ୍ତ ମଧୁସୂଦନଙ୍କ ପାଖରେ ରହିଥିଲା । ଏହି ବୃଦ୍ଧ ଅବସ୍ଥାରେ ମଧୁସୂଦନଙ୍କ ପାଖକୁ କେହି ଗଲେ ସେ ଅନେକ ସମୟ ଯାଏଁ କଥାବାର୍ତ୍ତା କରୁଥିଲେ । ବୁଲିବା ତାଙ୍କର ଏକମାତ୍ର ବ୍ୟାୟାମ ଥିଲା । ଅନେକ ସମୟରେ ଏହି ବୃଦ୍ଧାବସ୍ଥାରେ ଦେଖାଯାଏ ଯେ, ମଧୁସୂଦନ ଆଗେ ଆଗେ ପାଦରେ ଚାଲିଛନ୍ତି ଓ ତାଙ୍କ ପଛରେ ଗୋଟିଏ ଘୋଡ଼ାଗାଡ଼ି ଖାଲି ଯାଉଅଛି । କ୍ଲାନ୍ତ ହେଲେ ମଧୁସୂଦନ ଗାଡ଼ିରେ ବସି ଘରକୁ ଫେରନ୍ତି ।

୧୯୨୪ ମସିହା ଜାନୁଆରୀ ୭ ତାରିଖରେ ମଧୁସୂଦନ ସାଇମନ କମିଶନ ଆଗରେ ଏକ ସ୍ମାରକପତ୍ର ଦେଇଥିଲେ । ତହିଁରେ

ସେ ଦାବୀ କରିଥିଲେ ଯେ, ବିହାର, ଓଡ଼ିଶା ପ୍ରଦେଶ ଥିବାଯାଏ, ଅନ୍ତତଃ ଓଡ଼ିଶା ପାଇଁ ଜଣେ ମନ୍ତ୍ରୀ ରହନ୍ତୁ । ସେଥିରେ ସେ ଆଉ ଏକ ବିଷୟ ପ୍ରତି କମିଶନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଭାରତରେ ଏକ ପ୍ରଦେଶରେ ଭିନ୍ନ ଗୋଷ୍ଠୀ (Race) ବା ଜାତି (Nationality)ର ଲୋକ ରହିଥିଲେ । କିପରି ଏହି ଦୁଇ ଜାତି ମଧ୍ୟରେ ଶାସନକୁ ଅକାଡ଼ଆରି କରିବାକୁ ସଙ୍ଘର୍ଷ ଲାଗେ, ତାହା ଦର୍ଶାଇଥିଲେ । ଶେଷରେ ସେ ଲେଖିଥିଲେ ଭାରତୀୟଙ୍କ ଦୃଷ୍ଟିରୁ ଭାରତକୁ ଦେଖିବା ସମୟ ଆସିଅଛି । ମଧୁସୂଦନ ଲେଖିଥିଲେ—

"ଭାରତୀୟ ଦୃଷ୍ଟିରୁ ଭାରତକୁ ଦେଖିବା ଉଚିତ । ଏହି ଦୃଷ୍ଟିକୋଣ ବହୁ ପାର୍ଥକ୍ୟ ସୃଷ୍ଟି କରେ । ଇଂଲଣ୍ଡରେ ଜଣେ ସୂର୍ଯ୍ୟକୁ କୁହୁଡ଼ି ଦ୍ୱାରା ଆଚ୍ଛନ୍ନ ହେବା ଦେଖିପାରେ; କିନ୍ତୁ ଭାରତରେ ଦେଖାଯିବ ଯେ, ଦେଶ ସୂର୍ଯ୍ୟାଲୋକରେ ପ୍ଲାବିତ ।"†

୧୯୩୧ ମସିହାରେ ଓଡ଼ନେଲ କମିଟି ଆସିବାବେଳେ ମଧୁସୂଦନ ଏହି କମିଟି ଆଗରେ ସାକ୍ଷ୍ୟ ଦେଇଥିଲେ ଏବଂ ନିଜେ ଠାଠା କୋମ୍ପାନୀକୁ ଯାଇ- ଥିଲେ । ୧୯୩୧ ମସିହା ନଭେମ୍ବର କୋଡ଼ିଏ ତାରିଖରେ ସେ ଯାମସେଦପୁର ଯାଇଥିଲେ । ସେଠାରେ ସାଧାରଣ ସଭା ମଧ୍ୟ କରିଥିଲେ । ମାତ୍ର ସିଂହଭୂମି ଓଡ଼ିଶାରେ ମିଶିବାର ଅନୁକୂଳ ଅବସ୍ଥା ସୃଷ୍ଟି ହୋଇ ନ ପାରିବାରୁ ସେ କ୍ଷାନ୍ତ ହୋଇଥିଲେ । ଅନ୍ୟମାନେ କମିଟି ଆଗରେ ସାକ୍ଷ୍ୟପାଇଁ ତଥ୍ୟ ସଂଗ୍ରହ କାର୍ଯ୍ୟରେ ଲାଗିଥିଲେ ।

୧୯୩୨ ମସିହାରେ ଗାନ୍ଧୀଜୀ କିପରି ଭାବିଲେ ଯେ, ମଧୁସୂଦନ ମରି- ଗଲେଣି । ୧୯୩୨ ମସିହା ନଭେମ୍ବର ହରିଜନରେ ସେ ଚମଡ଼ା ବ୍ୟବସାୟ ସମ୍ପର୍କରେ ଲେଖୁଁ ଲେଖୁଁ ସ୍ୱର୍ଗୀୟ ମଧୁସୂଦନ ଦାସ ( The late Madhusudan Das ) ବୋଲି ଲେଖିଥିଲେ । ତା ପରେ ଗାନ୍ଧୀଜୀ ତାହାଙ୍କ ଭ୍ରମ ବୁଝି ପାରି କ୍ଷମା ମାଗିଥିଲେ । ମଧୁସୂଦନ ଏହା ବୃଦ୍ଧାବସ୍ଥାରେ ପ୍ରାୟ ବିଶ୍ରାମ ନେଇଥିଲେ । ପରେ ସେ ରେଭେନ୍ସା କଲେଜର ପଶ୍ଚିମ ପାଖ

---

†"It is necessury now to see India from India. The stand point of view makes a great defference. One may see in England the sun envoloped in a mist which the man in India sees the Country flooded with sunshine."

ହଷ୍ଟେଲରେ ଗୋଟିଏ ସଭାରେ ବକ୍ତୃତା ଦେବାକୁ ଆସିଥିଲେ । ଏହି ସମୟରେ ଏକ ସନ୍ଧ୍ୟା ଭୋଜିରେ ତାହାଙ୍କୁ ଓଡ଼ିଶାର ଭୂତପୂର୍ବ କମିଶନର ଫିଲପ ପଚାରିଲେ ।,

"ମୁଁ ଭାବିଥିଲି, ଆପଣ ମଲେଣି (I thought you were dead Mr. Das) ?

"ତାହା ହେଲେ ଆପଣ ମିଷ୍ଟର ଦାସଙ୍କ ଭୂତଙ୍କୁ ଦେଖୁଛନ୍ତି, (Then you are seeing the ghost of Mr Das).

ମଧୁସୂଦନ ଜୀବନର ଶେଷ ଅବସ୍ଥା ପର୍ଯ୍ୟନ୍ତ କଟେରୀକୁ ଆସୁଥିଲେ । ତାହାଙ୍କୁ ଓକିଲମାନେ ଯଥେଷ୍ଟ ସମ୍ମାନ, ଭକ୍ତି ଏବଂ ସହାନୁଭୂତି ଦେଖାଉ ଥିଲେ । ମଧୁସୂଦନ ବେଳେ ବେଳେ ଓକାଲତିଖାନାରେ ବସି ତାହାଙ୍କ ଜୀବନର ବହୁ ଅତୀତ କଥା କହୁଥିଲେ ।

ସେ ଯାହାଙ୍କଠାରୁ ଶିକ୍ଷା ଲାଭ କରିଥିଲେ, ତାହାଙ୍କୁ ଅତି ଭକ୍ତି କରୁ-ଥିଲେ । ଗୌରୀଶଙ୍କର ତାଙ୍କର କିଛି ଦିନ ପାଇଁ ମାଷ୍ଟର ବା ଶିକ୍ଷକ ଥିଲେ । ମଧୁସୂଦନ, ଗୌରୀଶଙ୍କର ଓଡ଼ିଶାରୁ ସେ କାଳରେ ଭାରତୀୟ କଂଗ୍ରେସରେ ମଧ୍ୟ ଯୋଗ ଦେଉଥିଲେ । ୧୯୧୧ ମସିହାରେ କଲିକତାରେ ପଣ୍ଡିତ ବିଷନ୍ ନାରାୟଣଙ୍କ ସଭାପତିତ୍ୱରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ମଧୁସୁଦନ ସ୍ୱଦେଶୀ ଆନ୍ଦୋଳନ ଓ ଅସ୍ଥାୟୀ ବନ୍ଦୋବସ୍ତ କରିବାକୁ ପ୍ରସ୍ତାବ ଆଣିଥିଲେ । ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇ ଥିଲା । ୧୯୧୯ ମସିହାରେ ଯେତେବେଳେ ଗୌରୀଶଙ୍କର ମରିଥିଲେ, ସେତେବେଳେ ମଧୁସୂଦନ ସମସ୍ତଙ୍କ ଆପତ୍ତି ସତ୍ତ୍ୱେ ଶ୍ମଶାନକୁ ଶବ ସଙ୍ଗରେ ଯାଇଥିଲେ । ୧୯୨୨ ମସିହାରେ ପ୍ରିନ୍ସ ଅଫ୍ ୱେଲସ୍ ଭାରତକୁ ଆସିଲା ବେଳେ ମଧୁସୁଦନ ସ୍ୱଦେଶୀ ପୋଷାକ ପିନ୍ଧି ପ୍ରିନ୍ସ ଅଫ୍ ୱେଲସଙ୍କୁ ଦେଖା କରିଥିଲେ । ୧୯୧୩ ମସିହାରେ ଜମିଦାରୀପ୍ରଥା ଲୋପ ପାଇଁ ଯେଉଁ ପ୍ରଜା ପ୍ରତିନିଧି ସଭା ଗଠନ କରାଯାଇଥିଲା, ତାହାର ସମ୍ପାଦକ ନିଜେ ସେ ହୋଇଥିଲେ । କଟକ କଚେରୀ-ମାନଙ୍କରେ ଆଗେ ରାୟ ଏବଂ ସାକ୍ଷୀ ଜମାନବନ୍ଦୀ ହାତରେ ଲେଖା ହୋଇ ପକ୍ଷମାନଙ୍କୁ ମିଳୁଥିଲା । ତାହାଙ୍କ ପ୍ରଚେଷ୍ଟାରେ ଛାପଇ ହେବା ପ୍ରଥା ପ୍ରଚଳିତ ହୋଇଥିଲା ।

କଟକରେ ୧୯୩୦ ରେ ଛିନ୍ନମସ୍ତା ଉତ୍କଳ ଜନନୀଙ୍କର ଏକ ପୂଜା ଆୟୋଜନ ହୋଇଥିଲା । ସେ ଉପଲକ୍ଷରେ କଟକ ସହରରେ ଏକ ବିରାଟ ପଟୁଆର ହୋଇଥିଲା ଏବଂ ସେହି ବିରାଟ ଜନସଭାରେ ମଧୁସୂଦନ ସଭାପତି ହୋଇଥିଲେ ।



ଓଡ଼ିଶା ଶାସନ ବ୍ୟବସ୍ଥା କମିଟିରେ ମଧୁସୂଦନ

୧୯୩୩ ମସିହା ଫେବ୍ରୁଆରୀ ୧୩ ତାରିଖରେ ସେ ଓଡ଼ିଆ ନେତୃ-ସମ୍ମିଳନୀରେ ବକ୍ତୃତା ଦେଇଥିଲେ ।

ଓଡ଼ିଶା ପ୍ରଦେଶ ଗଠନ ପରେ ମଧୁସୂଦନ ହୁବହୁ କମିଟିର କୌଣସି କାର୍ଯ୍ୟରେ ଯୋଗ ଦେବା ପୂର୍ବରୁ ମୃତ୍ୟୁ ବରଣ କରିଥିଲେ ।

କୁଳବୃଦ୍ଧଙ୍କୁ ଥରେ ଜଣେ ଉତ୍ସାହୀ ଯୁବକ ସାହିତ୍ୟିକ ତାଙ୍କ ପ୍ରଣୀତ କବିତା ବହି ଉପହାର ଦେଇ ସାହିତ୍ୟ ବିଷୟରେ କଥାବାର୍ତ୍ତା କରିବାରୁ ମଧୁସୂଦନ କହିଥିଲେ, "ସାହିତ୍ୟରେ ଜାତି ବଞ୍ଚିବ ନାହିଁ । ଜାତିକୁ ବଞ୍ଚିବାକୁ ହେଲେ କଳ୍ପନା ଯଥେଷ୍ଟ ନୁହେଁ । ରୁଟି ଦରକାର, ଭାତ ଦରକାର । ତମ ସାହିତ୍ୟ କ'ଣ ତା ଦେଇ ପାରିବ ? ତମର ଏହି ବହିକୁ ଯଦି ଜଣେ ବଣିଆକୁ ଦିଅ, ସେ କଣ କରିବ ଜାଣ ? ସେ କ'ଣ ଏ ବହିରୁ କବିତା ପଢ଼ିବ ଭାବିଚ ? ସେ ଏହାର ପୃଷ୍ଠା ଚିରି ଗ୍ରାହକମାନଙ୍କୁ ଜିନିଷ ପୁଡ଼ାଇ ବିକ୍ରୀ କରିବ ? ତମେ କ'ଣ ରାଗିଲ ? ସମସ୍ତଙ୍କୁ ଚିଡ଼ାଇବା ମୋର ଅଭ୍ୟାସ । ଇଂଲଣ୍ଡରେ ଯେତେବେଳେ ସେକ୍ସପିୟର, ସେଲି ପ୍ରଭୃତି ବଡ଼ ବଡ଼ କବି ଥିଲେ, ସେତେବେଳେ ଇଂଲଣ୍ଡର ଉନ୍ନତି ହୋଇ ନ ଥିଲା । ଉନ୍ନତି ହେଲା ବହୁତ ପରେ । ସାହିତ୍ୟ ବା ଖାଲି କଳ୍ପନା ଦେଶକୁ ଉଠାଇ ପାରିବ ନାହିଁ । କବି ଯଦି ନଡ଼ିଆ ଗଛକୁ ଦେଖେ, କ'ଣ କରେ ? କବିତା ତିଆରି କରେ; କିନ୍ତୁ ବ୍ୟବସାୟୀ ଦେଖିଲେ ଭାବେ ଯେ, ସେ କିପରି ସେଥିରୁ କତା କାଢ଼ିବ, କିପରି ଜାଲକାଠି ତିଆରି କରି ବଜାରରେ ବିକି ଦୁଇ ପଇସା ରୋଜଗାର କରିବ । ସେଇ ଏକା ଜାତେ ।"

ମଧୁସୂଦନଙ୍କର ସାହିତ୍ୟ ପ୍ରତି ଏହି ଚରମ ବିପରୀତ ମତ, ତାଙ୍କର ପ୍ରକୃତ ମତ ନୁହେଁ । ମାତ୍ର ଯୁବକମାନେ କେବଳ କଳ୍ପନାବିଳାସୀ ନ ହୋଇ ବାସ୍ତବ ଆର୍ଥିକ ଓ ରାଷ୍ଟ୍ରନୀତିକ ଜୀବନ ବିଷୟରେ ଚିନ୍ତା କରନ୍ତୁ ଓ ସେହି ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରନ୍ତୁ, ସେଥିପାଇଁ ସେ ସେହି ଯୁବ-ସାହିତ୍ୟିକଙ୍କୁ ସେପରି କହିଥିଲେ । ତଥାପି ଏ ଗୋଟିଏ ଦିଗ; ଯାହା ସାହିତ୍ୟିକ ତଥା ସଂସ୍କୃତିପ୍ରେମିକମାନଙ୍କର ମନେ ରଖିବା ଉଚିତ । ଇଂରାଜୀରେ ଗୋଟିଏ ପ୍ରବଚନ ଅଛି, "ଯେଉଁଠି ଅନ୍ତର୍ଦୃଷ୍ଟି ନାହିଁ, ସେଠାରେହିଁ ଲୋକେ ମୃତ୍ୟୁମୁଖରେ ପଡ଼ନ୍ତି ।" (Where their is no vision, people perish.)

ସାହିତ୍ୟର ଜାତି ପ୍ରତି କିପରି ଗୁରୁଦାୟିତ୍ୱ ଓ କର୍ତ୍ତବ୍ୟ ଅଛି, ତାହା ମଧୁସୂଦନ ଭୁଲି ନ ଥିଲେ, ତାହା ସେ ଅନ୍ୟତ୍ର ମଧ୍ୟ କହିଅଛନ୍ତି । ମଧୁସୂଦନ ତାହାଙ୍କ ଉତ୍କଳ ସମ୍ମିଳନୀ ବକ୍ତୃତାରେ ଏ ସମ୍ପର୍କରେ ୧୯୧୬ ମସିହାରେ

କହିଥିଲେ, "ମିଲ୍‌ଟନ ଶେଷକାଳକୁ ଅନାହାରରେ ପ୍ରାଣତ୍ୟାଗ କଲେ, ସେକ୍ସପିୟର ଥିଏଟର ଯାତ୍ରୀଙ୍କ ଯୋତା ଧରି ପେଟ ପାଉଥିଲେ। ବର୍ତ୍ତମାନ ବିଲାତର ଲୋକେ କହନ୍ତି, ଆମର ମିଲ୍‌ଟନ ଏବଂ ଆମର ସେକ୍ସପିୟର। କାଳିଦାସ ପାଲିଙ୍କି ବୋହୁଥିଲେ, ସେତେବେଳେ କେହି କିଛି ନ ଥିଲେ, ମାତ୍ର ବର୍ତ୍ତମାନ କହୁଅଛନ୍ତି, ଆମର କାଳିଦାସ। ଏହା ଜାତିର ରୀତି ଅଟେ।" ଏହି ସମ୍ପର୍କରେ ପୁଣି ସେ କହିଥିଲେ, "ମନେ କରନ୍ତୁ, ଉପେନ୍ଦ୍ର ଭଞ୍ଜ ଏହିଠାରେ ଜନ୍ମଗ୍ରହଣ କରିଥିଲେ। କୋଟି କୋଟି ଓଡ଼ିଆ ତାଙ୍କୁ ଆମ ଜାତିର କବି ବୋଲି କହୁଅଛନ୍ତି। କିନ୍ତୁ ଉପେନ୍ଦ୍ରଙ୍କ ପିତା ମାତାଙ୍କର ନାମ ତାଙ୍କ ବାଲ୍ୟ-କାଳର କଥା ଅଧିକାଂଶ କହି ପାରିବେ ନାହିଁ। ମାତ୍ର ସମସ୍ତେ କହନ୍ତି, ଆମର ଉପେନ୍ଦ୍ର ଭଞ୍ଜ। ମୁଁ ପ୍ରଶ୍ନ କରେ, "ତୁମର କିପରି ହେଲେ?" ଜାତି କହନ୍ତି; ଜାତିର ଯେ ଗଣ୍ୟ ସୁସନ୍ତାନ ଜାତିର ଏବଂ କୁସନ୍ତାନ ବାପ ମା'ଙ୍କର। ଏହା ଜାତିର ଗୌରବ ଅଟେ।"

ମଧୁସୂଦନଙ୍କ ବୃଦ୍ଧାବସ୍ଥାକାଳରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଉଦ୍ଧାର ପାଇଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରଚେଷ୍ଟାରେ "ପ୍ରାଚୀ ସମିତି" ନାମକ ଏକ ସମିତି ଗଠନ କରାଯାଇଥିଲା। ସେହି କାର୍ଯ୍ୟ ସମ୍ପର୍କରେ ମଧୁସୂଦନ ପ୍ରୀତ ହୋଇ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ; ସେହି ଚିଠିରେ ମଧୁସୂଦନ ଅତୀତ ଜାତୀୟ ଗୌରବ ସମ୍ପର୍କରେ ଯାହା ଲେଖିଥିଲେ, ଆଜି ତାହା ମଧ୍ୟ ମଧୁସୂଦନଙ୍କ ନିଜ ଜୀବନ ପ୍ରତି ପ୍ରଯୁଜ୍ୟ। ତେଣୁ ଏଠାରେ ତାହା ଉଦ୍ଧୃତ କରି ଦିଆ ଯାଉଅଛି—

"ଯେଉଁ ଉତ୍କଳ-ସୂର୍ଯ୍ୟ ଭାରତୀୟ ଆକାଶକୁ ଆଲୋକିତ କରିଥିଲା, ତାହା ଅସ୍ତ ହୋଇଅଛି। ଏହା କାଳବେଳାପୁର ତଳକୁ ଯାଇଅଛି। ମାତ୍ର ଦର୍ଶକ ପଶ୍ଚିମ ଆକାଶରେ ପ୍ରତିଫଳିତ ବର୍ଣ୍ଣସମ୍ଭାର ଦେଖି ପାରନ୍ତି। ଆମ୍ଭେମାନେ ସମସ୍ତେ ଆଶା କରୁଛୁଁ, ସେ ବୃହତ୍ ସୂର୍ଯ୍ୟ ପୁଣି ଉଦୟ ହୁଅନ୍ତୁ, ଏକ ନୂତନ ଜାତୀୟ ଜୀବନର ପ୍ରଭାତ ଦିଅନ୍ତୁ।

ଯୁବ-ଛାତ୍ର ଏହି ନୂତନ ଜାତୀୟ ଜୀବନର ଉଷା ଦେଖିବାକୁ ଇଚ୍ଛା ପ୍ରକାଶ ପୂର୍ବରୁ ପଶ୍ଚିମାକାଶର ସୁନ୍ଦର ବର୍ଣ୍ଣସମ୍ଭାରକୁ ପ୍ରେମ, ଉପଭୋଗ ଏବଂ ସମ୍ମାନ ସହ ଦେଖି ଶିଖିବା ଉଚିତ।"†

---

†"The Utkal luminary which illuminated the Indian firmament has set, and has gone down the




ମଧୁସୂଦନଙ୍କ ଶୋଇବା ଘର

ଏହି ବାର୍ତ୍ତାର ଆଉ ଟିପ୍ପଣୀ ପ୍ରୟୋଜନ ନାହିଁ । ବୁଢ଼ା ଫକୀରମୋହନ ହାଙ୍କ ପରିହାସପୂର୍ଣ୍ଣ କବିତାରେ ଲେଖିଥିଲେ—

"ଆସ Mr. M. S. କରେ Shake Hand
ଉଜ୍ଜ୍ୱଳ ହୋଇଛି ତୁମ୍ଭ ଯୋଗେ Motherland."

ସେତିକି ନୁହେଁ, 'ଜାତୀୟ ସଙ୍ଗୀତ'ରେ ଦାମୋଦର ପଟ୍ଟନାୟକ ଲେଖିଥିଲେ—

"ଗୋଟିଏ ତବ ଜୀବନ କୋଟିଏ କୁବେର ଧନ,
ତୁଳନେ ନୋହେ ସମାନ ଗୁଣିଗଣରତନ ।"

ମଧୁସୂଦନ ନିଜେ ବୃଦ୍ଧାବସ୍ଥା ସମ୍ପର୍କରେ ତାହାଙ୍କ ଅସମ୍ପୂର୍ଣ୍ଣ ଆତ୍ମଚରିତରେ ହା ଲେଖିଥିଲେ, ତାହା ଏଠାରେ ଉଦ୍ଧୃତ କରି ଅଧ୍ୟାୟ ସମାପ୍ତ କରାଯିବ । ଧୁସୂଦନଙ୍କୁ ପିଲାଦିନେ ୧୦୮ ବର୍ଷ ବଞ୍ଚିବାକୁ କଲ୍ୟାଣ କରାଯାଉଥିଲା । ଧୁସୂଦନ ଲେଖିଛନ୍ତି, "ମୁଁ ବହୁ ବଢ଼ା ବୁଢ଼ୀ ଦେଖିଥିଲି । କିନ୍ତୁ ବୃଦ୍ଧାବସ୍ଥା 'ଣ ମୁଁ ଜାଣି ନ ଥିଲି । ସୁସ୍ଥ ଶରୀରରେ ବୟସ ଅଦୃଶ୍ୟ ଭାବରେ କର୍ମଣ୍ୟତା ଆଣେ । କିନ୍ତୁ ଯେଉଁ ମଣିଷର ୪୦ ବର୍ଷ ହେଲା, ସର୍ବଦା ଆରୋଗ୍ୟ- ନ ରୋଗ ସଙ୍ଗୀ, ବୟସ ସେହି ଲୋକର ଶରୀର ଉପରେ ଏକ ପ୍ରକାଣ୍ଡ ପ୍ରଳୟ ଷ୍ଟି କରେ । ଆତ୍ମାର ଅଗ୍ରଗତି ପଥରେ ଦେହ ଏକ ପ୍ରତିବନ୍ଧକ ହୋଇ

---

orizon. But an observer can see the rich colours eflected in the Western sky. We all wish to see he great luminary rise once more and give us the lawn of a new national life. * * *

The beautiful colours in the western sky must be fully appreciated, loved and admired before the outhful mind is aglow with a desire to see the lawn of a new national life."

ଛିଡ଼ା ହୁଏ । ଆତ୍ମାର ଉଚ୍ଚାକାଂକ୍ଷା ପରିପୂର୍ଣ୍ଣ ପଥରେ ଏହା ଏକ ବାଧା ସୃଷ୍ଟି କରେ ।”†

———

†“I had seen any number of old men and women but I did not realise what old age means. In a healthy constitution age insidiously introduces its infirmities. But in a person who has a constant companion of an incurable disease for nearly forty yars, time makes havoc on the physical Constitution. The body becomes a drag on the souls onward march. It is an obstruction to the fulfilment of the soul's ambition.”

# ସପ୍ତଦଶ ଅଧ୍ୟାୟ

## ବ୍ୟକ୍ତିତ୍ୱ ଓ ନୀତି

( ୧ )

"ଉତ୍କଳ ଜନନୀ ଯୋଗ୍ୟତମ ସୁତ
ଶ୍ରୀ ମଧୁସୂଦନ ସର୍ବଗୁଣେ ଯୁତ ।"

[ ଗଙ୍ଗାଧର ]

ବ୍ୟକ୍ତିତ୍ୱ କଣ ? ମନୁଷ୍ୟତାର ବିକାଶ ହିଁ ବ୍ୟକ୍ତିତ୍ୱ । ମଧୁସୂଦନଙ୍କ ବ୍ୟକ୍ତିତ୍ୱକୁ କେହି କେହି ଝଙ୍କାଳିଆ ବରଗଛ ସଙ୍ଗେ ତୁଳନା କରନ୍ତି । କେହି କେହି ଏହାକୁ ଏକ ନିର୍ଜନ ସମୁଦ୍ର ପ୍ରାନ୍ତରସ୍ଥିତ ଆଲୋକସ୍ତମ୍ଭ ସଙ୍ଗେ ତୁଳନା କରନ୍ତି । ସେ ଯାହାହେଉ, ମଧୁସୂଦନଙ୍କ ଜୀବନହିଁ ଉତ୍କଳର ଅର୍ଦ୍ଧଶତାବ୍ଦୀବ୍ୟାପୀ ସାଧାରଣ ଜୀବନ । ମଧୁସୂଦନ ଉତ୍କଳରେ ଜାତୀୟତା ଏବଂ ଜାତୀୟ ଜୀବନର ସ୍ରଷ୍ଟା । ଲୋକଶାସନ (Democracy) ଓ ଲୋକ ଆନ୍ଦୋଳନର ମହତ୍ତ୍ୱ ପ୍ରଥମେ ମଧୁସୂଦନହିଁ ଓଡ଼ିଶାରେ ପ୍ରତିଷ୍ଠା କରିଥିଲେ । ଓଡ଼ିଆଭାଷୀ ସମସ୍ତ ଅଞ୍ଚଳକୁ ଏକ ଶାସନାଧୀନ କରିବା ବା ଭାଷାସୂତ୍ରରେ ପ୍ରଦେଶ ବା ରାଷ୍ଟ୍ର ଗଠନନୀତିର ପ୍ରଥମ କର୍ତ୍ତା ମଧୁସୂଦନ । ସ୍ୱଦେଶୀ ଶିଳ୍ପର ପୁନର୍ଗଠନ ଓ ଜାତୀୟ ସଂସ୍କୃତିର ସଂଗଠନ ତାହାଙ୍କର ପ୍ରଥମ ଯୋଜନା । ଏହି ସବୁ କାର୍ଯ୍ୟରେ ସେ ଭାରତରେ ପ୍ରଥମ । ଗାନ୍ଧିଜୀ କର୍ମକ୍ଷେତ୍ରକୁ ଆସିଲା ବେଳକୁ ମଧୁସୂଦନ କୁଳବୃଦ୍ଧ । ମଧୁସୂଦନ ପ୍ରକୃତ ଜନନେତା ଥିଲେ । ତାଙ୍କ ବ୍ୟକ୍ତିତ୍ୱର ସବୁଠାରୁ ବଡ଼ ଗୁଣ ହେଉଛି ମୌଳିକତା । ମଧୁସୂଦନ କାହାର ଆଦେଶପାଳକ ନ ଥିଲେ । ତାଙ୍କ ନୀତି ଓ ଚିନ୍ତାରେ ଉତ୍କଳ ପ୍ରଭାବିତ ହୋଇଥିଲା ।

( ୨ )

ମଧୁସୂଦନ ମନୁଷ୍ୟଜୀବନକୁ ବଡ଼ ଆଦର ଓ ଶ୍ରଦ୍ଧାଚକ୍ଷୁରେ ଦେଖୁଥିଲେ । ସେ ସର୍ବଦା ସମାଜର ସୁଖ ଦୁଃଖରେ ସମଭାଗୀ ହେଉଥିଲେ । ନିଜକୁ ସମ୍ପୂର୍ଣ୍ଣ ଭୁଲି ଦେଶ ଓ ଜାତି ଲାଗି କାର୍ଯ୍ୟ କରିବା ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା । ସେ ମହିମବର୍ତ୍ତୀ ଭଳି ନିଜେ ଜଳି ଦେଶ ତଥା ଜାତିକୁ ଆଲୋକ ଦେବାକୁ ଚାହୁଁଥିଲେ । ବ୍ୟକ୍ତିଗତ ସୁଖ, ସ୍ୱାଚ୍ଛନ୍ଦ୍ୟ ତାଙ୍କ ଦୃଷ୍ଟିରେ ଅତି ନିମ୍ନ ସ୍ଥାନରେ ଥିଲା । ସ୍ୱାର୍ଥ ଏକ ସାଧାରଣ ପ୍ରକୃତି । ଜନନେତା

ବା ଯେଉଁମାନେ ଦେଶ ପାଇଁ ନେତୃତ୍ୱ ଦେବେ, ସେମାନେ ସ୍ୱାର୍ଥ ଭଳି ଅତି ସାଧାରଣ ସ୍ତରରୁ ଉପରକୁ ଉଠିବା ନିହାତି ପ୍ରୟୋଜନ । ମଧୁସୂଦନ ତାହାଙ୍କ ଜୀବନ ଓ କାର୍ଯ୍ୟରେ ଏହା ସ୍ପଷ୍ଟତର କରି ଯାଇଅଛନ୍ତି । ତେଣୁ ପରାର୍ଥେ ଜୀବନ ଯାପିବାରେ ହିଁ ମାନବତ୍ୱର ବିଶେଷତ୍ୱ ।

କିନ୍ତୁ ମଧୁସୂଦନ ସନ୍ୟାସୀ ନ ଥିଲେ । ସେ ନିଜର ସ୍ତ୍ରୀଙ୍କ ମୃତ୍ୟୁ ପରେ ସନ୍ୟାସ ବରଣ ନ କଲେ ମଧ୍ୟ, ସେ ଏହି ସମାଜରେ ନିର୍ଲିପ୍ତ ଭାବରେ ରହି କାର୍ଯ୍ୟ କରି ଯାଇଅଛନ୍ତି । ସେ କାର୍ଯ୍ୟ ଜାତି ଓ ଦେଶ ପାଇଁ । ଜନନୀ-ଠାରୁ ଜନ୍ମଭୂମି ଉତ୍କଳ ତାଙ୍କର ପ୍ରିୟତମ ସ୍ୱପ୍ନ ଥିଲା । ମଧୁସୂଦନ ନିଜର ସ୍ୱପ୍ନ ଓ ଭାବଧାରାରେ ଜାତିକୁ ମନ୍ତୁରିବାକୁ ସର୍ବଦା ଚେଷ୍ଟିତ ଥିଲେ । ଦେଶ ଯେ ତାହାଙ୍କ ଚିନ୍ତାଧାରା ସମସ୍ତ କାର୍ଯ୍ୟରେ ପରିଣତ କରିଥିଲା, ଏମନ୍ତ ନୁହେ । ମାତ୍ର ଭାବୁକ ଭାବରେ ମଧୁସୂଦନ ଭାରତୀୟ ଇତିହାସରେ ଏକ ସମୁଜ୍ଜ୍ୱଳ ଜ୍ୟୋତି । ସେ ଜଣେ ନିଷ୍ଠାପର ସ୍ୱାଧୀନ ଭାବୁକ । ମଧୁସୂଦନ ମାନବଜୀବନ ଓ ବ୍ୟକ୍ତିତ୍ୱ ସମ୍ପର୍କରେ ଯାହା ଭାବୁଥିଲେ, ତାହା ପ୍ରଥମେ ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ । ମଧୁସୂଦନ ଏ ସମ୍ପର୍କରେ ଅତି ସ୍ପଷ୍ଟଭାବରେ ଲିପିବଦ୍ଧ କରି ଯାଇଅଛନ୍ତି ଯେ, ମନୁଷ୍ୟ କେବଳ ଦେହ କିମ୍ବା ମନରେ ଗଠିତ ନୁହେଁ । ସେ ହିନ୍ଦୁ ଦର୍ଶନରେ ପରମାତ୍ମା ଓ ଆତ୍ମବାଦରେ ବିଶ୍ୱାସୀ ଥିଲେ । ଏହା ବ୍ୟତୀତ ତାଙ୍କର ଧାରଣା ଥିଲା ଯେ ମନୁଷ୍ୟ ଏକ ବିଶିଷ୍ଟ କର୍ମ ସାଧନ କରିବାକୁ ସଂସାରକୁ ଆସେ । ମଧୁସୂଦନ ଏ ସମ୍ପର୍କରେ ଯାହା ଲେଖିଥିଲେ, ତାହା ଏଠାରେ ଉଦ୍ଧୃତ କରି ଦିଆଯାଉ ଅଛି—

"ପ୍ରତ୍ୟେକ ମଣିଷ ଏକ ଆତ୍ମାର ସଂଗଠିତ ଶକ୍ତି ଏବଂ ଏହା ଏକ ସ୍ୱର୍ଗୀୟ କାର୍ଯ୍ୟାଦେଶ ( Divine mission ) ଘେନି ଜନ୍ମେ ।" ମଧୁସୂଦନ ଏହି ଆତ୍ମଶକ୍ତି ବା ଆଧ୍ୟାତ୍ମିକ ମହାଶକ୍ତିରେ ପୂର୍ଣ୍ଣ ବିଶ୍ୱାସୀ ଥିଲେ । "The powers of a soul, which is a sprit, are great."; ତେଣୁ ମଧୁସୂଦନଙ୍କ ଜୀବନର ବିଶ୍ୱାସ ଏବଂ ମୂଳଭିତ୍ତି ଏହି ଆତ୍ମ-ବିଶ୍ୱାସରେ ପର୍ଯ୍ୟବସିତ ଥିଲା ।

( ୩ )

ପୁଣି ମଧୁସୂଦନଙ୍କ ବ୍ୟକ୍ତିତ୍ୱ ବିକାଶର ଏକ ବିଶ୍ଳେଷଣ କରିବାକୁ ହେଲେ ଆମ୍ଭମାନଙ୍କୁ ତାହାଙ୍କ ପରିବାର ପ୍ରତି ଦୃଷ୍ଟିପାତ କରିବାକୁ ହେବ । "ଆଲୋ ସଖି ! ଆପଣା ମହତ ଆପେ ରଖି ।" ମଧୁସୂଦନ ନିଜ ମାଙ୍କଠାରୁ ଏହା ଶିଖିଥିଲେ । ଶିଶୁ ଅବସ୍ଥାରୁ ସେ 'ମହତ୍ୱ' ଆଦର୍ଶ ଏକ

ଚରମ ତ୍ୟାଗ ସ୍ୱୀକାରେ ପ୍ରସ୍ତୁତ ହୋଇଥିଲେ । ଏହା ଶିଶୁ ଅବସ୍ଥାରୁ ତାଙ୍କ ମନରେ ଏକ "ଅସାଧାରଣ ଆଦର୍ଶ" ରୋପଣ କରିଥିଲା । ସେ ଗଭୀର ଭାବରେ ଅନୁଭବ କରିଥିଲେ ଯେ 'ସତ୍ୟରକ୍ଷାର ପରମ୍ପରା' ତାହାଙ୍କୁ ରକ୍ଷା କରିବାକୁ ପଡ଼ିବ । ସତ୍ୟରକ୍ଷାର ପରମ୍ପରା କଣ ? ପରମ୍ପରା ହେଉଛି ଆଦର୍ଶ ଲାଗି ଅବିଚଳିତ ଚିତ୍ତରେ ନିଜକୁ ବଳୀ ଦେଇଦେବା । ସତ୍ୟ କଣ କରିଥିଲେ ? ସମାଜର ଏକ ପ୍ରଚଳିତ ଆଦର୍ଶ ଆଗରେ ସେ ହସି ହସି ନିଜକୁ ବଳି ଦେଇଥିଲେ । ସେ ସେହି ପ୍ରଥାର ଭଲ, ମନ୍ଦ ଦିଗ ବିଚାର କରି ନ ଥିଲେ ।

ମଧୁସୂଦନଙ୍କ ବ୍ୟକ୍ତିତ୍ୱ ତେଣୁ ତାଙ୍କ ପରିବାରର ପରମ୍ପରାରୁ ଅଧା ଜନ୍ମ ଓ ଅଧା ଗଢ଼ା । ତାହା ତାହାଙ୍କ ସାଧନା ଓ ଜୀବନବ୍ୟାପୀ ସଂଗ୍ରାମର ଫଳ । ମଧୁସୂଦନ ନିଜେ କହିଅଛନ୍ତି, "ମୁଁ ମୋର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମଧ୍ୟ କର୍ତ୍ତବ୍ୟ ପଥରୁ ବିଚଳିତ ହୋଇ ସତ୍ୟରକ୍ଷାକୁ କଳଙ୍କିତ ନ କରିବାକୁ ଏକ ପୁଣ୍ୟ କାମ ବୋଲି ଭାବୁଥିଲି । ସତ୍ୟରକ୍ଷା ମୋତେ ଚଳାଇଥିଲା ଏବଂ ଦୀକ୍ଷିତ କରିଥିଲା । ମୁଁ ମୋ ଗାଁର ବେଷ୍ଟନୀରେ ଗର୍ବ ଅନୁଭବ କରୁଥିଲି ଏବଂ ପୃଥିବୀରେ ଏହା ତୀର୍ଥଭୂଇଁ ବୋଲି ଭାବୁଥିଲି । ମୁଁ ବର୍ତ୍ତମାନ ଯାହା ହୋଇଛି, ତାହା ମୋତେ ସତ୍ୟରକ୍ଷା କରିଥିଲା ଏବଂ ମୋର ସମସ୍ତ ଅସୁବିଧାରେ ଏହା ମୋତେ ଧୈର୍ଯ୍ୟ ଦେଇଥିଲା ।"

ତେଣୁ ଏହି ଉଦ୍ଧୃତାଂଶରୁ ସହଜରେ ଜଣା ପଡ଼ିବ ଯେ ମଧୁସୂଦନଙ୍କ ପ୍ରଥମ ପ୍ରେରଣା ଏହି ସତ୍ୟରକ୍ଷା । କ୍ରମେ ଆଉରି ପ୍ରକଟିତ ହେବ ଯେ ଏହି ବଂଶର ଅତୀତରୁ ମଧୁସୂଦନ ଦେଶର ଅତୀତକୁ ଯାଇଥିଲେ । ମଧୁସୂଦନ ନିଜେ କହି ଅଛନ୍ତି, "ଅଧିକାଂଶ ଲୋକଙ୍କର ଜୀବନ ପରିବାରମଙ୍ଗଳଚେଷ୍ଟା ଉନ୍ନତିର ଶେଷ ସୀମା ପରିଦୃଷ୍ଟ ହୁଏ । କିନ୍ତୁ ଯେଉଁମାନେ ମନୁଷ୍ୟଜୀବନର ପ୍ରକୃତ ଉଦ୍ଦେଶ୍ୟ ବୁଝି ଅଛନ୍ତି, ସେମାନଙ୍କ ପକ୍ଷରେ ନିଜପରିବାରର ସୁଖ ସାଧନ ଜୀବନର ଶେଷ ସୀମା ନୁହେଁ, ଏ ପ୍ରକାର ବ୍ୟକ୍ତିମାନେ ସମାଜର ମଙ୍ଗଳ, ଜାତିର ମଙ୍ଗଳ ଏବଂ କେହି କେହି ପୃଥିବୀର ସମସ୍ତ ଜାତିର ମଙ୍ଗଳ ସାଧନରେ ଆପଣାର ଜୀବନ ଉତ୍ସର୍ଗ କରନ୍ତି ।"

ତେଣୁ ମଧୁସୂଦନ "ସର୍ବଦା ସର୍ବନିମ୍ନ ସୋପାନ ଜୀବନ" ପରିବର୍ତ୍ତିରେ ବୃହତ୍ତର ଜୀବନ ଗଢ଼ିବାକୁ ବ୍ୟଗ୍ର ଥିଲେ । "ମନୁଷ୍ୟଜନ୍ମର ଉଦ୍ଦେଶ୍ୟ ଆତ୍ମସୁଖ ଉପାର୍ଜ୍ଜନ ନୁହେଁ, ମନୁଷ୍ୟ ନିଜ ସୁଖ ସମ୍ପାଦନରେ ଜୀବନ ଯାପନ କରିବ, ଏହା ଜଗତ୍‌ପିତାଙ୍କର ଉଦ୍ଦେଶ୍ୟ ନୁହେଁ, ମୋ ଜୀବନ କେବଳ ମୋ ସକାଶେ ଈଶ୍ୱର ଦେଇ ନାହାନ୍ତି । ପରର ଉପକାର ନିମନ୍ତେ ମନୁଷ୍ୟର

ଜୀବନ ହୋଇଅଛି । ସଂସାର ମାୟା ବୋଲି ଯାହା ଲୋକେ ସଚରାଚର କହନ୍ତି, ତାହାର ଅର୍ଥ ଏହି କି ଯେଉଁମାନଙ୍କୁ ଆମ୍ଭେମାନେ ଆପଣାର ବୋଲି ଜ୍ଞାନ କରୁଅଛୁଁ, ସେମାନେ ବାସ୍ତବରେ ପର ଅଟନ୍ତି । ପରଙ୍କ ସକାଶେ ମନୁଷ୍ୟ ଜୀବନ ଧାରଣ କରୁଅଛି । ପ୍ରକୃତିର ପ୍ରତି ଦୃଷ୍ଟିପାତ କରି ଦେଖିବ, ପ୍ରକୃତି ଜୀବନ ପରୋପକାର ପାଇଁ ।" "ତୋ ଜୀବନ ପର ସକାଶେ । ତାହା ମୋହର ସ୍ତନ୍ୟପାନରୁ ଶିକ୍ଷା କର" ବୋଲି ଯେପରି ମା ପ୍ରତ୍ୟେକ ଶିଶୁକୁ କହୁଛଏ । ମଧୁସୂଦନ ଯେପରି କହି ଅଛନ୍ତି, "ମୁଁ ଜଣେ ଉତ୍କଳ ସନ୍ତାନ । ମୋହର ଲକ୍ଷ ଲକ୍ଷ ଭାଇ ଭଉଣୀ ଅଛନ୍ତି, ସେମାନଙ୍କର ଜୀବନରେ ମୋହର ଜୀବନ ମିଶି ଯାଉ—ଲୀନ ହୋଇଯାଉ । ଏକ ଜୀବନ ହୋଇ ଜାତୀୟ ଜୀବନ ରୂପେ ପ୍ରବଳ ବେଗରେ ପ୍ରବାହିତ ହେଉ । ସମୁଦ୍ରର ଜଳରାଶି ଏକ ବର୍ଣ୍ଣ ଧାରଣ କରିଅଛି । ଶତ ଶତ ନଦୀ ଦେଶର ଜଳରାଶି ନାନା ରଙ୍ଗ ଧାରଣ କରି ସମୁଦ୍ର ନିକଟରେ ପହଞ୍ଚିଲେ ସମୁଦ୍ର କହେ, ତୁମ୍ଭର ନିଜ ନିଜ ରଙ୍ଗ ଛାଡ଼, ଏହି ଏକ ରଙ୍ଗ ଧାରଣ କର, ତାହାହେଲେ ମୋ ଅଙ୍ଗରେ ମିଶି ପାରିବ ଏବଂ ମୋ ସଙ୍ଗରେ ମିଶିଲେ ମୋର ବଳ-ପରାକ୍ରମ ଲାଭ କରିବ ।"

ଏ ମଧ୍ୟ ଅତି ଉଚ୍ଚ ଆଦର୍ଶ ! ମଧୁସୂଦନ ଆଉରି ତାଙ୍କ ଚିନ୍ତାଧାରାକୁ ସ୍ପଷ୍ଟତର କରି କହିଅଛନ୍ତି :—

( ୪ )

"ଜାତିର ଉନ୍ନତି ଜାତିର ଗୌରବ ବିଷୟ, ଯେତେବେଳେ ଅବକାଶ ପାଅ, ଚିନ୍ତା କର । ରୋଜ ଦଶ ମିନଟ ମାତ୍ର ଚିନ୍ତା କଲେ ଦେଖିବ, ସେ ଚିନ୍ତାରେ ମନରେ ସୁଖ ଲାଭ ହେବ ଏବଂ ସେ ସୁଖ ଲାଭ ହେତୁ ଦଶମିନଟକୁ କୋଡ଼ିଏ ମିନଟ୍ କରିବାକୁ ଇଚ୍ଛା ହେବ । ଜାତୀୟ ବିଷୟ ଚିନ୍ତା କରିବାଦ୍ୱାରା କ୍ରମେ ଜାତୀୟ ଜୀବନ ହୃଦୟରେ ଜାଗ୍ରତ ହେବ ।" ଦେଶରେ ଏହି ଜାତୀୟ ଜୀବନ କିପରି ବୃଦ୍ଧି ପାଇବ ମଧୁସୂଦନ ଆହୁରି କହି ଅଛନ୍ତି,

"ଆମ୍ଭମାନଙ୍କର ଜାତୀୟ ଜୀବନ ବଡ଼ ଶିଥିଳ । ତାକୁ ଉତ୍ତେଜିତ କରି ବ୍ୟକ୍ତିଗତ ଜୀବନ ପରି ବଳବାନ୍ କରିବାକୁ ହେବ ।" ଏହାହିଁ ମଧୁସୂଦନଙ୍କ ବ୍ୟକ୍ତିତ୍ୱର କଷ୍ଟିକାଠି । ସେଥିପାଇଁ ସେ ଉତ୍କଳର ପ୍ରଥମ ଜାତୀୟ ପୀଠ— ଉତ୍କଳ ସମ୍ମିଳନୀ ଗଢ଼ିଥିଲେ—'ଏହାହିଁ ସମ୍ମିଳନୀର ଉଦ୍ଦେଶ୍ୟ ।"

"ଜାତିର ଯୋଗ୍ୟ ସନ୍ତାନ ଜାତିର ଏବଂ କୁସନ୍ତାନ ବାପ ମାଆଙ୍କର ।" ମଧୁସୂଦନଙ୍କ ଜୀବନ ଏହାର ଶ୍ରେଷ୍ଠ ପ୍ରମାଣ । ତେଣୁ ମଧୁସୂଦନ ଆଜି

ଜାତିର ସନ୍ତାନ । ଜାତୀୟ ଓ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ମଧୁସୂଦନ ଏପରି ଲେଖିଅଛନ୍ତି;

"ମନୁଷ୍ୟ ବିବାହ କଲେ ଏବଂ ସନ୍ତାନ ସନ୍ତତି ହେଲେ ପରର ମଙ୍ଗଳ ଚିନ୍ତା, ପରର ଦୁଃଖ ଚିନ୍ତା କ୍ରମେ ବୃଦ୍ଧି ପାଏ । ସେ ଆପେ କଷ୍ଟ ସ୍ୱୀକାର କରି, ଛିନ୍ନ ବସ୍ତ୍ର ପରିଧାନ କରି, ଅବଶ୍ୟକ ହେଲେ ଅନାହାରରେ ଥାଇ ସ୍ତ୍ରୀ ଓ ସନ୍ତାନ ସନ୍ତତିମାନଙ୍କୁ ସୁଖରେ ରଖିବାର ଚେଷ୍ଟା କରେ । ଏଥିରୁ ଦେଖାଯାଏ, ସ୍ୱାର୍ଥ-ପରତାର ହ୍ରାସ, ପରୋପକାରିତାର ବୃଦ୍ଧି ହେଉଛି ମନୁଷ୍ୟ ଜୀବନର ଈଶ୍ୱରକୃତ ନିୟମ ।"

ମଧୁସୂଦନ ଉପରି ବ୍ୟକ୍ତିଗତ ଜୀବନ ପରିତ୍ୟାଗ କରି ଜାତୀୟ ଜୀବନର ଅଭିବୃଦ୍ଧି ପାଇଁ ଆଶା ଭିଡ଼ିଥିଲେ, ତାହା ପୁଣି ସ୍ପଷ୍ଟରୂପେ ପ୍ରତିଫଳିତ ହୋଇଛି ।

"ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନରୁ ପୃଥକ୍ । ଜାତି ପାଇଁ ବାଟରେ ଭିକ୍ଷା କରି ମରିବି, ଏହିପରି ପଣ ନ କରିବା ପର୍ଯ୍ୟନ୍ତ ଜାତୀୟ ଜୀବନର ଅଙ୍କୁର ହେବ ନାହିଁ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପର । ସ୍ୱାର୍ଥପରତା ଯେତେ ବୃଦ୍ଧି ହେବ ଜାତୀୟ ଜୀବନ ସେତିକି କମିବ । ସ୍ୱାର୍ଥପରତା ଯେତେ କମିଯିବ ଜାତୀୟଜୀବନ ସେତିକି ବୃଦ୍ଧି ହେବ ।"

ପ୍ରତ୍ୟେକଙ୍କର ଦୁଇ ଗୋଟି ଜୀବନ । (୧) ବ୍ୟକ୍ତିଗତ ଓ (୨) ଜାତୀୟ ଜୀବନ । ମୁଁ ଖାଉଛି, ପିନ୍ଧୁଛି, ଅର୍ଥ ଉପାର୍ଜନ କରୁଛି, ମୋ ପିଲା ବଡ଼ ଲୋକ ହେବ, ଏ ଇଚ୍ଛା ବ୍ୟକ୍ତିଗତ ଜୀବନର ଇଚ୍ଛା । ମାତ୍ର ଜାତୀୟ ଜୀବନ ତାହା ନୁହେଁ । ଉଦାହରଣ ଏଇ—ଯେବେ ଜଣେ କହେ ଓଡ଼ିଆଙ୍କୁ ମାର, ତେବେ ସମସ୍ତଙ୍କର ରକ୍ତ ଗରମ ହେବ । ଏଥିରୁ ଜାତୀୟ ଜୀବନ ଅଛି ବୋଲି ପରିଚୟ ମିଳିଲା ।"

( ୬ )

ବ୍ୟକ୍ତି ଓ ଜାତି ଏହି ଦୁଇ ଶବ୍ଦର ବହୁ ବ୍ୟବହାର ଆମ୍ଭେମାନେ ମଧୁସୂଦନଙ୍କ ସାହିତ୍ୟରେ ପାଉଁ । ଏହି ଚିନ୍ତାଧାରା ସମସାମୟିକ ଜାତୀୟ ଜୀବନ ଗଠନରେ ବହୁ ସାହାଯ୍ୟ କରିଅଛି । ମଧୁସୂଦନଙ୍କ ପୂର୍ବରୁ ଉତ୍କଳରେ ଲୋକ-ଶାସନମୂଳକ (democratic) ଜାତୀୟ ଜୀବନ ନ ଥିଲା । କାରଣ ଲୋକଶାସନ ଉତ୍କଳ ତଥା ଭାରତରେ ବହୁଗତାବ୍ଦୀ ଧରି ଅଜଣା ଥିଲା । ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତ ଲୋକେ ନ ଥିଲେ । ପ୍ରାଚୀନ ଭାରତର "ଗଣ" ଓ

"ଗଣତନ୍ତ୍ର" ମଧ୍ୟ ଲୋକଚକ୍ଷୁକୁ ଆସି ନ ଥିଲା । ସମ୍ପୂର୍ଣ୍ଣ ଭାବରେ ଜାତୀୟ ଭାବରେ ଉଦ୍‌ବୁଦ୍ଧ ହେବା ପାଇଁ ପରିସ୍ଥିତି, ପୀଠ କିମ୍ବା ପ୍ରୟୋଜନ ପରାଧୀନ ଦେଶରେ ମଧୁସୂଦନ ପ୍ରଥମେ ଉତ୍କଳରେ ସୃଷ୍ଟି କଲେ । ତେଣୁ ଜାତୀୟ ଜୀବନର ମୂଳପତ୍ତନ ମଧୁସୂଦନଙ୍କ ଆବିର୍ଭାବରେ ।

"ରୋଜ ଖାଇବା ବେଳ ପୂର୍ବରୁ ଆପଣାକୁ ପ୍ରଶ୍ନ ପଚାରିବ,

"ମୁଁ ଆଜି ଜାତୀୟ ଜୀବନ ସମ୍ବନ୍ଧରେ କ'ଣ କରିଛି ?" ଜଣେ ଡେପୁଟିଙ୍କୁ ସେ ପଚାରିଲେ, "ତୁମ୍ଭେ ଜାତୀୟ ଜୀବନ ସମ୍ବନ୍ଧରେ କ'ଣ କରିଅଛ ?"

ସେ କହିଲେ, "ମୋର ସମୟ ନାହିଁ ।" ମୁଁ କହିଲି, "ବାଠ ଘାଠ, କଚେରୀରେ ଯାହାକୁ ଦେଖୁଛ ଓ ମଧ୍ୟ ତୁମ୍ଭର ନିଜ ସ୍ତ୍ରୀକୁ ଏ ସମ୍ବନ୍ଧରେ କିଛି କହିବାକୁ ସମୟ ପାଉ ନାହିଁ କି ?" ଏ ପିଲାମାନେ ଯେପରି ଜାତିର ଗୌରବ ବୃଦ୍ଧି କରି ପାରନ୍ତି ସେହିପରି ତୁ ତାଙ୍କୁ ବଢ଼ାଇବୁ," ଯେବେ ପ୍ରତ୍ୟେକ ଲୋକ ପ୍ରତିଦିନ ପାଞ୍ଚମିନିଟ୍ ସମୟ ଏଥିରେ ବ୍ୟୟ କରନ୍ତି ତେବେ ଦଶ ପନ୍ଦର ବର୍ଷ ମଧ୍ୟରେ ଜାତି ବଦଳି ଯିବ ।"

ଅନ୍ୟତ୍ର ମଧୁସୂଦନ କହିଥିଲେ—"ଶେଷରେ ଏହି ଜୀବନ ତୁମ୍ଭର ହୃଦୟ ସ୍ଥଳରୁ ଆରମ୍ଭ କରି ସମୟରେ ରକ୍ତ ମାଂସ ଏବଂ ସମସ୍ତ ଶରୀରକୁ ଜାତୀୟ ଜୀବନରେ ଉତ୍ତେଜିତ କରିବ । ଏହି ଭାବ ସମସ୍ତ ଉତ୍କଳବାସିଙ୍କ ମନରେ ଜନ୍ମାଇବାର ପ୍ରଥମେ ଚେଷ୍ଟା କର । ସହସ୍ର ସହସ୍ର ଉତ୍କଳ ସନ୍ତାନଙ୍କର କର୍ଣ୍ଣ କୁହରରେ ଜାତୀୟ ଜୀବନର ମନ୍ତ୍ର ପ୍ରବେଶ କରୁ ଏବଂ ସହସ୍ର ସହସ୍ର ହୃଦୟ ସେହି ମନ୍ତ୍ରଦ୍ୱାରା ଉତ୍ତେଜିତ ହେଉ ।"

"ଜାତୀୟ ଜୀବନକୁ ସବଳ କରିବାକୁ ସର୍ବଦା ଚେଷ୍ଟା କର । କେହି ଜୀବନର ଗତିକୁ ରୋଧ କରି ପାରିବ ନାହିଁ, ଜାତୀୟ ଜୀବନ ଏ ପ୍ରକାର ଯେ ପ୍ରତି ମନୁଷ୍ୟଠାରେ ତାହା ରହିଅଛି ।" "ଜାତୀୟ ଜୀବନ ସଂସାରର କିମ୍ବା ସମାଜର ପୁରସ୍କାର ପ୍ରତ୍ୟାଶାରେ କାର୍ଯ୍ୟ କରେ ନାହିଁ ।"

"ଯେତେବେଳେ ମୃତ୍ୟୁଶଯ୍ୟାରେ ସଂସାର ସହିତ ମୋହର ସମ୍ପର୍କ ଛିନ୍ନ ହେବ ଏବଂ ମୋହର ଆତ୍ମାକୁ ଈଶ୍ବର ପଚାରିବେ, "ତୁ ତୋର ଜାତି ପ୍ରତି କର୍ତ୍ତବ୍ୟ କର୍ମ କି ପ୍ରକାର କରିଅଛୁ ? ସେତେବେଳେ ମୋହର ଆତ୍ମା ଯଦି କହିପାରେ ଯଥାସାଧ୍ୟ ମୁଁ ମୋହର ଜାତିର ସେବା କରିବାକୁ ଚେଷ୍ଟା କରିଅଛି , ତାହାହେଲେ ଦୀନ ଦରିଦ୍ର ଅବସ୍ଥାରେ ଏବଂ ଜନଶୂନ୍ୟ ସ୍ଥାନରେ ମୋହର ଶଯ୍ୟା ଥିଲେ ମଧ୍ୟ ମୁଁ ଆପଣାକୁ ସୁଖୀ ଜ୍ଞାନ କରିବ ।"

ଏ ସମସ୍ତ ମଧୁସୂଦନଙ୍କ ପ୍ରାଣର କଥା । ଏହି ସବୁ ଉଦ୍ଧୃତ ବାକ୍ୟରୁ ତାଙ୍କ ବ୍ୟକ୍ତିତ୍ୱର ବିଶିଷ୍ଟତ୍ୱ ସହଜରେ ଉପଲବ୍ଧ ହେବ ।

(୬)

ମଧୁସୂଦନ ଏହିପରି ଜାତୀୟ ଜୀବନ ଗଢ଼ିବା ପାଇଁ ଉଦ୍‌ବୋଧନ ପାଇଲେ ଜାତି ଇତିହାସରୁ । ଓଡ଼ିଶାର ଗତ ଗୌରବର ମର୍ମସ୍ପର୍ଶୀ କାହାଣୀ ତାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା ଏବଂ ତାଙ୍କୁ କର୍ମ-ସ୍ରୋତରେ ଭାସି ଯିବାକୁ ନୂତନ ପ୍ରେରଣା ଦେଇଥିଲା । ପ୍ରଥମେ ଆମ୍ଭେମାନେ ଦେଖିଥିଲେ ଯେ ନିଜ ବଂଶର ଅତୀତ ତାଙ୍କ ନିଜ ଜୀବନକୁ କିପରି ପ୍ରଭାବିତ କରି ପାରିଥିଲା । ଦ୍ୱିତୀୟରେ ଜାତିର ଅତୀତରୁ ମଧ୍ୟ ମଧୁସୂଦନ ମହା ପ୍ରେରଣା ପାଇଥିଲେ, ସେଥିପାଇଁ ସେ ଗାଇଥିଲେ:—

"ଜାତି ଇତିହାସ ଜାତିର ନିର୍ଝର
ତହିଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରରୁ ନୀର ପିଉଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।"

ଅତୀତର ଉଦ୍‌ବୋଧନ ତାଙ୍କୁ ପ୍ରେରଣା ଯୋଗାଇଛି ସତ, ମାତ୍ର ସେ 'ବର୍ତ୍ତମାନ'ର କର୍ମୀ, ନେତା । ଅତୀତର ଏହି ପ୍ରେରଣା ମଧ୍ୟରେ ମଧୁସୂଦନ ତାଙ୍କ ଜାତୀୟତା ପୀଠରେ ପୂଜା କରିଛନ୍ତି "ବୀର ପ୍ରସବିନୀ" "କୋଟିସୁତମାତା' ଉତ୍କଳ ଜନନୀକୁ । ଦେଶ ମାତା । ମା ଭଳି ଜନ୍ମଭୂମି ଜୀବନ୍ତ ଏବଂ ସେ ସନ୍ତାନକୁ ଡାକନ୍ତି ଏବଂ ସନ୍ତାନ ସେହି ସ୍ନେହମୟୀ ମାଆଙ୍କ ଦର୍ଶନ ପାଇଁ "ମାଆ ମାଆ ବୋଲି" କେତେ ଖୋଜେ । ମଧୁସୂଦନଙ୍କ ଏହି ଜାତି ଓ ଜାତୀୟତା ଏବଂ ଜନ୍ମଭୂମି ପରିକଳ୍ପନା ଜାତିର ପ୍ରାଣକୁ ଗଭୀରଭାବରେ ସ୍ପର୍ଶ କରିଥିଲା । ସେଥିପାଇଁ ମଧୁସୂଦନଙ୍କ ନେତୃତ୍ୱର ପ୍ରତିଷ୍ଠା ଜାତିର ମର୍ମସ୍ଥଳୀରେ । ମଧୁସୂଦନ ଅତି ପ୍ରତିଭାଶାଳୀ ବ୍ୟକ୍ତି । ଏହାଙ୍କ ତାଙ୍କର ସକଳ କାର୍ଯ୍ୟରେ ପରିସ୍ଫୁଟ । ନୂଆ ମୌଳିକ ଚିନ୍ତା ଏବଂ ଜାତିକୁ ବଞ୍ଚାଇବା ଲାଗି ନୂଆ ନୂଆ ଶିଳ୍ପଯୋଜନା ତାଙ୍କର ବ୍ୟକ୍ତିତ୍ୱର କଷ୍ଟିକାଠି ।

(୭)

ନେତାର ଗୁଣ କ'ଣ ? ନେତାର ଅନ୍ତର୍ଦୃଷ୍ଟି (Vision) ଜାତିର ସକଳ ନିଶ୍ଚେଷ୍ଟତା ଏବଂ ଆଳସ୍ୟ ମଧ୍ୟରେ ଆଦର୍ଶର ଦୀପ୍ତି ଭଳି ଜାଳିବ । ପୁଣି ନେତାର ଅନ୍ତର୍ଦୃଷ୍ଟି ଓ ଉତ୍ସାହ ସଂକ୍ରାମକ ରୋଗ ଭଳି ଜାତିକୁ ସଂକ୍ରାମିତ କରିବ । ଏହିଠାରେହିଁ ନେତୃତ୍ୱର ବାହାଦୁରୀ । ଏହି ଉତ୍ସାହ ସୃଷ୍ଟି ପାଇଁ

କବି, ନେତା ଜନ୍ମ ହୁଅନ୍ତି । ସେମାନଙ୍କ ସ୍ୱପ୍ନ ସେବା ରୂପରେ ଜାତି ଛବିକୁ ଶ୍ୟାମଳ ଏବଂ ସତେଜ କରେ । ଦେଶର ସର୍ବବିଧ ଗଠନମୂଳକ ଏବଂ ଜାତି-ଗଠନକାରୀ ସ୍ୱପ୍ନ ଓ ଯୋଜନା ମଧୁସୂଦନ ଭାରତରେ ବହୁ ରାଜନୀତିଜ୍ଞ କିମ୍ବା ଅର୍ଥନୀତିଜ୍ଞଙ୍କ ପୂର୍ବରୁ ଦେଶରେ ବାଢ଼ିଥିଲେ । ସ୍ୱଦେଶ ଶିଳ୍ପ ସଂଗଠନ, ଅରଟ ପ୍ରଚଳନ, ଜାତିପ୍ରଥାର ଉଚ୍ଛେଦସାଧନ, ଜାତୀୟ ଏକତା ବୃଦ୍ଧି, ପ୍ରଭୃତି ସକଳ କାର୍ଯ୍ୟରେ ସେ ଅଗ୍ରଦୂତ ଥିଲେ । କୃଷି, ବାଣିଜ୍ୟ ସାହିତ୍ୟ ମଧ୍ୟ ସେ ଛାଡ଼ି ନ ଥିଲେ ସେ ଚାହୁଁଥିଲେ ସର୍ବାଙ୍ଗସୁନ୍ଦର ଜାତି ଗଢିବାକୁ । ବିଦେଶୀ ଶାସନ ମଧୁସୂଦନଙ୍କ ପ୍ରଚେଷ୍ଟା ଏବଂ ଉଦ୍ୟମର ପୂର୍ଣ୍ଣ ବିରୋଧୀ ଥିଲା । ତାଙ୍କର କାର୍ଯ୍ୟ ଥିଲା ଯେପରି ଆଦର୍ଶ ଲାଗି ତ୍ୟାଗ କରିବା ଏବଂ ଆଦର୍ଶଟା ଜାତି ଆଗରେ ରଖି ଦେଇ ଯିବା । ମଧୁସୂଦନଙ୍କ ବିଫଳତା, ବ୍ୟର୍ଥତାହିଁ ତାଙ୍କ ପରଯୁଗର ସାର୍ଥକତାର ପ୍ରତୀକ ବା ପ୍ରଥମ ପାହାଚ । ମଧୁସୂଦନ କିପରି ଅବସ୍ଥାରେ କାର୍ଯ୍ୟ କରୁଥିଲେ, ତାହା ସହଜରେ ଜଣାପଡ଼େ ଯେ, ସେ "ଉତ୍କଳ ଟ୍ୟାନେରି" ଭଳି ଏକ ଶିଳ୍ପ ପ୍ରତିଷ୍ଠାନର ଅଳ୍ପ ବର୍ଷ ପରମାୟୁ ମଧ୍ୟରେ ଆଠଜଣ ପରିଚାଳକ ବଦଳ ହୋଇଥିଲେ । ଦ୍ୱିତୀୟରେ ସେ ଯେଉଁ ଉନ୍ନତି-ମୂଳକ ଯୋଜନାର ସ୍ୱପ୍ନ ଦେଖୁଥିଲେ ବା ସମ୍ମିଳନୀରେ ପ୍ରଚାର କରୁଥିଲେ, ତାହା କାର୍ଯ୍ୟରେ କରିବ କିଏ ? ଜାତୀୟ ସରକାର ଯେ ପ୍ରତିଷ୍ଠିତ ହୋଇ ନ ଥିଲା ।

( ୮ )

ମଧୁସୂଦନଙ୍କ ଏହି ଜାତୀୟ-ପ୍ରୀତିର କେନ୍ଦ୍ର କେବଳ କଣ ଉତ୍କଳ ଥିଲା ? ଉତ୍କଳ ପାଇଁ ସେ କାର୍ଯ୍ୟ କରୁଥିଲେ ମଧ୍ୟ, ସେ ଭାରତ କିମ୍ବା ପୃଥିବୀକୁ ଭୁଲି ନ ଥିଲେ । ଉତ୍କଳ ମଧୁସୂଦନଙ୍କ ଚିନ୍ତାରେ ପ୍ରଥମ ଏବଂ ପ୍ରଧାନ ସ୍ଥାନ ଗ୍ରହଣ କଲେ ମଧ୍ୟ, ସେ ତାହାର ଏକ କାରଣ ମଧ୍ୟ ଖୋଜି ପାଇଥିଲେ । ମଧୁସୂଦନ ନିଜେ ୧୯୦୩ ମସିହା ଅକ୍ଟୋବର ପଚିଶ ତାରିଖରେ ଏ ସମ୍ପର୍କରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ସମ୍ପର୍କୀୟ ପ୍ରାରମ୍ଭିକ, ପ୍ରକାଶ୍ୟ ସଭାର ଅଧିବେଶନରେ କହିଥିଲେ, "ଇଉରୋପରେ ନେଶନ ଅର୍ଥାତ୍ ଜାତି ଶବ୍ଦ ଗୋଟିଏ ରାଷ୍ଟ୍ର ବା ଦେଶର ଲୋକସମୂହକୁ ବୁଝାଏ । ଇଉରୋପୀୟ ଜାତିସମୂହ ପରସ୍ପରଠାରୁ ଯେଉଁ ପରିମାଣରେ ବିଭିନ୍ନ, ଭାରତବର୍ଷର ପ୍ରାଦେଶିକ ଲୋକସମୂହ ସେହିପରି ନାନା ବିଷୟରେ ପରସ୍ପରଠାରୁ ସେହି ପରିମାଣରେ ବିଭିନ୍ନ । ଏହି ହେତୁରୁ ଭାରତବର୍ଷର ଜାତୀୟତା ଏହି ଶବ୍ଦ ଗୋଟିଏ ବିଶେଷ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ ।"

"ମୁଁ ଉତ୍କଳ-ମାତାର ସନ୍ତାନ ଏବଂ ଉତ୍କଳଭୂମିରେ ଯେଉଁମାନେ ଜନ୍ମଗ୍ରହଣ କରିଅଛନ୍ତି ଓ ଯେଉଁମାନେ ମରଣାନ୍ତେ ତାଙ୍କର ମୃତ ଦେହକୁ

ଉତ୍କଳ ମାତାର କ୍ରୋଡ଼ରେ ଅର୍ପଣ କରିବାକୁ ଇଚ୍ଛା କରନ୍ତି, ସେମାନେ ଯେଉଁ ଜାତି ହୁଅନ୍ତୁ, କି ବଙ୍ଗାଳି, କି ମୁସଲମାନ, କି ବ୍ରାହ୍ମଣ, କି କରଣ, କି କଣ୍ଡରା, କି ପାଣ, କି ପଞ୍ଜାବୀ ଏ ସମସ୍ତ ଉତ୍କଳ ସନ୍ତାନ । ଯେ ଉତ୍କଳ ମାତାର କ୍ରୋଡ଼ରେ ଜନ୍ମଗ୍ରହଣ କରିଅଛି ଏବଂ ଯେ ବିଶ୍ୱାସ କରେ କି ମୃତ୍ୟୁ ପରେ ଦୁର୍ଗନ୍ଧ ହେତୁ ତାହାର ମୃତ ଦେହକୁ ଜନ୍ମ ଦେଇଥିବା ମାତା ଘରୁ ବାହାର କରି ଦେଲେ ସେହି ଦୁର୍ଗନ୍ଧ ଶରୀରକୁ ଉତ୍କଳ ମାତା ଆପଣାର କ୍ରୋଡ଼ରେ ଗ୍ରହଣ କରିବେ, ସେହି ହେଉଛି ଉତ୍କଳର ସନ୍ତାନ ।"

"ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି, ମା ଉତ୍କଳ କ୍ରୋଡ଼ରେ ଚକ୍ଷୁ ବୁଜି ଥରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମିର ପିତୁଳା ଆପେ ଆପେ ଜାଗ୍ରତ ହେବ । ଚକ୍ଷୁ ବନ୍ଦ କର । ଦେଖିବ, ତୁମ ଭିତରେ ମା ଅଛନ୍ତି । ଏହି ତ ମାତୃଭୂମିର ପୂଜା । ତୁମ୍ଭେମାନେ ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆହ୍ୱାନ କର । ସମସ୍ତେ କହ "ବନ୍ଦଇ ଜନ୍ମଭୂମି" ।" ପୁଣି ଉତ୍କଳ ଏବଂ ଭାରତ ସମ୍ପର୍କରେ ମଧୁସୂଦନ ମଧ୍ୟ ଅତି ସ୍ପଷ୍ଟ ଭାବରେ ନିର୍ଦ୍ଦେଶ ଦେଇ ଯାଇଅଛନ୍ତି ।

"ଉତ୍କଳ ଜନନୀ ଭାରତ ଜନନୀଙ୍କ ଠାରୁ ବିଚ୍ଛିନ୍ନ ନୁହନ୍ତି । ସେ ଭାରତ ଜନନୀଙ୍କର ସପତ୍ନୀ କିମ୍ବା ଶତ୍ରୁ ନୁହନ୍ତି ।" ପୁଣି ଅନ୍ୟତ୍ର ସେ କହିଥିଲେ, "ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳ ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।"

( ୯ )

ମଧୁସୂଦନଙ୍କ ଏହି ଉତ୍କଳପ୍ରୀତି ସହ ଆମ୍ଭମାନଙ୍କୁ ତାହାଙ୍କ ସ୍ୱଦେଶ-ବତ୍ସଳତା ନିକି ପ୍ରତି ଦୃଷ୍ଟିପାତ କରିବାକୁ ପଡ଼ିବ । ସ୍ୱଦେଶର ଶିଳ୍ପ, ବ୍ୟବସାୟ, ସାହିତ୍ୟ ଓ ଶିକ୍ଷା · ସ୍ଥୂଳତଃ ଦେଶର ସର୍ବବିଧ କଲ୍ୟାଣ ସାଧନ ପାଇଁ ସେ ସର୍ବଦା ଆଗ୍ରହ ପ୍ରକାଶ କରୁଥିଲେ ।

"ମୋର ଶରୀରର ପ୍ରତ୍ୟେକ ରେଣୁ, ମୋର ମାନସିକ ଚିନ୍ତାର ପ୍ରତ୍ୟେକ ଚିନ୍ତା ସେହି ଜାତୀୟ ଜୀବନର ଏକ ଏକ ଅଂଶ ।"

"କଲିକତାରେ ଥିବା ଇଂରେଜ ଜୋତା ଦୋକାନରେ ଜଣେ ସାହେବ ପହଞ୍ଚି ଦେଖିଲେ ଯେ ବିଦେଶୀୟ ଜିନିଷ ଶସ୍ତା, ସ୍ୱଦେଶୀୟ ଜିନିଷ

ନେଇଙ୍ଗା । କିନ୍ତୁ ଇଂରେଜ ବିଦେଶୀୟ ଜେ.ତା କିଣିବେ ନାହିଁ । ମୁଁ ଦଶ ବର୍ଷ ପୂର୍ବେ ମନେ କରିଥିଲି ଇଂରାଜି ଜୋତା ମୋ ଭାଗ୍ୟରେ ନ ପଡ଼ୁ । ଆମର ପ୍ରତିଜ୍ଞା ଏହି ଯେ "ବିଦେଶୀୟ ଦ୍ରବ୍ୟ" କିଣିବା ପୂର୍ବରୁ ଚିନ୍ତା କରିବ ।"

ମଧୁସୂଦନଙ୍କ ବ୍ୟକ୍ତିତ୍ୱ ମୂଳରେ ଏହି ସ୍ୱଦେଶପ୍ରୀତି ବା ବତ୍ସଳତା ସର୍ବଦା ରହି ତାହାଙ୍କୁ ଜାତୀୟ କାର୍ଯ୍ୟ କରିବାକୁ ପ୍ରେରଣା ଦେଉଥିଲା ।

"ଯେଉଁ ଜାତି ବଡ଼ ଦେଉଳ, ଭୁବନେଶ୍ୱର ଓ ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟମାନ କରିଥିଲେ ସେହି ଜାତିର ରକ୍ତ ଆମ ଦେହରେ ଅଛି କି ? ଉତ୍କଳର ଅସ୍ତମିତ ଗୌରବର ବିଷୟ ଥରେ ଚିନ୍ତା କର । ଯେତେବେଳେ ଶିଶୁ ସ୍ତନ୍ୟ ପାନ କରୁଥାଏ, ସେତେବେଳେ ବିଶ୍ୱାସପୂର୍ଣ୍ଣ ନୟନରେ ମାତାର ମୁଖ ପ୍ରତି ଦୃଷ୍ଟି ନିକ୍ଷେପ କରିଥାଏ । ଏହିଠାରେ ଆମ୍ଭେମାନେ ଉତ୍କଳ ଜନନୀଙ୍କ କ୍ରୋଡ଼ରେ ବସି ଥାଏଁ ।"

( ୧୦ )

ମଧୁସୂଦନ ହିନ୍ଦୁଧର୍ମ ଛାଡ଼ିଥିଲେ ମଧ୍ୟ ହିନ୍ଦୁର ବିଶେଷତଃ ଓଡ଼ିଆ ଜାତିର ପ୍ରାଚୀନ ଗୌରବ ଅକ୍ଷୁଣ୍ଣ ରଖିବାକୁ ସର୍ବଦା ଚେଷ୍ଟିତ ଥିଲେ । ଦିନେ ପୁରୀର ସ୍ୱର୍ଗୀୟ ରାଜା ମୁକୁନ୍ଦ ଦେବ ବିହାର ଓଡ଼ିଶାର ଭୂତପୂର୍ବ ଶାସନକର୍ତ୍ତା ସାର ଏଡ଼ୱାର୍ଡ଼ ଗେଟ୍ ସାହେବଙ୍କ ସହିତ ସାକ୍ଷାତ କରିବାକୁ ଯାଇଥିଲେ । ସାର ଏଡ଼ୱାର୍ଡ ଗେଟ୍ ସାହେବଙ୍କର ପୁରୀ ରାଜାଙ୍କ ସମ୍ବନ୍ଧରେ କେତେ ଗୁଡ଼ିଏ ଅଦ୍ଭୁତ ଧାରଣା ଥିଲା । ମୁକୁନ୍ଦ ଦେବ ଲାଟ ସାହେବଙ୍କ ସଙ୍ଗେ ଦେଖା କରିବାକୁ ଗଲାବେଳେ ପ୍ରାଚୀନ ପ୍ରଥାର ପୋଷାକ ପିନ୍ଧି ଯାଇଥିଲେ । ସେଥିରେ ଗେଟ୍ ସାହେବ ମହୋଦୟ ପ୍ରଥମେ ଟିକିଏ ବିରକ୍ତି ପ୍ରକାଶ କରିଥିଲେ ସତ୍ୟ, କିନ୍ତୁ ମଧୁସୂଦନ ଯେତେବେଳେ ସେହି ପୋଷାକର ମହତ୍ତ୍ୱ ଲାଟ ସାହେବଙ୍କୁ ବୁଝାଇ ଦେଲେ, ସେତେବେଳେ ଲାଟ ସାହେବ ମୁକୁନ୍ଦ ଦେବଙ୍କ ପ୍ରତି ଯେଉଁ ସଦ୍ଭାବ ପ୍ରକାଶ କରିଥିଲେ, ମୂଲ୍ୟବାନ୍ ସାହେବୀ ପୋଷାକ ପିନ୍ଧି ଯାଇଥିଲେ ସେ ଭାବ ଲାଟ ସାହେବ ଦେଖାଇଥାନ୍ତେ କି ନା ସନ୍ଦେହ । ମଧୁସୂଦନଙ୍କ ସ୍ୱଦେଶ ବତ୍ସଳତା ଅର୍ଥନୀତି, ରାଷ୍ଟ୍ରନୀତି ଓ ସାମାଜିକ କ୍ଷେତ୍ରରେ ମଧ୍ୟ ପରିସ୍ଫୁଟ ।

ଏପରିକି ସେ ପୋଷାକ ପ୍ରକୃତିରେ ମଧ୍ୟ ସ୍ୱଦେଶର ଆଦବ କାଇଦା ବଜାୟ ରଖିବାକୁ କିପରି ଚାହୁଁଥିଲେ, ତାହା ଉପରେ ଲିଖିତ ଦୃଷ୍ଟାନ୍ତରୁ ପରିସ୍ଫୁଟ ହେବ । ସେ ସ୍ୱଦେଶବତ୍ସଳତା ସମ୍ପର୍କରେ କହିଥିଲେ,

"ଯେତେବେଳେ ମୁଁ ମନୁଷ୍ୟଜୀବନର ଆରମ୍ଭରୁ ଶେଷ ଯାଏ ଦେଖେ, ମୁଁ ସ୍ୱଦେଶବତ୍ସଳତାର ପ୍ରଧାନ ଗୁଣ—ଆତ୍ମତ୍ୟାଗ ବୋଲି ନ ଦେଖି ରହିପାରେ ନାହିଁ । ଏହା ଏକ ପବିତ୍ର ଅନୁଭୂତି । ଅନ୍ୟ ଦେଶ ଜାତି କିମ୍ବା ଗୋଷ୍ଠୀଙ୍କ ବିରୁଦ୍ଧରେ ପ୍ରତିହିଂସା ବା ରାଗ ଭାବ ସହିତ ଏହା ରହି ନ ପାରେ । ପ୍ରକୃତ ସ୍ୱଦେଶପ୍ରେମିକ ନିଜ ଦେଶ, ଜାତିକୁ ଭଲ ପାଇବ, କିନ୍ତୁ ଅନ୍ୟ ଜାତି ବା ଦେଶ ପ୍ରତି ବିଦ୍ୱେଷ ଭାବ ପୋଷଣ କରିବ ନାହିଁ । ଦରକାର ହେଲେ ସ୍ୱଦେଶପ୍ରେମିକ ମୃତ୍ୟୁ ବରଣ କରିବ । କିନ୍ତୁ ଅନ୍ୟର ରକ୍ତରେ ସେ ନିଜ ହାତକୁ ରଞ୍ଜିତ କରିବ ନାହିଁ ।"

( ୧୧ )

ପୁଣି ଏହି ସ୍ୱଦେଶପ୍ରୀତି ମଧୁସୂଦନଙ୍କର ପ୍ରକଟିତ ହୋଇଥିଲା ଅକପଟ ସାମାଜିକତାରେ । ମନୁଷ୍ୟ ସାମାଜିକ ଜୀବ । କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ଏହି ସାମାଜିକ ଗୁଣର ଅଧିକାରୀ ହୋଇ ପାରନ୍ତି ନାହିଁ କାହିଁକି ? କିନ୍ତୁ ମଧୁସୂଦନ ସବୁଦିନେ ସାମାଜିକ ଥିଲେ । ବକ୍ତୃତା ଦେବା ତାଙ୍କର ଯେପରି ଗୋଟିଏ ଗୁଣ ଥିଲା, କଥା କହି ଲୋକମନ ରଞ୍ଜନ କରିବା, ତାଙ୍କର ଆଉ ଗୋଟିଏ ସୁଗୁଣ ଥିଲା । ସେ ନିଜେ ବେଶୀ ଖାଇ ପାରୁ ନ ଥିଲେ ମଧ୍ୟ; ସମସ୍ତଙ୍କୁ ଭୂରି ଭୋଜନ ଦେବାରେ ବିଶେଷ ଆନନ୍ଦ ପାଉଥିଲେ । ମଧୁସୂଦନ ଦୀର୍ଘକାଳ ପାଇଁ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରୁଥିଲେ ମଧ୍ୟ ତାହାଙ୍କ କଥାବାର୍ତ୍ତା ସବୁବେଳେ ପ୍ରୀତିକର ହେଉଥିଲା । ତାଙ୍କ ବାକ୍ୟ ପ୍ରବୀଣତାର ପୁଷ୍ଟ ଯେମିତି ଉପାଦେୟ ଓ ଶିକ୍ଷଣୀୟ ହେଉଥିଲା । ଏହା ବ୍ୟତୀତ ସମାଜର ବହୁ ଦୁଃଖୀ, ଦରିଦ୍ର, ଅର୍ଥୀ ତାଙ୍କର ସାହାଯ୍ୟ ଓ ସାହଚର୍ଯ୍ୟ ଲାଭ କରୁଥିଲେ । ସହରର ସମସ୍ତ ସାମାଜିକ ଜୀବନରେ ମଧୁସୂଦନ ଆନ୍ତରିକ ଆଗ୍ରହ ପ୍ରକାଶ କରୁଥିଲେ । ରାଜା, ପ୍ରଜା, ଧନୀ, ନିର୍ଦ୍ଧନ, କାରିଗର, ମୂଲିଆ ସବୁ ଶ୍ରେଣୀର ଲୋକେ ମଧୁସୂଦନଙ୍କ ଠାରୁ ବିପଦ ସମୟରେ ସାହାଯ୍ୟ ପାଉଥିଲେ ଏବଂ ଆଶାର ବାଣୀ ଶୁଣୁଥିଲେ । ଏପରିକି ଓଡ଼ିଶାର ବହୁ ରାଜପରିବାର ମଧୁସୂଦନଙ୍କ ଠାରୁ ଆପଦ ବେଳେ ଆଶ୍ରୟ ପାଉଥିଲେ ।

( ୧୨ )

ମଧୁସୂଦନଙ୍କ ସାମାଜିକତାର ଆଉ ଏକ ରୂପ ପ୍ରକାଶ ପାଇଥିଲା ଶିକ୍ଷ-ପ୍ରୀତିରେ । ସେ ବାଳକ, ବାଳିକାମାନଙ୍କ ଶିକ୍ଷା ପାଇଁ ବିଶେଷ ଦୃଷ୍ଟି ଦେଉଥିଲେ । ସେଥିପାଇଁ ସେ ସ୍ୱତନ୍ତ୍ର ବାଳିକା ବିଦ୍ୟାଳୟ ସ୍ଥାପନ କରାଇଥିଲେ । କିନ୍ତୁ ତାହାଙ୍କ ସମୟରେ ପ୍ରଚଳିତ ଶିକ୍ଷାପ୍ରଣାଳୀରେ ସେ ସନ୍ତୁଷ୍ଟ ନ ଥିଲେ । ସେ ଜାତୀୟ ଶିକ୍ଷାର ପକ୍ଷପାତୀ ଥିଲେ । 'ସତ୍ୟବାଦୀ ବିହାର'ରେ ପଣ୍ଡିତ ଗୋପବନ୍ଧୁଙ୍କ ନେତୃତ୍ୱରେ ଏକ ନୂଆ ଧରଣର ଶିକ୍ଷା ଦାନ ହେବା ପରିକଳ୍ପନା ହେଉଥିଲା ବୋଲି, ସେ ସେହି ଅନୁଷ୍ଠାନ ପ୍ରତି ଅତିଶୟ ଆଗ୍ରହ ଓ ଅନୁରାଗ ପ୍ରଦର୍ଶନ କରିଥିଲେ । ପାଶ୍ଚାତ୍ୟ ସଭ୍ୟତାରୁ ବୈଷୟିକ ଶିକ୍ଷା ଭାରତୀୟମାନଙ୍କର ସମଧିକ ଦୃଷ୍ଟି ଆକର୍ଷଣ କରୁଛି ବୋଲି ତାଙ୍କର ମତ ଥିଲେ ମଧ୍ୟ, ସେ ଶିକ୍ଷାର ନୈତିକ ଓ ଆଧ୍ୟାତ୍ମିକ ଦିଗ ଭୁଲି ନ ଥିଲେ । ତେଣୁ ସେ ପ୍ରାଚ୍ୟ, ପାଶ୍ଚାତ୍ୟ ସଭ୍ୟତାର ମହାମିଳନ ଚାହୁଁଥିଲେ ଶିକ୍ଷାରେ । ସେ ଏହାକୁ ଅନ୍ୟଭାବରେ "ପୂର୍ଣ୍ଣ ଶିକ୍ଷା" ବା 'ସର୍ବାଙ୍ଗୀନ ଶିକ୍ଷା' ବୋଲି ଅଭିହିତ କରିଥିଲେ । ସେ ଚାହୁଁଥିଲେ ଯେ ହାତକାମ ପ୍ରତି ଶିକ୍ଷାରେ ତୀକ୍ଷ୍ଣ ଦୃଷ୍ଟି ଦେବା ଦରକାର । "ମସ୍ତିଷ୍କ ଜ୍ଞାନରେ ପରିପୂର୍ଣ୍ଣ, ମାତ୍ର ହାତ ଉପାସରେ ପଡ଼ିଛି," (The head is stocked with knowledge and hand is starved) ମଧୁସୂଦନ ଅନ୍ୟତ୍ର କହିଥିଲେ, "ଆମ୍ଭେମାନେ ପ୍ରତ୍ୟହ ଆମ ବିଶ୍ୱ ବିଦ୍ୟାଳୟର ଡିଗ୍ରୀଧାରୀ ଯୁବକମାନଙ୍କୁ ଭେଟୁ, ସେମାନେ ସେମାନଙ୍କ ଡିଗ୍ରୀ ଯତେଇ ହୁଅନ୍ତି । ସେମାନେ ଅଶିକ୍ଷିତ ଧନୀ ଲୋକଙ୍କଠାରୁ ପ୍ରଶଂସାପତ୍ର ଚାହାନ୍ତି; ଦଶରୁ ପ୍ରାୟ ନଅଟି ସ୍ଥଳରେ ଧନୀ ଲୋକର ସୁପାରିସ ଅଫିସରଙ୍କଠାରୁ ବିଶ୍ୱବିଦ୍ୟାଳୟ ଡିଗ୍ରୀଠାରୁ ବେଶୀ ମର୍ଯ୍ୟାଦା ପାଏ ।

ମସ୍ତିଷ୍କର ମୂଲ୍ୟ ଶସ୍ତା ହୋଇ ଯାଇଅଛି । କାରଣ ମସ୍ତିଷ୍କ ଟଙ୍କା ରୋଜଗାର କରି ପାରୁ ନାହିଁ । ଏହାର କାରଣ କାର୍ଯ୍ୟର ଅଭାବ; ଯେଉଁଠାରେ କି ମସ୍ତିଷ୍କର ପ୍ରୟୋଜନୀୟତା ଦରକାର । ମଣିଷ ସମାଜରେ ଯେଉଁ ମସ୍ତିଷ୍କ ସବୁଠାରୁ ମୂଲ୍ୟବାନ୍ ଏବଂ କ୍ଷମତାଶାଳୀ ଶକ୍ତି, ତାହା ହାତ ଅଭାବରୁ ଏକ ପଡ଼ିଆ ଦ୍ରବ୍ୟ ହୋଇଅଛି ।" "ହାତର ଉତ୍କର୍ଷତାହିଁ ଶିଳ୍ପ" (Culture of hand is industry) ଏହା ମଧ୍ୟ ସତ କଥା । ପ୍ରଚଳିତ ଶିକ୍ଷା ପଦ୍ଧତିରେ "ମାନସିକ ବଦହଜମି" ଏକ କୁଲକ୍ଷଣ ।

"ମୁଁ ଦେହ ଏବଂ ମନ—ଉଭୟର ବଦହଜମିରେ ବିଶ୍ୱାସ କରେ । ଏହା ପ୍ରାୟ ଆମ୍ଭମାନଙ୍କ ଶିକ୍ଷିତ ସମ୍ପ୍ରଦାୟର ଗୋଟିଏ ସଂକ୍ରାମକ ରୋଗ ।" ମଧୁସୂଦନ ପୁଣି ଲେଖିଥିଲେ,

"ତେଣୁ ଅନୁକରଣ ଅସମ୍ଭବ ଏବଂ ତାହା ଚେଷ୍ଟା କରିବା ମଧ୍ୟ ନିର୍ବୋଧତା । ନିଜେ ହଜମ ନ କରି ପାରିଲେ, ଅନ୍ୟ ଲୋକଙ୍କ ଭାବକୁ ତୁମ ଜୀବନର ଅବସ୍ଥା ଅନୁଯାୟୀ ଗ୍ରହଣ କରି ନ ଜାଣିଲେ ତୁମେ ତୁମ ମାନସିକ ଶକ୍ତିକୁ ବଳଶାଳୀ କରି ପାରିବ ନାହିଁ । ଜ୍ଞାନହିଁ କ୍ଷମତା । ଏହା ଏକ ପୁରୁଣା କଥା । କିନ୍ତୁ ଜ୍ଞାନ କ୍ଷମତା ହେବା ପୂର୍ବରୁ ଏହା ହଜମ ହୋଇ ମୂର୍ତ୍ତି ଗୃହୀତ ହେବା ଉଚିତ । ଗ୍ରହଣ ହେବା ଅର୍ଥ ତୁମ ଜୀବନ ଅନୁସାରେ ଗୃହୀତ ହେବ ।

ମଧୁସୂଦନ ଶିକ୍ଷା ସମ୍ବନ୍ଧରେ ଆଉରି କହିଥିଲେ, "ପ୍ରକୃତିର ଗ୍ରନ୍ଥ ତୁମ୍ଭ ଆଗରେ ସଦା ଖୋଲା ହୋଇ ରଖା ହୋଇଅଛି । ତୁମ୍ଭେ ନିଜେ ତାହା ପଢ଼ିବାକୁ ଚେଷ୍ଟା କର । ତୁମ୍ଭ ପଠନ ସଙ୍ଗେ ଅନ୍ୟମାନଙ୍କ ପଠନ ତୁଳନା କର । ତାହାକୁ ହଜମ କର ଏବଂ ନିଜ ଜୀବନର ଅବସ୍ଥା ଅନୁଯାୟୀ ତାକୁ ଗ୍ରହଣ କର । ତୁମ୍ଭ ବ୍ୟକ୍ତିଗତ ଜୀବନ ସଙ୍ଗେ ଯୁଦ୍ଧ କରିବାକୁ ତୁମ୍ଭେମାନେ ଏକ ଅତି ବଳଶାଳୀ ଖଣ୍ଡା ପାଇବ ।"

ଏହା ମଧ୍ୟ ଅତି ଉପାଦେୟ ବାଣୀ । ଲେଖକର ଲେଖା, ବକ୍ତାର ବକ୍ତୃତା, ଶିଳ୍ପୀର ଶିଳ୍ପ ମଧ୍ୟରେ ହିଁ ଆମ୍ଭେମାନେ ସ୍ୱସ୍ୱ ବ୍ୟକ୍ତିତ୍ୱର ନଗ୍ନରୂପ ଦେଖିବାକୁ ପାଉଁ । ମଧୁସୂଦନ ଶିକ୍ଷା ସଂପର୍କରେ ଆଉରି ଏକ ବକ୍ତୃତାରେ କହିଥିଲେ, "ଯେ ଶିକ୍ଷାର୍ଥୀ ହେବ, ତାହାର ପ୍ରଥମେ ନିଜର ଅଭାବ, ତ୍ରୁଟି ଜାଣିବା ଆବଶ୍ୟକ । ଅପର ସହିତ ଆପଣାର ସମ୍ବନ୍ଧ ଭଲରୂପେ ବୁଝି ନ ପାରିଲେ, ନିଜର ଦୋଷ ଓ ଅଭାବ ଉତ୍ତମ ରୂପେ ଜଣା ପଡ଼େ ନାହିଁ ।"

"ଦୋଷ ଗୁଣ ଦେଖିବା ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ ଯୋଡ଼ିଏ ଆଖିରୁ ଗୋଟିଏ ଆଖି ବନ୍ଦ କର ଓ ଗୋଟିଏ ଆଖି ଖୋଲା ରଖ । ବନ୍ଦ ଆଖିରେ ଅନ୍ୟ ଜାତିଙ୍କର ଦୋଷଗୁଡ଼ିକ ଦେଖ ଓ ଖୋଲା ଆଖିରେ ସେମାନଙ୍କର ଗୁଣ ଗୁଡ଼ିକ ନିରୀକ୍ଷଣ କର ଓ ସେହି ଗୁଣଗୁଡ଼ିକ ଶିକ୍ଷା କର । ସବୁ ବ୍ୟକ୍ତି ଓ ସବୁ-ଜାତିଙ୍କ ଠାରୁ ଅନୁକରଣ କରିବା ଯୋଗ୍ୟ ଅନେକ ଗୁଡ଼ିଏ ଗୁଣ ଅଛି ।"

ପ୍ରଚଳିତ ଆଧୁନିକ ଶିକ୍ଷା ସମ୍ପର୍କରେ ସେ ଆଉରି ସ୍ପଷ୍ଟ ଭାଷାରେ କହିଥିଲେ,

"ଆଧୁନିକ ଶିକ୍ଷା ଅପ୍ରୟୋଜନୀୟ ପରିଣାମ ଫଳାଇଅଛି । ସରକାର କହନ୍ତି, ଛାତ୍ରମାନଙ୍କ ମଧ୍ୟରେ ଯେ ଏହି ନିୟମହୀନତା ଭାବ ଜାତ ହୋଇଅଛି, ତାହାର କାରଣ ଆଧୁନିକ ଶିକ୍ଷା । ଛାତ୍ରମାନଙ୍କ ଉପରେ କଡ଼ା ନିୟମ ରଖିବାହିଁ ଏହାର ପ୍ରତିକାର । ଛାତ୍ରମାନେ ସାଧାରଣ ସଭାରେ ଯୋଗ ଦେବାକୁ ଅନୁମତି ପାଆନ୍ତି ନାହିଁ । ଆଶା କରାଯାଏ, ଏହି ସମସ୍ତ ପ୍ରତିବନ୍ଧକଦ୍ୱାରା ସେମାନେ ବେଶୀ ରାଜଭକ୍ତ ହେବେ । କିନ୍ତୁ ସତକଥା ଏହି ଯେ ପ୍ରଚଳିତ ଶିକ୍ଷା ଛାତ୍ରର

ଗୋଟିଏ ଆତ୍ମା ଅଛି ବୋଲି ଭାବେ ନାହିଁ । ଶିକ୍ଷକର କର୍ତ୍ତବ୍ୟ ହେଉଛି ସେ ଏପରି ସାହାଯ୍ୟ ଦେବେ, ଯାହାଦ୍ୱାରା ଛାତ୍ର ତାହା ଜୀବନର ପ୍ରକୃତ ଉଦ୍ଦେଶ୍ୟ ସଂସାରରେ ପୂର୍ଣ୍ଣ କରିବାକୁ ସୁବିଧା ପାଏ । ଅନେକେ ଏହି ଆଧୁନିକ ଶିକ୍ଷାକୁ ଈଶ୍ୱରହୀନ ଶିକ୍ଷା କହନ୍ତି । "ଆତ୍ମହୀନ ଶିକ୍ଷା" ଆହୁରି ଠିକ୍ ।"

( ୧୩ )

ମଧୁସୂଦନ କିପରି ନାରୀଶିକ୍ଷା ସମ୍ପର୍କରେ ଚିନ୍ତା କରୁଥିଲେ ଦେଖାଯାଉ :—

"ସ୍ତ୍ରୀଜାତିର ଶିକ୍ଷା ଭିନ୍ନ ଜାତିର ଉନ୍ନତି ସମ୍ଭବ ନୁହେ । ଇତିହାସ ଲିଖିତ ପୂର୍ବକାଳରେ ଆମ୍ଭମାନଙ୍କର ଗୌରବାନ୍ୱିତ ଅବସ୍ଥା ସ୍ମରଣ କରି ଅମ୍ଭେମାନେ ଆସ୍ଫାଳନ କରିଥାଉଁ ଓ କିନ୍ତୁ ସେତେବେଳେ ଜାତି ବୋଇଲେ ସ୍ତ୍ରୀ ଓ ପୁରୁଷ ତହିଁରେ ଅନ୍ତର୍ଗତ ବୋଲି ବୁଝାଉଥିଲା ।"

"ଧନ ଓ ବିଦ୍ୟା ମନୁଷ୍ୟ ଜୀବନଯାତ୍ରାରେ ବହୁମୂଲ୍ୟ ଅସ୍ତ୍ରସ୍ୱରୂପ । ଯେଉଁ ଜାତି ଏପ୍ରକାର ଦୁଇ ଅସ୍ତ୍ରକୁ ସ୍ତ୍ରୀରୂପିଣୀ ଲକ୍ଷ୍ମୀ, ସରସ୍ୱତୀ ରୂପରେ ପୂଜା କରୁଅଛନ୍ତି, ସେମାନେ ଯେ ସ୍ତ୍ରୀଶିକ୍ଷାର ବିରୋଧୀ ହେବେ, ଏହା ବଡ଼ ଅଶ୍ଚର୍ଯ୍ୟର ବିଷୟ । ବାଲ୍ମୀକି ଓ ବେଦବ୍ୟାସଙ୍କ କଳ୍ପନାଶକ୍ତିକୁ ଦୁଇଗୋଟି ସ୍ତ୍ରୀଚରିତ୍ର ଜାଗ୍ରତ ଓ ଜ୍ୱଳିତ କରିଥିଲେ । ସୀତା ନ ଥିଲେ ରାମାୟଣ ହୋଇ ନଥାନ୍ତା ।"

"କି ବୃଦ୍ଧା କି, ଯୁବତୀ, କି ବାଳିକା ସମସ୍ତ ନାରୀଜାତି ମାନବଜାତିର ମାତା । ଯେ ବୃଦ୍ଧା, ତାହାର ସନ୍ତାନମାନେ ଜାତୀୟ କର୍ମକ୍ଷେତ୍ରରେ ବର୍ତ୍ତମାନ ଠିଆ । ଯେ ଯୁବତୀ, ତାହାର ଶିଶୁ ସନ୍ତାନମାନେ ସେହି କ୍ଷେତ୍ରରେ ଉପସ୍ଥିତ ହେବାପାଇଁ ପ୍ରସ୍ତୁତ ହେଉଅଛନ୍ତି । ଯେ ବାଳିକା ସେ ଭବିଷ୍ୟତରେ ସନ୍ତାନର ମାତା ହେବ । ଗତି ନଦୀସ୍ରୋତସ୍ୱରୂପ ।" ସେ ସ୍ତ୍ରୀଶିକ୍ଷାର ପକ୍ଷପାତୀ ଥିଲେ ମଧ୍ୟ ପ୍ରଚଳିତ ସ୍ତ୍ରୀଶିକ୍ଷାର ବିରୁଦ୍ଧବାଦୀ ଥିଲେ ।

"ଆମ୍ଭମାନଙ୍କର ନାରୀମାନେ ଶିକ୍ଷିତା ହେବେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ଶିକ୍ଷା ଏମିତି ହେବ, ଯେପରି କି ଆମ୍ଭ ନାରୀମାନେ ସୌଖିନ ମହିଳା (Ladies) ନ ହୁଅନ୍ତି ।"

(୧୪)

ମଧୁସୂଦନଙ୍କ ଧର୍ମ ସମ୍ପର୍କୀୟ ମତବାଦ ବିଷୟରେ ମଧ୍ୟ କିଛି ଆଲୋଚନା କରିଯିବା ଉଚିତ । ମଧୁସୂଦନଙ୍କ ନିଜ ଧର୍ମ ସମ୍ବନ୍ଧୀୟ ମତବାଦ ସମ୍ପର୍କରେ

ବଲ୍ଲତର ନେଭନସନ ସାହେବ ତାହାଙ୍କ "ଭାରତରେ ନବ ଜାଗରଣ" ( New spirit in India ) ବହିରେ ଲେଖିଅଛନ୍ତି,

ସେ ( ମଧୁସୂଦନ ) ଅତି ବାଲ୍ୟକାଳରୁ ଖ୍ରୀଷ୍ଟିୟାନ ହୋଇଥିଲେ । ତାଙ୍କ ଖ୍ରୀଷ୍ଟିୟାନ ଧର୍ମ ଆସ୍ଥା ଗ୍ରହଣରେ କୌଣସି ଗୋଡ଼ାମି କମ୍ବା ଗୀର୍ଜାର ସମ୍ପର୍କ ନ ଥିଲା । ସେ ମୋତେ କହୁଥିଲେ ଯେ ତାଙ୍କ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ ସମ୍ପୂର୍ଣ୍ଣ ଭାବରେ ଯୀଶୁଖ୍ରୀଷ୍ଟଙ୍କ ପ୍ରାର୍ଥନା-"ପିତା, ସେମାନଙ୍କୁ କ୍ଷମା ଦିଅ, ସେମାନେ କଣ କରୁଛନ୍ତି, ତାହା ସେମାନେ ଜାଣନ୍ତି ନାହିଁ", ଉପରେ ନିର୍ଭର କରୁଥିଲା । ଏହି ଉକ୍ତିଟିରୁହିଁ ସେ ଯୀଶୁଖ୍ରୀଷ୍ଟଙ୍କ ଦେବତ୍ୱ ଉପଲବ୍ଧି କରି ଖ୍ରୀଷ୍ଟିୟାନ ହୋଇଥିବା ପ୍ରକାଶ ।

ସତ୍ୟ ଏକ, ପଥ ବିଭିନ୍ନ । ମଧୁସୂଦନ ହିନ୍ଦୁଧର୍ମର ନାନା ପ୍ରଥା ଓ ଦର୍ଶନ ଉପରେ ମଧ୍ୟ ଆସ୍ଥା ପୂର୍ଣ୍ଣପ୍ରାଣରେ ରଖିଥିଲେ । ସେ ଆତ୍ମା, ପରମାତ୍ମା ବିଶ୍ୱାସୀ ଥିଲେ । ଏହା ବ୍ୟତୀତ ସେ ଈଶ୍ୱରବିଶ୍ୱାସୀ ଥିଲେ । ସେ ବ୍ୟକ୍ତିଗତ ଈଶ୍ୱରବିଶ୍ୱାସ କରୁଥିଲେ । ଏହା ତାଙ୍କର ଦାର୍ଶନିକ ଭିତ୍ତିରେ ସ୍ଥାପିତ ହୋଇଥିଲା କି ନାହିଁ, ଅଜଣା । ସେ ଜୀବନସାରା ଜଣେ ପୁଣ୍ୟବାନ୍ ଖ୍ରୀଷ୍ଟିୟାନ ଥିଲେ । ତାଙ୍କଠାରେ ଗୋଡ଼ାମୀ ଆଦୌ ନ ଥିଲା । ସେ ଖ୍ରୀଷ୍ଟିୟାନ କାହିଁକି, ସବୁ ଧର୍ମର ପ୍ରକୃତ ମର୍ମରେ ବିଶ୍ୱାସୀ ଥିଲେ । ସେ ନିଜର ଧର୍ମ ଅନୁଭୂତିକୁ କେବେ ସାଧାରଣରେ ପ୍ରକାଶ କରୁ ନ ଥିଲେ ।†

କିନ୍ତୁ ସେ ରାଷ୍ଟ୍ରନୀତି ସହିତ ଧର୍ମକୁ ଜଡ଼ିତ ନ କରିବାକୁ ନିର୍ଦ୍ଦେଶ ସ୍ପଷ୍ଟ ଦେଇଥିଲେ । ଏହିଠାରେ ମଧୁସୂଦନଙ୍କର ଗାନ୍ଧୀଙ୍କଠାରୁ ପାର୍ଥକ୍ୟ । ଆଧୁନିକ ଭାରତରେ ଧର୍ମ ନିରପେକ୍ଷ ରାଷ୍ଟ୍ର ପରିକଳ୍ପନାରେ ମଧୁସୂଦନଙ୍କ ନୀତିହିଁ ଅନୁସୃତ ହେଉଅଛି ।

( ୧୫ )

ମଧୁସୂଦନ ଧର୍ମଗୁରୁ ନୁହନ୍ତି । ସେ କର୍ମଗୁରୁ ଏବଂ ଜନନେତା । ତେଣୁ ତାଙ୍କ ନେତୃତ୍ୱର ଦୋଷ ଗୁଣ ବିଶ୍ଳେଷଣ ଆମ୍ଭମାନଙ୍କର ଏକ କର୍ତ୍ତବ୍ୟ ।

---

†"He had been a Christian from early childhood though perhaps his christianity was not dogmatic or ecelesiastical faith as he often told me founded entirly upon his heart felt admiratian for chirst's prayer "Father forgive them for they know not what they do."

ସେ କେବଳ ଜନନେତା ନୁହଁନ୍ତି, ସେ ସାଧାରଣ ସମାଜରୁ ଭିନ୍ନ ନେତା । ଏହାପୂର୍ବରୁ ରାଜା, ମହାରାଜାମାନେ ହିଁ ଉତ୍କଳର ନେତୃତ୍ୱ ନେଇଥିଲେ । କାରଣ ସେତେବେଳେ ରାଜତନ୍ତ୍ର ପ୍ରଚଳିତ ଥିଲା । ସେ ଜାତିକୁ ସମଗ୍ର ଭାବରେ ଦେଖୁଥିଲେ । ସେ କେବଳ ମୁଷ୍ଟିମେୟ ଶିକ୍ଷିତ ସମ୍ପ୍ରଦାୟଙ୍କ ଉନ୍ନତି ଲାଗି ବ୍ୟଗ୍ର ନ ଥିଲେ । ସେ କୃଷୀ, ମୂଲିଆମାନଙ୍କ ଜୀବନ-ମାନଦଣ୍ଡ ଉନ୍ନତ କରିବାକୁ ବ୍ୟଗ୍ର ଥିଲେ । ତଥାପି ଶିକ୍ଷିତ ସମ୍ପ୍ରଦାୟଙ୍କ ଲାଗି ବୈଷୟିକ ଶିକ୍ଷାଦାନ ଓ ଉଚ୍ଚ ରାଜକର୍ମଚାରୀ କାର୍ଯ୍ୟରେ ସେମାନଙ୍କୁ ନିଯୁକ୍ତ କରିବା ବିଷୟରେ ମଧ୍ୟ ସେ ଲଢ଼ି ଯଶସ୍ୱୀ ହୋଇଥିଲେ ।

ମଧୁସୂଦନ ଅତି ସ୍ପଷ୍ଟ ଭାଷାରେ ତାଙ୍କ ପ୍ରାଣର ଭାବ ପ୍ରକାଶ କରି ଯାଇଅଛନ୍ତି—

"ଯେଉଁ ସ୍ଥାନର ଲୋକମାନଙ୍କର ଯାହା ଯାହା ଆବଶ୍ୟକ, ଦେଶ, କାଳ, ପାତ୍ର, ବୟସ ଓ ଶିକ୍ଷା ଅନୁସାରେ ଆମ୍ଭମାନଙ୍କୁ ସେହି ସେହି ବିଷୟରେ ଉନ୍ନତି କରିବାକୁ ହେବ । ଯଦି ଦେଶର ଉନ୍ନତି କରିବାକୁ ଅନ୍ତର ସହିତ ଇଚ୍ଛା କର, ତେବେ ଆପଣମାନଙ୍କୁ ମୁଁ ସ୍ଥିରଭାବରେ କହୁଅଛି, ଭାରତ ମାତାଙ୍କର ପବିତ୍ର ନାମରେ, ଉତ୍କଳ ଜନନୀଙ୍କର ସ୍ନେହମୟ ନାମ ଧରି ମୁଁ ଆପଣମାନଙ୍କୁ ପ୍ରାର୍ଥନା କରୁଅଛି ଯେ ଦେଶର ଉନ୍ନତି କରିବା ବେଳେ ଦେଶର ଗରିବ ଦୁଃଖୀଙ୍କୁ ଭୁଲ ନାହିଁ । ସମସ୍ତଙ୍କୁ ସଙ୍ଗରେ ନେଇ ଦେଶର ଉନ୍ନତି କର । ଯେଉଁ ଶିକ୍ଷିତ ଲୋକ ଆପଣାକୁ ସାଧାରଣ ଅପେକ୍ଷା ଉଚ୍ଚତର ବୋଲି ଅହଙ୍କାର କରନ୍ତି, ସେ ଅଧମ ଏବଂ ତାହାଙ୍କ ଶିକ୍ଷା, ଶିକ୍ଷା ପଦବାଚ୍ୟ ନୁହେଁ । ଏମାନଙ୍କୁ ଛାଡ଼ି ତୁମ୍ଭେ ଏକାକୀ ସଭ୍ୟତା-ସୋପାନରେ କଦାପି ଉଠି ପାରିବ ନାହିଁ । ଏପରି ଅବହେଳାରେ ଈଶ୍ୱରଙ୍କର ତଥା ଭାରତ-ମାତାଙ୍କର ଆଶୀର୍ବାଦ କଦାପି ପଡ଼ିବ ନାହିଁ । ଏହା ନିଶ୍ଚିତ ।"

ଅନ୍ୟତ୍ର ସେ ଆଉରି ସ୍ପଷ୍ଟ ଭାଷାରେ କହିଥିଲେ, "ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ; ତେଣୁ ସେମାନଙ୍କର ଉନ୍ନତି ନ ହେଲେ ଦେଶର ଆଉ କି ଉନ୍ନତି ? ସେମାନେ ଭୂମି କର୍ଷଣ କରି ଆମ୍ଭମାନଙ୍କୁ ଧାନ, ଚାଉଳ ଦେଉଅଛନ୍ତି । ସେମାନେ ହିଁ ଉତ୍କଳ ମାତାଙ୍କର ପ୍ରଧାନ ସେବକ । ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ କରାନ୍ତି ।"

ନେତୃତ୍ୱ ସମ୍ପର୍କରେ ମଧୁସୂଦନ ୧୯୧୩ ମସିହା ନେତୃମଣ୍ଡଳୀ ସମ୍ମିଳନୀରେ କହିଥିଲେ—

"ଜାତିର ଚୈତନ୍ୟକୁ ଜାଗ୍ରତ କର । ଜାତିର ବଳୀ-ପୀଠରେ ତୁମ୍ଭର ଜୀବନ ଦାନ କର । ଏହି ଅବସ୍ଥାକୁ ଆସ ଏବଂ ପୂର୍ବେ ଜାତି ଯେଉଁ ଅବସ୍ଥାରେ ଥିଲା; ସେହି ଅବସ୍ଥାରେ ମୋ ଜାତିର ଜଣେ ହୋଇ ତୁମ୍ଭେ ଛିଡ଼ା ହୁଅ । କୌଣସି ଜାତିର ମନ୍ଦ ଚାହିଁ ନାହିଁ । ଯଦି ଜାତିର ନେତା ହେବାକୁ ଚାହଁ, ମୁଣ୍ଡ ଉପରେ ବସିବାକୁ ଚାହଁ ନାହିଁ ।" †

( ୨୭ )

ମଧୁସୂଦନଙ୍କ ଆକୃତି ବିଷୟରେ ଓଡ଼ିଶାରେ ଗୋଟିଏ ପ୍ରବଚନ ସୃଷ୍ଟି ହୋଇ ଯାଇଅଛି ।

"ହାଣ୍ଡି ଦୁଇ ଖଣ୍ଡ ମାଂସ ପଳେ
ମଧୁକୁ କେ ବୁଦ୍ଧିରେ ବଳେ ?"

ମଧୁସୂଦନ ଦେଖିବାକୁ ପତଳା ଥିଲେ । ଦେହ ଗୌର ବର୍ଣ୍ଣ । ସେ ଚିର-ରୁଗ୍ଣ । ସେ ନିଜ ଦେହ ଓ ରୋଗ ବିଷୟରେ ଏତେ ଜାଣିଥିଲେ ଯେ ଡାକ୍ତର-ମାନେ ତାଙ୍କ ସଙ୍ଗେ କଥାବାର୍ତ୍ତା କରି ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ତାହାଙ୍କ ଚରିତ୍ରରେ ଦୃଢ଼ତା ଏକ ବିଶେଷ ଗୁଣ ଥିଲା । ଯାହା ଜିଦ୍ ଧରୁଥିଲେ, ତାହା କାମରେ ପରିଣତ କରୁଥିଲେ । ସେ ସର୍ବଦା ଆଶାବାଦୀ ଥିଲେ । ହତାଶ ବା ନିରାଶ ତାଙ୍କୁ ସ୍ପର୍ଶ କରୁ ନ ଥିଲା । ସେ ନୀଚ କାର୍ଯ୍ୟକୁ ବଡ଼ ଘୃଣା ଚକ୍ଷୁରେ ଦେଖୁଥିଲେ । ସେ ଅମିର ମିଜାଜର ଲୋକ ଥିଲେ । ସେ ଯେପରି ପ୍ରଚୁର ଧନ ଉପାର୍ଜନ କରୁଥିଲେ, ସେହିପରି ବେପରୁଆ ଭାବରେ ଖର୍ଚ୍ଚ କରୁଥିଲେ । ମାତ୍ର ସେ ଅପବ୍ୟୟୀ ନ ଥିଲେ । ତାଙ୍କ ଚକ୍ଷୁରେ ଧନ ସଞ୍ଚୟ ପାପ ବୋଲି ଗୃହୀତ ହେଉଥିଲା ।

ରାଷ୍ଟ୍ରନୀତି କ୍ଷେତ୍ରରେ ସେ ବିଶେଷ ଭାବରେ ବାସ୍ତବତା ପ୍ରତି ଲକ୍ଷ୍ୟ ଦେଉଥିଲେ । ସେ କାର୍ଯ୍ୟକାରୀ ନ ହୋଇ ପାରିବା ଭଳି ଆଦର୍ଶ କେବେ ବଖାଣି କରୁ ନ ଥିଲେ । ମାତ୍ର ଚନ୍ଦ୍ରରାଜ୍ୟରେ ସେ ବହୁ ସ୍ୱପ୍ନ ଦେଖୁଥିଲେ । ସେ

† Rouse the consciousness of the nation. Lay your lives at the alter of my nation. Attain this position and stand as one of my nation where it stood in the old days. Do not wish ill of any nation. If you want to be leaders of the nation, do not try to be at the head"

ଅସହଯୋଗ ଆନ୍ଦୋଳନ ଭଳି ବିଦ୍ରୋହାତ୍ମକ ଆନ୍ଦୋଳନରେ ବିଶ୍ୱାସୀ ନ ଥିଲେ । ସ୍ୱର୍ଗୀୟ ସୁରେନ୍ଦ୍ରନାଥ ବାନାର୍ଜିଙ୍କ ଭଳି ସେ "ବ୍ରିଟିଶ ନ୍ୟାୟ" ରେ ବିଶ୍ୱାସୀ ଥିଲେ । ତାଙ୍କର ଚନ୍ଦ୍ରାବଳ୍ୟରେ ବିଳାସ ଓ ତର୍କପ୍ରିୟତା ତାଙ୍କ ପ୍ରଖର ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତି ହୋଇ ପାରିଥିଲା । ସେ ସବୁବେଳେ ଭାବୁ ଥିଲେ ଯେ ମଣିଷ, ପାଇବାକୁ ପ୍ରଥମେ ଉପଯୁକ୍ତ ହେବା ଉଚିତ, ତାହା ପରେ ସେ ପାଇବାକୁ ଆଶା କରିବ ।

ଜାତିର ଶିଳ୍ପ, କୃଷି, ସାହିତ୍ୟ ପ୍ରଭୃତି ଗଠନମୂଳକ କାର୍ଯ୍ୟରେ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା, ସେ କୃଷିର ଉନ୍ନତି ପାଇଁ ନିଜେ ଚେଷ୍ଟା କରୁଥିଲେ । ଶିଳ୍ପର ଉନ୍ନତି ପାଇଁ ସେ ଆର୍ଥିକ ବିପର୍ଯ୍ୟୟ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । 'ମଧୁବାବୁ' କେବଳ ଶିକ୍ଷିତ ସମ୍ପ୍ରଦାୟ ଉପରେ ତାଙ୍କର ପ୍ରଭାବ ପକାଇ ନ ଥିଲେ । ତାଙ୍କର ପ୍ରଭାବ ଜାତିର ଶେଷସ୍ତର ଯାଏଁ ପହଞ୍ଚି ପାରିଥିଲା । ବୁଢ଼ା ବୟସରେ ସେ ଯଦିଓ ଟିକିଏ ଚିଡ଼ଚିଡ଼ିଆ ପ୍ରକୃତିର ଲୋକ ହୋଇ ଯାଇ ଥିଲେ, ତଥାପି ତାଙ୍କ ହୃଦୟ ବଡ଼ କୋମଳ ଥିଲା । ପରର ଦୁଃଖ ଦେଖିଲେ ସେ ତରଳି ଯାଉଥିଲେ । ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଲଢ଼ିବା ତାଙ୍କର ସ୍ୱଭାବରେ ପରିଣତ ହୋଇ ଯାଇଥିଲା । ସେ ଦାନ ବିଷୟରେ ବଡ଼ମୁକ୍ତ ହସ୍ତ ଥିଲେ । ତାଙ୍କର ଦାନ ବିଷୟ ଅନ୍ୟର ଅଗୋଚର ଥିଲା ।

କଥା କହିବାରେ ସେ ଅତି ପଟୁ ଥିଲେ । କଥାଶୃଙ୍ଖଳାରେ ସେ ଅପରର ମନ ମୋହି ଦେଉଥିଲେ । ଲୋକମାନଙ୍କ ଉନ୍ନତି ପାଇଁ ସେ ବେଳେ ବେଳେ ଭର୍ତ୍ସନା କରୁଥିଲେ । ତାଙ୍କର କଥା ବଡ଼ ଚିତ୍ତାକର୍ଷକ ହେଉଥିଲା । ବକ୍ତୃତା ଓ ସୁଆଳି ଜବାବ ମଧ୍ୟ ତାଙ୍କର ଅତି ଲୋକରଞ୍ଜନକାରୀ ହେଉଥିଲା ।

ଥରେ ତାହାଙ୍କୁ ଜଣେ ଇଂରେଜ ଭଦ୍ରବ୍ୟକ୍ତି କହିଲେ "Sun never sets from the British Empror." ଅର୍ଥାତ ବ୍ରିଟିଶ ସାମ୍ରାଜ୍ୟରୁ ସୂର୍ଯ୍ୟ କେବେ ଅସ୍ତ ହୁଏ ନାହିଁ ।" ଏହାର ଉତ୍ତରରେ ମଧୁସୂଦନ ପରିହାସରେ କହିଲେ ।

"Because the British people cannot be trusted in darkness." କାରଣ ବ୍ରିଟିଶ ଲୋକଙ୍କୁ ଅନ୍ଧାରରେ ବିଶ୍ୱାସ କରାଯାଇ ପାରିବ ନାହିଁ ।

ମଧୁସୂଦନ ଏପରି ଟିକିଏ ଟିକିଏ କଥାରେ ତାଙ୍କର ବିଚକ୍ଷଣତା ଏବଂ ପ୍ରତ୍ୟୁତ୍ପନ୍ନମତିତ୍ୱର ପରିଚୟ ଦେଉଥିଲେ । ମଧୁସୂଦନ ଦାରିଦ୍ର୍ୟ ବିଦ୍ୟାଳୟରେ

ବାଲ୍ୟକାଳରୁ ଶିକ୍ଷା ପାଇଥିଲେ । ସେ ବିଶ୍ୱାସ କରୁଥିଲେ ଯେ ଦୁନିଆରେ ଏହି ଦରିଦ୍ର ସନ୍ତାନମାନେହିଁ ତାହାଙ୍କ ସାଧନାବଳରେ ଯଶସ୍ୱୀ ପୁରୁଷ ହୋଇ ପାରନ୍ତି । ସେ କହୁଥିଲେ ଯେ, ଯଦି ତାଙ୍କ ବାପା ଟଙ୍କା ଜମା କରି ରଖି ଥାନ୍ତେ; ତେବେ ତାଙ୍କର ଜୀବନ ଏପରି ଗଢ଼ାଯାଇ ପାରି ନ ଥାନ୍ତା । ମଧୁସୂଦନଙ୍କ ଗୁରୁଭକ୍ତି ମଧ୍ୟ ଅସାଧାରଣ ଥିଲା । ସେ ତାହାଙ୍କ ପିଲାଦିନର ମାଟିବଂଶ ଅବଧାନଙ୍କୁ ଅନେକ ବର୍ଷଧରି ବୃତ୍ତି ଦେଉଥିଲେ । ସେ ନିଜ ମାଙ୍କୁ ବେଶୀ ସୁଖ ପାଉଥିଲେ ବୋଲି, ମାଙ୍କର ପ୍ରତିମୂର୍ତ୍ତି—ନିଜ ଦେଶ ବା ଜନ୍ମଭୂମିକୁ ଏପରି ସୁଖ ପାଉଥିଲେ ।

ସେ ଜୀବନର ବଡ଼ ଯତ୍ନ ନେଉଥିଲେ । କୌଣସି ଗୃହର ଥରେ ତାଙ୍କର ବେମାର ପଡ଼ିଥିଲା । କୋଠିର ଲୋକେ ତାକୁ କାଚ ଗିଲାସରେ ଔଷଧ ନ ଦେବାରୁ, ସେ ଭାରି ବିରକ୍ତ ହେଲେ । ଜୀବନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ବୋଲି ସେ ଉପଦେଶ ଦେଉଥିଲେ । ଓକିଲ କିମ୍ବା ଗୃହର ଜୀବନରେ କଣ କିଛି ପାର୍ଥକ୍ୟ ଅଛି ? ମନୁଷ୍ୟାହିଁ ମନୁଷ୍ୟ । ଜୀବନ ଥରେ ନଷ୍ଟ ହୋଇଗଲେ, ଆଉ ମିଳିବ ନାହିଁ; ତେଣୁ ଜୀବନର ଅତି ଯତ୍ନ ନେବାକୁ ସେ ପରାମର୍ଶ ଦେଉଥିଲେ । ମଧୁସୂଦନ ଥରେ ଯାହା ଠିକ୍‌ରୂପେ ବୁଝିଥିଲେ ବା ଯେଉଁ ନୀତି ସେ ଗ୍ରହଣ କରି ନେଉଥିଲେ, ତହିଁରୁ ସେ ବିଚଳିତ ହେଉ ନ ଥିଲେ । ନିଜର ଦୃଢ଼ମତ ଏବଂ ନୀତି ପଦାରେ ପ୍ରକାଶ କରିବାକୁ ସେ ପଶ୍ଚାତ୍‌ପଦ ହେଉ ନ ଥିଲେ ।

ମଧୁସୂଦନ ବଡ଼ ଭାବୁକ ଥିଲେ । ସେ ପଢ଼ନ୍ତି ଅଳ୍ପ, କିନ୍ତୁ ଭାବନ୍ତି ବେଶୀ । ତାଙ୍କ ବକ୍ତୃତା ଓ ଲେଖାବଳରେ ମଧୁସୂଦନଙ୍କ ଭାବୁକତା ଏବଂ ମୌଳିକ ଚିନ୍ତାଧାରାର ଦୃଷ୍ଟାନ୍ତ ପାଉଁ । ସେ ଜଣେ ବଡ଼ ପାଠକ ଥିଲେ । ବହି ସଉକ ତାଙ୍କର ଏକ ବିଶେଷତ୍ୱ ଥିଲା । ସେ ପ୍ରତ୍ୟହ ରୋଜା (Diary) ଲେଖୁଥିଲେ । ସେ ନିୟମିତ ହିସାବ ପତ୍ର ରଖୁ ନ ଥିଲେ । ଟଙ୍କାକୁ ସେ ବେଶୀ ଖାତିର କରୁ ନ ଥିଲେ । ସେ ସଙ୍ଗୀତପ୍ରିୟ ଥିଲେ । ସେ ଅତି ନିପୁଣ ଭାବରେ ମନୁଷ୍ୟଚରିତ୍ର ପଢି ପାରୁଥିଲେ । ଚରିତ୍ର ଗଠନରେ ତାଙ୍କର ବିଶେଷ ଦୂରଦର୍ଶିତା ଥିଲା । ଭବିଷ୍ୟତ ବକ୍ତାଭଳି ସେ ସବୁ କଥା ଏପରି କହୁଥିଲେ, ଯାହା ଅକ୍ଷରେ ଅକ୍ଷରେ ସତ୍ୟ ହୋଇ ଯାଉଥିଲା ।

ସେ ନିଜ ବାପାଙ୍କ ଠାରୁ ରାଗ ସ୍ୱଭାବ ଏବଂ ମାତାଙ୍କଠାରୁ ଉଦାର ହୃଦୟ ପାଇଥିଲେ । ତାଙ୍କର ଦୁଇ ଭଉଣୀଙ୍କ ସହିତ ମଧୁସୂଦନଙ୍କର ଯଦିଓ ରୂପରେ ଅନେକ ସାମ୍ୟ ଥିଲା, ଗୁଣରେ ଖୁବ୍ ପାର୍ଥକ୍ୟ ଥିଲା । ସେ ଗମ୍ଭୀର ଓ ଶାନ୍ତ

ସ୍ୱଭାବର ଲୋକ ଥିଲେ । ସେ ପରିହାସପ୍ରିୟ ଥିଲେ । ମଧୁସୂଦନଙ୍କ ସମ୍ପର୍କରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କ ପ୍ରାଇଭେଟ ସେକ୍ରେଟେରୀ ଥରେ ଲେଖିଥିଲେ,

"ମୁଁ କହିପାରେଁ ଯେ ଓଡ଼ିଆମାନଙ୍କୁ ଅଭିବାଦନ କରିବାର କଥା, କାରଣ ସେ ଆପଣଙ୍କ ଭଳି ଶକ୍ତିଶାଳୀ ଏବଂ ସୁଶିକ୍ଷିତ ନେତା ପାଇ ଅଛନ୍ତି । †

୧୯୨୧ ଯାଏ ମଧୁସୂଦନ ଉତ୍କଳ ଜାତୀୟ ଜୀବନର କର୍ଣ୍ଣଧାର ଥିଲେ । ୧୯୨୧ ପରେ ତାହାଙ୍କ ବୟସ ଏବଂ ରାଷ୍ଟ୍ରନୀତିର ଗତି ତାହାଙ୍କୁ କାର୍ଯ୍ୟରୁ ଅବସର ପ୍ରଦାନ କରିଥିଲା ।

ମଧୁସୂଦନ ହସ୍ତପୁଷ୍ଟ, ବିଚକ୍ଷଣ, ପଣ୍ଡିତ, ପ୍ରତିଭାଶାଳୀ ଏବଂ ଭାବୁକ ଥିଲେ । ତାଙ୍କର ତୀକ୍ଷ୍ଣ ମେଧାଶକ୍ତି ଥିଲା । ସେ ତର୍କପଟୁ ଥିଲେ । ସେ ସମସ୍ତ ସମସ୍ୟାକୁ ପରିଶୀଳନ ଓ ପର୍ଯ୍ୟାଲୋଚନା କରୁଥିଲେ । ବିଷୟର ବିଶ୍ଳେଷଣ ତାଙ୍କର ଗୋଟିଏ ବଡ଼ ଗୁଣ ଥିଲା । ସେ ତର୍କବେଳେ ବିଷୟ ବସ୍ତୁର ମୌଳିକ ନୀତି ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ସେ ଏ ବିଷୟରେ ଦାର୍ଶନିକ ପାଲଟି ଯାଉଥିଲେ । ସେ ମେଳାପି ଓ ବନ୍ଧୁପ୍ରିୟ ଥିଲେ । ସେ ବଡ଼ ନିୟମାନୁବର୍ତ୍ତୀ ଥିଲେ ।

ମଧୁସୂଦନ ଅନେକ ସମୟରେ ଏକା ଏକା କଟାନ୍ତି । ତାହାଙ୍କୁ ତହିଁରେ ଭାବିବାକୁ ସୁବିଧା ମିଳେ । ସେ ବେଳେ ବେଳେ ଗାଆନ୍ତି—

"ଚଲୋ ମୁସାଫୀର ବାନ୍ଧି ଗଣ୍ଠିରିଆ<br>
ଦୁନିଆ ଦଉଲତ ରହେଗା ନେହି,<br>
ତୁମ ଭି ଯାଏଗା, ଅମ ଭି ଯାଏଗା<br>
ଯାଏଗା ଦୁନିଆ ସାରା ।"

ଆଉରି ମଧ୍ୟ ସେ ବେଳେ ବେଳେ ପାର୍ଶ୍ୱଲିଖିତ ଗୀତ ପଦମାନ ଆବୃତ୍ତି କରୁଥିଲେ ।

---

† "I may say so the oriyas are to be Congratulated in having so able and Cultured a champion as yourself."

"ଆମି ଖ୍ରୀଷ୍ଟେର ଚରଣ ଯାଇ ଧରେ
'ଯେନ ରକ୍ଷା ପାଏ ମରଣ ପରେ ।"

କିମ୍ବା

"ଯିଶୁତେ ଆନନ୍ଦ ରଖୋ
ନିରାନନ୍ଦ ହବେ ନା ଗୋ ।"

ସେ କଥା କହିଲା ବେଳେ ନାନା ଢଙ୍ଗ, ତମାଳୀ ବାଡନ୍ତି । ବୃଦ୍ଧ ବୟସରେ ସେ ଅନେକ ସମୟରେ କହୁଥିଲେ;

"ନେରେ ବଳଦ ଠାଣି ଦୁଣି
ଆଉ ନାହିଁ ଦୋହଚ ପାଣି ।"

ସେ ଭାଗବତରୁ ବେଳେ ପଦେ ପଦେ କହି ଦେଉଥିଲେ, ଯଥା:—

"ତୋର ମନ ତୋହର ଗୁରୁ
ଉଦ୍ଧବ ତୁ କେତେ ପଚାରୁ ।"

କିମ୍ବା ଗାଁ—ଗୀତରୁ ପଦେ ଗାଉଥିଲେ

"ହାଲ ଗଲା ହୁଆଲ ଗଲା
ମୁଖରୁ ଗଲା ନାଲ... ।"

ମଧୁସୂଦନଙ୍କ ପ୍ରଭାବରେ ଯେ କେବଳ ଓଡ଼ିଆ ଜାତି ମୁଗ୍ଧ ହୋଇଥିଲେ, ତାହା ନୁହେଁ ; ଯେଉଁ ବିଶିଷ୍ଟ ବ୍ୟକ୍ତିଗଣ ତାହାଙ୍କ ସଂସ୍ପର୍ଶରେ ଆସିଥିଲେ, ସମସ୍ତେ ତାହାଙ୍କ ପ୍ରତିଭାରେ ମୋହିତ ହୋଇଥିଲେ ; ବଡ଼ ବଡ଼ ଶାସ୍ତ୍ରପଣ୍ଡିତ, ରାଷ୍ଟ୍ରନୀତିଜ୍ଞ, ଓକିଲ, ସମସ୍ତେ ମଧୁସୂଦନଙ୍କ ବିଚକ୍ଷଣତା ଓ ପ୍ରତିଭାରେ ଅତି ଚମତ୍କୃତ ହେଉଥିଲେ । ମଧୁସୂଦନ କିପରି ପ୍ରତି କଥାରେ ସତର୍କ ଥିଲେ, ତାହାର ଗୋଟିଏ ଶ୍ରେଷ୍ଠ ଉଦାହରଣ ଏଠାରେ ଦିଆ ଯାଉଅଛି । ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରଣେତା ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜ ମଧୁସୂଦନଙ୍କ ଛବି ତାଙ୍କ ଭାଷାକୋଷରେ ଦେବାକୁ ଚାହିଁଥିଲେ । ମଧୁସୂଦନ ତାହାର ଉତ୍ତରରେ ଗୋପାଳ ବାବୁଙ୍କୁ ଲେଖିଥିଲେ—

ତୁମ୍ଭେ 'ମଇଳା'ର ସଂଜ୍ଞା ଜାଣ କି ? ଭୁଲ ସ୍ଥାନରେ ଥିବା ପଦାର୍ଥହିଁ ମଇଳା । ତୁମ୍ଭ ପୃଷ୍ଠରେ କାଳୀ ମଇଳା, କିନ୍ତୁ ଛପା ବହିରେ ଯେଉଁଠି ଠିକ ସ୍ଥାନରେ ବ୍ୟବହାର ହୋଇଅଛି, ତାହା ମଇଳା ନୁହେଁ, ଓଠରେ କାଳୀ ଅଛି; କିନ୍ତୁ ଏହା ମଇଳା ନୁହେଁ । କିନ୍ତୁ ଟିକିଏ ମୋ

ଆଙ୍ଗୁଳ ଆଗରେ ଦେଖୁଅଛ, ତାହା ମଇଳା । ତେଣୁ ମୁଁ ତାହଁକ ଓଡ଼ିଆ ଉଏବ୍‌ଷ୍ଟାରରେ ମୋର ଛବି ଦେବାକୁ ଚାହେଁ ନାହିଁ, ତୁମ୍ଭେ ଦେଖି ପାରିବ ।"†

ସାହିତ୍ୟିକ ଅଭିଧାନରେ ମଧୁସୂଦନଙ୍କ ଭଳି ଜଣେ ସ୍ୱଷ୍ଟବାଦିଙ୍କର ଛବି ଦରକାର ନାହିଁ ବୋଲି ସେ ଏପରି ଲେଖିଥିଲେ । ମାତ୍ର ଓଡ଼ିଆ ପାଠକ-ପାଠିକା ଜାଣିଥିବେ ଭାଷାକୋଷରେ ଅନେକ ଅପ୍ରୟୋଜନୀୟ ଛବି ଓ ଲେଖା ସ୍ଥାନ ପାଇଥିବାରୁ ସେହି ଅଭିଧାନର ବହୁ କଟୁ ସମାଲୋଚନା ପରେ ହୋଇ ଯାଇଅଛି ।

ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଗଠନ ସମ୍ପର୍କରେ କଟକର ପ୍ରସିଦ୍ଧ ଉକିଲ ଓ ଜନନେତା ସୁଭାଷ ବୋଷଙ୍କର ପିତା ସ୍ୱର୍ଗୀୟ ଜାନକୀନାଥ ବୋଷ କହିଥିଲେ, "ମୁଁ ଯଦି କହିବାକୁ ଅନୁମତି ପାଏଁ, କହିବି ଯେ ସେ (ମଧୁସୂଦନ) ତିନୋଟି ପୃଥକ ପୃଥକ ସଂସ୍କୃତିର ସମଷ୍ଟି ଥିଲେ । ସେ ଏହି ଭୂଇଁର ସନ୍ତାନ ଥିବାରୁ ଏବଂ କଟକର ଏକ ସମ୍ଭ୍ରାନ୍ତ କରଣବଂଶରୁ ଆସିଥିବାରୁ ସେ ଓଡ଼ିଶାର ପୁରାତନ ଓ ଆଧୁନିକ ସଂସ୍କୃତି ଗ୍ରହଣ କରି ପାରିଥିଲେ । ତା'ପରେ ସେ ଶିକ୍ଷା ପାଇଁ କଲିକତା ଯାଇଥିଲେ । ସେ ଅନେକ ବିଦ୍ୱାନ ଓ ପୂଜ୍ୟ ମିଶନାରୀମାନଙ୍କ ସଂସ୍ପର୍ଶରେ ଆସିଥିଲେ । ସେଠାରୁ ସେ ଇଉରୋପୀୟ ସଂସ୍କୃତିର ଶ୍ରେଷ୍ଠ ଅଂଶ ଗ୍ରହଣ କରିଥିଲେ । ଯଦି ମୋତେ ଅନୁମତି ଦିଅନ୍ତି ମୁଁ କହିବି ଯେ ବଙ୍ଗର ମଧ୍ୟ ଅନେକ ସମ୍ଭ୍ରାନ୍ତ ବଂଶରେ ମିଶିବାର ସେ ସୁଯୋଗ ପାଇଥିଲେ । ତେଣୁ ବଙ୍ଗଳା ସଂସ୍କୃତିର ଯାହା ବିଶେଷତ୍ୱ ତାହା ମଧ୍ୟ ଗ୍ରହଣ କରି ପାରିଥିଲେ । ମୋ ଆଗରେ ସେ ସର୍ବଦା ତିନୋଟି ବିଶିଷ୍ଟ ସଂସ୍କୃତିର ମୂର୍ତ୍ତିମାନ ପ୍ରତୀକ ସ୍ୱରୂପ ଥିଲେ ।"

( ୧୭ )

ମଧୁସୂଦନ ଛାତ୍ର ସମାଜକୁ ବିଶେଷ ସୁଖ ପାଉଥିଲେ । ପରାଧୀନ ଉତ୍କଳ ତଥା ଭାରତର ଶିକ୍ଷା ଯେପରି ସୀମାବଦ୍ଧ ଥିଲା, ତହିଁରେ ତାହାର

---

† "Do you know the best definition of dirt? Dirt is a matter in the wrong place. Ink is dirt on your chirt but it is in right place in a book where ink is used in painting. There is ink in the latter, but it is not dirt. But I see a little of it on my finger, then it is dirt. So you will see why I do not wish my photograph in the Oriya Webster."

ଜନମତପଥରେ ଅଗ୍ରଦୂତ ହେବା ଭାର ଛାତ୍ର, ଛାତ୍ରୀମାନଙ୍କ ଉପରେ । ତେଣୁ ମଧୁସୂଦନ ଛାତ୍ର ଓ ସେମାନଙ୍କ ସମ୍ମିଳନୀ ସମ୍ପର୍କରେ କଣ ଭାବୁଥିଲେ, ତାହା ଏଠାରେ ଦିଆ ଯାଉଅଛି ।

"ଜାତୀୟ ଜାଗରଣ ବିକାଶ କରିବା ଏହି ସମ୍ମିଳନୀମାନଙ୍କର ପ୍ରଧାନ ଲକ୍ଷ୍ୟ ହେବା ଉଚିତ । ଆମ୍ଭମାନଙ୍କ ଛାତ୍ରମାନେ ସଂଗଠିତ ସଂଘ ଓ ଜାତି ମଧ୍ୟରେ ପାର୍ଥକ୍ୟ ବୁଝିବା ଦରକାର । ଯେତେବେଳେ କେତେ ଗୁଡ଼ିଏ ଲୋକ ଏକାଠି ହୋଇ ଗୋଟିଏ ସଂଗଠିତ ସଂଘ ବା ସମାଜ ଗଢ଼ନ୍ତି ଓ ସେମାନଙ୍କର ସାଧାରଣ ଲକ୍ଷ୍ୟ ଥାଏ, ସେମାନେ ସଂଘ, କମ୍ପାନୀ, ସିଣ୍ଡିକେଟ, ଏପରିକି କୌଣସି ବେ ଆଇନ ସଂଘ ମଧ୍ୟ ଏକ ଅପରାଧ କରିବା ପାଇଁ ଗଢ଼ି ପାରନ୍ତି । ଏପରି କ୍ଷେତ୍ରରେ ସେମାନେ ସେମାନଙ୍କ ସାଧାରଣ ଲକ୍ଷ୍ୟରୁହିଁ ଉତ୍ସାହ ପାଆନ୍ତି, ଏପରି ସମାଜର ସଭ୍ୟମାନଙ୍କ ନାଁ ଏବଂ ସେମାନେ କେଉଁ ତାରିଖରେ ପ୍ରଥମେ ଏକତ୍ରିତ ହେଲେ, ତୁମ୍ଭେମାନେ ଜାଣି ପାର । ଏକ ଜାତି ସଂଗଠିତ ହୋଇ ନ ପାରେ । ଅମ୍ଭେମାନେ ଜାଣୁ ନାହିଁ କେବେ ଗୋଟିଏ ଜାତି ଗଠିତ ହେଲା । ଜାତିର ଇତିହାସ ଅଛି । ଏହା ବର୍ତ୍ତମାନ ବଂଶଧରମାନଙ୍କର ପୂର୍ବ ପୁରୁଷଙ୍କ କୀର୍ତ୍ତିର ବିବରଣୀ । ତୁମ୍ଭେମାନେ ଗୋଟିଏ ଜାତି ସୃଷ୍ଟି କରି ପାରିବ ନାହିଁ । ଏକ ଜାତୀୟ ସମ୍ମିଳନୀର ଲକ୍ଷ୍ୟ ହେଉଛି ଜାତିର ଇତିହାସ ଓ ପୂର୍ବ ପୁରୁଷଙ୍କ କୀର୍ତ୍ତି ସକଳରୁ ଉଦ୍‌ବୋଧନ ଗ୍ରହଣ କରିବା । ପ୍ରତ୍ୟେକ ଛାତ୍ର ଅନୁଭବ କରିବା ଉଚିତ ଯେ ତାହାଙ୍କ ପଛରେ ତାଙ୍କ ପୂର୍ବ ପୁରୁଷ ଛିଡ଼ା ହୋଇ ଅଛନ୍ତି । ତାହାଙ୍କ ସମ୍ମୁଖରେ ଭବିଷ୍ୟତ୍ ବଂଶଧର ଅଛନ୍ତି ଏବଂ ତାହାଙ୍କର ଲକ୍ଷ୍ୟ ହେବା ଉଚିତ ଯେ ଅତୀତ ଓ ଭବିଷ୍ୟତକୁ ଏପରି ସଂଯୋଗ କରିବା, ଯେପରି କି ଏହାର ଫଳ ସମୃଦ୍ଧିଭାବରେ ମଙ୍ଗଳପ୍ରଦ ହେବ ।"

ଛାତ୍ରାବାସ (Hostel life) ସମ୍ପର୍କରେ ମଧୁସୂଦନ ଲେଖିଥିଲେ,

"ଅତି ବୃହତ୍ ନକ୍ଷତ୍ରସବୁ ( ବଡ଼ ପ୍ରତିଭାଶାଳୀ ଲୋକେ ) ଛାତ୍ରାବାସ ( Hostel )ରେ ଥିଲେ । ଏହି ଛାତ୍ରାବାସ ଛାତ୍ରଜୀବନରେ ଏକ ବଡ଼ କଥା । ଛାତ୍ରଜୀବନରେ ଅନ୍ୟ ଛାତ୍ରମାନଙ୍କ ସାହଚର୍ଯ୍ୟ ଏକ ମୂଲ୍ୟବାନ ଉଦ୍‌ବୋଧନ । ମଣିଷ ପାଣିରେ ବଞ୍ଚିପାରେ ନାହିଁ ! ମାଛ ଶୁଖିଲା ମାଟିରେ ବଢ଼ି ପାରିବ ନାହିଁ । ଉଭୟ କ୍ଷେତ୍ରରେ କାରଣ ହେଉଛି ଅସ୍ୱାସ୍ଥ୍ୟକର ବେଷ୍ଟନୀ । ଆମ ଜୀବନର ବେଷ୍ଟନୀରୁହିଁ ଅମ୍ଭେମାନେ ଆମ୍ଭମାନଙ୍କ ଆଦର୍ଶ ଗ୍ରହଣ କରୁଁ । ପ୍ରକୃତି-ଜୀବନ ତୁଲ୍ୟ ନୈତିକ ଏବଂ ମାନସିକ ଜୀବନରେ

ମଧ୍ୟ ଏହା ସତ୍ୟ । ଯଦି ଛାତ୍ର ଅନେକ ସମୟ କିମ୍ବା ତା ସମୟର ବେଶୀ ଭାଗ ଏମିତି ଲୋକଙ୍କ ସଙ୍ଗରେ ମିଶେ, ଯାହାଙ୍କର ଲକ୍ଷ୍ୟ ଛାତ୍ରଜୀବନଠାରୁ ଅଲଗା, ତେବେ ସେହି ଛାତ୍ର ନିଶ୍ଚୟ ଛାତ୍ରଜୀବନ ଲକ୍ଷ୍ୟରୁ ଭ୍ରଷ୍ଟ ହେବ ।"

ମଧୁସୂଦନ ୧୯୨୭ ମସିହାରେ ଛାତ୍ର ସମ୍ମିଳନୀକୁ ଉଦ୍‌ବୋଧନ ଦେଇ ନିଜ ଜୀବନର ଦୃଷ୍ଟାନ୍ତ ଦେଇଥିଲେ । ସେ କହିଥିଲେ—

"ମୁଁ ଓଡ଼ିଆ ଜାତିର ପ୍ରଥମ ଏମ୍. ଏ. । ମୁଁ ପ୍ରଥମ ଓଡ଼ିଆ ଓକିଲ ଓ ବର୍ତ୍ତମାନ ପ୍ରଥମ ଆଡ୍‌ଭୋକେଟ । ଇଉରୋପକୁ ପ୍ରଥମ ଓଡ଼ିଆ ଯାତ୍ରୀ । ପ୍ରାଦେଶିକ ଓ ଭାଇସରଏଲ ବ୍ୟବସ୍ଥାପକ ସଭାର ପ୍ରଥମ ଓଡ଼ିଆ ସଭ୍ୟ, ପ୍ରଥମ ଓଡ଼ିଆ ମନ୍ତ୍ରୀ ଓ ମନ୍ତ୍ରୀତ୍ୱ ପରିତ୍ୟାଗ କରିବାରେ ପ୍ରଥମ ଭାରତୀୟ ମନ୍ତ୍ରୀ । ଭାରତର ପ୍ରଥମ ଗ୍ରାଜୁଏଟ ଏତେ କାମ କେଉଁଟି କରି ନାହାଁନ୍ତି, ଯାହା ମୁଁ କରିଛି । ବଙ୍ଗର ପ୍ରଥମ ଗ୍ରାଜୁଏଟ ଜଣେ ପେନସନ ପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ ଭାବରେ ମରିଥିଲେ । ଆଜି ମୋ ଜୀବନର ଲକ୍ଷ୍ୟ ଯାହା ଅର୍ଦ୍ଧ ଶତାବ୍ଦୀ ପୂର୍ବେ ବି ତାହା ଥିଲା—ତାହା ହେଉଛି ଉତ୍କଳକୁ ପୃଥିବୀର ଆଖି ଆଗକୁ ଆଣିବା । ଯଦି ପ୍ରଥମ ଗ୍ରାଜୁଏଟ ଏତେ କରି ପାରିଲା, ତେବେ ଅନ୍ୟ ବଂଶଧରମାନେ ଆହୁରି ଅନେକ କାମ କରି ପାରିବେ, ଯଦି ସେମାନଙ୍କ ଦାୟିତ୍ୱ ସେମାନେ ବୁଝନ୍ତି । ବ୍ୟକ୍ତିଗତ ଭାବରେ ନୁହେଁ ଜାତିର ଜଣେ ବୋଲି ଜାଣି ସେମାନେ ସେମାନଙ୍କ ଦାୟିତ୍ୱ ଉପଲବ୍ଧି କରିବା ଉଚିତ ।"

ଏହି ଉକ୍ତିରୁ ଛାତ୍ରମାନେ କି ଉଦ୍‌ବୋଧନ ପାଇଥିଲେ, ତାହା ଓଡ଼ିଶାର ଇତିହାସ ପୂର୍ଣ୍ଣ ପ୍ରମାଣ ଦେବ ।

( ୧୮ )

ମଧୁସୂଦନ ମୁଖ୍ୟତଃ ରାଷ୍ଟ୍ରନୀତିଜ୍ଞ । ସେ ଜନନେତା ବା ନାୟକ । ଧର୍ମବୀର, ସାହିତ୍ୟବୀରଙ୍କଠାରୁ ରାଷ୍ଟ୍ରନୀତିବୀରଙ୍କ ସ୍ଥାନ ଓ କାର୍ଯ୍ୟ ସ୍ୱତନ୍ତ୍ର । ଏମାନେ ସଭ୍ୟତାର ଅଧିକାରୀ ହୁଅନ୍ତି । ଦେଶର ଅର୍ଥନୀତି, ରାଷ୍ଟ୍ରନୀତି, ଶିକ୍ଷାନୀତି ସବୁ ଏମାନଙ୍କ ଦ୍ୱାରା ପରିଚାଳିତ ହୁଏ; ତେଣୁ ଏମାନଙ୍କ କାର୍ଯ୍ୟର ବିଶେଷତ୍ୱ ଯେତିକି ଅଛି, ଗୁରୁତ୍ୱ ବି ସେତିକି ଅଛି ।

ମଧୁସୂଦନଙ୍କ ଧୈର୍ଯ୍ୟ, ନିଷ୍ଠା, କର୍ମପ୍ରୀତି କିପରି ଅତି ଆଦର୍ଶ ଧରଣର ଥିଲା, ତାହାର ପ୍ରମାଣ ତାହାଙ୍କ ଜୀବନୀରୁ ପରିସ୍ଫୁଟ । ଏହା ବ୍ୟତୀତ ସେ କଳା ଓ ଶିଳ୍ପପ୍ରେମିକ ଥିଲେ । ଉତ୍କଳର ଅତୀତ ତାଙ୍କ ପ୍ରାଣରେ ଜାତୀୟତାର ଶୁଭ ଉଦ୍‌ବୋଧନ ଜଗାଇଥିଲା ।

ମଧୁସୂଦନ ଜଣେ ଜାତୀୟତାବାଦୀ ଥିଲେ। ଭାରତୀୟତା ବହୁ ଜାତୀୟତା ଯୋଗ ଗଠିତ। ଭାରତ ନୁହେଁ ଆଧୁନିକ ଦୁନିଆର ଗତି ଅନୁସାରେ ଏସିଆ, ଏପରି କି ସମସ୍ତ ପୃଥିବୀରୁ ଯୋଗ ଏକ ରାଷ୍ଟ୍ର-ସଂଘର ପରିକଳ୍ପନା ପ୍ରକାଶ ପାଉଅଛି। ଓଡ଼ିଆ, ବଙ୍ଗାଳୀ, ଗୁଜୁରାଟୀ, ହିନ୍ଦୀ ଭାଷୀ ସମସ୍ତେ ବୃହତ୍ତର ଭାରତୀୟତା ରକ୍ଷା ଓ ଭାରତୀୟ ଯୁକ୍ତରାଷ୍ଟ୍ରର ଅଭିବୃଦ୍ଧି ପାଇଁ ଚେଷ୍ଟିତ। ଭାରତ ସୁଦୃଢ଼ ହେଉ; ଏହା ମଧୁସୂଦନଙ୍କର ମଧ୍ୟ ଇଚ୍ଛା ଥିଲା। ମାତ୍ର ଶିକୁଳିର ପ୍ରତ୍ୟେକ ଅଂଶ ଶକ୍ତ ଓ ନିଖୁଣ ହେଲେ ଶିକୁଳିହିଁ ଶକ୍ତ ଓ ନିଖୁଣ ହୁଏ। ମଧୁସୂଦନ ଏହି ନୀତିଟି ଗମ୍ଭୀରଭାବରେ ଉପଲବ୍ଧି କରିଥିଲେ। ତେଣୁ ସେ ଉତ୍କଳର ଉନ୍ନତି ଓ ଦୃଢ଼ତା ପାଇଁ ଏତେ ଯତ୍ନ ଓ ପରିଶ୍ରମ କରିଥିଲେ। ମଧୁସୂଦନ ତାଙ୍କର ଏହି ନୀତି ଅତି ସ୍ପଷ୍ଟ ଭାଷାରେ ୧୯୨୮ ମସିହା ଉତ୍କଳ ସମ୍ମିଳନୀରେ କହିଥିଲେ,

"ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର କିଛି ପ୍ରଭେଦ ନାହିଁ। ଶରୀରର କୌଣସି ଅଂଶରେ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ। କିନ୍ତୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ।"

ମଧୁସୂଦନ ପ୍ରକୃତରେ ନିଖିଳ ଭାରତର ମଙ୍ଗଳାକାଂକ୍ଷୀ ଥିଲେ। ନିଖିଳ ଭାରତ ଆମର ଆମର କହି ଶୂନ୍ୟ ଚିତ୍କାର ଅପେକ୍ଷା ଉତ୍କଳ ପାଇଁ ପ୍ରକୃତ କାର୍ଯ୍ୟ କରିବାରେ ଗୌରବ ଅଛି। ଉତ୍କଳ ପାଇଁ ନୀରବ ସାଧନା ଭାରତକୁ ମଧ୍ୟ ସ୍ୱର୍ଣ୍ଣମୟ କରିପାରେ। ଏ ସମ୍ପର୍କରେ ଗାନ୍ଧୀଜୀଙ୍କ ନୀତି ଆଲୋଚ୍ୟ। ଗାନ୍ଧୀଜୀ ସମଗ୍ର ବିଶ୍ୱ ସମାଜ ପାଇଁ ଆଦର୍ଶ ନିୟନ୍ତ୍ରଣ କରୁଥିଲେ ମଧ୍ୟ, ସେ ଭାରତ ପାଇଁ କାର୍ଯ୍ୟ କରୁଥିଲେ କାହିଁକି ? କାରଣ ମଣିଷର ଶକ୍ତି ସୀମାବଦ୍ଧ। ମଧୁସୂଦନ ଆଜୀବନ ବ୍ୟବସ୍ଥାପକ। ସେତେବେଳେ ବ୍ୟବସ୍ଥା ସଭାର ଶକ୍ତି ସୀମାବଦ୍ଧ। ତଥାପି ସେ ତାଙ୍କ ଲୋକକଲ୍ୟାଣ ଲକ୍ଷ୍ୟରୁ ବିଚଳିତ ହୋଇ ନ ଥିଲେ। ସ୍ୱାର୍ଥ ସିଦ୍ଧି କିମ୍ବା ତୋଷାମଦ ତାହାଙ୍କ ସାଧାରଣ ଜୀବନରେ କେବେ କୌଣସି କଳଙ୍କ ଛାୟାପାତ କରି ନ ଥିଲା। ସେ ସରକାରଙ୍କର ନିର୍ମମ ସମାଲୋଚକ ଥିଲେ।

ଭାରତୀୟ ଯୁକ୍ତରାଷ୍ଟ୍ରରେ ପ୍ରତ୍ୟେକ ରାଷ୍ଟ୍ର (ସେତେବେଳେ ପ୍ରଦେଶ) ତାହାର ସ୍ୱଭାଷା, ସାହିତ୍ୟ, ସଭ୍ୟତା ଓ ସଂସ୍କୃତିର ବଶିଷ୍ଟତା ବଜାୟ ରଖିବାକୁ ଚାହେଁ। ତଥାପି ସମସ୍ତେ ଭାରତୀୟ ଯୁକ୍ତରାଷ୍ଟ୍ରର ଉନ୍ନତି ଏବଂ ଦୃଢ଼ତା ଆଶା ଓ ଆକାଂକ୍ଷା କରନ୍ତି। ପ୍ରତ୍ୟେକ ରାଷ୍ଟ୍ର ପ୍ରତ୍ୟେକ ରାଷ୍ଟ୍ର ସହିତ ସଂଯୋଗୀକରଣ (union)ଚାହେଁ, ଏକୀକରଣ (unity) ନୁହେଁ। ତେଣୁ

ମଧୁସୂଦନଙ୍କ ଉତ୍କଳପ୍ରୀତି ଓ ଉତ୍କଳ-ଜାତୀୟତା ଏବଂ ଜାତୀୟ ଜୀବନ ଗଠନରେ ବରଂ ସେ ଅଗ୍ରଦୂତ ଓ ଦୂରଦ୍ରଷ୍ଟାରୂପେ କାର୍ଯ୍ୟ କରିଥିଲେ ।

ମଧୁସୂଦନ ଯେଉଁସବୁ ସ୍ୱପ୍ନ ଜାତୀୟ ଉନ୍ନତି ନିମିତ୍ତ ଦେଖୁଥିଲେ, ତାହା ସେ କାର୍ଯ୍ୟରେ ପରିଣତ କରି ପାରି ନାହାନ୍ତି । ସେ ଶେଷ ଜୀବନରେ ସେଥିପାଇଁ ବୋଧହୁଏ କହୁଥିଲେ, "ମୋର ଜୀବନ ନିରର୍ଥକ" (My life is a failure), କିନ୍ତୁ ଭାବୁକ ଭାବରେ ମଧୁସୂଦନଙ୍କ ସ୍ଥାନ ଅତି ଉଚ୍ଚରେ । ଏହି ବିଫଳତାହିଁ ଆଗାମୀ ଯୁଗର ସାର୍ଥକତାର ପରିମବାଣୀ ।

ମଧୁସୂଦନ ତାଙ୍କ ଯୁଗର ଅଗ୍ରଦୂତ । ତାଙ୍କର ସ୍ୱପ୍ନ, ପ୍ରେରଣା ଓ ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ଲୋକ ବଡ଼ ଅଭାବ ଥିଲେ । ସେତେବେଳେ ସାଧାରଣ ଜୀବନ ବଡ଼ ସୀମାବଦ୍ଧ ଥିଲା । ସେ ଯୁଗସ୍ରଷ୍ଟା । କିନ୍ତୁ ତାଙ୍କ ବାଣୀକୁ ଦେଶରେ ପ୍ରଚୁର କରି ଦେଶକୁ ସଂଗଠିତ ଏବଂ ତାଙ୍କ ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ଦୁଇଟି ପ୍ରତିବନ୍ଧକ ଥିଲା । ପ୍ରଥମତଃ କର୍ମୀର ଅଭାବ, ଦ୍ୱିତୀୟରେ ବିଦେଶୀ ସରକାର । କିନ୍ତୁ ମଧୁସୂଦନ ନିଜ ଜୀବନରେ ଜଣେ ଅସାଧାରଣ ଆଦର୍ଶ-ବ୍ୟକ୍ତିରୂପେ ନିଜେ ନିଜ ଜାତିକୁ ଆଲୋକ ଦେଇଥିଲେ ।

ମଧୁସୂଦନଙ୍କୁ ବୁଝିବାକୁ ଏବଂ ଇତିହାସ ପୃଷ୍ଠାରେ ତାଙ୍କ ମୂଲ୍ୟ ଅବଧାରଣା କରିବାକୁ ଅମ୍ଭମାନଙ୍କ ଗାନ୍ଧୀ, ଗୋପବନ୍ଧୁଙ୍କୁ ତାଙ୍କ ସହିତ ତୁଳନା କରିବାକୁ ହେବ । ଗାନ୍ଧିଙ୍କର ସ୍ୱାତନ୍ତ୍ର୍ୟ—ତାହାଙ୍କ ମହାତ୍ମା ପଣିଆ, ନୈତିକ ଶକ୍ତି । ଗାନ୍ଧୀ ଭାରତ ପାଇଁ ଯାହା ଚିନ୍ତା କରିଥିଲେ, ମଧୁସୁଦନ ଉତ୍କଳ ପାଇଁ ତାହା ଚିନ୍ତା ଓ କାର୍ଯ୍ୟ କରିଥିଲେ । ମାତ୍ର ଦୁଇ ବ୍ୟକ୍ତିତ୍ୱ ମଧ୍ୟରେ ପାର୍ଥକ୍ୟ ହେଉଛି ଗାନ୍ଧୀ ବିଦ୍ରୋହୀ । ଗାନ୍ଧୀ ସଂଗ୍ରାମର ସେନାପତି, ମଧୁସୂଦନ ବିକାଶମୂଳକ ପନ୍ଥାରେ ବିଶ୍ୱାସୀ ଥିବାରୁ ବ୍ୟବସ୍ଥାପକ । ଏବଂ ମଧୁସୂଦନ ସ୍ୱାଧୀନତା ଚାହୁଁଥିଲେ ମଧ୍ୟ ରାଷ୍ଟ୍ରନୈତିକ ସ୍ୱାଧୀନତା ପାଇଁ କୌଣସି କାର୍ଯ୍ୟ କରି ଦେଶରେ ବିଦ୍ରୋହ ସୃଷ୍ଟି କରି ନ ଥିଲେ । ମାତ୍ର ସେ ତାହାଙ୍କ ନିଜ ଉପାୟରେ ମାଡ଼ରେଟ ଦଳ (Liberals) ରାଷ୍ଟ୍ରନୀତିକଙ୍କ ଭଳି ଏହି ସ୍ୱାଧୀନତା ବ୍ୟବସ୍ଥା ସଭାଗୃହରେ ପାଇବାକୁ ଚେଷ୍ଟା ଓ କାର୍ଯ୍ୟ କରିଥିଲେ । ସେ ରାଷ୍ଟ୍ରନୈତିକ ସ୍ୱାଧୀନତା ଅପେକ୍ଷା ଆର୍ଥନୀତିକ ସ୍ୱାଧୀନତା ଉପରେ ବିଶେଷ ଦୃଷ୍ଟି ଦେଇଥିଲେ । ଗାନ୍ଧୀ ରାଷ୍ଟ୍ରନୀତି ସହିତ ଧର୍ମକୁ ମିଶାଇ ଦେଇଥିଲେ । ମଧୁସୂଦନ ତାହା ପସନ୍ଦ କରୁ ନ ଥିଲେ, ତଥାପି ଶିଳ୍ପ-ସଂଗଠନ, ଶିକ୍ଷା ଓ ଅନ୍ୟାନ୍ୟ ଜାତୀୟ କାର୍ଯ୍ୟ ଦିଗରୁ ବିଚାର କଲେ ମଧୁସୂଦନ ଉତ୍କଳର ଗାନ୍ଧୀ ।

ଗାନ୍ଧୀଙ୍କ ଦାନର ବିଶେଷତ୍ୱ ତାଙ୍କ ଅହିଂସାବାଦ ଓ ସତ୍ୟାଗ୍ରହ। ଏହାର ଫଳ ଯାହା ହେଉନା କାହିଁକି ଲୋକମତ ଗଠନ ଓ ଭାରତୀୟ ସ୍ୱାଧୀନତା ଲାଭପାଇଁ ଲୋକଦୃଷ୍ଟି ଆକୃଷ୍ଟ କରିବାରେ, ଏହା ବହୁ ପରିମାଣରେ ସଫଳ ହୋଇଥିଲା ବୋଲି କହିବାକୁ ହେବ।

ଗୋପବନ୍ଧୁ ପ୍ରଥମେ ମଧୁସୂଦନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ। ଗୋପବନ୍ଧୁଙ୍କ ଉତ୍କଳପ୍ରାଣ ଓ ଉତ୍କଳପ୍ରୀତି ମଧୁସୂଦନଙ୍କ ପରମ୍ପରାରୁ ଗୋପବନ୍ଧୁ ଗ୍ରହଣ କରି ନେଇଥିଲେ। ମଧୁସୂଦନ ବିଦେଶୀ ଶାସନରେ ଯେପରି ସ୍ୱଦେଶଶିଳ୍ପ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ, ଗୋପବନ୍ଧୁ ସେହିପରି ଜାତୀୟ ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି ଦେଇଥିଲେ। ଏହିଠାରେ ଗୋପବନ୍ଧୁଙ୍କର ବିଶେଷତ୍ୱ। କାରଣ ଗୋପବନ୍ଧୁ ମୁଖ୍ୟତଃ କବି ଓ ସାହିତ୍ୟିକ ଥିଲେ। ମାତ୍ର ଯେତେବେଳେ ଗାନ୍ଧୀଙ୍କ ଆନ୍ଦୋଳନ ଆରମ୍ଭ ହୋଇଛି, ଗୋପବନ୍ଧୁ ସ୍ୱାଧୀନତା ଲାଗି ସବୁ ତ୍ୟାଗ କରି ଦେଇଥିଲେ। ଉତ୍କଳ ପ୍ରିୟତର ହେଲେ ଭାରତୀୟ ସ୍ୱାଧୀନତା ପ୍ରିୟତମ। ଭାରତ ସ୍ୱାଧୀନତାରେହିଁ ଉତ୍କଳର ସ୍ୱାଧୀନତା ଲାଭ। କାରଣ ଭାରତଠାରୁ ଉତ୍କଳ ବିଚ୍ଛିନ୍ନ ନୁହେଁ। ତେଣୁ ଗୋପବନ୍ଧୁଙ୍କ ମୌଳିକତା ଦୁଇ ଦିଗରୁ ନଷ୍ଟ ହେଲେ ମଧ୍ୟ, ସେ ଏକ ମଧୁର ସମନ୍ୱୟ। ତାହାଙ୍କ ଉପରେ ମଧୁସୂଦନ ତଥା ଗାନ୍ଧିଙ୍କ ପ୍ରଭାବ ଅତି ପରିସ୍ଫୁଟ। ତଥାପି ଗୋପବନ୍ଧୁଙ୍କ ବିଶେଷତ୍ୱ ତାହାଙ୍କ ସରଳ, ସେବାପରାୟଣ ବ୍ୟକ୍ତିତ୍ୱରେ; ତାହାଙ୍କ କବିତ୍ୱପୂର୍ଣ୍ଣ ଲେଖାବଳୀରେ ଜାତିକୁ ଅନୁପ୍ରାଣିତ କରିବାରେ। ଏହା ମଧୁସୂଦନଙ୍କର ନ ଥିଲା, ଗାନ୍ଧିଙ୍କର ମଧ୍ୟ କେତେକ ପରିମାଣରେ ନ ଥିଲା। ଗୋପବନ୍ଧୁ ଏକ ଅସାଧାରଣ ସାହିତ୍ୟିକ। ତାଙ୍କର ଭାଷା ଉପରେ ବିପୁଳ ଶକ୍ତି ଥିଲା। ଭାଷା ତାଙ୍କ କଲମମୁନରେ ତାଙ୍କରି ଭାବ ପ୍ରକାଶ କରିବାକୁ ଅଭିପ୍ରେତ ହୋଇଥିଲା। ସେ ଏ ବିଷୟରେ ଅସାଧାରଣ। ଗୋପବନ୍ଧୁ ବିପ୍ଳବର ବନ୍ଧୁ। ମଧୁସୂଦନ ବିକାଶର ସଖା। ମଧୁସୂଦନ ଶିଳ୍ପ ସଂଗଠକ। ଗୋପବନ୍ଧୁ ଶିକ୍ଷା-ସଂଗଠକ। ମଧୁସୂଦନ ଜାତିର ସଭ୍ୟତା ଗଠନରେ ବିଶେଷ ମନ ଦେଇଥିଲେ; ଗୋପବନ୍ଧୁ ଜାତିର ସଂସ୍କୃତି-ସଂଗଠନରେ ଅଗ୍ରଣୀ ହୋଇଥିଲେ। ଉଭୟ ବନ୍ୟା ଦୁର୍ଭିକ୍ଷରେ ନିଃସ୍ୱାର୍ଥ ଲୋକସେବା କରିଥିଲେ।

ଗୋପବନ୍ଧୁ ଭାରତର ରାଷ୍ଟ୍ରନୀତିର ଅଗ୍ରଗତି ଏବଂ ଧାରାର ଠିକ୍ ପର୍ଯ୍ୟବେକ୍ଷଣକାରୀ ଓ ବିଶ୍ଳେଷଣକାରୀ ଥିଲେ। ସେ ଯେତେବେଳେ ସୁବିଧା ପାଇଲେ, ସମ୍ମିଳନୀ ତ୍ୟାଗ କରି ଭାରତୀୟ କଂଗ୍ରେସରେ ଝାମ୍ପ ଦେଇ, ବିପ୍ଳବର ଘୂର୍ଣ୍ଣୀ ମଧ୍ୟରେ ନିଜକୁ ହଜାଇ ଦେଇଥିଲେ। ତହିଁରେ ବି ସେ ମୃତ୍ୟୁ ବରଣ କରି ଅମୃତ ସନ୍ତାନ ହୋଇଥିଲେ। ମଧୁସୂଦନ ଯେଉଁ ଓଡ଼ିଆ-

ଭାଷୀ ଅଞ୍ଚଳ ର ଏକତ୍ରୀକରଣ ପାଇଁ କାର୍ଯ୍ୟ କରୁଥିଲେ, ତାହା ମଧ୍ୟ କାସ୍ଥିତ୍ ପରିମାଣରେ ତାଙ୍କର ଜୀବଦ୍ଦଶାରେ ଏବଂ ସେହି ସହଯୋଗ କାଳରେ ସଫଳ ହୋଇଥିଲା । ମାତ୍ର ଗୋପବନ୍ଧୁ ଆଦର୍ଶଗୁଡିକ ହତାଶା ମଧ୍ୟରେ ଭବିଷ୍ୟତ ପ୍ରତି ଦୃଢ଼ ଆଶା ରଖି ମୃତ୍ୟୁ ବରଣ କରିଥିଲେ । ମଧୁସୂଦନଙ୍କ ପରେ 'ଦେଶମିଶ୍ରଣ' ଦୁହା "ଗଡ଼ଜାତ ମିଶ୍ରଣ" ନାମରେ ମଧ୍ୟ ସେହି ସହଯୋଗ କାଳରେ ସାଧିତ ହୋଇଥିଲା । ମଧୁସୂଦନ ଉତ୍କଳ ଇତିହାସରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ବ୍ୟକ୍ତିତ୍ୱ ଏକ ଆଲୋକ । ଆଲୋକର ଧର୍ମ ବା ସ୍ୱଭାବ ଦେଶ, କାଳ, ପାତ୍ରକୁ ଏଡ଼ାଇ ଶୁଦ୍ଧ ଆଲୋକ ପ୍ରଦାନ । ମାତ୍ର ରାଷ୍ଟ୍ରନୀତି, ଅର୍ଥନୀତି ଦେଶ, କାଳ ଓ ପାତ୍ରଦ୍ୱାରା ଆବଦ୍ଧ । ତେଣୁ ମଧୁସୂଦନଙ୍କ ଚିନ୍ତାଧାରା ଏହି ଦିଗରୁ ସୀମାବଦ୍ଧ, କାରଣ ସେ ଶୁଦ୍ଧ ଆଦର୍ଶବାଦୀ ନ ଥିଲେ । ତଥାପି ମଧୁସୂଦନଙ୍କ ବହୁ ଚିନ୍ତାଧାରା ମଧ୍ୟ ଦେଶରେ ପ୍ରିୟ ହୋଇ ରହିଛି ଓ ରହିବ । ଏହିଠାରେ ଭାବୁକ ହିସାବରେ ତାଙ୍କର ସାର୍ଥକତା ! ମଧୁସୂଦନ ବଙ୍ଗର ସାର ଆଶୁତୋଷଙ୍କ ଭଳି ବ୍ୟକ୍ତିଙ୍କୁ ଗଢ଼ିଥିଲେ, ମାତ୍ର ସାର ସୁରେନ୍ଦ୍ରନାଥଙ୍କ ସଙ୍ଗେ ମିଳି ଉତ୍କଳର ସ୍ୱାର୍ଥକୁ ବଳି ଦେଇ ପାରି ନ ଥିଲେ । ମଧୁସୂଦନଙ୍କ ପ୍ରଭାବ ଉତ୍କଳର ଚିନ୍ତାଧାରାରେ ଅତି ସ୍ପଷ୍ଟ । ଗୋପବନ୍ଧୁ, ବ୍ରଜସୁନ୍ଦର, ଶଶିଭୂଷଣ, ଶଚୀନନ୍ଦନ, ତତ୍କାଳୀନ କନିକା ରାଜା ରାଜେନ୍ଦ୍ରନାରାୟଣ ପ୍ରଭୃତିଙ୍କ ଉପରେ ତାଙ୍କର ପ୍ରଭାବ ଅତି ସ୍ପଷ୍ଟ । ଗୋପବନ୍ଧୁ ମଧ୍ୟ ମଧୁସୂଦନଙ୍କ ଜୁନିୟର ଓକିଲ ଭାବରେ କେତେଦିନ କାର୍ଯ୍ୟ କରିଥିଲେ । ୧୯୨୧ ପରେ କିନ୍ତୁ ଗୋପବନ୍ଧୁ ବିଦ୍ରୋହୀ ନେତା । ମଧୁସୂଦନ ପଛରେ ପଡ଼ି ଗଲେ । ବିପ୍ଳବ ଚାହେଁ—ସ୍ପନ୍ଦନ, ସାହସିକତା, ପ୍ରେରଣା ଓ ବିଶ୍ୱାସ । ସାଧାରଣତଃ ବୃଦ୍ଧ ବିପ୍ଳବର ବିରୁଦ୍ଧରେ । ମଧୁସୂଦନ ବିକାଶ-ମାର୍ଗର ପଥିକ । ବୟସ ବି ତାଙ୍କର ହୋଇ ଯାଇଥିଲା, ତେଣୁ ସେ ବିଦ୍ରୋହ ପାଇଁ ଯୁବକମାନଙ୍କୁ ଛାଡ଼ ଦେଇ ନିଜେ ପଛେଇ ପଡ଼ିଲେ । ଗୋପବନ୍ଧୁ ତ୍ୟାଗ, ସେବାର ପ୍ରତୀକ ହେଲେ । ଘଟଣାଚକ୍ରରେ ଗୋପବନ୍ଧୁ ମଧୁସୂଦନ ଥାଉ ଥାଉଁ ତାଙ୍କ ସ୍ଥାନ ଅଧିକାର କରି ନେଲେ । ଏହା ବ୍ୟତୀତ ଆଉ ଯେଉଁମାନେ ଯେ ମଧୁସୂଦନଙ୍କ ଚିନ୍ତାଧାରା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିବେ ଏହା ଜଣା ଶୁଣା ।

ଆଧୁନିକ ରାଷ୍ଟ୍ରନୈତିକ ଉତ୍କଳରେ ତିନୋଟି ବ୍ୟକ୍ତିତ୍ୱର ପ୍ରଭାବ ପରିସ୍ଫୁଟ । ମଧୁସୂଦନ, ଗାନ୍ଧୀ ଓ ଗୋପବନ୍ଧୁ । ମଧୁସୂଦନ ପ୍ରବଳ ଆତ୍ମ-ବିଶ୍ୱାସୀ ଥିଲେ । ତାହାଙ୍କ ଗୃହୀତ ନୀତି ସେ କେବେ ବଦଳାଇ ନାହାନ୍ତି । କିନ୍ତୁ ସମୟ ବଦଳି ଯାଇଛି । ଗୋପବନ୍ଧୁ ସମୟର ଗତି ବୁଝି ନିଜର ମତ ପରିବର୍ତ୍ତନ କରିଥିଲେ । ବ୍ୟବସ୍ଥାପକ ଜୀବନରେ ମଧୁସୂଦନ ଓଡ଼ିଶାର

ବହୁ ରାଷ୍ଟ୍ରନୀତିଜ୍ଞ ଓ ବ୍ୟବସ୍ଥାପକମାନଙ୍କର ଆଦର୍ଶ ହୋଇ ପାରିଥିଲେ । ବହୁ ଯୁବକ ତାଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ପାରିଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଭଳି ଲୋକେ ମଧ୍ୟ ମଧୁସୂଦନଙ୍କ ପ୍ରଜାପ୍ରତିନିଧି ସଭାରେ କାର୍ଯ୍ୟ କରିଥିଲେ । ଓଡ଼ିଶାର ବହୁ ରାଷ୍ଟ୍ରନୀତିଜ୍ଞ ହୁଏତ ସମ୍ମିଳନୀର ସ୍ୱେଚ୍ଛାସେବକ ହୋଇ ଥିବେ ! ଏହା ବ୍ୟତୀତ ବହୁ ସହକର୍ମୀ ତାଙ୍କର ପରଜୀବନରେ କଂଗ୍ରେସ ଅନୁଷ୍ଠାନରେ ଯୋଗ ଦେଇ ଓଡ଼ିଶାର ଜାତୀୟ ଜୀବନକୁ ଦୃଢ଼ ଓ ଶକ୍ତିଶାଳୀ କରିଥିଲେ ।

( ୧୯ )

ମଧୁସୂଦନଙ୍କ ଏହି ସବୁ ସାଧାରଣ ଜୀବନ ବ୍ୟତୀତ ଆମ୍ଭେମାନେ ତାଙ୍କର ଆଉ ଗୋଟିଏ ଜୀବନ ଦେଖୁଁ; ତାହା ତାଙ୍କ ଓକାଲତି ଜୀବନ । ଏହି କାର୍ଯ୍ୟରେ ମଧୁସୂଦନ ତାଙ୍କର ମୂଲ୍ୟବାନ୍ ସମୟ ବହୁତ ନଷ୍ଟ କରିଥିଲେ, ବହୁ ଅର୍ଥ ମଧ୍ୟ ଉପାର୍ଜନ କରିଥିଲେ; ଏବଂ ଏହି ବ୍ୟବସାୟ ଆଜି ମଧ୍ୟ ଏକ ସମ୍ମାନଜନକ (Honourable) ବ୍ୟବସାୟ ରୂପେ ପରିଗଣିତ । ତେଣୁ ଏହି ଜୀବନ ସମ୍ପର୍କରେ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ମଧ୍ୟ ଆମ୍ଭମାନଙ୍କର ଆଲୋଚ୍ୟ । ମଧୁସୂଦନ ଜଣେ ଅତି ଅସାଧାରଣ ତାର୍କିକ । ସେ ମୌଳିକ ଆଇନଗତ ଓ ନୀତିଗତ ପ୍ରଶ୍ନ ଉଠାଇବାରେ ଧୁରନ୍ଧର ଥିଲେ । ଅନ୍ୟାୟ ବିରୁଦ୍ଧରେ ନିର୍ଭୀକ ଭାବରେ ଲଢ଼ିବା ପ୍ରୀତି ସେ ଏହି 'ସମ୍ମାନଜନକ ବ୍ୟବସାୟକୁ ହୁଏତ ଗ୍ରହଣ କରିଥିଲେ । ସତୀରକ୍ତ, ସେ ତ ପରମ୍ପରା । ମାତ୍ର ପ୍ରତ୍ୟହ ଯେଉଁ କର୍ମଧାରାରେ ତାଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ର ଗଠିତ ଏବଂ ରସାଣିତ ହେଉଥିଲା, ତାହା ହେଉଛି ଓକିଲାତି । ମଧୁସୂଦନ ମକ୍କେଲମାନଙ୍କ ନଥିପତ୍ର ଅତି ତନ୍ନ ତନ୍ନ କରି ଦେଖୁଥିଲେ ଏବଂ ଯେଉଁମାନେ ତାହାଙ୍କ କାର୍ଯ୍ୟରେ ସହଯୋଗ କରୁଥିଲେ, ତାହାଙ୍କୁ ମଧ୍ୟ ଭଲଭାବରେ ଅର୍ଥ ଦେବା ବନ୍ଦୋବସ୍ତ କରି ଦେଉଥିଲେ । ମଧୁସୂଦନଙ୍କର ତର୍କ, ସୁଆଲ ଜବାବ ବିଷୟରେ ବହୁ ପ୍ରବଚନ ଆଜି ମଧ୍ୟ ଓକିଲ ଓ ମକ୍କେଲଙ୍କ ମହଲରେ ପ୍ରଚଳିତ ଅଛି । ମଧୁସୂଦନ ଏକ ଜୀବନ୍ତ ଅନୁଷ୍ଠାନ ପାଲଟି ଯାଇଥିଲେ । ଓକିଲ ଭାବରେ ଏପରି ସୁଖ୍ୟାତି ଓଡ଼ିଶାରେ ଆଜଯାଏଁ କାହାରି ଭାଗ୍ୟରେ ଘଟି ନାହିଁ; ଯଦିଓ ବହୁ ଓକିଲ ବର୍ତ୍ତମାନ ବିଚାର ବିଭାଗରେ ଶୀର୍ଷ ସ୍ଥାନ ଅଧିକାର କରି ବସିଲେଣି । ମଧୁସୂଦନ କହୁଥିଲେ କଥାବାର୍ତ୍ତା ମଣିଷକୁ ପ୍ରତ୍ୟୁତ୍ପନ୍ନମତି କରେ । ଏହା ସେ ହୁଏତ ତାଙ୍କ ସମ୍ମାନଜନକ ଓକିଲାତି ବ୍ୟବସାୟରୁ ଗ୍ରହଣ କରିଥିଲେ । ପ୍ରକାରାନ୍ତରେ ମଧୁସୂଦନ ଓକିଲାତି ବ୍ୟବସାୟରୁ ଜୀବନର ଗଭୀର ଅନୁଭୂତି ଏବଂ ପ୍ରତ୍ୟକ୍ଷ ଜ୍ଞାନଲାଭ କରି ପାରିଥିଲେ ।

( ୨୦ )

ମଧୁସୂଦନଙ୍କ ଗୃହକର୍ତ୍ରୀ ସମ୍ପର୍କରେ କିପରି ମତ ଥିଲା, ତାହା ମଧ୍ୟ ଚିତ୍ତାକର୍ଷକ । ମଧୁସୂଦନ ଥରେ ତାହାଙ୍କର ଜଣେ ଉତ୍କଳ ବନ୍ଧୁଙ୍କୁ ପଚାରିଲେ, "ତୁମ୍ଭେ କେବେ ଗୃହକର୍ତ୍ରୀ କରିଛ ?" ବନ୍ଧୁ ଉତ୍ତର ଦେଲେ, "ଗୃହକର୍ତ୍ରୀ କରିବାକୁ ମୁଁ କେବେ ସ୍ୱପ୍ନ ମଧ୍ୟ ଦେଖି ନାହିଁ ।" ମଧୁସୂଦନ ଏହି ଉତ୍ତରରେ ପ୍ରୀତ ହୋଇ କହିଲେ, "ଭଲ କରିଛ । ଥରେ କଟକରେ ଜଣେ ବଙ୍ଗୀୟ ଭଦ୍ରବ୍ୟକ୍ତିଙ୍କ ଘରେ ଗୋଟିଏ ପୋଷା ବାଘ ପିଞ୍ଜରାବଦ୍ଧ ହୋଇଥିଲା । ଦୈବାତ୍ ଦିନେ ବାଘଟି ପିଞ୍ଜରାରୁ ମୁକୁଳି ଯାଇଥିଲା । ଲୋକମାନେ ବଡ଼ ଭୀତ, ତ୍ରସ୍ତ ହୋଇଥିଲେ । ମାତ୍ର ଯେପରି ସେହି ବାଘର ମାଲିକ ସେ ସମ୍ବାଦ ପାଇଲେ, ସେ ସଙ୍ଗେ ସଙ୍ଗେ ଆସି ମହାବଳବାଘର କାନ ଧରି ତାକୁ ପିଞ୍ଜରାରେ ଭର୍ତ୍ତି କରି ଦେଲେ ।" ମଧୁସୂଦନଙ୍କର କହିବାର ଉଦ୍ଦେଶ୍ୟ ମହାବଳ ବାଘ ପିଞ୍ଜରାରେ ପୋଷା ମାନି ରହିଲେ, ତାହାର ଅବସ୍ଥା ଏହି ଗୃହକର୍ତ୍ରୀମାନଙ୍କ ଭଳି ହୋଇଯାଏ । ଅର୍ଥାତ୍ ମଧୁସୂଦନ ଗୃହକର୍ତ୍ରୀଙ୍କୁ ଉଚ୍ଚ ଦୃଷ୍ଟିରେ ଦେଖୁ ନ ଥିଲେ ।

( ୨୧ )

ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଓ କୀର୍ତ୍ତି ଅଧ୍ୟାୟ ସମାପ୍ତ ହେବା ପୂର୍ବରୁ ଜୀବନ ବିଷୟରେ ତାଙ୍କର କେତେକ ଦର୍ଶନ ଆଲୋଚିତ ହେବା ଉଚିତ । ମଧୁସୂଦନଙ୍କ ବକ୍ତୃତା, କବିତା, ଲେଖା, ସଙ୍ଗୀତ ସର୍ବତ୍ର ଗୋଟିଏ ଲୋକ ଦେଖାଯାଏ; ତାହା ଦାର୍ଶନିକ ମଧୁସୂଦନ ବା ଭାବୁକ ମଧୁସୂଦନ ।

ମଧୁସୂଦନଙ୍କ କଲମରୁ ଅଳ୍ପ ସାହିତ୍ୟ ବାହାରିଲେ ମଧ୍ୟ ତାହା ଅତି ମୂଲ୍ୟବାନ । ସେଗୁଡ଼ିକ ଓଡ଼ିଆ ଜାତିର କୋଠ ସମ୍ପତ୍ତି । ତାହାଙ୍କ ଅନେକ ଲେଖା ଇଂରାଜୀରେ, ସେଗୁଡ଼ିକ ମଧ୍ୟ ତାହାଙ୍କ ଭାବଧାରା ଜାଣିବାକୁ ଅତି ଉପାଦେୟ । ସେ ଜୀବନ ବିଷୟରେ ଲେଖିଥିଲେ,

"ଜୀବନ ଏକ ଦୌଡ଼ । ପୃଥିବୀ ଦୌଡ଼ ପଡ଼ିଆ । ଜନ୍ମ ଦୌଡ଼ିବାର ଆରମ୍ଭସ୍ଥଳ । ମୃତ୍ୟୁ ଲକ୍ଷ୍ୟ ବିନ୍ଦୁ । ଲକ୍ଷ୍ୟ ସ୍ଥାନରେ ଠିକ୍ ପହଞ୍ଚିବାପାଇଁ କର୍ତ୍ତବ୍ୟ ବାଡ଼ ପରି ।"† ଅଥବା ମଧୁସୂଦନ ପୁଣି ଲେଖିଥିଲେ,

---

† Life is a race, the world is the race-course. Birth is the starting point, death the goal and duty the fence to keep us straight in the way to that goal."

"ଆମ୍ଭ ଯୁବକମାନଙ୍କର ଲକ୍ଷ୍ୟ ହେବା ଉଚିତ ଯେ ସେମାନଙ୍କ ଅଭ୍ୟନ୍ତରରେ ଏକ ଆତ୍ମା ଉପଲବ୍ଧି କରିବା । ସେମାନେ ଅନୁଭବ କରିବା ଉଚିତ ଯେ ଜୀବନର ଏକ ଲକ୍ଷ୍ୟ (Mission) ଅଛି । ନିଜ ପାଇଁ କେବଳ ଆନନ୍ଦ ପଛରେ ଦୌଡ଼ିବା ଜୀବନର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଅନ୍ୟକୁ ସୁଖୀ କରିବା ପାଇଁ ସୁବିଧା ଏବଂ ସୁଯୋଗ ଖୋଜିବା ହେଉଛି ପ୍ରକୃତ ଜୀବନର ଉଦ୍ଦେଶ୍ୟ ।" † ଅନ୍ୟତ୍ର ସେ କହିଥିଲେ,

"ସମ୍ମାନ ଓ ଆନନ୍ଦ ପଛରେ ଜୀବନ ଏକ ଦୌଡ଼ । ଯୌବନ ହିଁ ଏହି ଦୌଡ଼ ଆରମ୍ଭର ସମୟ । ତୁମ୍ଭମାନଙ୍କ ସ୍ରଷ୍ଟାଙ୍କ ଦ୍ୱାରା ତୁମ୍ଭେମାନେ ଏକ ଉଦ୍ଦିଷ୍ଟ ଉଦ୍ଦେଶ୍ୟ ବା ଲକ୍ଷ୍ୟ ପୂରଣ ପାଇଁ ପ୍ରେରିତ ହୋଇଅଛ । ତୁମ୍ଭେ ତୁମ୍ଭର ସ୍ଥାନ ଖୋଜି ନିଅ । ସେଠାରେ ତୁମ୍ଭେ ତୁମ୍ଭ ଅଭ୍ୟନ୍ତରସ୍ଥ ହୃଦୟ ଓ ଶିର ଉପରସ୍ଥ ଭଗବାନଙ୍କ ଆଶ୍ରୟ ନେଇ ଛିଡ଼ା ହୁଅ ଏବଂ ସଂସାରରେ ଲୋକେ ତୁମ୍ଭମାନଙ୍କ ସ୍ୱଭାବକୁ କିପରି ଭାବୁଛନ୍ତି, ତାହା ଖାତିର ନ କରି ତୁମ୍ଭମାନଙ୍କ କର୍ତ୍ତବ୍ୟ କରିଯାଅ । ତୁମ୍ଭେ ଯେତେବେଳେ ତୁମ୍ଭମାନଙ୍କ ଗୃହଆଡ଼ ସଂସାର ସହିତ କୌଣସି ସଂପର୍କ ସ୍ଥାପନ କରି ନ ଥାଇ ମା ପେଟରେ ଥିଲ, ଭଗବାନ ତୁମ୍ଭମାନଙ୍କୁ ପ୍ରଥମେ ଜୀବନଦାନ କରିଥିଲେ । ତୁମ୍ଭେ ଯେତେବେଳେ ମୃତ୍ୟୁଶଯ୍ୟାରେ ଶୋଇବ ଏବଂ ଚକ୍ଷୁରେ ଦେଖି ପାରିବ ନାହିଁ ; କାନରେ ଶୁଣି ପାରିବ ନାହିଁ ; ତୁମ୍ଭର ଜିହ୍ୱା କଥା କହି ପାରିବ ନାହିଁ; ଏବଂ ତୁମ୍ଭ ବିବେକ ସହିତ ମଧ୍ୟ ତୁମ୍ଭର କୌଣସି ସମ୍ପର୍କ ରହିବ ନାହିଁ । ଯଦି ସେହି ଜୀବନ ଦୌଡ଼ର ଶେଷ ମୁହୂର୍ତ୍ତରେ ତୁମ୍ଭର ବିବେକ କହେ, ତୁମ୍ଭେ ତୁମ୍ଭ କର୍ତ୍ତବ୍ୟ ସମ୍ପାଦନ କରିଅଛ; ତେବେ ଜଗତ ଯାହା କହୁ ପଛକେ ସ୍ଥିର ଥାଅ ଯେ ତୁମ୍ଭର ସୃଷ୍ଟିକର୍ତ୍ତା ତୁମ୍ଭକୁ ଏହିପରି କହିବେ—

---

†"It shoud be the aim of our young men to realise the presence of a soul within them, to feel that life is a mission, the object of life is not the pursuit of pleasure for ones' self, but to seek apptounit'es and means to make others happy."

"Life is a chase after hounor and happiness. Youth is the time when this chase is started. Each of you has been to sent to the world with a mission from your creator. Find out your post.

"ବତ୍ସ ! ଭଲ କାମ କରଅଛ । ମୃତ୍ୟୁ ପର୍ଯ୍ୟନ୍ତ ତୁମ୍ଭେ ବିଶ୍ୱସ୍ତ ଥିଲ । ମୁଁ ତୁମ୍ଭଙ୍କୁ ଏକ ଜୀବନମୁକୁଟ ଦେବି ।"

ମଧୁସୂଦନ ଏହି ଜୀବନମୁକୁଟରେ ମଣ୍ଡିତ ହୋଇଥିଲେ କି ନାହିଁ, ତାହା ମଧୁସୂଦନଙ୍କ ଜୀବନୀଦ୍ୱାରା ନିଶ୍ଚୟ ପ୍ରମାଣିତ ହୁଏ ।

---

Take your stand there with heart within and god over head, and do your duty without caring to know how the world views your conduct. When God first breathed life into you, you were in your mothers womb, having no connection with the world around, when you would be lying in your death-bed and your eyes will fail to see, your ears will fail to hear, your tougue fail to speak, you will have no connection with your conscience, and if at that finish of the life's race your conscience says, you have done your duty, whatever the world might say of you rest assured your creator will address you in these words:—

"Well done my child, thow hast been faithful unto death. I will give thee a corwn of life."

ମୃତ୍ୟୁଶଯ୍ୟାରେ ମଧୁସୂଦନ

ବାମ ପଟରୁ:—(୧) ଶ୍ରୀମତୀ ସରଳା ଦେବୀ, (୩) ଶ୍ରୀମତୀ ସୁଧାଂଶୁବାଳା ହାଜରା, (୪) ଶ୍ରୀମତୀ ଶୈଳବାଳା ଦାସ, (୫) ସ୍ୱାମୀ ବିଚିତ୍ରାନନ୍ଦ ଦାସ, (୬) ଶ୍ରୀ ହାଡ଼ିବନ୍ଧୁ ବେହେରା (ବିଶ୍ୱାସୀ ଚାକର), (୭) ଶିବେନ୍ଦ୍ରପଦ ହାଜରା, (୮) ଶ୍ରୀ ପାଟେଶ୍ୱର ମହାନ୍ତି, (୯) ତାଙ୍କ ପଛରେ ଶ୍ରୀ ଗୁଣନିଧି ମହାନ୍ତି, (୧୦) ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି, (୧୧) ଶ୍ରୀ ବ୍ରଜସୁନ୍ଦର ଦାସ, (୧୨) ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଓ ଅନ୍ୟାନ୍ୟ ବନ୍ଧୁମାନେ ।

# ଅଷ୍ଟାଦଶ ଅଧ୍ୟାୟ

## ମହାଯାତ୍ରୀ

## (୧)

ଅଷ୍ଟୋଜ୍ଞ୍ଚାଷ ପୂର୍ତ୍ତି ପର ମଧୁସୂଦନଙ୍କ ଜୀବନରଶ୍ମି କ୍ରମେ କ୍ଷୀଣ ଆସୁଥିଲା । ୧୯୩୪ ମସିହା ଜାନୁଆରୀ ବାର ତାରିଖ ଦିନ କଟକରେ ତାଙ୍କ କୋଠରି ଛାତ ଉପରେ ବୁଲୁ ବୁଲୁ ସେ କହି ପକାଇଲେ, "ମୋର ମନେ ହେଉଛି ପ୍ରାୟ ପନ୍ଦର ଦିନ ପରେ ମୁଁ ମରିଯିବ ।"

ଏହି ଘଟଣାର ତିନିଦିନ ପରେ ଅର୍ଥାତ୍ ଜାନୁଆରୀ ପନ୍ଦର ତାରିଖ ଦିନ ବେହାରର ଭୂମିକମ୍ପ । ଘଟିଲା । ମଧୁସୂଦନ ଖଟ ଉପରେ ଶୋଇ ଦେଖନ୍ତି ଯେ ତାଙ୍କ ଶୋଇଲା ଖଟଟି ସମ୍ପୂର୍ଣ୍ଣ ଦୋହଲିଥିଲା । ସେତିକିବେଳେ ଦୌଡ଼ିଆସି ତାଙ୍କ ବିଶ୍ୱସ୍ତ ଭୃତ୍ୟ ହାଡ଼ିବନ୍ଧୁ (ହାଡ଼ିଆ) ତାଙ୍କୁ କେବଳ ଘରୁ ସମ୍ମୁଖସ୍ଥ କୋଠା ଛାତ ଉପରକୁ ଘେନିଗଲା । ମଧୁବାବୁ ସେଦିନ ଭୂମିକମ୍ପର କବଳ କବଳରୁ ରକ୍ଷା ପାଇଗଲେ । ପରେ ଯେତେବେଳେ ସେ ଭୂମିକମ୍ପର ଭୟାବହ ବୃତ୍ତାନ୍ତ ଶୁଣିଲେ ତାଙ୍କ ହୃଦୟ ଦୁଃଖକ୍ଲିଷ୍ଟ ହୋଇଥିଲା । କେହିଁ ଆରଦିନ ସେ କହିଲେ, "ଈଶ୍ୱରଙ୍କୁ ମନେ ମନେ ପ୍ରାର୍ଥନା କରୁଥିଲି । ଘରଟି ମୋ ଉପରେ ପଡ଼ିଗଲେ ତ ହେଲା ।"

ମଧୁବାବୁ ବୃଦ୍ଧ ଅବସ୍ଥାରେ ଅତି ଦୁର୍ବଳ ହୋଇ ପଡ଼ିଥିଲେ । କୋଠି ଛାତ ଉପରେ କେବଳ ଟିକିଏ ବୁଲାଚଲା କରି ପାରୁଥିଲେ । ଖାଦ୍ୟ ରୋଲ ଟିକିଏ ଦୁଧ, ଖଇ କିମ୍ବା ଅମୃତଭଣ୍ଡା ସିଝା । ଔଷଧ ତାଙ୍କର ଚିରସାଥି ଥିଲା । ରକ୍ତଚାପ ଜାନୁଆରୀ ଅଠର ତାରିଖରେ କେବଳ ୯୬ ଥିଲା । କ୍ରମେ କ୍ରମେ ମଧୁବାବୁଙ୍କ ଶରୀର ବେଶୀ ଅସୁସ୍ଥ ହେବାକୁ ବସିଲା । କଟକରେ ଗୋଟିଏ ସାଧାରଣ ପ୍ରାର୍ଥନା ସଭା ଅନୁଷ୍ଠିତ ହୋଇ ତାଙ୍କ ଦୀର୍ଘଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ହୋଇଥିଲା ।

ବୃଦ୍ଧ ଏହି ରୋଗଶଯ୍ୟାରେ ଶୋଇ ବିହାର ଭୂମିକମ୍ପର ଭୀଷଣ ଘଟଣାମାନ ଦୁଃଖ ଓ ବିସ୍ମୟପୂର୍ଣ୍ଣ ନୟନରେ ଚାହିଁ ଶୁଣୁଥିଲେ । ତାଙ୍କ ଭିତରୁ କଥା ବାହାରୁ ନ ଥିଲା । ମଣିଷ ସମାଜ ପ୍ରତି ଗଭୀର ଶ୍ରଦ୍ଧା ମଧୁବାବୁଙ୍କ ଅନ୍ତରରେ ସର୍ବଦା ପୂର୍ଣ୍ଣ ହୋଇ ରହିଥିଲା । ସେ ବିହାରର ଦୁଃଖକାହାଣୀ ଶୁଣୁ ଶୁଣୁ ନିଜର ରୋଗ-ଯନ୍ତ୍ରଣା ଭୁଲି ଯାଉଥିଲେ ।

ଏହି ଘଟଣାର ତିନଦିନ ପରେ ଜାନୁଆରୀ ପଚିଶ ତାରିଖରେ ହଠାତ୍ ସ୍ନାନପୂର୍ବରୁ ମଧୁବାବୁ ମୂର୍ଚ୍ଛା ଯାଇଗଲେ । ସଙ୍ଗେ ସଙ୍ଗେ ଏହି ସମ୍ବାଦ ତାଙ୍କ କୋଠି ତେଇଁ କଟକ ସହରର ଗୃହଆଡ଼େ ବ୍ୟାପିଗଲା । ପ୍ରାୟ ପାଞ୍ଚମିନଟ୍ ପରେ ସେ ସଂଜ୍ଞା ଲାଭ କଲେ । କିନ୍ତୁ ମଧୁବାବୁ ସେହିଦିନଠୁଁ ତାଙ୍କ ଶେଷ ରୋଗ-ଶଯ୍ୟାରେ ଶୋଇ ରହିଲେ । କ୍ରମେ କଟକର ନାନା ସମ୍ବାଦପତ୍ରରେ ତାଙ୍କର ଅସ୍ୱାସ୍ଥ୍ୟ ସମ୍ବାଦ ପ୍ରକାଶ ପାଇଲା । ମାନ୍ୟଗଣ୍ୟ ବ୍ୟକ୍ତି, ଓକିଲ ଓ ଅନ୍ୟାନ୍ୟ ବହୁ ଧନୀ, ଦରିଦ୍ର ନିର୍ବିଶେଷରେ ସହରବାସୀ ତାଙ୍କୁ ଦେଖିବାକୁ ତାଙ୍କ କୋଠିରେ ପ୍ରତ୍ୟହ ଭୁଣ୍ଡ ହେଉଥିଲେ ।

ମଧୁବାବୁ ସମସ୍ତଙ୍କୁ ହାତ ଯୋଡ଼ି କହୁଥାନ୍ତି, "ବିଦାୟ, ଗୁଡ଼ଲକ୍ । ଗୁଡ଼ଲକ୍......।" ସେ ଦୃଶ୍ୟ ବଡ଼ କରୁଣ ଓ ହୃଦୟସ୍ପର୍ଶୀ । ଅନେକ ଭଦ୍ରମହିଳା ସେମାନଙ୍କ ଶିଶୁମାନଙ୍କୁ ଆଣି ମଧୁବାବୁଙ୍କ ପାଦତଳେ ଶୁଆଇ ଦେଉଥିଲେ । ମଧୁବାବୁ ସେମାନଙ୍କୁ ଆଶୀର୍ବାଦ କରୁଥିଲେ । ସେମାନଙ୍କ ମୁଣ୍ଡ ଉପରେ ସ୍ନେହରେ ହାତ ବୁଲାଇ ଆଣୁଥିଲେ । ଏହି ପୀଡ଼ିତ ଅବସ୍ଥାରେ ବ୍ୟାପ୍‌ଟିଷ୍ଟ ଗୀର୍ଜାର ଜଣେ ପୁରୋହିତ ଆସି ତାହାଙ୍କ ନିକଟରେ ଦିନେ ପ୍ରାର୍ଥନା କରିଥିଲେ । ମଧୁବାବୁ ପ୍ରାର୍ଥନା ଶୁଣି କହିଲେ,

"ମୁଁ କ'ଣ ମୋର ଈଶ୍ୱରଙ୍କୁ ଚିହ୍ନିନାହିଁ, ଜାଣି ନାହିଁ—ମରଣକୁ କଣ ମୁଁ ଡରେ ? ଯେତେବେଳେ ମରଣ ଆସିବ ମୁଁ ଆଲିଙ୍ଗନ କରିବି ।" ତା ପରେ ପରେ ମଧୁସୂଦନ ଧୀର ଗମ୍ଭୀର ସ୍ୱରରେ କେତେକ ପ୍ରାର୍ଥନା ଶ୍ଳୋକ ଆବୃତ୍ତି କରିଥିଲେ ।

ମଧୁସୂଦନଙ୍କ ଶରୀରର ଅବସ୍ଥା ଜାନୁଆରୀ ଏକତିରିଶ ତାରିଖଠାରୁ ବେଶୀ ସଙ୍କଟାପନ୍ନ ହୋଇଥିଲା । ସେହି ଦିନ ସକାଳୁ କିନ୍ତୁ ସେ ଭଲ ଥିଲେ । ତାଙ୍କ ମନରେ ମୃତ୍ୟୁଲାଗି କୌଣସି ଦୁର୍ବଳତା କିମ୍ବା ଭୟ ନ ଥିଲା । କିନ୍ତୁ ତାଙ୍କ ଶରୀର ବଡ଼ ଦୁର୍ବଳ ଥିଲା । ସେଦିନ ତାଙ୍କର ଥୋଡ଼ା ହୋଇଯିବାରୁ ସେ ବଡ଼ ଶାରୀରିକ ଦୁର୍ବଳତା ବୋଧ କରୁଥିଲେ । ପାଖରେ ଥିବା ସେବକ ସେବିକାମାନେ ତାଙ୍କ ମନକୁ ଦମ୍ଭ କରିବାକୁ କହୁଥିଲେ, "ଆପଣ ଭଲ ହୋଇଯିବେ..."

ମଧୁବାବୁ ଏମାନଙ୍କ କଥା ଶୁଣି କହିଲେ, "ମୋତେ ତୁମ୍ଭେମାନେ ଖାଲି ଫାଙ୍କି ଦେଉଛ ?"

ମଧୁସୂଦନ ତାଙ୍କ ଶେଷ ଶଯ୍ୟାରେ ଶୋଇ ମଧ୍ୟ କେତେବେଳେ ହେଲେ ଉତ୍କଳ ଓ ତାର ଦୁଃଖ, ଦୁର୍ଦ୍ଦଶା ଭୁଲି ନ ଥିଲେ । ସେ ଶେଷ ଶଯ୍ୟାରେ

ମଧ୍ୟ ଉତ୍କଳ ପ୍ରସଙ୍ଗ ସବୁବେଳେ ଚିନ୍ତା କରୁଥିଲେ । ମୃତ୍ୟୁ, ରୋଗଯନ୍ତ୍ରଣା ସହିତ ସଂଗ୍ରାମ କରୁ କରୁ ଯେ ଜନନେତା ନିଜ ଦେଶ, ଜନ୍ମଭୂମି ପାଇଁ ଏଡ଼େ ଗମ୍ଭୀର ଭାବରେ ଚିନ୍ତା କରି ପାରୁଥିଲେ, ତାଙ୍କ ହୃଦୟ କପରି ଦେଶପାଇଁ ଚିନ୍ତିତ ଥିଲା, ତାହା ସହଜରେ ଜଣା ପଡ଼ିଯାଏ । ଦେଶପ୍ରୀତି ଯେପରି ତାଙ୍କ ପ୍ରାଣର ଏକ ଅଚ୍ଛେଦ୍ୟ ଅଂଶ ହୋଇ ଯାଇଥିଲା । ମୃତ୍ୟୁକୋଳରେ ଶୋଇ ମଧୁସୂଦନ ଉତ୍କଳର ନେତୃତ୍ୱ ପ୍ରସଙ୍ଗ ଗମ୍ଭୀରଭାବରେ ଚିନ୍ତା କରୁଥିଲେ । ପଣ୍ଡିତ ନୀଳକଣ୍ଠ ତାଙ୍କୁ ଦେଖା କରିବାକୁ ଯାଇଥିଲେ । ନୀଳକଣ୍ଠ ବାବୁ ତାଙ୍କୁ ପଚାରିଲେ, "ଆପଣଙ୍କର ଦେଶକୁ କିଛି କହିବାକୁ ଅଛି ତ, କହନ୍ତୁ ?" ତହୁଁ ମଧୁସୂଦନ ଧୀରେ ଧୀରେ କହିଲେ, "ଯାଅ, ଲୋକଙ୍କୁ କହିବ, ପେଟରେ ଯାହା କିଛି ମଇଳା ଅଛି, ପରିଷ୍କାର କରନ୍ତୁ । ଆମ୍ଭେ ସହଜରେ ପରିଷ୍କାର ହୋଇଯିବ ।"

( ୨ )

ପଶ୍ଚିମ ଆକାଶରେ ସେତେବେଳକୁ ସୂର୍ଯ୍ୟ ବୁଡ଼ି ଗଲେଣି । ସନ୍ଧ୍ୟାର ଗଭୀର ଛାଇରେ ପୃଥିବୀ ଛାଙ୍କି ହୋଇ ପଡ଼ୁଥିଲା । ଚଢ଼େଇମାନେ ନୀରବରେ ନିଜ ନିଜ ବସାକୁ ଉଡ଼ି ଯାଉଥିଲେ ।

ମଧୁସୂଦନଙ୍କ କୋଠିର ଉପର ମହଲା । କୋଠରୀଟି ଦୀର୍ଘ ଓ ପ୍ରଶସ୍ତ । ପୂର୍ବ ବଗଲକୁ ଖଣ୍ଡିଏ ଫିତା ଖଟ । ତହିଁ ଉପରେ ଜନନେତା ମଧୁସୂଦନ ଶେଷ ଶଯ୍ୟାରେ ଶୋଇଥିଲେ । ସେତେବେଳେ କଫ ଘଡ଼ ଘଡ଼ ହେଉଥିଲା, ଦେହରେ ଆଉ ମାଂସ ଥିଲାଭଳି ଜଣାଯାଉ ନ ଥିଲା । ମୁଣ୍ଡ ଉପରକୁ କେତେଗୁଡ଼ିଏ ତକିଆ; ବୃଦ୍ଧ ସେହି ଖଟରେ ଶୋଇ ଥାଆନ୍ତି । ଜାନୁଆରୀ ଏକ ତାରିଖ ସନ୍ଧ୍ୟା । ବାହାରେ ଉତ୍ତାପ ୪୮ ଡିଗ୍ରୀ । କୋଠରୀଟିରେ କୃତ୍ରିମ ଉପାୟରେ ଉତ୍ତାପ ରଖାଯାଇଛି ୮୦ ଡିଗ୍ରୀ । ନେତାଙ୍କ ରୋଗଶଯ୍ୟା ନିକଟରେ କେତେ ମୂକ ସେବକ, ସେବିକା । ସମସ୍ତଙ୍କ ଆଖିରେ ଲୁହ ଢଳଢଳ । ଠିକ୍ ରାତି ସାଢ଼େ ଆଠଟା ବେଳକୁ ମଧୁସୂଦନଙ୍କ ଅବସ୍ଥା ବେଶୀ ଖରାପ ହେଲା । ପ୍ରାର୍ଥନା ଚାଲୁ ହେଲା । ଗୃହର ଗୁରୁ ଗମ୍ଭୀରତା ମଧ୍ୟରେ ମଧୁସୂଦନ ସେ ଶେଷ ଶଯ୍ୟାରେ ଶୋଇ ଅତି ସ୍ପଷ୍ଟ ଓ ଉଚ୍ଚରେ ଗାଇଲେ—

"I heard the Voice of Jesus say
Come unto me and rest
Lay down thou weary one, lay down
Thy head upon my breast."

ଅର୍ଥାତ୍ ମୁଁ ଯୀଶୁଙ୍କ ମୁଖନିସୃତ ବାଣୀ ଶୁଣିଲି । ସେ କହୁଅଛନ୍ତି, "ମୋ ପାଖକୁ ଆସ ଏବଂ ବିଶ୍ରାମ ନିଅ । ହେ ଶ୍ରାନ୍ତ ମାନବ ! ମୋ ବକ୍ଷ ଉପରେ ତୁମର ଶିର ରଖ ।"

ସମସ୍ତେ ଶୋକବିହ୍ୱଳପୂର୍ଣ୍ଣ ନୟନରେ ମଧୁସୂଦନଙ୍କୁ ଚାହିଁ ରହିଥିଲେ । ପୁଣି ପ୍ରାର୍ଥନା ବୋଲି ଗଲା—

"Abide with me, fast falls the even tide,
The darkness deepens
Lord with me abide
When other helpers fail and Comforts flee
Help of the helpless abide with me."

ଅର୍ଥାତ୍ "ମୋ ପାଖରେ ରୁହ । ସନ୍ଧ୍ୟାଲହରୀ ଶୀଘ୍ର ଶୀଘ୍ର ଭାଙ୍ଗି ଯାଉଛି । ଅନ୍ଧକାର ଗମ୍ଭୀର ହୋଇ ଉଠୁଛି । ହେ ସ୍ୱାମୀ, ମୋ ପାଖରେ ରୁହ । ଯେତେବେଳେ ଅନ୍ୟ ସାହାଯ୍ୟକାରୀମାନେ ହାରି ଯାଆନ୍ତି ଏବଂ ସୁଖ ତ୍ୟାଗ କରେ, ସେତେବେଳେ ନିଃସହାୟକୁ ସାହାଯ୍ୟ କର, ମୋ ପାଖରେ ରୁହ ।"

ମଧୁସୂଦନ ନିଜେ ଏହି ଦୁଇଟି ପ୍ରାର୍ଥନା ଶ୍ଳୋକ ମରିବାର ମାସକ ପୂର୍ବରୁ ବାଛି ନିଜ ପ୍ରାର୍ଥନା ପୁସ୍ତକରେ ଦାଗ ଦେଇ ରଖିଥିଲେ । ତାହାଙ୍କ ହୃଦୟକୁ ଏହି ପ୍ରାର୍ଥନା ଦୁଇଟି ଗଭୀର ଭାବରେ ସ୍ପର୍ଶ କରିଥିଲା । ମଧୁସୂଦନଙ୍କ ଏହି ଶେଷ ଜୀବନ ସହିତ ପ୍ରାର୍ଥନା ଶ୍ଳୋକର ଭାବ ଯେପରି ମିଳି ଯାଉଥିଲା । ଏହି ପ୍ରାର୍ଥନା ଶୁଣି ତାଙ୍କ ପାଖରେ ଥିବା ନର, ନାରୀମାନେ ମଧ୍ୟ ସ୍ପନ୍ଦିତ ହେଉଥିଲେ । ମଣିଷ ଜୀବନର କ'ଣ ଏହି ପରିଣତି ?

ପୁଣି ତେନିସନ୍‌ଙ୍କର ନିର୍ଦ୍ଦେଶାତ୍ମକ ଦୁଃଖପୂର୍ଣ୍ଣ ଗୀତ ଗାଇବାକୁ ଜଣେ ସେବିକା ଆରମ୍ଭ କରିଥିଲେ । ମାତ୍ର ମଧୁବାବୁ ମୁଣ୍ଡ ହଲାଇ ଗାଇବାକୁ ବାରଣ କଲେ ଏବଂ କୋମଳ କଣ୍ଠରେ କହିଲେ, "ତେନିସନ୍‌ଙ୍କର ଯେ ଦୁଃଖ ଥିଲା, ସେ ଦୁଃଖତ ମୋର ନାହିଁ, ମୋ ପାଖରେ ତାହା କାହିଁକି ଗାଉଛ ?" ଜଣେ ସେବିକା କହିଲେ, "ଆପଣଙ୍କ ପାଇଁ ସମସ୍ତେ ବ୍ୟସ୍ତ ହେଉଛନ୍ତି ।"

ମଧୁବାବୁ ଧୀରେ ଧୀରେ ପଚାରିଲେ, "ମୋର ବଞ୍ଚିବାରେ ଯାଏ ଆସେ କେତେ ?"

ସେବିକା ପୁଣି ପଚାରିଲେ, "ଆଉ କାହାର ଯାଏ ଆସେ ?"

ମଧୁବାବୁ ଅତି ଉଚ୍ଚ ସ୍ୱରରେ କହିଲେ, "ଓଡ଼ିଆ ଜାତିର ।"

ପୁଣି ପ୍ରଶ୍ନ "ମୋର ?"

ମଧୁବାବୁ ମୁଣ୍ଡ ହଲାଇ, ହସି ହସି କହିଲେ, "ନା, ନା ।"

ମଧୁସୂଦନଙ୍କ ଦେଶ-ପ୍ରୀତିର ନମୁନା କିଛି ଏଠାରେ ମିଳି ଥାଏ । ମଧୁସୂଦନ କିପରି ଉତ୍କଳ ଏବଂ ଓଡ଼ିଆ ଜାତିକୁ ଗଭୀର ଶ୍ରଦ୍ଧା କରୁଥିଲେ, ତାହା ଏପରିକି ଜୀବନର ଶେଷ ମୁହୂର୍ତ୍ତରେ ମଧ୍ୟ ପ୍ରତିଭାତ ।

ମଧୁସୂଦନଙ୍କ ଏହିପରି ଉକ୍ତି ଯେଉଁମାନେ ସେଠାରେ ରହି ସେ ସମୟରେ ଶୁଣୁଥିଲେ, ସେମାନେହିଁ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଏବଂ ଦେଶ-ପ୍ରୀତିର ପ୍ରକୃଷ୍ଟ ପ୍ରମାଣ ପାଇଥିଲେ । ମୃତ୍ୟୁଶଯ୍ୟାରେ ଉତ୍କଳର ବୀରପୁତ୍ର, ଜନନେତା ଉତ୍କଳ-ମାତାଙ୍କୁ ହିଁ ସ୍ମରଣ କରୁଥିଲେ !

କ୍ରମେ ମଧୁସୂଦନଙ୍କୁ ଜୀବନ ଏବଂ ମରଣ ସହିତ ସଂଗ୍ରାମ ଚଳାଇବାକୁ ପଡ଼ୁଥିଲା । ବାର୍ଦ୍ଧକ୍ୟ, ରୋଗ, ମୃତ୍ୟୁଯନ୍ତ୍ରଣାର ସେ କ୍ରୀଡ଼ନକ ହୋଇଥିଲେ । ସେହି ଦିନ 'ସମାଜ' ପତ୍ରିକାର ପ୍ରତିନିଧି ତାହାଙ୍କୁ ଦେଖା କରିବାକୁ ଆସିଥିଲେ । ସେଦିନ ସମାଜ ପ୍ରତିନିଧିଙ୍କ ସହିତ ତାଙ୍କର ଯାହା କଥାବାର୍ତ୍ତା ହୋଇଥିଲା, ତାହା ସେହି ବର୍ଷ ଫେବୃଆରୀ ଓରି ତାରିଖ ସମାଜରୁ ଏଠାରେ ଉଦ୍ଧୃତ କରି ଦିଆଗଲା :—

ମଧୁବାବୁ କହିଲେ, "ଆଚ୍ଛା, ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଉଛି, ସେ ବିଷୟରେ ତୁମ କାଗଜର ମତ କ'ଣ ?"

ସମାଜ ପ୍ରତିନିଧି କହିଲେ ଯେ, ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ମିଶି ପ୍ରଦେଶ ହେଲେ ଭଲ ହେବ ଏବଂ ଆପତ୍ତି କଲେ ଯେ, ଓଡ଼ିଆମାନଙ୍କ ଉପରେ ବୋଝ ବଢ଼ିଯିବ; କାରଣ ବହୁତ ଖର୍ଚ୍ଚ ହେବ ।

ମଧୁବାବୁ କହିଲେ, "ହଁ, ଲୋକେ ଯାହା କରିବେ, ତାହା ହେବ । ଖର୍ଚ୍ଚ ବେଶୀ ହେବ କିପରି ଜାଣିଲ ?"

ପ୍ରତିନିଧି କହିଲେ "କମିଟି ରିପୋର୍ଟରୁ ।"

"ଆପଣଙ୍କ ଅବସ୍ଥା ବିଷୟରେ ଓଡ଼ିଆ ଭାଇମାନେ ବଡ଼ ବ୍ୟାକୁଳ ହୋଇ ପଚାରି ପଠାଉଅଛନ୍ତି । ଆପଣ କିଛି କହନ୍ତୁ," ପ୍ରତିନିଧି ପୁଣି ପଚାରିଲେ ।

"ତୁମେ ଖବର ପାଉଛ, ସମସ୍ତେ ପଚାରୁଛନ୍ତି, ତୁମେ କଣ କହୁଛ ?"

ପ୍ରତିନିଧି କହିଲେ ଯେ, ପ୍ରତିଦିନ ତାଙ୍କର ଲୋକ କୋଠିକୁ ଆସି ଖବର ନେଇ ଯାଉଛି ଓ ସେ ତାହା ପତ୍ରିକାରେ ପ୍ରକାଶ କରୁଅଛନ୍ତି ।

"ପ୍ରତିଦିନ ଆସୁଛି ? ଆଜି ଯାଇ କହିବ ମୋର କିଛି କହିବାର ନାହିଁ । ଲୋକେ ଯାହା କରିବାର କରିବେ । ମୋତେ ଯେପରି ଦେଖିଯାଉଛ, ଠିକ୍ ସେହିପରି ଜଣାଇ ଦେବ । ମୁଁ ଆଉ କଣ କହିବି ?"

ଏହି ସମୟରେ ତାଙ୍କ ଗୋଡ଼ରେ ଯନ୍ତ୍ରଣା ହେଲା । ତାଙ୍କ ଦେହରେ ତାଙ୍କ ବିଶ୍ୱସ୍ତ ଭୃତ୍ୟ ହାଡ଼ିବନ୍ଧୁ ହାତ ବୁଲାଇ ଦେଉଥାଏ, ମଧୁବାବୁ ଦୁଃଖପୂର୍ଣ୍ଣ କଣ୍ଠରେ କହିଲେ, "କଣ ହେଲା ? ବସାଇ ଦେଲେ ବସିଲି, ଶୁଆଇ ଦେଲେ ଶୋଇଲି । କାହିଁ ଯନ୍ତ୍ରଣା କିଛି କମିଲା ନାହିଁ ?"

ବେହେରା ବିନୀତ ସ୍ୱରରେ କହିଲା, "ହଉ ।"

ଏତକ ଶୁଣି ମଧୁସୂଦନ କହିଲେ—

"ହଉ ହଉ ହଉ—ଆରେ କାଉ
ମଲା ଉପରେ ଶଗଡ଼ ଘାଉ ।"

ମଧୁବାବୁ ଏହିପରି ତାଙ୍କ କଥାରେ ଢଗଢମାଳି ଅନେକ ପ୍ରୟୋଗ କରନ୍ତି । ସଞ୍ଜବେଳେ ସେମିତି ତାଙ୍କର ଜଣେ ଆତ୍ମୀୟଙ୍କୁ କହିଥିଲେ ।

"ଆଉ ଦିନ କାଳ ଅଛିବ ?
ମଳୟ ଲାଗିଲେ ବାଉଁଶ ଗଛରେ
ତାହା କି ଚନ୍ଦନ ହୋଇବ ?

ଜାନୁଆରୀ ଏକତିରିଶ ତାରିଖ ରାତିଟା ତମାମ ମଧୁସୂଦନଙ୍କ ବହୁ ଲୋକ ଜଗି ବସିଥିଲେ । ହର୍ଲିକ୍ସ ଫୁଡ଼ରୁ ଦୁଇଗ୍ରାମ ଓ ଟିକେ ସୁରା ପାଣିରେ ମିଶାଇ ଦିଆଯାଉଥାଏ । ସେତକ ମଧ୍ୟ ସେ ଖାଇ ପାରୁ ନାହାନ୍ତି ହେଉଥିଲେ । ସେଦିନ ରାତିରେ ତାଙ୍କ ନାଡ଼ିର ବେଗ ମିନିଟରେ ୯୦-୧୪୦ ଯାଏଁ ଗତି କରୁଥିଲା । ଥରେ ଥରେ ମଧୁବାବୁ କହୁଥିଲେ, "ନାହିଁରେ ବାପା, ଭଲ ଲାଗୁ ନାହିଁ ।"

ସେଦିନ ରାତିଟାର ଶୁଭ୍ର ଜ୍ୟୋତ୍ସ୍ନା ଯେପରି ମଧୁସୂଦନଙ୍କୁ ମହା ଆହ୍ୱାନ ଜଣାଇ ଦେଉଥିଲା । ମନେ ହେଲା ଯେପରି ଏହି ଆହ୍ୱାନ ଚିରନ୍ତନ । ଜୀବାତ୍ମାକୁ ପରମାତ୍ମାର ଏହା ଅନାଦି ଆହ୍ୱାନ । କିନ୍ତୁ କୋଠରୀର କ୍ଳାନ୍ତିଭରା ପୃଥିବୀର ମାୟା । ନିଦ୍ରାହୀନ ନିଶି କ୍ରମେ ଅବସାନ ହେଲା । ସେଦିନ ରାତିରେ ମଧୁସୂଦନଙ୍କର ଆଦୌ ଭଲ ନିଦ ହୋଇ ନ ଥିଲା ।

ଗଭୀର ଘନରାତ୍ରି କ୍ରମେ ଘୁଞ୍ଚିଗଲା । ଉଷାର ଅରୁଣ ଆଲୁଅ ପାଖ ନଡ଼ିଆ କୁଞ୍ଜରେ ପ୍ରଥମେ ଦେଖା ଦେଲା । ସକାଳର ଥଣ୍ଡା ପବନ ବହି ଆସିଲା । ସମସ୍ତଙ୍କ ପାହାନ୍ତିଆ ନିଦ ଭାଙ୍ଗିଲାବେଳକୁ ସମସ୍ତେ ଦେଖିଲେ ଯେ ମଧୁସୂଦନ ବଞ୍ଚିଛନ୍ତି । ମଧୁସୂଦନଙ୍କ ଅସାଧାରଣ ମନବଳହିଁ ଏହାର ଏକମାତ୍ର କାରଣ ଥିଲା । ବୋଧହେଲା ସେ ଏହି ଆଲୁଅ, ସକାଳର ସ୍ୱଚ୍ଛ ମାଧୁରୀ ପ୍ରାଣେ ପ୍ରାଣେ ଗଭୀର ଭାବରେ ଅନୁଭବ କରୁଥିଲେ । ହୁକାରେ ଗୁଡ଼ାଖୁ ଦିଆଗଲା । ମଧୁସୂଦନ ତାଙ୍କର ପ୍ରିୟ ହୁକାରୁ ଗୁଡ଼ାଖୁ ଟାଣିଥିଲେ ।

ଫେବ୍ରୁଆରୀ ପହିଲାଦିନ ମଧୁସୂଦନ ସୁସ୍ଥ ଥିଲେ । ଡାକ୍ତର ଦେଖିବାକୁ ଆସିଥିଲେ । ପ୍ରଥମେ ମଧୁବାବୁ ଡାକ୍ତରଙ୍କୁ ପଚାରିଲେ, "ଆଗେ ମୋର ଗୋଟିଏ କଥାର ଉତ୍ତର ଦିଅ ଡାକ୍ତର । ଭଗବାନଙ୍କଠାରୁ ଯାହାର ଡାକ ଆସିଛି, ତାହାକୁ ଅଟକାଇବାକୁ ତୁମ ଶାସ୍ତ୍ରରେ ଏମିତି କୌଣସି ବିଜ୍ଞାନ ଅଛି କି ?"

ମଧୁବାବୁ ଏତିକି ଗମ୍ଭୀର ଭାବରେ ପଚାରି ଡାକ୍ତରଙ୍କ ମୁହଁକୁ ଚାହିଁ ରହିଲେ । ଡାକ୍ତରବାବୁ ବିନୀତଭାବରେ ଉତ୍ତର ଦେଲେ, "ନା, ତେବେ ଯେତେକ୍ଷଣ ଜୀବନ ଅଛି, ସେତେକ୍ଷଣ ଆଶା ଆମ୍ଭେମାନେ ଛାଡ଼ି ନ ପାରୁଁ ।" ମଧୁବାବୁ କହିଲେ, "ଖାଇବାକୁ ଦେଇ ତୁମେ ରଖିପାରିବ ନାହିଁ ।"

ମଧୁବାବୁ ତାଙ୍କର ସେହି ଫିଡାଖାଟ ଖଣ୍ଡିକ ଉପରେ ଶୋଇ ଥାଆନ୍ତି । ତାଙ୍କ ହାତ ପାପୁଲି ଦେଖୁ ଦେଖୁ ସେ କହିଲେ, "ମୋ ହାତ ମଲ୍ଲ ମଣ୍ଡପ ହାତପରି ହୋଇଯାଇଛି ।"

ଜଣେ ସେବକ ପଚାରିଲେ, "ଆପଣ କଣ ବଞ୍ଚିବାକୁ ଚାହାନ୍ତି ନାହିଁ ? ଆମ୍ଭେମାନେ ପରା ଆପଣଙ୍କ ବଞ୍ଚିବା ଚାହୁଁ ।"

ମଧୁସୂଦନ ଉତ୍ତର ଦେଲେ "ତେବେ ତାଙ୍କ ଆଦେଶ...। ତାହା ଭଗବାନଙ୍କ ଇଚ୍ଛା । ତାଙ୍କଠାରୁ ମଞ୍ଜୁର ଆଣ ।"

ଏହି ଶେଷ ଶଯ୍ୟାରେ ଶୋଇ ମଧ୍ୟ ମଧୁସୂଦନ କେବେ କେବେ ପରିହାସ କରୁଥିଲେ । ଡାକ୍ତର ବାବୁ ତାଙ୍କ ପରୀକ୍ଷା ଶେଷ କଲା ପରେ, ସେ ପଚାରିଲେ—

"ଦେଖୁଛନ୍ତି, ଆଉ କେତେ କ୍ଷଣ ବଞ୍ଚିବ ?" ଡାକ୍ତର ବାବୁ କୌଣସି ଉତ୍ତର ଦେବା ପୂର୍ବରୁ ମଧୁବାବୁ ହସି ହସି କହିଲେ—

"There is no hope the sickman said
The siren doctor shook his head."

ଅର୍ଥାତ୍ ରୋଗୀ କହିଲା ଯେ, ଆଉ ଆଶା ନାହିଁ । ମନଭୁଲାଣିଆ ଡାକ୍ତର କେବଳ ମୁଣ୍ଡ ହଲାଇଲେ ।

ସେଦିନ ମଧୁବାବୁଙ୍କ ଦେହ ତାପ ୯୬.୯ ଡିଗ୍ରୀ ମାତ୍ର ଥିଲା ।

ମରିବାର କେତେ ମାସ ପୂର୍ବରୁ ଗରିବମାନଙ୍କର ପାଣି ପିଇବା ଅସୁବିଧା ଦୂର କରିବା ପାଇଁ ସେ ଗୋଟିଏ ନଳକୂଅ (Tube well) ଦେବେ ବୋଲି କଟକ ମ୍ୟୁନିସିପାଲିଟି ଚେୟାରମାନଙ୍କୁ କହିଥିଲେ । କିନ୍ତୁ ସେ ଟଙ୍କା ସେ ଦେଇ ପାରି ନ ଥିଲେ । ଜାନୁଆରୀ ୩୧ ତାରିଖ ସୁଦ୍ଧା ଟଙ୍କା ପାଇବା ମାନେ ମଧୁସୂଦନଙ୍କର ପ୍ରଥମ ଚିନ୍ତା ହେଲା କିପରି ସେ ଟଙ୍କା ମ୍ୟୁନିସିପାଲିଟି ହାତକୁ ଯିବ । ଫେବୃୟାରୀ ପହିଲା ତାରିଖ ଦିନ ସକାଳୁ ପ୍ରଥମେ ସେ ଟଙ୍କା ମ୍ୟୁନିସିପାଲିଟିକୁ ପଠାଇ ଦେବାକୁ ଆଦେଶ ଦେଲେ ।

ଅପରାହ୍ଣରେ କଟକ ମିଶନ ବିଦ୍ୟାଳୟର ବାଳିକାମାନେ ଆସି ମଧୁସୂଦନଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ଦୀର୍ଘ ଜୀବନ ପାଇଁ ପ୍ରାର୍ଥନା କଲେ । ପ୍ରାର୍ଥନା ପରେ ବୃଦ୍ଧ ଅତି ଆଗ୍ରହ ସହକାରରେ କେତୋଟି ଶବ୍ଦ ଅତି ଧୀର ସ୍ୱରରେ କହିଥିଲେ । ସେ ସମସ୍ତଙ୍କଠାରୁ ହାତ ଯୋଡ଼ି ବିଦାୟ ନେଇଥିଲେ । ମଧୁସୂଦନ କହିଥିଲେ, "ମୁଁ ତ ଯାଉଛି, ମନେ ରଖିଥିବ, ଜଣେ ଓଡ଼ିଆ ଥିଲା । ଏତିକି ମନେ ରଖିଥିବ ।"

ପ୍ରଦୀପର ଶେଷ ଶିଖା ଲିଭିବା ପୂର୍ବରୁ ଯେ ଉଜ୍ଜ୍ୱଳତର ହୋଇ ଜଳି ଉଠେ, ଏ କଥା ସମସ୍ତେ ଭୁଲିଗଲେ । ଜାନୁଆରୀ ୩୧ ତାରିଖ ପରେ ମଧୁସୂଦନଙ୍କ ଅବସ୍ଥା ଦେଖି ଅନେକ ଭାବିଲେ ଯେ, ମଧୁବାବୁ ବଞ୍ଚିଯିବେ ! ଆଶଙ୍କା ଆଉ କିଛି ନାହିଁ । ସେ ଅବଶ୍ୟ ତାଙ୍କ ଅସାଧାରଣ ମନବଳଦ୍ୱାରା ମରଣ ସହିତ ଖୁବ୍ ଯୁଦ୍ଧ କଲେ, କିନ୍ତୁ ମଣିଷର ସାଧ କେତେ ଦୂର ? ତଥାପି

ମଧୁସୂଦନଙ୍କ ବୟସ ଦୃଷ୍ଟିରୁ ସେ ଯେ ଏପରି ବାଁଚିରହି ପାରିଲେ, ତାହା ଅତି ବିସ୍ମୟ କଥା ।

କିନ୍ତୁ କ୍ରମେ ମଧୁସୂଦନ ଯେ ଦୁର୍ବଳ ହୋଇ ଯାଉଥାନ୍ତି, ଏହା କ୍ରମେ ସ୍ପଷ୍ଟ ହୋଇ ଉଠୁଥିଲା । ମାତ୍ର ଅସୁସ୍ଥତା କିଛି ନ ଥିଲା । ଫେବ୍ରୁଆରୀ ୨ ତାରିଖ ଦିନ ତାଙ୍କ ଅବସ୍ଥାରେ କୌଣସି କୁଲକ୍ଷଣ ଦେଖାଯାଉ ନ ଥିଲା । ୩ ତାରିଖ ଦିନ ସକାଳେ ଯେତେବେଳେ ମଧୁବାବୁଙ୍କ ମୁହଁ ଧୋଇ ଦେବାକୁ ଜଣେ ସେବିକା ଗଲେ, ସେ କହିଲେ—

"ଆଜି ମୋର ମୁହଁ ଧୁଅ ନାହିଁ । ଯେତେବେଳେ କଫିନରେ ଦେବ, ମୋତେ ଧୋଇ ଦେବ ।"

ମଲା ବେଳେ ମଧ୍ୟ ମଧୁସୂଦନଙ୍କ ପ୍ରାଣରେ ଦୃଢ଼ ଈଶ୍ୱରବିଶ୍ୱାସ ଥିଲା । ସେ ସେଦିନ କହିଲେ, "ଫାଙ୍କି-ଫାଙ୍କି" । କବି ଟେନିସନଙ୍କ ସେହି ଅମର ଧାଡ଼ି ମନେ ପଡ଼େ, "Hollow, hollow all deliget" ପୁଣି ସେ ସେଦିନ କହିଲେ, "ହେଲା ନାହିଁ, ହେଲା ନାହିଁ ।"

ମୃତ୍ୟୁ ପୂର୍ବରୁ ମଧୁସୂଦନଙ୍କର ଶରୀର କଷ୍ଟ ଅବଶ୍ୟ ଥିଲା ; ସେ ରୋଗ-ଯନ୍ତ୍ରଣା ଭୋଗ କରୁଥିଲେ; କିନ୍ତୁ ତାହା ସତ୍ତ୍ୱେ ସେ ମନରେ ଦିବ୍ୟ ଆନନ୍ଦ ଉପଭୋଗ କରୁଥିବା ଜଣା ପଡ଼ୁଥିଲା । ତାଙ୍କ ମନରେ ମହାଶାନ୍ତି ବିରାଜୁ ଥିଲା । ମରଣକୁ ଏକ ପ୍ରାକୃତିକ ପରିଣତି ମଣି, ତାହା ପାଇଁ ସେ ଆଗରୁ ପ୍ରସ୍ତୁତ ହେଉଥିଲେ । ବେଳେ ବେଳେ ଶାରୀରିକ ଯନ୍ତ୍ରଣା ସହି ନ ପାରି କହୁଥିଲେ, "ଏଡ଼େ କଷ୍ଟ—ଏଡ଼େ କଷ୍ଟ ମୁଁ ସହି ପାରୁ ନାହିଁ ।

ମଧୁବାବୁ ତାଙ୍କ କୋଠିର ଉପର ମହଲାର ଖଣ୍ଡିଏ ପିତା ଖଟ ଉପରେ ଶୋଇ ରହିଥିଲେ । ତାଙ୍କ ମୁଣ୍ଡରେ ଅଳ୍ପ ପକା କେଶ ଓ ମୁଖରେ ଅଳ୍ପ ଶ୍ମଶ୍ରୁ ଥିଲା । ତାହାଙ୍କ ଦେହ ଅତି ଜୀର୍ଣ୍ଣ, ଶୀର୍ଣ୍ଣ ଅଥଚ ମୁଖମଣ୍ଡଳ ଦୀପ୍ତ ଥିଲା । ମଧୁସୂଦନଙ୍କ ସେହି ଘଟଣାବଳୀରୁ ସ୍ପଷ୍ଟ ଜଣାପଡ଼େ, ମଧୁସୂଦନ ମରଣକୁ ଭୟ କରୁ ନ ଥିଲେ । ଜୀବନର ଶେଷକାଳ ପର୍ଯ୍ୟନ୍ତ ସେ ନିଜ ଦେଶ ଉନ୍ନତି ବିଷୟ ଚିନ୍ତା କରୁଥିଲେ । ତାଙ୍କର ଈଶ୍ୱର ଅନୁରାଗ ଦୃଢ଼ ଥିଲା । ସେ ଦେଶ-ବାସୀଙ୍କୁ ଯଥେଷ୍ଟ ଶ୍ରଦ୍ଧା ଓ ଆଶା ଦୃଷ୍ଟିରେ ଚାହିଁ ରହିଥିଲେ । ଜଗତକୁ ହେୟ ବା ମାୟା ଦୃଷ୍ଟିରେ ଦେଖିବା ସେ ଧାରଣା କରୁ ନ ଥିଲେ ।

ମଧୁସୂଦନ ଫେବ୍ରୁଆରୀ ୩ ତାରିଖ ଦିନ ଯେ ମରିଯିବେ, ଏ କଥା କାହାର ଆଶଙ୍କା ନ ଥିଲା । ସନ୍ଧ୍ୟା ବେଳେ ତାଙ୍କ ଦେହ ଭଲ ଅଛି ବୋଲି ସମସ୍ତେ କହିଲେ । କିନ୍ତୁ ପ୍ରାୟ ରାତି ଆଠଟା ବେଳେ ତାଙ୍କର ଅବସ୍ଥା ପୁଣି ସଙ୍କଟାପନ୍ନ ହେଲା । ତାଙ୍କ ମୃତ୍ୟୁର ଏକ ବିବରଣୀ 'ସମାଜ'ରେ ଯାହା ପ୍ରକାଶ ପାଇଥିଲା, ତାହାହିଁ ଏଠାରେ ଉଦ୍ଧୃତ କରି ଦିଆଗଲା—

"ତିନି ତାରିଖ ରାତି ଆଠଟା ବେଳେ ହାତ ଦୁଇଟି ପ୍ରଥମେ ଥଣ୍ଡା ହୋଇ ଗଲା । ନଅଟା ବେଳକୁ ମୁହଁରେ ଝାଳ ଦେଖାଗଲା । ହାତର ଥଣ୍ଡା କ୍ରମେ ବଢ଼ିବାକୁ ଲାଗିଲା । ଦଶଟା ବେଳେ ଡାକ୍ତର ଆସି ଦେଖିଲେ ଯେ ନାଡ଼ି ଖରାପ । ରାତି ବାରଟା ପର ମଝିରେ ମଝିରେ ନିଜ ମୁଣ୍ଡରେ ସେ ହାତ ବୁଲାଉ ଥାଆନ୍ତି । ବାରଟା ବେଳେ ନାକଠାରୁ ମୁହଁ ଏକାବେଳକେ ଥଣ୍ଡା ହୋଇଗଲା । ତା'ପରେ ଦେହରୁ ଝାଳ ବୋହିବାକୁ ଲାଗିଲା । ସେତେବେଳେ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ସଙ୍ଗୀତ ଗାଇ ଶୁଣାଇବାକୁ ଇଙ୍ଗିତ ଦେଲେ । ସଙ୍ଗୀତ ବୋଲି ଗଲା ।

"ସେ ବଡ଼ ଆଗ୍ରହରେ ତାହା ଶୁଣୁ ଥାଆନ୍ତି । ରାତି ଘ ୧।୨୫ ମିନିଟ୍‌ଠାରୁ ନିଶ୍ୱାସ ଜୋରରେ ଚାଲିଲା । ରାତି ଘ ୧।୪୦ ମିନିଟ୍‌ରେ ସବୁ ଶେଷ ।"

ମଧୁସୂଦନ ଶେଷ କାଳ ପର୍ଯ୍ୟନ୍ତ ସଜ୍ଞାନରେ ଥିଲେ ଏବଂ ଧର୍ମସଙ୍ଗୀତ ଶୁଣୁ ଶୁଣୁ ପୃଥିବୀରୁ ବିଦାୟ ଗ୍ରହଣ କରିଥିଲେ । ଉତ୍କଳର ସ୍ରଷ୍ଟା, ଜନନେତା ମଧୁସୂଦନ ୧୮୪୮ ଅପ୍ରେଲ ୨। ତାରିଖରେ ଜନ୍ମ ହୋଇ ୧୯୩୪ ମସିହା ଫେବ୍ରୁଆରୀ ୪ ତାରିଖ ( ତା ୩ ରିଖ ରାତି ବାରଟା ପରେ ଦେହ ତ୍ୟାଗ କରିବାରୁ ଏହି ଚାରି ତାରିଖ ଗଣା ଯାଇଅଛି ) ରେ ଦେହତ୍ୟାଗ କଲେ । ମଲା ବେଳକୁ ତାଙ୍କ ବୟସ ୮୫ ବର୍ଷ, ଛଅମାସ ଏବଂ ଆଠ ଦିନ

## ଶେଷ ଦର୍ଶନ

ଫେବ୍ରୁଆରୀ ଚାରି ତାରିଖ ସକାଳ । ଗୃହଁ ଗୃହଁ କଟକର ଘରଅଡ଼େ ସେହି ଶୋକ ସମ୍ବାଦ ବ୍ୟାପି ଯାଇଥିଲା । ସକାଳୁ ଖବର କାଗଜଗୁଡ଼ିକର ବିଶେଷ ସଂଖ୍ୟା ପ୍ରକାଶ ପାଇ ଲୋକଙ୍କ ମଧ୍ୟରେ ଏହି ବାର୍ତ୍ତା ପ୍ରଚାର କରି ଦିଆଗଲା । ଧନୀ, ନିର୍ଦ୍ଧନ, ଅଧ୍ୟାପକ, ଶିକ୍ଷକ, ଓକିଲ, ଛାତ୍ର, ବ୍ୟବସାୟୀ, ସହରର ସକଳ ଶ୍ରେଣୀର ଲୋକେ ମଧୁସୂଦନଙ୍କ କୋଠି ଆଡ଼କୁ ମୁହାଁଇଲେ ।

ରାସ୍ତାରେ ବିରାଟ ଜନତାର ସମାଗମ । ମଧୁବାବୁଙ୍କ କୋଠିର ବୈଠକଖାନା ସୁବୃହତ ପ୍ରଶସ୍ତ ଓ ମାର୍ବଲ ବନ୍ଧା । ମଝିରେ ଖଣ୍ଡିଏ ଖଟ । ଖଟ ପାଖରେ



ଅନ୍ତିମ ଶୋଭାଯାତ୍ରା

କେତେ ଖଣ୍ଡି ଚୌକି। କାନ୍ଥର ନାନା ସ୍ଥାନରେ ଚିତ୍ରଗୁଡ଼ିକ ଯେପରି ମ୍ଳାନରୁ ମ୍ଳାନତର। କୁଳବୃଦ୍ଧ ସେହି ଫଟା ଖଟ ଖଣ୍ଡିକ ଉପରେ ତାଙ୍କର ଶେଷ ଶଯ୍ୟା ରଚନା କରି ଗଲେ। ମରିଥିଲେ ମଧ୍ୟ ଜନନେତାଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ। ମରଣରେ ଯେପରି ସେ ଶାନ୍ତି ପାଇଥିଲେ। ଚକ୍ଷୁ ଦୁଇଟି ମୁଦ୍ରିତ। ହାତ ଦୁଇଟି ଛାତି ଉପରେ ଛନ୍ଦା ହୋଇ ରଖା ଯାଇଥାଏ। ଦେହରେ ତାଙ୍କ ଦ୍ୱାରା ପ୍ରଥମେ ପ୍ରଚଳିତ ଉତ୍କଳ ସମ୍ମିଳନୀ ସମୟର ହାତ କଟା ସୂତା ଧୋତି, ପଞ୍ଜାବୀ, ଓ ଚଦରି। ମଧୁସୂଦନ ଏହି ବେଶରେ ସାଧାରଣତଃ ସାଧାରଣ ସଭାରେ ଯୋଗ ଦେଉଥିଲେ। ଚଦରଟି ବେକ ଉପରେ ପଡ଼ିଥାଏ, କୁଞ୍ଚ ଦୁଇଟି ଛାତି ଉପରେ। କୁଳବୃଦ୍ଧ ମହାନିଦ୍ରାଗତ।

କୋଠାହତା ଓ କୋଠରୀରେ ବହୁ ଜନସମାଗମ। ସମସ୍ତ ନୀରବ, ନିଶ୍ଚଳ। ସମସ୍ତଙ୍କ ମୁହଁରେ ଗଭୀର ଶୋକଛାୟାର କାଳିମା। ମଧୁସୂଦନଙ୍କୁ ଦେଖିବାକୁ ଅବିରାମ ଜନସ୍ରୋତ ଚାଲିଥିଲା। ଫୁଲମାଳଦ୍ୱାରା କ୍ରମେ କୁଳବୃଦ୍ଧଙ୍କ ଅଙ୍ଗ ଆଚ୍ଛାଦିତ ହୋଇ ପଡ଼ିଥାଏ। ସବୁଠି ଯେପରି ଦୁଃଖ, ସମସ୍ତଙ୍କ ମୁହଁରେ ସେଦିନ କଥା ନଥିଲା। ସମସ୍ତଙ୍କ ଆଖି ଜନନେତାଙ୍କ ଉପରେ।

ଜଣକ ମୃତ୍ୟୁରେ ଦେଶର ଲୋକେ ଏପରି ବ୍ୟାକୁଳ ହୁଅନ୍ତି କାହିଁକି? ଯେ ବ୍ୟକ୍ତି ଦେଶ ଓ ଦେଶବାସୀଙ୍କ ଲାଗି ନିଜକୁ ଭୁଲି ପାରେ, ତାପାଇଁ ଦେଶ ଏପରି ନିଜକୁ ଭୁଲି ସେହି ବ୍ୟକ୍ତିଙ୍କୁ ହିଁ ଭାବେ। ନଗରର ସମସ୍ତ ଉଚ୍ଚ ପଦସ୍ଥ ରାଜ କର୍ମଚାରୀ ଓ ଇଉରୋପୀୟମାନେ ମଧ୍ୟ ପୁଷ୍ପ-ଅର୍ଘ୍ୟ ପଠାଇଥିଲେ।

ଖ୍ରୀଷ୍ଟୀୟ ପ୍ରଥାନୁସାରେ କଫିନରେ ଶବଟିକୁ କବର ଦେବା ପାଇଁ ଠିକ୍ କରାଗଲା। କିନ୍ତୁ ତାହା ପୂର୍ବରୁ ଜନନେତାଙ୍କର ଶେଷ ଦର୍ଶନ ଯେପରି ସକଳ ଶ୍ରେଣୀର ଲୋକେ ପାଇ ପାରିବେ, ଏଥିପାଇଁ ଦିନ ଦୁଇଟା ବେଳେ ଗୋଟିଏ ପଟୁଆର ବନ୍ଦୋବସ୍ତ କରାଗଲା।

ନିରୂପିତ ସମୟ ପୂର୍ବରୁ ହଜାର ହଜାର ଲୋକ ଯାଇ ମଧୁସୂଦନଙ୍କ ହତା ପାଖରେ ଜମା ହୋଇ ଯାଇଥିଲେ। ସେହି ବିରାଟ ଜନତାକୁ ସମ୍ଭାଳିବା ଏକ ଦୁରୂହ ବ୍ୟାପାର ହୋଇ ପଡ଼ିଥିଲା। ଖଟ ଉପରେ ଜାତୀୟ ବୀରକୁ ପତ୍ର-ପୁଷ୍ପରେ ମଣ୍ଡନ କରି ବାହକମାନେ ଶବ ଘେନି କଟକର ପ୍ରଧାନ ପ୍ରଧାନ ରାସ୍ତା ଦେଇ ଅଗ୍ରସର ହେଲେ। ପଟୁଆର ଚଳେ ସଙ୍ଗେ ସଙ୍ଗେ ଜନତାର ସଂଖ୍ୟା ବଢ଼ିବାକୁ ଲାଗିଲା। ରାସ୍ତାରେ ଶବାଧାରରେ କାନ୍ଧ ଲଗାଇବା ପାଇଁ କେତେ ଲୋକ ଦୌଡ଼ି ଆସୁଥିଲେ। କଟକ ସହରରେ ଏପରି ବଡ଼ ପଟୁଆର ଆଉ କେବେ ହୋଇ ନଥିଲା।

ଦୋକାନ, ବଜାର ଘର ଛାତ ସବୁଠି ଜନନେତାଙ୍କ ଶେଷ ଦର୍ଶନ ପାଇଁ ଲୋକମାନେ ଅପଲକ ଦୃଷ୍ଟିରେ ଚାହିଁ ରହିଥିଲେ । ସ୍ଥାନେ ସ୍ଥାନେ ଶବଧାର ଉପରେ ପୁଷ୍ପବୃଷ୍ଟି ହେଉଥିଲା । ସେହି ସୁଦୀର୍ଘ ପଟୁଆରର ଆଗରେ ଛାତ୍ରମାନେ ମଧୁସୂଦନଙ୍କ ସ୍ୱରଚିତ ସଙ୍ଗୀତ ଗାଇ ଗାଇ ଚାଲିଥିଲେ ।

"ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
ସ୍ୱାର୍ଥ ମେଧ ଯଜ୍ଞ ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି ।"

ପଟୁଆର କ୍ରମେ ଦୀର୍ଘ ହେଉଥିଲା । ଛାତ୍ରମାନଙ୍କ ସଙ୍ଗୀତତାଳରେ ଜନତାର ପାଦ ପଡୁଥାଏ ଏବଂ ସମସ୍ତେ ସମସ୍ୱରରେ ମଧୁସୂଦନଙ୍କ ସେହି ଅମରବାଣୀ ଆବୃତ୍ତି କରୁଥିଲେ ।

"କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
ଜନନୀ ଜନନୀ ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ

ପଟୁଆରର ଗତି ବଡ଼ ଦ୍ରୁତ ଥିଲା । ଏତେ ବଡ଼ ପଟୁଆରକୁ ସମ୍ଭାଳିବା କଷ୍ଟ; ପୁଣି ସୂର୍ଯ୍ୟାସ୍ତ ପୂର୍ବରୁ କବର ଦିଆଯିବ ! ଚାରବାଟୀର ଶୁଷ୍କ ପରିଖା, ଭଗ୍ନ ବାରବାଟୀର ମାଟିପଥ ଦେଇ ଜନନେତାଙ୍କ ଶେଷ ଶୋଭାଯାତ୍ରା !

ବାରବାଟୀ ପାର ହୋଇ ଜାତୀୟ ବୀରଙ୍କୁ ନେଇ "ଗୋରା କବର"ରେ ସମସ୍ତେ ଉପସ୍ଥିତ ହୋଇଥିଲେ । ଖ୍ରୀଷ୍ଟୀୟ ରୀତିରେ ସନ୍ଧ୍ୟା ପୂର୍ବରୁ ଶବକୁ କବର ଦେବା ବିଧି । ଗୋଧୂଳି ଅଲକ୍ଷଣ ହେବ ଗତ ହୋଇଥାଏ । ଆକାଶ ଗମ୍ଭୀର । ଚାରିଆଡ଼େ ଅଗଣିତ ସମାଧିସ୍ତମ୍ଭ । ଶ୍ମଶାନ ଭୂଇଁଟିରେ କଳା—କଫିନ ଥୁଆ । କାନ୍ଦି କାନ୍ଦି ହୋଇ ଆତ୍ମୀୟବର୍ଗ କଫିନରେ ମଧୁସୂଦନଙ୍କୁ ଶୁଆଇ ଦେଲେ । ମହାଶୋକାକୁଳ ଅନ୍ତରକୁ ସଂଯତ କରି କଫିନର ପଟା ବନ୍ଦ କରି ଦିଆଗଲା । ମଧୁବାବୁଙ୍କ ସେହି ଦେହ, ମୁହଁ, ଅବଶ୍ୟ କଳା—କଫିନରେ ଚିର ଦିନ ପାଇଁ ବନ୍ଦ ହୋଇ ରହିଲା ? କିନ୍ତୁ ମଧୁସୂଦନଙ୍କୁ ଆଜି ଉତ୍କଳ ହୃଦୟରୁ ଲୁଚାଇବାକୁ କାହାର ଶକ୍ତି ଅଛି ? ମଧୁସୂଦନଙ୍କ ସ୍ମୃତି ଚିର ଅମର । ମଣିଷ ମରେ ସତ । ମୃତ୍ୟୁ କ'ଣ ମଣିଷର ଶେଷ ପରିଣତି ? ମୃତ୍ୟୁ କେବେ ମଣିଷକୁ ତା'ର ଅଧୀନ କରି ପାରିଛି କି ?



ଶେଷ-ଶଯ୍ୟା



ମଧୁ-ସମାଧି

(ଏଥିରେ ପୁଷ୍ପାଞ୍ଜଳି ସ୍ୱରୂପ ଯେଉଁମାନେ ଯାହା ଲେଖିଛନ୍ତି ତାହା ଅଷ୍ଟାଦଶ ଅଧ୍ୟାୟର ଶେଷରେ ଦିଆ ଯାଇଅଛି)

"ମାଟି କୁନ୍ଦେଇଁ ମଣିଷର ଶେଷ ପରଶଟି"

ସନ୍ଧ୍ୟାର ଘନଛାୟା କ୍ରମେ ଶୋକଛାୟା ସଙ୍ଗେ ବନ୍ଧୁତା ବାନ୍ଧି ଚାରି ଘୋଟି ଆସିଲା । ଗଛର ଶାଗୁଆ ପତ୍ରଗୁଡ଼ିକ ନୀରବ, ନିସ୍ପନ୍ଦ। ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତାଚଳରେ ଅସ୍ତ ହୋଇ ଯାଇଥିଲେ । ଶ୍ମଶାନ ପ୍ରାଙ୍ଗଣର ଏକ ଗହ୍ୱର ଗର୍ତ୍ତ ସମ୍ମୁଖରେ ଜାତୀୟ ବୀରଙ୍କ ଶବ ଶେନ କଳା କଫିନ ସୃଷ୍ଟିର ଶ୍ରେଷ୍ଠ ସମ୍ମାନ ପାଇ ସାରିଥିଲା ।

ମଧୁସୂଦନ ଯଦିଓ ଲଣ୍ଡନ କଙ୍ଗ୍ରେଗେସନାଲ ଚର୍ଚ୍ଚ ମଣ୍ଡଳୀର ଖ୍ରୀଷ୍ଟିୟାନ ଥିଲେ, ସେହି ଗୀର୍ଜା ସମ୍ପର୍କୀୟ କୌଣସି ପୁରୋହିତ ନଥିବାରୁ ବ୍ୟାପଟିଷ୍ଟ ଗୀର୍ଜାର ପୁରୋହିତ (Pastor) ସେହି ଗହ୍ୱର ଗର୍ତ୍ତ ନିକଟରେ ଶେଷ ପ୍ରାର୍ଥନା ଆବୃତ୍ତି କରିଥିଲେ ।

ସନ୍ଧ୍ୟାର ଗମ୍ଭୀର ଆକାଶ ତଳେ ସମବେତ ଜନତା ପ୍ରାର୍ଥନା ଶ୍ଳୋକ ଗୁଡ଼ିକ ଶୁଣୁଥିଲେ । କ୍ଷଣକ ପାଇଁ ଶ୍ମଶାନ ସଙ୍ଗୀତମୟ ହୋଇ ଉଠିଥିଲା । ସନ୍ଧ୍ୟାର ରକ୍ତ-ରାଗରେ ଶ୍ମଶାନର ତରୁଲତା ରଞ୍ଜିତ ହୋଇଗଲେ । କ୍ଷଣକ ପରେ ସେହି କଳା—କଫିନଟିକୁ ଗହ୍ୱର-ଗର୍ତ୍ତ ମଧ୍ୟରେ ଖସାଇ ଦିଆଗଲା । ସମବେତ ଜନତାଙ୍କ ଧୂଳି- ଅର୍ଘ୍ୟରେ ଗହ୍ୱର ଗର୍ତ୍ତ ପୂରି ଉଠିଲା ।

ଅମର ଶକ୍ତିର ମର କଳେବର ମାଟି ମଧ୍ୟରେ ଲୁଚିରହିଲା । ଶୋକ-ସନ୍ତପ୍ତ ଅନ୍ତରରେ ସହସ୍ର ସହସ୍ର ନର ନାରୀ ସହରାଭିମୁଖୀ ହେଲେ । ମଧୁସୂଦନଙ୍କ ମୃତ୍ୟୁ ଖବର ଭାରତ ସାରା ପ୍ରଚାରିତ ହୋଇଗଲା ଏବଂ ଭାରତର ନାନା ସ୍ଥାନରୁ ମଧୁସୂଦନଙ୍କ ତିରୋଧାନରେ ଶୋକବାର୍ତ୍ତା ଆସିଥିଲା ।

ମଧୁସୂଦନଙ୍କ ସମାଧିଟି ସୁନ୍ଦର ମାର୍ବଲ ପଥରରେ ନିର୍ମିତ ହୋଇଅଛି । ଦେଶର ନାନା ଶ୍ରେଣୀର ଲୋକେ, ଭକ୍ତ, ଶିଳ୍ପୀ, ଓଡ଼ିଆ ସନ୍ତାନ, ଛାତ୍ରବୃନ୍ଦ ଚଟ୍ଟଗ୍ରାମର ଓଡ଼ିଆ ଭାଇ, ଚଟ୍ଟଗ୍ରାମ ଜମିଦାର ବର୍ଗ, ନାରୀ, ଜମିଦାର, କଟକ ମହମ୍ମଦୀୟ ସଂଘ, ମାରୱାଡ଼ି ସମାଜ, କଟକ ଖ୍ରୀଷ୍ଟିୟାନମାନେ, ଉତ୍କଳର ବଙ୍ଗୀୟ-ମାନେ, ବନ୍ଧୁଗଣ, କଟକ ଓକିଲମଣ୍ଡଳୀ ଓ ଅନ୍ୟାନ୍ୟ ବନ୍ଧୁଗଣ ସମାଧିରେ ସ୍ମୃତିଲିପି ଦେଇ ଜନନେତା ମନସ୍ୱୀ ମଧୁସୂଦନଙ୍କୁ ସମ୍ମାନ ଦେଖାଇ ଅଛନ୍ତି । ମଧୁସୂଦନ ମରି ମଧ୍ୟ ଆଜି ଜାତିର ଅମୃତ ସନ୍ତାନ ହୋଇ ରହିଅଛନ୍ତି । ଉଚ୍ଚ କୁଳରେ ଜନ୍ମ, କିମ୍ବା ଧନବଳରେ ମଣିଷ ଅମର ହୁଏ ନାହିଁ । ସୁକର୍ମ ହିଁ ମନୁଷ୍ୟକୁ ଅମର କରେ । ମନୁଷ୍ୟ ନିଜେ ନିଜ ଚେଷ୍ଟା ଓ ସାଧନାବଳରେ ଅମୃତ ସନ୍ତାନ ହୁଏ । ମଧୁସୂଦନଙ୍କ ଜୀବନ ଏହାର ଶ୍ରେଷ୍ଠ ପ୍ରମାଣ ।

ସମାପ୍ତ

# ଶ୍ରୀ ଚନ୍ତାମଣି ଆଚାର୍ଯ୍ୟଙ୍କ ପତ୍ର

Mission Road,
Cuttack,
The 25th February 1930.

My dear Chintamani,

I am thankful to God that in His infinite wisdom He has placed in your hands powers by the exercise of which you can -- effectively correct the Municipal Board when they deviate from the path which the statute lays down as the road to true Self Government. However loud may be our demand for Swaraj we have yet to realize the true meaning of Self Government. We have yet to learn that to secure Self Government to a community every individual of the community must first learn to govern himself, that is to say he must learn to sacrifice his own interest to that of the community of which he is a member. One very often hears that the -- voters express disappointment at the result of their own action in choosing the Ward Commissioner. The Act provides a remedy for this mistake. I am responsible for the following new provisions in the Act :- (1) Every official is inelligible to be a Chairman, (2) the Commissioners may appoint an outsider as their Chairman, (3) the appointment of a President and the removal of a Commissioner or a Chairman who proves unworthy of the trust reposed in him. A careful analysis of these provisions will show that the Municipal administration is a practical school to equip men for responsible government of the country generally. May God guide you in the discharge of the responsible duties of your high office is the sincere prayer of

Yours affectionately,
M. S. Das

## ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କ ପତ୍ର

15.11.79

My dear Chintamani.

I must apologize for writing a reply to your magnanimous letter in English. I have not the same command over my mother tongue as you have. When I received education in Orissa there was no printing press. The literature of Orissa was not in circulation. I took Sanskrit as my second language but I had to fight a battle with the University for permission to use the Oriya character in answering the papers on Sanskrit.

This is just to explain why I am writing this letter in English.

To tell you the truth I am sorry there has been this delay in replying to your letter.

ମୌଲବୀ ଅବଦୁସ ଶୋଭାନ ଖାଁ ଏଡ଼ଭୋକେଟଙ୍କୁ ପତ୍ର

My dear Nabob.

Please accept the Rs 40 sent herewith for your undertaking to argue S.A 43 [illegible]. I think any thing otherwise will be inequitable & unjust. As the money is sent by a man please say on the a "Received" I wish you success in the case. I am worse this morning

Yours sincerely
M. S. Das

## ଅନ୍ୟାନ୍ୟ କେତେକ ପତ୍ର

### ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନିକଟ ପତ୍ର

My dear Gopabandhoo,

I enclose some notes on the economic condition in Orissa. You are at liberty to use them in the best way they can be used. The great thing is to induce the men to change the hue of gravitation of these money.

I am anxious for your health. I have grown desperate and may pass away any day. You are the only person with whom I should like to pray in my death bed.

Take care of your health. Orissa is very unfortunate. If Ashutosh had lived he would have made a magnificient thing of this Tannery.

He was personally attached to me and I have lost more than a brother in him.

I commenced public life single handed and it is natural I made mistakes, but I hope you believe that any thing but country's interest was my ruling idea.

Yours ever the same,
Sd. M. S. Das.

I am enclosing a letter to the Samaj over my signature and its enclosure is your letter. Please see that they are published.

## ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଣେତା
## ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନିକଟେ ପତ୍ର

Mission Road,
CUTTACK, B. N. Rly.
*28th July, 1931.*

MY DEAR GOPAL,

It is very kind of you indeed to think of my picture in connection with your herculeran work which will, as it ought to be your glorious and priceless gift to the Oriya nation. But I do not understand how my photo can fittingly have a place in it. Do you know the best definition of "dirt"? "Dirt" is matter in the wrong place. Ink is dirt on your shirt, but it is in right place in a book where ink is used in printing. There is ink in the letter, but it is not dirt. But I see a little of it on my finger, then it is dirt.

So you will see why I do not wish my photograph in the Oriya Webster. But I am surely thankful to you for my good wishes.

Believe me,
Yours affectionately,
Sd. M. S. Das.

# ଅଧ୍ୟାପକଙ୍କ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟ ପତ୍ର

*9th June, 1932.*

MY DEAR RAI SAHEB,

The Utkal luminary which illuminated the Indian Firmament has set, and has gone down the horizon. But an observer can see the rich colours reflected in the Western sky.

We all wish to see the great luminary rise once more and give us the dawn of a new national life.

You have devoted a good deal of your valuable time to direct the attention of the present generation to the ancient literature of the nation. The beautiful colours in the Western sky must he fully appreciated, loved and admired before the youthful mind is aglow with a desire to see the dawn of a new national life.

The honour conferred on you should have come earlier. But you are young and I am sure you will receive higher honours not only from Government but from your nation, who will crown you with ever green laurels while you live and when you leave this world, you will receive a crown of life from your creator for your services to your nation and country.

With best wishes for health, happiness and prosperity

Yours very sincerely.
Sd. M. S. DAS,

## ଉତ୍କଳ ଛାତ୍ର ସମ୍ମିଳନୀକୁ ପ୍ରକଟ ବାର୍ତ୍ତା

**Mission Road, Cuttack,**
*28th September, 1927.*

DEAR BROTHER,

You ask me to send a line "for the encouragement and inspiration" of the students.

### INSPIRATION.

The development of national consciousness should be the chief object of these conferences. Our students should be taught to distinguish between corporate bodies and a nation. When a number of men form an organised body with a common object to be accomplished, they form an association, a company, a syndicate and even an unlawful assembly to commit an offence. In such cases they draw their inspiration from the common object. Their zeal in the pursuit of their common object is their inspiration from the common object. You know the names of the members of such an association, the date when they first assembled to form their corporate body. A nation cannot be organised. We do not know when a nation was formed. A nation has its history, which is a record of the achievements of the ancestors of the present generation. You cannot create a nation. The chief object of a national gathering is to draw its inspiration from the national history and the achievements of our ancestors. Each student must feel that behind him stand his ancestors, before him are his progeny and his object of life is to connect the past and the future so that the result is a homogeneous whole.

ଜାତି ଇତିହାସ ଜାତିର ନିର୍ଝର — କଳ କଳ ରବେ ଧାଇଁଛି ସେ ଧାର
ତହୁଁ ବହେ ସଦା ଜାତି ପ୍ରାଣଧାର — ଅତୀତ ଗୌରବ ଗାଇ ନିରନ୍ତର ।
ସେହି ଧାରୁ ନୀର ପିଏ ଯେଉଁ ନର — ଭାବୀ ଉନ୍ନତିର ଉଦୟେ ନାଚୁଛି
ନିଶ୍ଚେ ହେବ ସେହି ଜାତି କର୍ମବୀର — ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର

## ENCOURAGEMENT

I am the first M. A. of the Oriya race, the first Oriya Vakil and now the first Oriya Advocate, the first Oriya visitor to Europe, the first Oriya member of the Provincial and Viceregal Legislative Councils, the first Oriya minister and the first Indian Minister to resign office. My race is the most backward and yet the first graduate of no race in India did all I have done. The first graduate of Bengal died a pensioned Deputy Magistrate. I am now in my eightieth year and have been adjudicated an Insolvent, but though I am eighty years old my mission of life to-day is what it was half a century ago and that mission is to bring Utkal to the notice of the World. Utkal Tannery landed me on insolvency, but it earned for Utkal the admiration of the whole civilised world. Students should aim at elevating Utkal. If the first graduate could do all this, much can be done by succeeding generations, if they realise their responsibility not as individuals but as members of a nation.

Yours sincerely,
Sd. M. S. Das.

## ଉତ୍କଳ ନାରୀସମ୍ମିଳନୀକୁ ପ୍ରଦତ୍ତ ବାର୍ତ୍ତା

୧୮-୩୧

Conference meets tomorrow. Object to determine the duty and line of action of oriya women to promote interest of society and oriya race. I highly appreciate the honour done to me in seeking my advice on this occassion. But I feel incompetent to offer any advice worth the serious consideration of the conference. In Orissa man has treated woman as if she had been created to do service to man and God did not assign to her any special duty in composition of nation. The advice of any man is irrelevant. A few women have joined man in political agitation of the day. They serve man in his political ambition. Whether woman serves man in domestic life or political life it is a subordinate position. Both ignore the Divine object in creating woman. You should enquire who has made European nations what they are, father or mother and then decide what is your duty and what should be your line of action. May God help you in your deliberation is the sincere prayer of M. S. Das.

## ମଧୁସୂଦନ ଓ ବିହାର ଓଡ଼ିଶାର ଗଭର୍ଣ୍ଣରଙ୍କ ମଧ୍ୟରେ ମନ୍ତ୍ରିତ୍ୱ ଇସ୍ତଫା ଘେନି ପତ୍ର ବିନିମୟ

### ମଧୁସୂଦନଙ୍କ ଚିଠି

PATNA, 8th March, 1923.

"Your Excellency,

"Your Excellency has, I am sure, been informed of the result of the motions about Ministers' salary, and a copy of my speach must have been submitted to Your Excellency.

"I was obliged to accept the proposal of a reduced pay because I found that my brother Minister was willing to accept the proposal and he felt that I was an impediment in his way. In order to improve his position I agreed to accept the proposal. My brother's position being now secure, I beg to resign my office as Minister of Local Self-Government. I still believe that the office ought to be honorary, but as Your Excellency rejected my proposal on the subject. I do not think I should continue in his office.

"I solicit the favour of your relieving me of my duties by making the necessary arrangements, and I shall in the meantime carry on the duties of the office.

"Permit me to express my sincere gratitude to you for the kind and cool way in which you considered my views even when I had the misfortune to disagree with you. My humble services as a non-official will always be at your command should you require them in the interests of the country over which God has appointed you to rule.

I remain,
Your Excellency's most Obdt. Servt.,
Sd. M. S. DAS.

## ଗଭର୍ଣ୍ଣରଙ୍କ ଉତ୍ତର

"To that letters I have this morning replied in the following terms :—

The 9th March, 1923.

"Dear Mr. Das,

"It is with much regret that I received this morning your letter of yesterday's date tendering your resignation of the office of Minister-in-charge of the Local Self Government Department. In the circumstances, I have no alternative but to accept it.

"You say that you 'still believe the office ought to be honorary, but as Your Excellency rejected my proposal on the subject I do not think I should continue in this office."

"I think, however, you will bear me out that in your letter of the 7th, 8th Februry 1923, which is the only communication I had received from you on the subject, the actual suggestion made by you was, you were 'willing to work honorary provided' you were 'allowed to earn a living by practising as a Vokil."

"As it seems to me to be desirable that the precise circumstances should be known to the public, I am, with your consent, communicating the present and the previous correspondence to the Legislative Council, in connection with the message announcing your resignation.

"Allow me to thank you cordially for the time and labour given by you in your capacity of Minister, as also for the offer of your continued assistance as a private individual should the need arise.

Your sincerely.
Sd. H. WHEELER.

THE GOVERNOR'S SPEECH IN THIS CONNECTION.

"I think it desirable that, in order that no misunderstanding should exist in the mind of the Council or the public, the previous correspondence that passed between myself and the Hon'ble Mr. Das should also be communicated, and to this the latter has assented. This is the more necessary since and that in the course of a speech delivered yesterday in the Council the Hon'ble Mr. Das remarked as follows :—

"The Hon'ble mover of the motion wanted to know where the scheme with an honorary Minister of Local Self-Government was. The first step necessary was the substitution of an Honorary Minister of Local Self-Government for a paid Minister. The Hon'ble leader of the House read out Section 52 of the Statute relating to Ministers. The statute empowers the Governor to appoint his Minister and it lays down the amount of salary such Minister should be paid. Reading the statute, any man will see that it rests with the governor to decide whether he would take an honorary Minister. If the Governor did not accept my reasons for making the office of Minister of Self-Gevernment honorary, if His Excellency did not accept my suggestion for making my office honorary, it would not be possible to me to work out a scheme. It is not within the power of anyone here to present a scheme in this Council without the sanction of His Excellency the Governor. Whether I have done my part of the work, whether I offered to serve honorary or not, my critics would do well to refer to His Excellency the Governor, and they may also refer to his Excellency the Viceroy. The correspondence on the subject between me and His Excellency I am bound to treat as confidential, but I shall be thankful to the Hon'ble members who are my critics and in this case all three of them are expert lawyers, if they would kindly accept my Vokalatnama and plead before His Excellency on the wisdom of having an honorary Minister. If they are anxious that I should vacate this office, it will give

them an opportunity to discuss the question of my successor. I can assure my critics that after all that has transpired during the last few days, I shall be glad to be relieved of the responsibilities of this office. As a minister I am bound to be loyal to the Governor and I must hold this office during his pleasure. These are the words of the statute, I cannot walk out of my office whenever I like. I cannot secure expulsion by being disloyal and unmanageable."

The inference which, I take it, is to be drawn from this speech is that the Hon'ble Mr. Das had suggested to me that the office of Minister in charge of Local Self-Government should be made an honorary one, and that I had declined to accept that suggestion.

"In this connection the followiig extract from a speech delivered by the Hon'ble Mr. Das in the Legislative Council on the 21st February 1922 is relevant:—

"In an organisation in which all the workers are honorary a salaried Minister mars the symmetry and harmony of the organisation. The office of the Minister of Local Self-Government ought to be honorary'. . . . "To convert this office into an honorary one, the present official machinery needs addition and readjustment. I do not wish to disturb the present arrangement, but it is my intention to move His Excellency to let me have the services of one or two extra officials for whose pay I shall be responsible. I hope, when this Council meets next year to discuss the budget, to be able (God helping) to place before the Council a scheme in which an honorary Minister of Loal Self-Goverenment finds a place."

"I assumed charge of the office of Governor of the province on the 12th April 1922. The first communication which I received from the Hon'ble Mr. Das on the subject of the status of his office is dated the 7th-8th February 1923, and run as follows :—

Patna.
Patna, the 7th-8th Feb 1923.

"Yours Excellency,

I beg to submit the following for your Excellency's perusal and favourable consideration.

"The success of the reforms must be decided by the nature of administration by the Local Bodies, Medical Relief, Sanitation, Communications, and the education of masses are subjects the administration whereof has been transferred to Municipal and District Boards. The importance of these subjects can be gauged by imagining for a moment the abolition of those departments during the trial period of the reforms The new Municipal Act make the Municipal Boards wholly responsible for the Municipal administration. The Local Self-government Act now before the Council will make the District Boards responsible for the administration of the rural areas. The people have not developed a due sense of responsibility necessary for efficient administration of the subjects entrusted to them. The members of these Honorary office means sacrifice from a sense of duty to the King and the Country. These local bodies when constituted under the New Act will need constant guidance and advice of the Minister of Local Self-Governments. In order that the Minister might exercise an influence over the honorary workers throughout the Province, it is necessary that he should be an honorary worker. A salaried official over the head of thousands of honorary workers is an anomaly. He cannot command their respect and consequently his appeals to the patriotic and benevolent feelings of the people will make the scheme a subject of ridicule to the people. To ensure the success of the reforms it is necessary that the Minister of Local Self-Government should not draw any salary but should be an honorary worker.

In India personal influence is an important factor when we have to secure the active sympathy and co-operation

of the people. Personal influence is earned by working without remuneration. Gandhi's activities in India have proved to demonstration the value of sacrifies as the price of personal influence.

The non-co-operation movement is a great impediment to the advancement of the reforms. The non-co-operators succeeded in spreading a network of mischievous propaganda. The personal influence of a few men like Gandhi. C. R. Das is due to their sacrifies. We have to combat with this opposing force; a salaried Minister of Local Self Government has no chance in this strugle. We must have men who are inspired by patriotic feelings ; our honorary workers in the local bodies are a valuable counter force, but a salaried Minister destroys the harmony and symmetry of the whole organisation.

"Hostile criticisms in the Lagislative Council, in the Press and elsewhere, regarding the salary of the Minister shows that the public want an honorary Minister of Local Self-Government.

"I am willing to work honorary provided I am allowed to earn a living by practising as a Vakil, I shall not allow any professional work to interfere with my duties as a Minister. If I had private means to keep me above the ordinary needs of life, I would not have asked for permission to practice. I have been in public life for nearly forty years and being the first graduate of the Oriya race, my public life meant financing all public movements. I gave a small portion of my time to my professional work as my public duties took the greater portion of my time.

"There is nothing inconsistent in the idea of a practising lawyer being a Minister. There is precedent of a Zamindar being a Member of the executive Council. The Maharajadhiraj of Darbhanga was the first Indian Member of the Executive Council in the Province. I saw in the papers the other day that the Raja of Mahmudabad has been

appointed an honorary Member of the Executive Council of the United Province. A zamindar has to look after the affairs of his estate , he is a party to suits in courts and has to give evidence in court, If this is not considered derogatory to the prestige of an Hon'ble Member of Council, appearance for a party in court by a lawyer should not be considered in any degree derogatory to the prestige of a Minister.

"The legal profession has always been considered honourable. The Provincial Governmets and the Government of India have recruited Members of the Executive Councils from the practising members of the Bar. Practising lawyers have been members of both of the Provincial and imperial Governments, and at the end of their service have reverted to professional practice These precedents are a complete answer to objections to my proposal on the ground of loss of prestige.

"A member of the Executive Council is responsible for the administration of the Reserved subjects. Law and order constitute the most important of the reserved subjects. There may be breach of the peace among the tenants of a Zamindar Member of a Executive Council or a Zamindar Minister. These occur might while a Zamindar is a member of the Government. Such a state of things would place the Government in a akward position. Such difficulties cannot arise when legal profession is the means of livelihood of a member of Government whether he be a member or a Minister.

"Local Self-Government is a transferred subject. The responsibility of administration is transferred to the people. The Minister is an elected member of the Council. His appointment as a Minister creats a new relation with His Excellency the Governor but the super imposition of this relation does not relieve him of his responsibilities to the people and the Lagislative Council which represents the

interests of people. Section 80B of the Government of India Act says that a Minister. "Shall not be deemed to be an official and a person shall not be deemed to accept office on appointment as a Minister."

"Section 124 of the Government of India Act penalises acts amounting to misdemeanours by persons holding office under the Crown in India. Clause 5 of the section prohibits the receipts of presents, but it exempts from such prohibition the fees paid or payable to Baristers. The word Barister is meant to include other legal practitioners especially vokils practising in the High Courts.

"I shall undertake not to absent myself from the meetings of Council. I shall not allow my professional engagements to interfere with my duties as a Minister. I shall consider my professional practice as a means of earning of living and if I have to reduce my comforts of ordinary life I would not mind it considering that this sacrifice will be more than amply rewarded by bringing the people in close touch with the Government and thus kill the spirit of non-co-operation and inspire a desire for co-operation in Municipal and District Boards and practising lawyers. A practising lawyer as a Minister would lend harmony and symmetry to the scheme.

"The duties of a Minister of a Local Self-Government require a knowledge of law and medicine. The local bodies are manned largely by lawyers. In consequence questions involving interpretation of the provisions of the Municipal Act often come up for decision to the Minister. The new Municipal Act came into force on 1st January of the current year. Before the 15th of January one Municipality passed a resolution which they thought was warranted by a certain. section of the Act. The question came up to me for decision I have received representations containing reference to Halsbury's laws of England. My knowlege of law and my study of medicine in early life have been of great help to me in the discharge of my present duties.

'It might be necessary to take an additional hand in the Secretariate, but a discussion on this aspect should be taken up should Yonr Excellency decide on accepting my proposal.

I remain;
Your Excellency's most obedient
servant,
Sd. M. S. Das.

## ଗଭର୍ଣ୍ଣରଙ୍କ ଉତ୍ତର

"To that letter I replied on the 11th Feb. 1923, in the following terms :—

Patna, Feb. 11.

'Dear Mr Das.

I am in receipt of your letter of the 7th, 8th instant, in which you give your reasons for suggesting that you are willing to work as Minister in an honorary capacity if allowed to earn your living by practising as a Vakil. While not in agreement with the arguments which you urge in justification of such a course, I am afraid there are to my mind, serious practical objections to it. I do not see how in practice you could combine these duties while doing justice to both or either. Secondly it appears to me to be an absolute imposibility that a Minister should appear as a legal practitioner in courts subordinate to the Government of which he is a member. I know of no precedent for such a position. I will be happy to discuss the matter should you wish to do so, but I regret that I do not see my way to accept your proposition.

Yours sincerely,
Sd. H. Wheeler.'

"The Hon'ble Mr. Das did not avail himself of my offer to discuss the question should he care to do so, and there the matter rested, so far as I was concerned' until the receipt of his letter, of the 8th instant.".

"I need scarcely say that I have received the Hon'ble Minister's resignation with regret, but I feel that it is only right that it should be known that the offer of the Hon'ble Mr Das as made to me was not unqualified but was coupled with the condition that he should, while discharging the duties of Minister, be permitted to resume practice as a Vakil—a condition which I felt it impossible to accept.

## ଶ୍ରୀମତୀ ଶୈଳବାଳା ଦାସଙ୍କୁ ଲିଖିତ ପତ୍ରର କେତେକାଂଶ

*2nd. Septεmber 1906—8p.m.*

MY DEAR CHILD,

I have been amused by your remarks about the physical jurisdiction of the High Court Judges. I donot know whether the expression I have used is sufficiently significant. I should perhaps say muscuslar jurisdiction. Their work is practically an easy, if not a pleasant one. It resembles the feat of the voracious eater who has spread out before him a large table elaborately laden with dishes of all kinds—good, bad and indifferent, which a dozen cooks worked hard to produce. The position of the Ex-King of Oudh, who had at dinner time daily brought before him hundreds of dishes served before him, these dishes having been cooked by his 250 wives. It was his pleasant duty to select some out of these numerous dishes, and he claimed and got more credit for them than his wives got for cooking them. The lawyers place before the Judge all the facts and law connected with a case, and his duty is to select and swallow some, and let alone the rest, but he claims great credit for them and in this respect he is worse than the Ex-King of Oudh, for the latter fed and clothed his wives, and therefore in some sense his arrogance was pardonable, whereas a Judge does not do any such thing to a lawyer. This makes his conduct unpardonable. Even in this very work of selection he errs and swallows the stuff which he cannot digest, and the appellate court adminsters purgative of a very bitter kind.

YOURS LOVING FATHER

## ଜୀବନ-ପଞ୍ଜିକା

୧୮୪୮ ଅପ୍ରେଲ ୨୮ ତାରିଖ- ସତ୍ୟଭାମାପୁରରେ ଜନ୍ମ
୧୮୬୪ ପ୍ରବେଶିକା ପରୀକ୍ଷାରେ ପାସ୍
୧୮୬୪—୬୭ ବାଲେଶ୍ୱରରେ ଶିକ୍ଷକତା
୧୮୬୭ ଉଚ୍ଚ ଶିକ୍ଷାପାଇଁ କଲିକତା ଗମନ
୧୮୬୮ ଏଫ୍. ଏ. ପାଶ୍
୧୮୬୯ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ
୧୮୭୦ ବି. ଏ. ପାଶ୍
୧୮୭୩ ଏମ୍. ଏ. ପାଶ୍ ଓ ବିବାହ
୧୮୭୫ ଆଦର୍ଶ ପ୍ରଶ୍ନ ଓ ଉତ୍ତର ପୁସ୍ତକ ପ୍ରକାଶ
୧୮୭୮ ପତ୍ନୀ-ସୌଦାମିନୀ ଦେବୀଙ୍କ ମୃତ୍ୟୁ
୧୮୮୦ କଲିକତା ପରିତ୍ୟାଗ
୧୮୮୩—୯୦ ରେଭେନ୍ସା କଲେଜ ଆଇନ ବିଭାଗରେ
(Part-time) ଅଧ୍ୟାପକ
୧୮୮୬ ପୁରୀ ମନ୍ଦିର ମକଦ୍ଦମା
୧୮୮୭ କଲିକତା ହାଇକୋର୍ଟରେ ଆଡ୍‌ଭୋକେଟ୍ (ଓକିଲ)
୧୮୯୧ କେନ୍ଦୁଝର ମେଲି ମକଦ୍ଦମା
୧୮୯୭ ଓଡ଼ିଶା ଆର୍ଟ ଓ୍ୱାର୍କସ୍ କାରଖାନା ସ୍ଥାପନ ଓ ଇଂଲଣ୍ଡ ଗମନ
୧୯୦୨ ମାନସିଂହ ପାଠଣା ମକଦ୍ଦମା
୧୯୦୩ ଅକ୍ଟୋବର ଉତ୍କଳ ସମ୍ମିଳନୀ ପୂର୍ବରୁ ପ୍ରାରମ୍ଭିକ
ପ୍ରକାଶ୍ୟ ସଭାରେ ସମ୍ମିଳନୀ ଗଠନ
ବିଷୟରେ ବକ୍ତୃତା
୧୯୦୩ ଡିସେମ୍ବର ପ୍ରଥମ ଉତ୍କଳ ସମ୍ମିଳନୀ
୧୯୦୪ ସି. ଆଇ. ଇ ଉପାଧି
୧୯୦୫ ଉତ୍କଳ ଟ୍ୟାନେରୀ ସ୍ଥାପନ
୧୯୦୭ ଦ୍ୱିତୀୟ ଥର ଇଂଲଣ୍ଡ ଗମନ
୧୯୧୩ ଉତ୍କଳ ସମ୍ମିଳନୀର ସଭାପତି
୧୯୧୪ ଇମ୍ପିରିୟାଲ କାଉନ୍ସିଲର ସଭ୍ୟ
'ଜାତୀୟ ଗୀତ' ପ୍ରକାଶ

୧୯୧୬ ପାଟଣା ହାଇକୋର୍ଟର ଆଡ଼ଭୋକେଟ୍

୧୯୧୭ "ଦି ଓଡ଼ିଆ" ଇଂରାଜୀ ପତ୍ରିକାର ସମ୍ପାଦକତ୍ୱ ଗ୍ରହଣ

୧୯୧୮ (୧) ଉତ୍କଳ ସମ୍ମିଳନୀର ବିଶେଷ
ଅଧିବେଶନର ସଭାପତି

(୨) ନାଗପୁରରେ ଅନୁଷ୍ଠିତ ନିଖିଳ
ଭାରତୀୟ ଖ୍ରୀଷ୍ଟିୟାନ ସମ୍ମିଳନୀର
ସଭାପତି

୧୯୧୯-୨୦ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀର ସଭାପତି

୧୯୨୧ (୧) ବିହାର ଓଡ଼ିଶା ପ୍ରଦେଶ ସ୍ୱାୟତ୍ତ
ଶାସନ ବିଭାଗର ମନ୍ତ୍ରୀତ୍ୱ

(୨) ପାଟଣାରେ "ଶ୍ରମ ମର୍ଯ୍ୟାଦା" ନାମକ
ପ୍ରସିଦ୍ଧ ବକ୍ତୃତା ପ୍ରଦାନ

୧୯୨୩ ମାର୍ଚ୍ଚ ୮ ତାରିଖ ମନ୍ତ୍ରିତ୍ୱ ପଦ ତ୍ୟାଗ

୧୯୨୫ ଗାନ୍ଧୀଙ୍କୁ ନିଜ କୋଠିରେ ଅତିଥି କରିଥିଲେ

୧୯୩୦ 'ଛିନ୍ନମସ୍ତା ଦିବସ' ପାଳନ ଉପଲକ୍ଷେ
ବିରାଟ ଜନସଭାରେ ସଭାପତି

୧୯୩୧ ସୀମା ନିର୍ଦ୍ଧାରଣ କମିଟି ଲାଗି କାର୍ଯ୍ୟ

୧୯୩୩ କଟକରେ ନେତୃ ସମ୍ମିଳନୀରେ
ବକ୍ତୃତା ପ୍ରଦାନ

୧୯୩୩ ଓଡ଼ିଶା ଆଡ଼ମିନିଷ୍ଟ୍ରେଟିଭ କମିଟିର ସଭ୍ୟ

୧୯୩୪ ଫେବୃୟାରୀ ୪ ତାରିଖ ମୃତ୍ୟୁ

---

## ମଧୁସୂଦନଙ୍କ ସମାଧିର ବିଭିନ୍ନ ଅଂଶରେ ଥିବା ପୁଷ୍ପାଞ୍ଜଳିର ବର୍ଣ୍ଣନା

### ମଧୁ ସମାଧି

( ON PEDESTAL AND THE BOOK )

**In loving and sacred memory**
**of our beloved**

# Madhusudan Das.

*Born—28th April, 1848 at Satyabhamapur, Dist. Cuttack.*
*Died—4th February, 1934 aged 85 ys. 9 mths 8 days*
*at Madhu-Smriti, Cuttack.*

I heard the voice of Jesus say "Come unto Me and rest;
Lay down thou weary one lay down Thy head upon
My Breast."
"I came un to Jesus as I was Weary, and worn and sad;
I found in Him a restimg place" And He has made me glad.
"Whosoever liveth and believeth in Me shall never die"

ST. JOHN XI 26.

### ସ୍ୱର୍ଗୀୟ ମଧୁସୂଦନ ଦାସ

**ଜନ୍ମ**—ସତ୍ୟଭାମାପୁର, ଜିଲ୍ଲା କଟକ, ୨୮ ତାରିଖ ଏପ୍ରିଲ, ୧୮୪୮
**ମୃତ୍ୟୁ**—ମଧୁ-ସ୍ମୃତି—କଟକ ୪ ତାରିଖ ଫେବୃଆରି, ୧୯୩୪

"ଜାନ୍ମ ସ୍ୱେଲ୍ଲିଷଣି, ସୁନୟ ଦାନ କର,
ମାତା ମନ୍ତ୍ର ଦେଲେ 'ପରାର୍ଥେ ଜୀବନ' ।"

✓ ମଧୁବାବୁ ।

Dear Dada the laurel wreath is set upon thy brow
And none can tear it from thee now
For death has given that which life with held
Glory immortal, glory unexcelled.

SHOILA

Beside your grave I often stand
With a heart both crushed and sore
But in the gloom the sweet words come
"Not lost but gone before"

SUDHANSU

(ON TOP SLAB)

**Our Guide when alive Our Guide though dead**

"ଯାଉ ଏ ଜୀବନ ଥାଉ ଏ ଜୀବନ,
ଯିବ ଥିବା ସବୁ ମୋ ପକ୍ଷେ ସମାନ
ତବ ଇଚ୍ଛା ପ୍ରଭୁ ହେଉ ହେ ପୂରଣ ।"

୰ ମଧୁବାବୁ

"ଜାତିପ୍ରେମ-ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି
'ସ୍ୱାର୍ଥମେଧ-ଯଜ୍ଞ' ଗୃହଆଡ଼େ ନାଚ ଛନ୍ଦକୁ ମିଶାଇ ଛନ୍ଦ ।"

୰ ମଧୁବାବୁ

"Adieu my dearest ones and country men
I am not dead but sleeping here
When you all come my grave to see
Prepare yourselves to follow me."

"ଅମର ଜୀବନ ଅଣିଥିଲ ବୀର ସାଥେ
ଚାଲିଗଲ ଦେଇ ଉତ୍କଳ ଜନନୀ ହାତେ"

ନବକିଶୋର

"Rest thou glorious sprit, throned above
Only souls like thine inherit peace and love."

ହେ ଅମର ସୁରବାସୀ ପ୍ରେମମୟ ତାତ
ତୁମ୍ଭ ଶେଷ ସ୍ମୃତି ଏଥି ରହିଲା ଜାଗ୍ରତ ।

*Erected hg his dearest ones:*—
Shoilabala Das (daughter)
Sudhansubala Hazra
Nogendrakumar Hazra
Chandrakumar Hazra
Jitendrakumar Hazra
Lady Rani Rajrajeshwari of Kanika
Raja Bahadur Sri Rajendrr Narayan Bhanj Deo
Tikayet Sailendra Narayan Bhanj Deo

ON THE SCROLL

In affectionate memory of Madhusudan Das—a great Oriya, a patriotic Indian, a devout Christian a lover of Behar and a distinguished Minister under the Reforms.

SACHIDANUD SINHA

ଅର୍ଘ୍ୟ ଘେନ ଦୀନବନ୍ଧୁ ହେ ମଧୁସୂଦନ
ତୁମ ସ୍ମୃତି ଭଳି, ତାଙ୍କୁ କରୁଣ କ୍ରନ୍ଦନ

ଭିକ୍ଷୁକ

ଜୟ ଆର୍ତ୍ତ-ଶିଳ୍ପ-ସଖା ହେ ମଧୁସୂଦନ,
ଅଙ୍କାଇବ ଆମ ହାତେ କଳା କୋଟିକମ ;
ଶିଳ୍ପ-ସଂଗଠନ ତବ ଅମର କାହାଣୀ,
ଦୁଃଖେ ଆଜ ବସି ଲୁଟେ ଉତ୍କଳ-ବନ୍ଧାଣୀ ।

ଶିଳ୍ପୀଗଣ

ଉତ୍କଳ ମାତାର ବରପୁତ୍ର ମଧୁସୂଦନ ! ପ୍ରଭୁ ଶକ୍ତି ଦଅନ୍ତୁ, ତୁମର
ଆତ୍ମତ୍ୟାଗ, ଆଦର୍ଶ ଓ ପ୍ରେରଣାକୁ ସମ୍ବଳ କରି ଜାତିର
ସେବାରେ ଆତ୍ମୋତ୍ସର୍ଗ କରୁଁ । ତମ ପ୍ରତିଭାକୁ ପୂଜା
କରି ଆମର ଜୀବନ ସାର୍ଥକ ହେଉ ଓ
ଜାତୀୟ ଜୀବନ କର୍ମମୟ ହେଉ ।

ଓଡ଼ିଆ ସନ୍ତାନ

ଜାତି ପାଇଁ, ଦେଶପାଇଁ ହେ ମଧୁସୂଦନ
ଢାଳିଲ ସକଳ ବୀର, ଅମୂଲ୍ୟ ଜୀବନ
ମୃତ୍ୟୁ ନୁହେ ମାନବର ଶେଷ ପରିଣତି,
ତବ ଯଶ ଜାହ୍ନୁ, ଧ୍ୟାନ ଛାତ୍ରଙ୍କର ଗତି ।

**ଉତ୍କଳ ଛାତ୍ରବୃନ୍ଦ**

ଭଗ୍ନ ମାତୃମୂର୍ତ୍ତି ଗଢ଼ି ହେ ମଧୁସୂଦନ
ଦେଖିଥିଲ ବହୁ ଦିନେ, ସୁବର୍ଣ୍ଣ ସ୍ୱପନ
ସଫଳ ହୋଇଛି, ତବ ପବିତ୍ର କୀରତି
ଉତ୍କଳେ ଉତ୍କଳେ ବୀର ! ଘେନ ହେ ପ୍ରଣତି ।

**ଗଞ୍ଜାମ ଓଡ଼ିଆଭାଇ**

ଦୁଃଖୀ ପାଇଁ କାନ୍ଦ କାନ୍ଦ ଭୁଲି ନାହିଁ ଧନୀ,
ପ୍ରଜା ସାଥେ ରାଜାଗଣେ ସମ ତୁମେ ମଣି ।
ସୁଖ ଦୁଃଖେ ସଖା ତୁମେ ଥିଲ ଅହେ ବୀର
ତବ ସ୍ମୃତି ଭୁଲି ଭୁଲି ନେବୁ ବକ୍ଷେ ଗାର ।

**ଗଞ୍ଜାମ ଜମିଦାରବର୍ଗ**

ସତୀ-ରକ୍ତ-ପୂତ ! ହେ ମଧୁସୂଦନ ଜନନୀଗଣ ଜୀବନ !
ଜନନୀ-ଜାତିର ଉନ୍ନତି କଳପେ କରିଥିଲ ପ୍ରାଣପଣ ।
ଶ୍ରଦ୍ଧାରେ ଥାଇ ଅଛନ୍ତି ଆଜି ଉତ୍କଳ ରମଣୀଗଣେ
ଜନନୀ-ସେବାରେ ପ୍ରାଣ ଦେବାପାଇଁ ନାହାନ୍ତି କେହି ଜଣେ ।

**ଉତ୍କଳ ନାରୀଗଣ**

ଦେଇଗଲ ସର୍ବସ୍ୱ ବୀର ଜାତି ପରିତ୍ରାଣେ
'ପରାର୍ଥେ ଜୀବନ'-ଗୀତି ଉତ୍କଳୀୟ ପ୍ରାଣେ
ଫୁଟାଇଲ ମହାଭାବ—ଜାତୀୟ ଜୀବନ
ନମୁ ଆମେ ତୁମ ପଦେ ହେ ମଧୁସୂଦନ ।

**ଉତ୍କଳ ଜମିଦାରବର୍ଗ**

ମଜ୍ଜୁଲ

ମୁଲ୍କା ସ ହେବ ଫିରସ୍ତା ହୋ ଗଇହେ ହାଏଁ,
ଇନ୍‌ସାନ୍ ହୋନା ବହୋତ୍ ଦୁସ୍ୱାର ହ୍ୟାଯ
ମିଞ୍ଜାର ଦାସ୍ ଓ୍ୟାକାଇ ଇନ୍‌ସାନ୍ ଥେ ।

**କଟକ ମହମ୍ମଦୀୟ ସଂଘ**

विन्यामैं पण्डीतमही गुणामैं सिन्धु समान
योगी सम त्यागी अहो नाम रह्यो जग जान
स्वभुमी सेवक दृढ उत्कल कियो प्रकाश
आप साधारे स्वर्गको हे मधुसूदन दास।

मारवाडी समिति

In affectionate memory of
Mr. M. S. Das.
"Nothing in my hands I bring
Simply to Thy Cross I cling."

CUTTACK CHRISTIAN COMMUNITY.

আজীবন সাধনায় রচিয়াছ মিলনের সেতু,
তব মন্ত্রে, মহাত্মন্, উদ্দীপিত হোক্ জয়কেতু।
মরণের প্রান্তদেশে রেখে গেছ অমর সুনাম;
নিখিলের বন্দনীয়! লহ দেব, মোদের প্রণাম!

The Bengalee Residents of Orissa.

Grand old man of Utkal,
Greatest strength and pride of
Cuttack bar;
Great lover of truth and independence,
May your spirit ever guide us.

CUTTACK BAR

ପରକୁ ଆପଣା କରିଥିଲ ବୀର
ସ୍ନେହ-ଡୋଳା ବାନ୍ଧି ଏ ଜୀବନ ତୀର
ଚାଲିଗଲ ତୁମେ ମୃତ୍ୟୁ-ସାଗର ପାରେ
ଧୂଳି-ସାଥି ହେଉଁ ସ୍ମୃତି-ସ୍ୱାଗତରେ ।

ବନ୍ଧୁ ଗଣ

## ଅଶ୍ରୁକଣା

### ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି.ଏ. ବି.ଟି.

୧

ଉତ୍କଳ ଜନନୀ ଅମୂଲ୍ୟ ଧନ
ଦେଶଗତ-ପ୍ରାଣ ମଧୁସୂଦନ
ମଧୁସ୍ନାନ କରି ଉତ୍କଳ ଧରା
କାହିଁ ଚାଲିଗଲ ଦୁଃଖପସରା ହେ
ଉତ୍କଳ ଜନନୀପ୍ରାଣ
ମଣିହରା ଫଣୀ ପରି ଘାରି ହୁଏ
କିଏ ରଖିବ ସମ୍ମାନ ?

୨

ଉତ୍କଳ-ଗଗନ— ଉଜ୍ଜ୍ୱଳ ତାରା
ବୁଡ଼ାଇଲ ଆଜି ଲୋତକଧାରା
କାନ୍ଦୁଅଛି ଆଜି ସାରା ଉତ୍କଳ
କିବା ଧନୀ କିବା ଶ୍ରମିକ ଦଳ ହେ
ଜାତି-ଧର୍ମ-ନିର୍ବିଶେଷେ
ଜ୍ଞାନୀବର ତବ ଅଗଣିତ ଗୁଣ
ବାଖାଣୁଛନ୍ତି ବିଶେଷେ ଯେ ।

୩

ଏ ମହା ଦୁର୍ଯୋଗ ଜାଣିଲୁ ପରି
ଆଗ ଧରା ଅଙ୍ଗ ଉଠିଲୁ ଥରି
ମାଘ ପୂର୍ଣ୍ଣିମାର ବିମଳ ଶଶୀ
ରାହୁ ଗ୍ରାସଛଳେ ବରଷ ଦଶି ଯେ
ଅସ୍ଥିର ହେଲା ପ୍ରକୃତି ଯେ,
ହେ ମହାମାନବ .ତବ ଲୟ ଭଳି
ଫାଟିଲେ ବସୁମତୀ ଯେ *

---

* ତେର ବର୍ଷ ମୃତ୍ୟୁ ପୂର୍ବରୁ ଭୂମିକମ୍ପ ।

୪

ଆଦ୍ୟଗୁରୁ ତୁମ୍ଭେ ନବ ଯୁଗରେ
ଆଦ୍ୟ ରଶ୍ମି ରେଖା ଅମା ଅନ୍ଧାରେ
ତୁମ୍ଭଠାରୁ ସିନା ନିଃସ୍ୱାର୍ଥ ଦୀକ୍ଷା
ପର ଉପକାର ମହତ ଶିକ୍ଷା ଯେ
ତୁମ୍ଭ ପଦତଳେ ବସି
ଶୁଣିଲି ଚକିତେ ଉତ୍କଳ ଯୁବକ
ନୀଚ ସ୍ୱାର୍ଥଭାବ ନାଶି ଯେ ।

୫

"ମାତୃ-ଭୂମି ମାତୃ— ଭାଷାର ଟେକ
ରଖ" ଡାକ ଦେଲ ତବ ବିବେକ
କୋଟି-ବାଧା ଦେଲ ଚରଣେ ଦଳି
ଉତ୍ସାହ-ଅନଳ ହୃଦୟେ ଜାଳି ହେ
କରିଥିଲ ପ୍ରାଣ ପଣ
"ଯାଉ ମଧୁ ପ୍ରାଣ, ଜନନୀ କଷଣ
ଘୁଞ୍ଚାଇବ ନିଶ୍ଚେ ଜାଣ"

୬

ଯନ୍ତ୍ର ତନ୍ତ୍ର ଦେଶ ହେବ ଲୁଣ୍ଠିତ
କବି-ରବି ଭାଷା ହେବ ଘୃଣିତ
କୋଣାର୍କ ଶିଳ୍ପୀ ନ ପାଏ ଅନ୍ନ
ରହିବ କପରି ଜାତି-ସମ୍ମାନ ହେ
ଏ ଦଶା କିଏ ସହିବ,
ନାଶିବ ଜଡ଼ତା ଆଣିବ ଏକତା
ଉତ୍କଳ ପୂର୍ବ-ବିଭବ ହେ ।

୭

ପ୍ରତିଜ୍ଞା-ପାଦପେ ଫଳିଛି ଫଳ
ଶୁଣିଲ 'ସ୍ୱତନ୍ତ୍ର ହେବ ଉତ୍କଳ'
ବଞ୍ଚିଥିଲେ ଆଜ କେତେଟୋଟି ଦିନ
ଦେଖିଥାନ୍ତ ନବ ସଭା-ସଦନ ହେ

ନବ ବିଶ୍ୱବିଦ୍ୟାଳୟ,
ଭାବନ୍ତେ ବେଳକୁ    ବହେ ଅଶ୍ରୁଜଳ
ଦାରୁଣ ବିଧୁ ହୃଦୟ ହେ ।

୮

ଓଜସ୍ୱିନୀ ଭାଷା    ସଭା ସଦନେ
ନ ପଡ଼ିବ ଆଉ    ଉଜ୍ଜ୍ୱଳ କରେ ;
ବାଗ୍ମୀବର, ସେହି    ଅପୂର୍ବ କଳା
କ୍ଷଣକେ ଖେଳାଇ    ଯିଏ ଚପଳା,
କାହୁଁ ଶିଖିଥିଲ ସତେ ହେ
ଯାହା ଶୁଣିବାକୁ    ଡେରନ୍ତି ଶ୍ରବଣ
ଦେଶୀ ବିଦେଶୀ ନରତେ ହେ ।

୯

ନାରୀ ଶିକ୍ଷା ପୁଣି    ନିମ୍ନ ଉନ୍ନତି
ସାଧିବାକୁ ଦେଲ    ଯେତେକ ଶକତି
ଜୀବନର ମନ୍ତ୍ର    ଦେଶ ଉନ୍ନତି
ଭାବୁଥିଲ ବସି    ଦିବସ ରାତି ହେ
ଗଲ ସ୍ୱର୍ଗର ବାଗନ୍ତି ଯେ
ଫୁଟିଲ ତହିଁ    ସ୍ୱଦେଶ ମହିମା
ତବ ଜୀବନ-ପ୍ରଭାତେ ହେ ।

୧୦

ଦେଶସେବା ସଙ୍ଗେ    ରାଜ ଭକତି
ପାଳିତ ଜୀବନେ    ହେ ମହାମତି,
ମନ୍ତ୍ରିପଦ କରି—ଥିଲ ମଣ୍ଡନ
ଜଟିଲ ବ୍ୟବସ୍ଥା—    ଶାସ୍ତ୍ରନିପୁଣ ହେ
ଚିହ୍ନି ତବ ଗୁଣମାନ
ରାଜ ସରକାର    କରିଲେ ପ୍ରଦାନ
ଉଚ୍ଚ ଉପାଧି-ମଣ୍ଡନ ହେ ।

୧୧

ହେ କବିବନ୍ଦିତ, ଅମର ପୁରେ
ନବ ସତ୍ୟକର୍ମୀ ମିଳିବେ ଖରେ ।
କରିବ ଆଶିଷ ଗୁଣିରତନ
ପୂର୍ଣ୍ଣ ହେବ ତବ ଶୂନ୍ୟ-ଆସନ ହେ
ଶୁଖିବ ମାତା ଲୋତକ ହେ
ଦିଅ ଶାନ୍ତିସୁଧା ସେ ଗୋଲକଧାମେ
ପୂଜିଣ ବିଶ୍ୱପାଳକ ହେ ।

---

Printed by P. C. Dss, at the Utkal University Press, Cuttack